# ସଚିତ୍ର-
# ଦାନ୍ତ ଭୂଷଣ

ପଣ୍ଡିତ ଶ୍ରୀ ଗୋପୀନାଥ କର ଶର୍ମ୍ମାଙ୍କ ରଚିତ

## ସ୍ୱର୍ଗଖଣ୍ଡ ।

---

ଶ୍ରୀ ନିତ୍ୟାନନ୍ଦ ସାହୁ ପ୍ରଭୃତଙ୍କ ଦ୍ୱାରା
ପ୍ରଥମବାର ପ୍ରକାଶିତ ।

---

କଟକ-ଅରୁଣୋଦୟ ପ୍ରେସରେ ମୁଦ୍ରିତ ।

PRINTED BY NITYA NANDA SAHOO
AT THE ARUNODAYA PRESS
CUTTACK
1931

R. SHYAN

ମୂଲ୍ୟ [illegible]

ପଦ୍ମପୁରାଣ ସ୍ୱର୍ଗଖଣ୍ଡର

# ସୂଚିପତ୍ର ।


| ବିଷୟ | ପୃଷ୍ଠା |
|---|---|
| ଗଣେଶ ବନ୍ଦନା | ୧ |
| ବ୍ରହ୍ମାଣ୍ଡ ଉତ୍ପତ୍ତି | ୩ |
| ବର୍ଷ ଆଦି ବର୍ଣ୍ଣନ | ୫ |
| ଭାରତବର୍ଷ ବର୍ଣ୍ଣନ | ୧୦ |
| ଭୂବର୍ଣ୍ଣନ | ୧୨ |
| ପୁଷ୍କର ମାହାତ୍ମ୍ୟ | ୧୫ |
| ନର୍ମଦା ମାହାତ୍ମ୍ୟ | ୧୮ |
| ତ୍ରିପୁର ଦହନ ... | ୨୧ |
| କାବେରୀ ନର୍ମଦା ସଙ୍ଗମ ମାହାତ୍ମ୍ୟ | ୨୬ |
| ନର୍ମଦା ଭୃଗୁଆଦି ତୀର୍ଥ ମାହାତ୍ମ୍ୟ ... | ୨୯ |
| ରେବା ମାହାତ୍ମ୍ୟ ... | ୪୧ |
| ସକଳ ତୀର୍ଥ ମାହାତ୍ମ୍ୟ ... | ୪୮ |
| କୁରୁକ୍ଷେତ୍ରାଦି ମାହାତ୍ମ୍ୟ ... | ୫୧ |
| ମଙ୍କଣକ ଓ ପୃଥୂଦକ ତୀର୍ଥ ମାହାତ୍ମ୍ୟ | ୫୫ |
| ଯମୁନା ମାହାତ୍ମ୍ୟ ... ... | ୫୮ |
| ବିକୁଣ୍ଡଳ ଚରିତ | ୬୨ |
| ସୁଗନ୍ଧାଦି ତୀର୍ଥ ବର୍ଣ୍ଣନ ... | ୬୪ |
| ବାରାଣସୀ ମାହାତ୍ମ୍ୟ ... | ୬୬ |
| ଶଙ୍କୁକର୍ଣ୍ଣୋପାଖ୍ୟାନ ... | ୭୮ |
| ଗୟା ପ୍ରଭୃତି ତୀର୍ଥ ବର୍ଣ୍ଣନ ... | ୮୩ |
| ପ୍ରୟାଗ ମାହାତ୍ମ୍ୟ ... ... | ୯୧ |
| ତୀର୍ଥ କୃତ୍ୟ ... ... ... | ୯୫ |
| ପ୍ରୟାଗ ବ୍ରତଫଳ ମାହାତ୍ମ୍ୟ ... ... | ୯୮ |
| ପ୍ରୟାଗ ବିଶେଷତ୍ୱ ହେତୁ ନିର୍ଣ୍ଣୟ ... ... | ୧୦୧ |
| ହରି ଭଜନ ମାହାତ୍ମ୍ୟ ... ... | ୧୦୪ |
| କର୍ମଯୋଗ ... | ୧୦୬ |
| ସଦାଚାର ଧର୍ମ ... | ୧୦୯ |
| ସଦାଚାର ଧର୍ମ ... ... ... | ୧୧୫ |
| ଭକ୍ଷାଭକ୍ଷ ନିର୍ଣ୍ଣୟ ... | ୧୨୧ |

| ବିଷୟ | ପୃଷ୍ଠା |
|---|---|
| ଗୃହସ୍ଥଧର୍ମ ନିର୍ଣ୍ଣୟ | ୧୨୬ |
| ବାନପ୍ରସ୍ଥ ଧର୍ମ ନିର୍ଣ୍ଣୟ ... | ୧୨୭ |
| ଶ୍ରୀବିଷ୍ଣୁ ମହିମା | ୧୨୮ |
| ଆଦିସ୍ୱର୍ଗ ମହିମା | ୧୩୩ |
| କଳିକାଳବ୍ରାହ୍ମଣୋ ପାୟ | ୧୩୪ |
| ହରିମନ୍ଦିର ଲେପନ ମାହାତ୍ମ୍ୟ | ୧୩୬ |
| ଦୀପଦାନ ମାହାତ୍ମ୍ୟ | ୧୩୮ |
| ଜୟନ୍ତୀବ୍ରତ ମାହାତ୍ମ୍ୟ | ୧୪୦ |
| ସନ୍ତାନୋତ୍ପତ୍ତି କଥନ | ୧୪୨ |
| ଦେବମନ୍ଦିର ଚୂର୍ଣ୍ଣଲେପନ ମାହାତ୍ମ୍ୟ | ୧୪୪ |
| ଶ୍ରୀରାଧାଷ୍ଟମୀ ବ୍ରତ ମାହାତ୍ମ୍ୟ ... | ୧୪୬ |
| ସମୁଦ୍ର ମନ୍ଥନ | ୧୪୮ |
| ଲକ୍ଷ୍ମୀବ୍ରତ | ୧୫୧ |
| ଜନ୍ମାଷ୍ଟମୀ ବ୍ରତ ମାହାତ୍ମ୍ୟ | ୧୫୬ |
| ଏକାଦଶୀ ମାହାତ୍ମ୍ୟ | ୧୬୪ |
| ବିଷ୍ଣୁପାଦୋଦକ ମାହାତ୍ମ୍ୟ | ୧୬୬ |
| ଅଗମ୍ୟାଗମନାଦି ବିବିଧ ପ୍ରାୟଶ୍ଚିତ୍ତ ... | ୧୭୦ |
| ତୁଳସୀ ମାହାତ୍ମ୍ୟ ... | ୧୭୪ |
| ବିଷ୍ଣୁ ପଥିକ ମାହାତ୍ମ୍ୟ | ୧୭୭ |
| ପ୍ରତିଜ୍ଞାପାଳନ ମହିମା ... | ୧୮୧ |


→ପଦ୍ମପୁରାଣ ସ୍ୱର୍ଗଖଣ୍ଡର ସୂଚିପତ୍ର ସମାପ୍ତ ।←






# ସ୍ୱର୍ଗଖଣ୍ଡ ।

## ଶ୍ରୀ ଗଣେଶାୟ ନମଃ ।

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଅନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥

ଯଂ ବ୍ରହ୍ମା ବରୁଣେନ୍ଦ୍ର ରୁଦ୍ର ମରୁତସ୍ତୁନ୍ୱନ୍ତି ଦିବ୍ୟୈସ୍ତବୈ
ର୍ବେଦୈଃ ସାଙ୍ଗପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ
ଧ୍ୟାନାବସ୍ଥିତତଦ୍ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ-
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥

ନମୋ ବ୍ରହ୍ମଣ୍ୟଦେବାୟ ଗୋବ୍ରାହ୍ମଣହିତାୟ ଚ ।
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋନମଃ ॥
ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ॥



## ଗଣେଶ ବନ୍ଦନା ।

ନମୋ ବିଘ୍ନେଶ୍ୱର ଦେବ ପାର୍ବତୀକୁମର ।
ଯୋଗେଶ୍ୱର ସ୍ୱରୂପ ତୋ ବାହନ ଇନ୍ଦୁର ॥
ନମୋ ଲମ୍ବୋଦର ଦେବ ସଦାଶିବ ଶିଷ୍ୟ ।
ବେନି ଭୁଜେ ଶୋଭା ପାଏ ପାଶ ଯେ ଅଙ୍କୁଶ
ଗଜବଦନରେ ଏକଦନ୍ତ ଶୋଭା ପାଇ ।
ପ୍ରକାଶ କରିବ ସ୍ୱର୍ଗଖଣ୍ଡ ସାର ମୁହିଁ ॥
ଅବିଘ୍ନ କରିଣ ଭକ୍ତି ଆଜ୍ଞା ମୋତେ ଦେବ ।
ସଂସାରରେ ବିଘ୍ନେଶ୍ୱର ନାମ ସମ୍ଭାଳିବା ॥
ନମୋ ସରସ୍ୱତୀ ଦେବୀ ବିଷ୍ଣୁଙ୍କ ବଲ୍ଲଭ ।
ଶ୍ୱେତପଦ୍ମ ଆସନ ଶରୀର ଶୁଭ୍ର ଆଭା ॥
ମୋର ବୁଦ୍ଧି ହୃଦ ଅନ୍ଧକାର ଯେ ଅଛଇ ।
ଜ୍ଞାନରୂପ ତମ ନାଶ କର ଦେବୀ ତୁହି ॥

ବ୍ରହ୍ମାର ଘରଣୀ ମୋତେ ଅନୁଗ୍ରହ କର ।
କହିବି ତୋ ପ୍ରସାଦରୁ ସ୍ୱର୍ଗଖଣ୍ଡ ସାର ॥
ନମୋ ନାରାୟଣ ତୁ କୃଷ୍ଣରୂପ ହରି ।
ଅନନ୍ତ ଅଚ୍ୟୁତ ରାମ ମୁକୁନ୍ଦ ମୁରାରି ॥
ଶ୍ରୀମଧୁସୂଦନ ବାସୁଦେବ ଚକ୍ରଧର ।
ନାରାୟଣ ଦଇତ୍ୟାରି ଅନାଦି ଈଶ୍ୱର ॥
ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଚତୁର୍ଭୁଜ ।
ଗରୁଡ଼ ପିଠିରେ ଶୋଭ ଦିଶ ଦେବରାଜ ॥
ଗୋବିନ୍ଦ ଗୋପାଳ ଜଗନ୍ନାଥ ଦାମୋଦର ।
ଆଜ୍ଞା ଦେଲେ କହିବି ମୁଁ ସ୍ୱର୍ଗଖଣ୍ଡ ସାର ॥
ନମୋ ବିଶ୍ୱେଶ୍ୱର ନାଥ ବୃଷଭ ବାହନ ।
ଗଉରୀବଲ୍ଲଭ ଶିବ ବାସ ତୋ ଶ୍ମଶାନ ॥
ନମୋ ନୀଳକଣ୍ଠ ଦେବ ନମସ୍ତେ ଗିରୀଶ ।
ସ୍ୱର୍ଗଖଣ୍ଡସାର ମୁହିଁ କରିବି ପ୍ରକାଶ ॥
ପଦ୍ମପୁରାଣର ଉକ୍ତ ସ୍ୱର୍ଗଖଣ୍ଡସାର ।
ଯାହା ଶୁଣି ସଂସାରରୁ ମୁକ୍ତ ହେବେ ନର ॥
ପାର୍ବତୀଙ୍କ ଆଗେ ଯାହା କହିଛ ବିସ୍ତାରି ।
ମୋତେ ଆଜ୍ଞା ଦେଲେ ତାହା କହିବି ବିଚାରି
ପରାକୃତଭାଷାବନ୍ଧେ କରିବି ବିହିତ ।
ବ୍ରହ୍ମାଣ୍ଡ ଉତ୍ପତ୍ତି ଆଦି ବୋଲି ନାମ ଗୀତ ॥
ବନ୍ଦଇ ଗିରିଜା ଦେବୀ ଶଙ୍କର ଘରଣୀ ।
ଆରତଭଞ୍ଜନୀ ତୁ ଗୋ ଦୁର୍ଗତିତାରିଣୀ ॥
ନମୋ ବିଶ୍ୱେଶ୍ୱରୀ ମାତା ଜଗତ ପ୍ରସୂତି ।
ସକଳ ଶୁଣିଛ ହରିଭକ୍ତି ଭାବ ନୀତି ॥
ଅଷ୍ଟାଦଶପୁରାଣ ସହିତେ ଦିବ୍ୟ ତନ୍ତ୍ର ।
ସ୍ୱର୍ଗଖଣ୍ଡସାର ପଦ୍ମ ପୁରାଣରେ ମତ ॥
ଅନୁଗ୍ରହ କର ମୋତେ ଗୋ ସର୍ବମଙ୍ଗଳା ।
ସ୍ୱର୍ଗଖଣ୍ଡସାର ମୁଁ କହିବି କୃଷ୍ଣଲୀଳା ॥
ଶ୍ରୀକୃଷ୍ଣଙ୍କ ଭକ୍ତିଭାବ ହୃଦେ ଦୃଢ଼ କରି ।
ସଦାଶିବ ମୁଖୁଁ ଯାହା ଶୁଣିଛ ବିଚାରି ॥
ଯେବେ ଆଜ୍ଞା ଦେବ ଗୋ ଜଗତଜନମାତା ।
ବିଦିତ କରିବି ସଂସାରରେ ସେହି କଥା ॥
ନାରାୟଣ ପୂଜା ଭକ୍ତି ପ୍ରୀତି ନୀତି ଭାବ ।
ବରଷା ଆଦି ବର୍ଣ୍ଣନା ପ୍ରକାଶ ପାଇବ ॥
ଭାରତବର୍ଷ ବର୍ଣ୍ଣନ ପୃଥିବୀ ବର୍ଣ୍ଣନ ।
ପୁଷ୍କରତୀର୍ଥ ମାହାତ୍ମ୍ୟ ହରିପୁର ଦର୍ଶନ ॥
କାବେରୀ ଆଦି ତୀର୍ଥର ମହିମା ସୁଲଭ ।
ପ୍ରାଣୀ ଯାହା ଶୁଣିଲେ ବୈକୁଣ୍ଠପୁରେ ଯିବ ॥
ବିଷ୍ଣୁପଥିକ ମାହାତ୍ମ୍ୟ ବିସ୍ତୃତ ବର୍ଣ୍ଣନ ।
ଅଗମ୍ୟାଗମନ ପ୍ରାୟଶ୍ଚିତ୍ତର କଥନ ॥
ନର୍ମଦା ତୀର୍ଥ ମାହାତ୍ମ୍ୟ ତୁଳସୀ ମହିମା ।
ଏହି ସମସ୍ତଙ୍କ ଭକ୍ତି ଭାବକୁ ଜାଣିମା ॥
ଆତିହିଁ ବିଜ୍ଞଜନେ ହୃଦପଦ୍ମେ ଧ୍ୟା ଗୁଣିବ ।
ଠିକ ଠିକ କରି ମୁହିଁ ବର୍ଣ୍ଣିବଇଁ ସର୍ବ ॥
ସ୍ୱର୍ଗଖଣ୍ଡସାର ପଦ୍ମପୁରାଣର ମତ ।
ଭାଷାବନ୍ଧେ ପ୍ରକାଶିବି ଆଜ୍ଞା ଦେଲେ ମାତ ॥
ଶୁଣି ସାଧୁଜନେ ମୋର ଦୋଷ ନ ଧରିବ ।
କୃଷ୍ଣଭକ୍ତି କର୍ଣ୍ଣେ ଶୁଣି ପାତକ ନାଶିବ ॥
କୃଷ୍ଣଭକ୍ତି ସ୍ୱର୍ଗଖଣ୍ଡସାର ସୁଧାକର ।
ମଧୁ ପାନ କରେ ତହିଁ ଗୋପୀ ଦ୍ୱିଜବର ॥
ଏ ମୋହର ଦେହି ନାନାପାତକରେ ଲୀନ ।
ସ୍ୱର୍ଗଖଣ୍ଡସାରରେ ମୁଁ କରିବଇଁ ସ୍ନାନ ॥
ଅନ୍ତର ବାହାରେ ଯେ ପାତକ ମୋର ଥିବ ।
କୃଷ୍ଣସ୍ୱର୍ଗଖଣ୍ଡସାର କହି ଧୌତ ହେବ ॥
ସ୍ୱର୍ଗଖଣ୍ଡସାର ଯେ ଭକତି ଶ୍ରୀକୃଷ୍ଣର ।
ଶୁଣିଣ ଅଜ୍ଞାନ ଜନେ ଭବୁ ହେବେ ପାର ॥
କୃଷ୍ଣଭଜ ସାଧୁମାନେ ପାପ ନାଶ ଯାଉ ।
ପାତକନାଶିକ ରାମ ହରି ନାମ ରହୁ ॥
ଅଗାଧ ଅପାର ଜାଣ ଏ ଭବସଂସାର ।
କୃଷ୍ଣରାମ ନାମ ନାବ କରି ହୁଅ ପାର ॥
ହୃଦେ ଦୃଢ଼ କରି ଭଜ ଶ୍ରୀକୃଷ୍ଣ ରାମଙ୍କୁ ।
ତାଙ୍କ ବିନୁ ନାବ ନାହିଁ ଏ ଭବସିନ୍ଧୁକୁ ॥
ଯେବେ କୃଷ୍ଣ ନ ଭଜଣ ବ୍ୟର୍ଥେ ଦିନ ନେବ
ଆତ୍ମହତ୍ୟାଦି ସକଳ ପାତକ ଗ୍ରାସିବ ॥
ଆତ୍ମା ଅକାରଣ ହେଲେ ପଡ଼ିବ ନର୍କରେ ।
ପୁଣି ପୁଣି ଜନ୍ମ ମୃତ୍ୟୁ ଲଭିବ ସଂସାରେ ॥
ଏକାଦଶୀର ମାହାତ୍ମ୍ୟ ଅତି ସୁମଧୁର ।
ମୁଖେ ଗାଇ କର୍ଣ୍ଣେ ଶୁଣି ପାପୁଁ ହୁଅ ପାର ।
ଯମର ଯାତନା ପୁରୀ ଯା ନାମ ଦୁର୍ଗମ ।
ସେ କଥା ବିଚାରି ମନେ ଭଜ କୃଷ୍ଣ ରାମ ॥
ଶ୍ରୀରାମ କୃଷ୍ଣର ବେନି ଶ୍ରୀପଦ୍ମ ଚରଣ ।
ବିପ୍ର ଗୋପୀନାଥ ତହିଁ ପଶିଲା ଶରଣ ॥

## ପ୍ରଥମ ଅଧ୍ୟାୟ ।

### ବ୍ରହ୍ମାଣ୍ଡ ଉତ୍ପତ୍ତି ।

ଏକଦିନେ ହିମାଳୟବାସୀ ମୁନି ଯେତେ ।
ତିନି କାଳର କଥା ଯେ ଜାଣନ୍ତି ସମସ୍ତେ ॥
ଜ୍ୱଳନ୍ତ ଅନଳ ତୁଲ୍ୟ ପ୍ରଚଣ୍ଡ ଦିଶନ୍ତି ।
ବେଦବେଦାଙ୍ଗାଦି ଶାସ୍ତ୍ର ସକଳ ଜାଣନ୍ତି ॥
ଆଉର ଥିଲେ ମହେନ୍ଦ୍ର ପର୍ବତେ ଯେତେ ।
ଯେ ସକଳ ମୁନି ଥିଲେ ବିନ୍ଧ୍ୟପର୍ବତେ ॥
ଅର୍ବୁଦ ବନରେ ଥିଲେ ଯେତେ ମୁନିଗଣ ।
ପୁଷ୍କର ବନରେ ଥିଲେ ଯେତେ ମୁନିଜନ ॥
ଅମ୍ବୁମାର୍ଗ କୁରୁକ୍ଷେତ୍ର ଆଦି ତୀର୍ଥ ଯେତେ ।
ସକଳ ପୁଣ୍ୟ ଆଶ୍ରମବାସୀଏ ସମସ୍ତେ ॥
ନଇମିଷ ବନ ମଧ୍ୟେ ଆସି କଲେ ମେଳ ।
ବହୁତ ଶିଷ୍ୟଙ୍କୁ ଘେନି କଲେ ହରିଲୀଳା ॥
ନିର୍ମଳ ଅତି ପବିତ୍ର ସବୁର ଚରିତ ।
ସକଳ ମୁନି ମହାତ୍ମା ମଧ୍ୟରେ ଗଣିତ ॥
ସବୁର ମନ ଦେଖିବେ ମୁନି ଶଉନକ ।
ପୁରାଣ ଉପପୁରାଣ ଅଛନ୍ତି ଯେତେକ ॥
ସେ ମୁନିଙ୍କି ସବୁ ଜଣା ବୁଝାଇ କହନ୍ତି ।
ତେଣୁ ତାଙ୍କୁ ଦେଖିବାକୁ ସମସ୍ତେ ବାଞ୍ଛନ୍ତି ॥
ହରିଦ୍ୱାରେ ମେଳା ତହିଁ କରୁଥିଲେ ମିଳି ।
ଯୋଗବଳେ ଜାଣି ଶଉନକ ତପଶାଳୀ ॥
ମେଳାରେ ଆସି ମିଳିଲେ ଶିଷ୍ୟଙ୍କ ସହିତେ ।
ତାହାଙ୍କୁ ଦେଖି ଆସନୁ ଉଠିଲେ ସମସ୍ତେ ॥
ପୂଜା କରି ଆଦରେ ବସାଇ ଆସନେ ।
ନିଜ ନିଜ ଆସନରେ ବସି ଋଷିଗଣେ ॥
ହରିଙ୍କ ଗୁଣ କୀର୍ତ୍ତନ କଲେ ସର୍ବେ ପୁଣି ।
ଏମନ୍ତ ବେଳେ ମିଳିଲେ ଆସି ସୂତ ମୁନି ॥
ଅଗ୍ନି ସଦୃଶ ପ୍ରକାଶୁଅଛି ତାଙ୍କ ଜ୍ୟୋତି ।
ରୋମହର୍ଷଣ ବୋଲି ତାହାଙ୍କୁ ବୋଲନ୍ତି ॥
ବ୍ୟାସଋଷି ଶିଷ୍ୟ ସେହି କହନ୍ତି ପୁରାଣ ।
ସଭାରେ ମିଳି ବନ୍ଦିଲେ ସବୁର ଚରଣ ॥
ସମସ୍ତେ କଲେ ତାହାଙ୍କୁ ବହୁତ ଆଦର ।
ଆସନ ଦେଇ ମୁନିଏ ପୁଚ୍ଛିଲେ ଆଉର ॥
ବୋଇଲେ ଯେ ବୁଦ୍ଧିମନ୍ତ ତୁମ୍ଭେ ଶଉନକ ।
ଲୋକେ ବୋଲନ୍ତି ତୁମ୍ଭଙ୍କୁ ମୁନି ପୌରାଣିକ ॥
ପୂର୍ବେ ଆମ୍ଭେ ତୁମ୍ଭମୁଖେ ଶୁଣିଛୁଁ ପୁରାଣ ।
ଭିନ୍ନରୂପେ ପୁରାଣର କଥା ସବୁ ଜାଣ ॥
ତୁମ୍ଭେ କହିଲେ ଶୁଣିବାପାଇଁ ବଳେ ମନ ।
ପୁରାଣ ଶୁଣିଲେ ପାପ ହୁଅଇ ଖଣ୍ଡନ ॥
ହରିନାମଠାରୁ ବଳି ନାହିଁ ଆଉ ପୁଣ୍ୟ ।
ହରିର ନାମ ଆମ୍ଭଙ୍କୁ କରାଅ ଶ୍ରବଣ ॥
ହରିନାମ ପୁରାଣକୁ ଶୁଣିଲେ ଶ୍ରଦ୍ଧାରେ ।
ହରିଭକତି ଉପୁଜେ ତାର ହୃଦୟରେ ॥
ହରିର ଗୁଣ ଯହିଁରେ ଅଛଇ ବହୁତ ।
ଶୁଣିବା ସେହି ପୁରାଣ କହ ମୁନି ସୂତ ॥
ହରିର ନାମ ନ ଥାଇ ଯେଉଁ ପୁରାଣେ ।
ଶ୍ମଶାନ ତୁଲ୍ୟ ତାକୁ ମଣନ୍ତି ସୁଜନେ ॥
ସକଳ ତୀର୍ଥ ସ୍ୱରୂପୀ ଅଟନ୍ତି ସେ ହରି ।
ଏଣୁ ତୀର୍ଥ ନାମ ସବୁ କହ ତପସ୍ୱୀ ॥
ଏ ଚରାଚର ଜଗତ କାହୁଁ ଉପୁଜିଲା ।
କେଉଁ ଲୋକ ଏ ସଂସାର ଗୋଟାକୁ ପାଳିଲା ॥
କାହିଁ ପାଇଁ ଏ ଜଗତ ଗୋଟା ପାଏ ଲୟ ।
ମହାପୁଣ୍ୟ କ୍ଷେତ୍ର ସବୁ କିଏ ତାହା କହ ॥
ସବୁର ପୂଜ୍ୟ ଅଟଇ କେଉଁଣ ପର୍ବତ ।
ପବିତ୍ର ନଦୀ କାହାକୁ ବୋଲନ୍ତି ହେ ସୂତ ॥
କାହାର ଜଳ କରଇ ପାପ ବିନାଶନ ।
ଏ ସବୁ କଥା ଶୁଣିବାପାଇଁ ଆମ୍ଭ ମନ ॥
ସୂତ କହିଲେ ସମସ୍ତେ ଶୁଣ ସାବଧାନେ ।
ସ୍ୱର୍ଗଖଣ୍ଡ କହୁଅଛି ତବ ସନ୍ନିଧାନେ ॥
ପଦ୍ମ ପୁରାଣେ ଉକତ ହରିରସ ସାର ।
ବଇଷ୍ଣବ ମାନଙ୍କର ଅଟେ ଗଳାହାର ॥
ପରମ ବୋଲି ଜାଣିବ ବିଷ୍ଣୁଙ୍କୁ ସେ ଗ୍ରନ୍ଥେ ।
ସନାତନ ବୋଲି ପୁଣି ବୋଲନ୍ତି ଜଗତେ ॥
ଶୁଣ ମୁନିଗଣେ ଏବେ କହୁଛି ପୁରାଣ ।
ଏ ସୃଷ୍ଟି ଗୋଟା ପ୍ରଳୟ ହେଲା ଯେବେ ଜାଣ
କିଛିହିଁ ଆଉ ନ ଥିଲା କାହିଁ ବ୍ରହ୍ମପାଏ ।
ସ୍ଥାବର ଜଙ୍ଗମଆଦି ସବୁ ଯାଇ ଲୟେ ॥
ବ୍ରହ୍ମନାମେ ଏକ ମହା ଜ୍ୟୋତି ମାତ୍ର ଥିଲା ।
ସେହି ନିତ୍ୟ ନିରଞ୍ଜନ ଜ୍ୟୋତି ବୋଲାଇଲା ॥

ଜନ୍ମ ନାହିଁ ଅନ୍ତ ନାହିଁ ମଧ୍ୟ ନାହିଁ ତାର ।
ଏକାକେ ବ୍ୟାପି ରହିଛି ସକଳ ସଂସାର ॥
ଯେତେବେ ଭୂମେ ବ୍ୟସ୍ତ କଲେ ନ ସରିବ ସେହି
ତାହାଠାରୁ ବଡ଼ ଜାଣ ଆଉ କେହି ନାହିଁ ॥
ମୋକ୍ଷ କାମନା କରନ୍ତି ଯେତେ ସାଧୁଜନ ।
ପାଇଲେ ମୋକ୍ଷ ହୁଅନ୍ତି ତାର ଦରଶନ ॥
ପୁଣି ସୃଷ୍ଟି କରିବାକୁ ମନ ହେଲେ ତାର ।
ଆପେ ଆପେ ନିରଞ୍ଜନ ବୋଲ୍ କରଇ ବିସ୍ତର ॥
ନିରଞ୍ଜନର ସ୍ୱରୂପ ସେହି ସର୍ବଜ୍ଞ ଅଟଇ ।
ନିତ୍ୟ ନିର୍ମଳ ନିର୍ଗୁଣ ଶାନ୍ତଭାବେ ଥାଇ ॥
ଆନନ୍ଦର ଗୃହ ସେହି ନିର୍ମଳ ନିରତେ ।
ମୋ ଗର୍ଭେ ବିକାର ଅଛି ବିସ୍ତରନ୍ତେ ଶତେ ॥
ତତ୍କ୍ଷଣେ ତହୁଁ ପ୍ରକୃତି ଜନମ ହୁଅଇ ।
ତହିଁରୁ ମହତ ତତ୍ତ୍ୱ ଜାଣ ଉପୁଜଇ ॥
ସତ ରଜ ତମ ତିନି ଗୁଣେ ସେ ଜଡ଼ିତ ।
ସ୍ଥୁପାର ଭିତରେ ବୀଜ ଥାଇଟି ଯେମନ୍ତ ॥
ମହତତ୍ତ୍ୱ ତିନିଗୁଣେ ଆବୃତ ତେସନ ।
ତିନିଗୋଟି ଅହଂକାର ତହିଁରୁ ଜନମ ॥
ବୈକାରିକ ତାମସ ତୈଜସ ତିନି ।
ତହୁଁ ଆକାଶ ଉପୁଜେ ଶବ୍ଦ ଗୁଣ ଘେନି ॥
ସ୍ପରଶ ଗୁଣକୁ ଘେନି ବାୟୁ ତହୁଁ ଜାତ ।
ଶବଦ ସ୍ପରଶ ଶୂନ୍ୟେ ହୋଇଣ ଆବୃତ ॥
ସେ ବାୟୁ ଯାଇଁ ରୂପକୁ ରହିଲ ଆବୋରି ।
ରୂପଗୁଣ ଘେନି ଜ୍ୟୋତି ତହିଁରୁ ବାହାର ॥
ସେହି ଜ୍ୟୋତିର ବିକାରୁ ରସ ଉପୁଜିଲା ।
ରୂପ ସେହି ରସକୁ ଯେ ଆବୋରି ରହିଲା ॥
ସେ ରସ ଭିତରୁ ପୁଣି ଉପୁଜିଲା ଜଳ ।
ବିକାର ପାଇ ସେ ଜଳ ହେଲା ତହୁଁ ସ୍ଥୂଳ ॥
ସେ ଜଳକୁ ରୂପ ରସ ରହିଲ ଆବୋରି ।
ତହୁଁ ସେ ଜଳ ଭିତରୁ ଗନ୍ଧ ଯେ ବାହାରି ॥
ସେହି ଗନ୍ଧଗୁଣ ଘେନି ପୃଥ୍ୱୀ ହେଲା ଜାତ ।
ଏଥୁଅନ୍ତେ ମୁନିଗଣେ ଶୁଣ ଦେଇ ଚିତ୍ତ ॥
ଏ ସବୁରେ ତମୋ ଗୁଣ କିଛି କିଛି ଅଛି ।
ଅହଂକାରୁ ଏ ସକଳ ଜାଣ ଉପୁଜିଛି ॥
ତୈଜସ ଅହଂକାରୁ ଦଶଇନ୍ଦ୍ରି ଜାତ ।
ତହୁଁ ଇନ୍ଦ୍ର ଆଦି ଦଶ ଦେବତା ସମ୍ଭୂତ ॥

ସେ ଦଶ ଦେବତା ସଙ୍ଗେ ଉପୁଜିଲ ମନ ।
ଏହିରୂପେ କହିଛନ୍ତି ଯେତେକ ଜ୍ଞାନିଜନ ॥
ଜ୍ଞାନ ଇନ୍ଦ୍ରିୟ ଯେ ପାଞ୍ଚ ଗୋଟି ଶୁଣ ତାହା ।
ସେମାନେ ପୁଣି କରନ୍ତି କର୍ମ ଯାହା ଯାହା ॥
କର୍ଣ୍ଣ ଚର୍ମ ଚକ୍ଷୁ ଜିଭ ନାସିକା ଏ ଜାଣ ।
ଶବଦ ସ୍ପରଶ ରୂପ ରସ ଗନ୍ଧ କର୍ମ ॥
କର୍ମ ଇନ୍ଦ୍ରିୟ ଯେ ପାଞ୍ଚ ଗୋଟି ଶୁଣ ଏବେ ।
ଠିକ ଠିକକରି ସବୁ କହିବା ପ୍ରସ୍ତାବେ ॥
ଗୁହ୍ୟ ଉପସ୍ଥ ଯେ ହସ୍ତ ପାଦ ବାକ୍ୟ ଯୋଗେ
ଏହାଙ୍କ କର୍ମ କହୁଛି ଏବେ ତୁମ୍ଭ ଆଗେ ॥
ମଳତ୍ୟାଗ ଆନନ୍ଦ ଯେ ନେବା ଦେବା ପୁଣି ।
ଗମନ ବଚନ ଏହି ପାଞ୍ଚ କର୍ମ ଭଣି ॥
ଶୂନ୍ୟ ବାୟୁ ତେଜ ଜଳ ପୃଥ୍ୱୀ ପଞ୍ଚଭୂତ ।
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧରେ ସଂଯୁକ୍ତ ॥
ଏ ସମସ୍ତେ ଏକ ହୋଇ ସୃଷ୍ଟିକି ଭିଆନ୍ତି ।
କାଳେ କାଳେ ତଥ୍ୟ ଏହା ଜାଣିବ ସୁମତି ॥
ପ୍ରଧାନ ପୁରୁଷଙ୍କର ସଙ୍ଗକୁ ସେ ପାଇ ।
ମହତ ଆଦି ଯେ ଗୁଣ ତାଙ୍କ ସଙ୍ଗେ ଥାଇ ॥
ସ୍ଥୂଳ ସୂକ୍ଷ୍ମ ଅଣ୍ଡ ଏକ କଲେ ତହୁଁ ଜାତ ।
ସେ ଅଣ୍ଡ ଜଳେ ଭାସିଲ ଫୋଟକା ସଂଜାତ ॥
ବ୍ରହ୍ମରୂପୀ ବିଷ୍ଣୁଙ୍କର ସ୍ଥାନ ସେହି ଅଣ୍ଡ ।
ତେଣୁ ସେ ଅଣ୍ଡ ବୋଲାଇ ସେ ଦିନୁ ବ୍ରହ୍ମାଣ୍ଡ
ରହିଣ ବ୍ରହ୍ମରୂପରେ ସେ ଅଣ୍ଡ ଭିତରେ ।
ସେ ଅଣ୍ଡରୁ ଉପୁଜିଲେ ପ୍ରାଣିଏ ସଂସାରେ ॥
ସ୍ୱେଦଜ ଅଣ୍ଡଜ ଜରାୟୁଜ ମହୀଧରଂ ।
ଏମନ୍ତେ ଏ ଚରସ୍ଥାନୀ ଜୀବେ ଏ ସଂସାର ॥
ପୋଖରୀ ସମୁଦ୍ର ଆଦି ତହୁଁ ଉପୁଜିଲ ।
ସେ ଅଣ୍ଡରୁ ଅଦ୍ରିଦ୍ୱୀପ ଜ୍ୟୋତି ପ୍ରକାଶିଲା ॥
ଦେବ ଅସୁର ମନୁଷ୍ୟ ଆଦି ସବୁ ଲୋକ ।
ଅନାଦି ନିଧନ ବିଷ୍ଣୁ ମୂଳ ବ୍ରହ୍ମ ଏକ ॥
ସୃଷ୍ଟି ଭିଆଇବା ମନ ବଳନ୍ତେ ତାଙ୍କର ।
ନାଭି ପଦ୍ମରୁ ସେ ଅଣ୍ଡ ହୋଇଲ ବାହାର ॥
ସୁବର୍ଣ୍ଣ ଅଣ୍ଡ ସ୍ୱରୂପ ସେ ପଦ୍ମ ଅଟଇ ।
ବ୍ରହ୍ମାରୂପରେ ଶ୍ରୀବିଷ୍ଣୁ ତହିଁ ବିରାଜଇ ॥
ଯୁଗେ ଯୁଗେ ଏ ସୃଷ୍ଟିକି ସେ ବ୍ରହ୍ମା ଭିଆଇ ।
ନରସିଂହ ଆଦି ନାନା ଅବତାର ହୋଇ ॥

ବିଷ୍ଣୁ କଲେ କୃତେ ସୃଷ୍ଟି କରନ୍ତି ପାଳନ ।
ରୁଦ୍ରରୂପେ ସଂହରନ୍ତି ପୁଣି ନାରାୟଣ ॥
ସୃଷ୍ଟି ସ୍ଥିତି ପାଳନର ଏକା ସେହି ମୂଳ ।
ସେହି ସୂକ୍ଷ୍ମ ସେହି ପ୍ରଭୁ ଅଟନ୍ତି ଯେ ଠୂଳ ॥
ବ୍ରହ୍ମା ରୂପରେ ଜଗତ ସର୍ଜନା କରନ୍ତି ।
ରାମାଦି ରୂପରେ ପୁଣି ତାହାଙ୍କୁ ପାଳନ୍ତି ॥
ରୁଦ୍ର ରୂପରେ କରନ୍ତି ପୁଣି ସେ ସଂହାର ।
ଦ୍ୱିଜ ଗୋପୀନାଥ କହେ ରଖ ଚକ୍ରଧର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ବ୍ରହ୍ମାଣ୍ଡୋତ୍ପତ୍ତି ବର୍ଣ୍ଣନଂ ନାମ
ପ୍ରଥମୋଽଧ୍ୟାୟଃ ।



## ଦ୍ୱିତୀୟ ଅଧ୍ୟାୟ ।

### ବର୍ଷ ଆଦି ବର୍ଣ୍ଣନା ।

ପଚାରିଲେ ଋଷିଗଣେ କହ ଆହେ ସୂତ ।
ତୁମ୍ଭେ ଯେ ଅଟ ସକଳ ଶାସ୍ତ୍ରରେ ପଣ୍ଡିତ ॥
ପୃଥିବୀରେ ନଦୀ କେତେ ପରବତ କେତେ ।
ଜନପଦ କେତେ କୁହ ଆମ୍ଭର ଅଗ୍ରତେ ॥
କହିବ ପୁଣି ପୃଥ୍ୱୀର କେତେ ପରମାଣ ।
ସୂତମୁନି କହିଲେ ହେ ଶୁଣ ଋଷିଗଣ ॥
ଯେତେକ ଦ୍ରବ୍ୟ ଦେଖୁଛ ତୁମ୍ଭେ ଏ ଜଗତେ
ଏ ସବୁର ସୃଷ୍ଟି ଜାଣ ପଞ୍ଚ ମହାଭୂତେ ॥
ଭୂମି ଜଳ ଅଗ୍ନି ବାୟୁ ଆକାଶ ଏ ପାଞ୍ଚ ।
ଏହାଙ୍କୁ ଯେ ମହାଭୂତ କହନ୍ତି ବରିଷ୍ଠ ॥
ଶବଦ ସ୍ପରଶ ରୂପ ରସ ଗନ୍ଧ ଘେନ ।
ଏହି ପାଞ୍ଚ ଗୋଟି ଗୁଣ ବହଇ ଧରଣୀ ॥
ଗନ୍ଧ ଛାଡ଼ି ଚାରିଗୋଟି ଗୁଣ ବହେ ଜଳ ।
ଶବ୍ଦ ସ୍ପର୍ଶ ରୂପଗୁଣ ବହଇ ଅନଳ ॥
ବାୟୁ ବହେ ଶବ୍ଦ ସ୍ପର୍ଶ ଏ ଦୁଇ ଗୁଣକୁ ।
ଆକାଶ ଏକା ବହଇ ଶବଦ ଗୁଣକୁ ॥
ଏରୂପେ ଏ ପାଞ୍ଚଗୁଣ ଘେନି ମହାଭୂତେ ।
ରହିଛନ୍ତି ଚରାଚର ସକଳ ଜଗତେ ॥
ଅନ୍ୟୋନ୍ୟ ହୋଇଲେ ବିଷମ ହୁଅନ୍ତି ଏ ଗୁଣେ
ଗୁଣେ ବିଷମ ହୋଇଲେ ଜୀବ ଜନ୍ତୁ ଗଣେ ॥
ଜନମ ମୃତ୍ୟୁ ଲଭନ୍ତି ଜାଣ ମୁନିଗଣ ।
ପଞ୍ଚ ମହାଭୂତଙ୍କର ନାହିଁ ପରମାଣ ॥
ଏଣୁ ଏମାନେ ଅଟନ୍ତି ଈଶ୍ୱରଙ୍କ ରୂପ ।
ଏହି ପଞ୍ଚ ମହାଭୂତ ଅଟଇ ଅମାପ ॥
ଦ୍ୱୀପ କେତେ ଅଛି ତାହା କହୁଅଛି ଶୁଣ ।
ଚାରିଦିଗେ ବେଢ଼ି ଅଛି ସମୁଦ୍ର ଲବଣ ॥
ଚକ୍ର ପ୍ରାୟ ମେ ମଣ୍ଡଳ ଆକାର ବର୍ତ୍ତୁଳ ।
ନାଭି ତାର କୂପ ବାପୀ ନଦ ନଦୀ ଜଳ ॥
ବଡ଼ ବଡ଼ ପରବତ ଦେଶ ଗ୍ରାମ ପୁର ।
ଫଳ ପୁଷ୍ପରେ ଶୋଭିତ ନାନା ତରୁବର ॥
ଧନ ଧାନ୍ୟ ସ୍ୱର୍ଣ୍ଣ ରତ୍ନ ବହୁତ ଅଛଇ ।
ତାହା ମଧ୍ୟରେ ନାନାଦି ସତ୍ତ୍ୱ ଉପୁଜଇ ॥
ପ୍ରାଣିଙ୍କର ମୁଖ ଯେସନେ ଦର୍ପଣେ ଦରଶନେ ।
ସୁଦର୍ଶନ ଦ୍ୱୀପ ଚକ୍ର ମଣ୍ଡଳ ତେସନେ ॥
ଏହା ଦୁଇ ପାର୍ଶ୍ୱରେ ଦୁଇ ଯେ ପିପ୍ପଳ ।
ଆନ ଦୁଇ ପାର୍ଶ୍ୱେ ଶଶ ଓଷଧିର ମୂଳ ॥
ଏହାଭିନ୍ନ ଆଉ ସବୁ ଜଳେ ଅଛି ପୂର ।
ଋଷିଏ ଶୁଣି ବୋଇଲେ ଆହେ ତପସ୍ୱୀର ॥
ଅତି ବୁଦ୍ଧିମନ୍ତ ତୁମ୍ଭେ ଜାଣ ସବୁ ଭଲେ ।
ସଂକ୍ଷେପି ଯାହା କହିଲ ସେ ବୁଝି ନ ଗଲେ ॥
ବିସ୍ତାରି କହିଲେ ବୁଝି ପାରିବୁ ଯେମନ୍ତେ ।
ଶଶଲକ୍ଷଣ ଭୂମିର ପରମାଣ କେତେ ॥
ପିପ୍ପଳ କାହାକୁ କହ କହ ତା ବୁଝାଇ ।
ତା ଶୁଣି ସୂତ କହିଲେ ଶୁଣ ମନ ଦେଇ ॥
ଛଅ ରତ୍ନ ପରବତ ଅଛଇ ତହିଁରେ ।
ପୂର୍ବ ସମୁଦ୍ରୁ ମିଶିଛି ପଶ୍ଚିମ ସାଗରେ ॥
ଗୋଟି ଗୋଟି ନାମ ଶୁଣ ଆହେ ମୁନିଜନେ ।
ପର୍ବତ ମଧ୍ୟେ ଉତ୍ତମ ଜାଣ ହିମବାନେ ॥
ହେମକୂଟ ନିଷଧ ଯେ ବଇଦୁର୍ଯ୍ୟ ନୀଳ ।
ଶୃଙ୍ଗବାନ ନାମଧାରୀ ଯେବଣ ଶଇଳ ॥
ସବୁ ଧାତୁ ଦ୍ରବ୍ୟରେ ସେ ହୋଇଛି ମଣ୍ଡିତ ।
ଶରଦ ଚନ୍ଦ୍ରମା ତୁଲ୍ୟ ଅଟଇ ସେ ଶ୍ୱେତ ॥
ଏ ସବୁ ପର୍ବତ ସିଦ୍ଧ ଚାରଣେ ସେବିତ ।
ଏହାଙ୍କ ଅନ୍ତର ଯେତେ ଶୁଣ ଦେଇ ଚିତ୍ତ ॥
ସହସ୍ର ଯୋଜନ ଜାଣ ପରମାଣ ତାର ।
ତା ଭିତରେ ଜନପଦ ଅଛି ବହୁତର ॥

ପବିତ୍ର କେତେକ ବର୍ଷ ଆବର ଅଛଇ ।
ନାନାଜାତି ଜୀବ ଜନ୍ତୁ ଆଦି ଜାତ ହୋଇ ॥
ଭାରତବର୍ଷ ଏହାଙ୍କୁ ବୋଲନ୍ତି ସମସ୍ତେ ।
ଏହାପରେ ହୈମବନ୍ତ ବର୍ଷ ତା ଅଗ୍ରତେ ॥
ହେମକୂଟ ପରବତ ପରେ ହରିବର୍ଷ ।
ଯେବଣ ନୀଳ ପର୍ବତ ତା ଦକ୍ଷିଣ ଅଂଶ ॥
ଯେଉଁ ନୈଷଧ ପର୍ବତ ତାହାର ଉତ୍ତରେ ।
ପର୍ବତ ଏକ ଅଛଇ ପୂର୍ବ ଆୟତରେ ॥
ତାର ନାମ ମାଲ୍ୟବାନ ସେ ଅତି ସୁନ୍ଦର ।
ଗନ୍ଧମାଦନ ପର୍ବତ ପଶ୍ଚିମରେ ତାର ॥
ଏ ଦୁଇ ପର୍ବତ ମଧ୍ୟେ ଅଛି ଏକ ଗିରି ।
ତାର ନାମ ମେରୁ ସେହି ଦଶେ ସ୍ୱର୍ଣ୍ଣପରି ॥
କନକ ଗିରି ତାହାକୁ କେହି କେହି କହି ।
ମଣ୍ଡଳ ଆକାରେ ସେହି ଗିରି ଅଛି ରହି ॥
ନିର୍ଧୂମ ଅନଳ ବାଳସୂର୍ଯ୍ୟ ପ୍ରାୟ ଜ୍ୟୋତି ।
ପୋତା ଯେତେ ଉଚ୍ଚ ତେତେ ଜାଣ ସର୍ବଯତି ॥
ଉଚ୍ଚ ତାର ଚଉରାଶୀ ସହସ୍ର ଯୋଜନ ।
ପୋତା ଚଉରାଶୀ ସସ୍ର ପୁଣ ପରିମାଣ ॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଭେଦି ଅଛି ରହି ।
ସେ ଗିରି ଚାରି ପାରୁଶ ଆବୋରିଛି ମହୀ ॥
ସେ ମହୀରେ ଅଛି ଜାଣ ଚାରିଗୋଟି ଦ୍ୱୀପ ।
କହୁଅଛି ଶୁଣ ତାର ପ୍ରମାଣ ସ୍ୱରୂପ ॥
କେତୁମାଳ ଜମ୍ବୁଦ୍ୱୀପ ନାମେ ଦ୍ୱୀପ ଦୁଇ ।
ଭଦ୍ରାଶ୍ୱ ଉତ୍ତର କୁରୁ ହରି ବର୍ଷ ଯେହି ॥
ପୁଣ୍ୟ ଜନରେ ସେବିତ ଏହି ଦ୍ୱୀପ ଚାରି ।
ଗରୁଡ଼ ନାମେ ଯେ ପକ୍ଷୀ ସର୍ପଙ୍କ ବଇରୀ ॥
ତାହାର ପୁତ୍ର ସୁପାର୍ଶ୍ୱ ନାମେ ପକ୍ଷିବର ।
ସୁମୁଖ ନାମରେ ପକ୍ଷୀ ତାହାର କୁମର ॥
ସେ ସବୁ କାକଙ୍କ ରୂପ ଦେଖି ସୁନାପରି ।
ମନମଧ୍ୟରେ ଭାଳିଲ ଏହି ମେରୁଗିରି ॥
ନ ବାରଇ ଉଚ୍ଚ ନୀଚ ଜାତି ଯେ ମଧ୍ୟମ ।
ଏଣୁ ଏହାକୁ ଛାଡ଼ିବା ମୋ ପକ୍ଷେ ଉତ୍ତମ ॥
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ନକ୍ଷତ୍ର ଯେତେକ ।
ଜ୍ୟୋତି ଆବର ଅଛନ୍ତି ଏହି ତିନି ଲୋକ ॥
ପ୍ରଦକ୍ଷିଣ କରନ୍ତି ଏ ସବୁ ସେ ଗିରିକି ।
ଦିବ୍ୟ ଫଳ ପତ୍ର ବୃକ୍ଷ ସେ ଗିରିକି ଢାଙ୍କି ॥

ସୁବର୍ଣ୍ଣମୟ ଗୃହରେ ସେ ଗିରି ମଣ୍ଡିତ ।
ଦେବ ଦାନବ ଗନ୍ଧର୍ବ କିନ୍ନର ସହିତ ॥
ଯକ୍ଷ ରକ୍ଷ ସିଦ୍ଧ ମୁନି ଜନ କ୍ରୀଡ଼ାସ୍ଥାନ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର କରି ଯାଗ ଯଜ୍ଞ ଦାନ ॥
ଶ୍ରୀବିଷ୍ଣୁ ଦେବଙ୍କ ପ୍ରୀତି ଅର୍ଥେ କାଳେ କାଳେ
ବିଶ୍ୱାବସୁ ହାହା ହୁହୁ ତୁମ୍ବୁରୁଙ୍କ ମୂଳେ ॥
ନାରଦ ଆଦି ଗନ୍ଧର୍ବେ ନିତ୍ୟ ଆସି ତହିଁ ।
ଇନ୍ଦ୍ରଙ୍କୁ ତୋଷନ୍ତି ନାନା ସ୍ତୁତି ଗୀତ ଗାଇ ॥
ତହିଁ ପୁଣି ମହାତମା ସପ୍ତ ଋଷିଗଣ ।
ପ୍ରଜାପତି କଶ୍ୟପ ଯେ ଆସି ପର୍ବଦିନ ॥
ତୋଷନ୍ତି ପିତୃ ପୁରୁଷ ଗଣ ଜଳଦାନେ ।
ମଙ୍ଗଳ ହେଉ ତୁମ୍ଭର ଆହେ ଋଷିଗଣେ ॥
ଶୁକ୍ରମୁନି ଅସୁରଙ୍କୁ ଘେନି ତା ଶିଖରେ ।
ପୂଜାପାନ୍ତି ଦନୁଜେନ୍ଦ୍ର ଦାନବ ନିକରେ ॥
ସ୍ୱର୍ଣ୍ଣ ରତ୍ନ ରୌପ୍ୟ ଲୌହ ଆଦି ଯେତେ ଗିରି
ଏ ସବୁ ମେରୁ ଅଂଶରୁ ଜାଣ ଅବତରି ॥
ରତ୍ନ ଆଦି ଗିରି ଚାରି ଭାଗ ଏକ ଜାଣ ।
କୁବେର ଦେବତା ଭୋଗ କରେ ମୁନିଗଣ ॥
ଷୋଳ ଅଂଶରୁ ଯେ ଅଂଶେ ମନୁଷ୍ୟଙ୍କ ଭାଗେ ।
କନିଅର ବନ ଏକ ଅଛି ତାର ଶୃଙ୍ଗେ ॥
ସବୁ ଋତୁର ଯେତେକ ଫୁଲ ତହିଁ ଅଛି ।
ଶିଳା ସମୂହରେ ଅତି ଉଜ୍ଜ୍ୱଳ ଦିଶୁଛି ॥
ଭୂତ ଗଣ ଘେନି ତହିଁ ବିଜେ ଭୂତନାଥ ।
ଉମା ଦେବୀଙ୍କ ସହିତ ସଦା କ୍ରୀଡ଼ାରତ ॥
କନିଅର ଫୁଲ ମାଳା ଗଳେ ବିରାଜଇ ।
ଗଳାରୁ ସେ ପାଦ ଯାଏ ଲମ୍ବିଣ ଅଛଇ ॥
ଉଦିତ ଆଦିତ୍ୟ ପ୍ରାୟ ଜଳେ ନେତ୍ର ତିନି ।
ଯାହା ଦର୍ଶନରେ ଲିଭିଯାଏ ପାପବହ୍ନି ॥
ଘୋର ତପ ବ୍ରତ ସତ୍ୟ ନିଷ୍ଠା ସିଦ୍ଧ ଯେତେ ।
ତାହାଙ୍କୁ ଦେଖି ପାରନ୍ତି ଏକା ସେ ସମସ୍ତେ ॥
ନୁହନ୍ତି ସେ ଦୁଷ୍ଟଙ୍କର ନୟନ ଗୋଚର ।
ସେହି ଶଇଳ ଶିଖରୁ ଝରେ ଗଙ୍ଗାନୀର ॥
ଘୋର ନିର୍ଘାତ ପରାୟ କରିଣ ଗର୍ଜନ ।
ସେବା କରୁଥାନ୍ତି ତାଙ୍କୁ ପୁଣ୍ୟବନ୍ତ ଜନ ॥
ଡେଇଁ ଡେଇଁ କ୍ଷୀରଧାରା ପ୍ରାୟ ଗଡ଼ିଯାଇ ।
ମହା ବେଗେ ଚନ୍ଦ୍ର ହ୍ରଦ ମଧ୍ୟରେ ପଡ଼ଇ ॥

ସେ ହ୍ରଦ ଗୋଷ୍ଠ ଅଟଇ ସାଗର ସମାନ ।
ପାପ ଛଡ଼ାଇ ପୁଣ୍ୟ ସେ କରଇ ପ୍ରଦାନ ॥
ଯେଉଁ ଗଙ୍ଗାଙ୍କୁ ପର୍ବତେ ନ ପାରନ୍ତି ଧରି ।
ଶିରେ ଧରିଥିଲେ ତାହା ଦେବ ତ୍ରିପୁରାରି ॥
କ୍ଷଣେ ଅଧେ ନୋହେ ଶତ ସହସ୍ରେ ବରଷ ।
ଶିରଜଟା ବନ୍ଧ ଗଙ୍ଗା ଦେବୀ ଚଉପାଶ ॥
ସେ ବନ୍ଧ ଭାଙ୍ଗି ନ ପାରି ହୋଇଥିଲେ ସ୍ଥିର
ଏହା ପୁରାଣେ ବର୍ଣ୍ଣନା କରିଛନ୍ତି ଧୀର ॥
ଆହେ ଦ୍ୱିଜବର ଗଣେ ଶୁଣ ଏଥୁଅନ୍ତେ ।
କେତୁ ମାଳ ବର୍ଷ ମେରୁ ଗିରିର ପଶ୍ଚାତେ ॥
ମହା ମହା ଦେଶ ସବୁ ଅଛି ତା ଭିତରେ ।
ତାର ନାମ ଜମ୍ବୁଖଣ୍ଡ ଜାଣ ଦ୍ୱିଜବରେ ॥
ତହିଁରେ ଥିବା ମାନବ ଗଣଙ୍କ ଆୟୁଷ ।
ଅୟୁତେ ବରଷ ବର୍ଣ୍ଣ ସୁବର୍ଣ୍ଣ ସଦୃଶ ॥
ଯେତେକ ସ୍ତ୍ରୀ ସେ ସବୁ ଅପସରା ପରି ।
ତାହାଙ୍କର ବର୍ଣ୍ଣ ଜାଣ ପିଠା ସୁନାପରି ॥
ସବୁବେଳେ ଆନନ୍ଦରେ ଥାନ୍ତି ନର ନାରୀ ।
ରୋଗ ଶୋକ ନ ଜାଣନ୍ତି ସୁଖରେ ବିହରି ॥
ଗନ୍ଧମାଦନ ପର୍ବତ ଶୃଙ୍ଗରେ କୁବେର ।
ଗୁହ୍ୟକ ଗଣ ଯେତେକ ସେ ତାଙ୍କ ଈଶ୍ୱର ॥
ରାକ୍ଷସ ଗଣ ସହିତ ଅପସରା ଘେନି ।
ଆନନ୍ଦରେ ଥାଏ ସେହି ତାର ରାଜଧାନୀ ॥
ଗନ୍ଧମାଦନ ପାର୍ଶ୍ୱେ ଅଛି ଯେତେ ପୁର ।
ତହିଁ ଘର କରି ରହିଛନ୍ତି ଯେତେ ନର ॥
ତାଙ୍କ ଆୟୁଷ ଏଗାର ହଜାର ବରଷ ।
ବଳବନ୍ତ କୃଷ୍ଣବର୍ଣ୍ଣ ସେ ସବୁ ପୁରୁଷ ॥
ଅଧିକରେ ତେଜୋବନ୍ତ ସେ ପୁଣି ଅଟନ୍ତି ।
ପଦ୍ମପତ୍ର ତୁଲ୍ୟ ବର୍ଣ୍ଣ ସକଳ ଯୁବତୀ ॥
ସେ ନାରୀ ଗଣ ସର୍ବାଙ୍ଗ ଅପୂର୍ବ ସୁନ୍ଦର ।
ଐରାବତ ନାମେ ବର୍ଷ ଅଛଇ ଆବର ॥
ଶ୍ୱେତ ପର୍ବତୁ ଅଧିକ ଧଳାରୂପ ବର୍ଣ୍ଣ ।
ତହିଁରେ ଅଛଇ ଜାଣ ବହୁତ ହିରଣ୍ୟ ॥
ବହୁତ ନୀଳ ଉତ୍ପଳ ପୁଷ୍ପେ ସୁଶୋଭିତ ।
ନାନା ଜାତିରେ ମାନବ ଅଛନ୍ତି ବହୁତ ॥
ଦେବ ଋଷିଙ୍କର ସ୍ଥିହିଁ ଦକ୍ଷିଣ ଉତ୍ତରେ ।
ଦୁଇ ଧନୁ ପ୍ରମାଣରେ ତାହାର ମଧରେ ॥

ଇଲାବୃତ ନାମେ ଏକ ବର୍ଷ ଅଛି ତହିଁ ।
ଏହି ସାଥି ବର୍ଷ ଭୂମି ଆଗେ ଦେଲି କହି ॥
ପର ମର ବର୍ଷ ସବୁ ଗୁଣରେ ଅଧିକ ।
ଜୀବଜନ୍ତୁ ଅଛନ୍ତି ଏ ବର୍ଷରେ ଯେତେକ ॥
ସଂପୂର୍ଣ୍ଣ ଆୟୁଷ ଧର୍ମ ଅର୍ଥ କାମଯୁକ୍ତ ।
ଏରୂପେ ପୃଥିବୀ ବେଢ଼ି ଅଛଇ ପର୍ବତ ॥
ହେମକୂଟ କଇଲାସ ପର୍ବତ ବଡ଼ ।
ସେ ଦୁଇ ମଧ ଭୂମିରେ କୁବେରର ଗଡ଼ ॥
ଗୁହ୍ୟକ ଗଣଙ୍କୁ ଘେନି କରେ ଭୋଗ ସୁଖ ।
କୈଳାସ ଉତ୍ତରେ ଅଛି ପର୍ବତ ମୈନାକ ॥
ତା ପାଶେ ହିରଣ୍ୟଶୃଙ୍ଗ ଗିରି ମଣିମୟ ।
ଅତି ବଡ଼ ପର୍ବତ ସେ ଦିଶେ ସୁନାପ୍ରାୟ ॥
ତାହାର ପାର୍ଶ୍ୱେ ଅଛି ଏକ ସରୋବର ।
କାଞ୍ଚନ ବାଲିରେ ପୂରିଅଛି ତାର ନୀର ॥
ବିନ୍ଦୁସର ବୋଲି ସେହି ସୁନ୍ଦର ପୋଖରୀ ।
ପୂର୍ବକାଳେ ଭଗୀରଥ ନାମେ ଦଣ୍ଡଧାରୀ ॥
ଭଗୀରଥି ଗଙ୍ଗାଙ୍କୁ ସେ ଦେଖି ସେହି ସ୍ଥାନେ
ବହୁତ ବରଷ ଥିଲେ ତପସ୍ୟା ସାଧନେ ॥
ତହିଁ ଯେତେ ବୃକ୍ଷକାଠ ସବୁ ମଣିମୟ ।
ସେ ଭୂମିଗୋଷ୍ଠା ଦିଶଇ ହିରଣ୍ୟ ପରାୟ ॥
ତହିଁ ରହି ଯଜ୍ଞକଲେ ସହସ୍ର ଲୋଚନ ।
ସବୁ ଭୂତଗଣଙ୍କର ସେବ୍ୟ ଏହିସ୍ଥାନ ॥
ସନାତନ ତେଜୋବନ୍ତ ଦେବ ଭୂତପତି ।
ନର ନାରାୟଣ ବ୍ରହ୍ମା ମନୁ ପ୍ରଜାପତି ॥
ଏମାନେ ସ୍ଥାଣୁ ହୋଇଣ ପୂଜା ପାଉଛନ୍ତି ।
ବ୍ରହ୍ମଲୋକୁ ଆସି ତ୍ରିପଥଗା ନଦୀ ସ୍ଥିତି ॥
ଘଟୋଦକା ନଳିନୀ ଯେ ପବିତ୍ରକାରିଣୀ ।
ସରସ୍ୱତୀ ଜମ୍ବୁନଦୀ ସୀତା ଗଙ୍ଗାପାଣି ॥
ସିନ୍ଧୁନଦୀକି ଘେନିଣ ଏହି ସାତ ନଈ ।
ସାତ ନାମ ବହି ସେହି ସ୍ଥାନୁ ବହିଯାଇ ॥
ସମସ୍ତେ ଏ ନଦୀଙ୍କର ନାମକୁ ଜପନ୍ତି ।
ଏ ନଦୀମାନେ ବହୁତ ପ୍ରଭବ ବହନ୍ତି ॥
ସହସ୍ର ଯୁଗର ଅନ୍ତେ ଏହାଙ୍କର ତୀରେ ।
ଚରାଚର ପ୍ରାଣୀ ଯଜ୍ଞ କରନ୍ତି ଏଠାରେ ॥
ଦୃଶ୍ୟ ଅଦୃଶ୍ୟ ହୁଅନ୍ତି କାହିଁ ସରସ୍ୱତୀ ।
ଏ ସପତ ଗଙ୍ଗା ତିନିଲୋକରେ ବିଖ୍ୟାତ ॥

ରାକ୍ଷସଙ୍କ ବାସସ୍ଥାନ ହିମାଳୟ ଗିରି ।
ଗୁହ୍ୟକେ ରହନ୍ତି ହେମକୂଟର ଶିଖରି ॥
ନାଗସର୍ପେ ରହନ୍ତି ଯେ ନିଷେଧ ପର୍ବତେ ।
ଶ୍ୱେତପର୍ବତରେ ଦେବ ଅସୁରହିଁ ଯେତେ ॥
ଗୋକର୍ଣ୍ଣ ତୀର୍ଥ ଅଟଇ ତାଙ୍କ ତପୋଧନ ।
ନିଷେଧ ପର୍ବତ ଜାଣ ଗନ୍ଧର୍ବଙ୍କ ସ୍ଥାନ ॥
ବ୍ରହ୍ମଋଷିଙ୍କର ସ୍ଥାନ ନୀଳ ପରବତ ।
ଶୃଙ୍ଗବାନ ନାମେ ଯେଉଁ ପର୍ବତ ବିହିତ ॥
ଦେବଙ୍କ ବିହାର ସ୍ଥଳ ଅଟଇ ସେ ଗିରି ।
କହିଲି ତୁମ୍ଭ ଆଗରେ ଏ ସବୁ ବିସ୍ତାରି ॥
ବହୁତ ସମ୍ପଦ ଅଛି ଏହି ସାତବର୍ଷେ ।
ଦେବ ଦାନବ ମାନବେ ଭୋଗନ୍ତି ତା ତୋଷେ
ଗୋଟି ଗୋଟି କରି ତାହା ନ ପାରିବି କହି ।
ଶୁଣିଲ ତ ଋଷିଗଣେ ଏବେ ମନଦେଇ ॥
ପଚାରିଥିଲ ଯେ ଶଶ ଆକୃତିର କଥା ।
ବୁଝାଇ କହିଲି ସବୁ ଯହିଁ ଯାହା ଯଥା ॥
ଏ ଶଶର ଦୁଇପାଖେ ଦକ୍ଷିଣ ଉତ୍ତରେ ।
ଦୁଇଗୋଟି ଦ୍ୱୀପ ଅଛି ଶୁଣ ଋଷିବରେ ॥
କାଶ୍ୟପ ଦ୍ୱୀପ ଆବର ନାଗ ନାମେ ଦ୍ୱୀପ ।
ଶଶର ସେ ଦୁଇକର୍ଣ୍ଣ କହିଲୁଁ ସ୍ୱରୂପ ॥
ସେ କର୍ଣ୍ଣଦ୍ୱୀପର ମଧ୍ୟ ମଳୟ ପର୍ବତ ।
ସେହି ଶଶର ମସ୍ତକରୂପେ ବିରାଜିତ ॥
ତାର ବିପରୀତ ଦିଗେ ଅଛି ଏକ ଦ୍ୱୀପ ।
ସବୁ ଦ୍ୱୀପଯାକ ମିଶି ହେଲ ଶଶରୂପ ॥
ମୁନିଏ ବୋଇଲେ ଆହେ ବୁଦ୍ଧିମନ୍ତ ସୂତ ।
ମାଲ୍ୟବାନ ନାମେ ଅଛି ଯେବଣ ପର୍ବତ ॥
ଆବର ମେରୁ ପର୍ବତ ପଶ୍ଚିମ ଉତ୍ତର ।
ପୂର୍ବଦିଗେ ଯାହା ଅଛି କରି ତା ବିସ୍ତାର ॥
କହ ଆମ୍ଭ ଆଗେ ସବୁ ନ ରହୁ ସଂଶୟ ।
ଏମନ୍ତ ଶୁଣି ବୋଇଲେ ସୂତ ମହାଶୟ ॥
ନୀଳ ପର୍ବତ ଦକ୍ଷିଣେ ମେରୁର ଉତ୍ତରେ ।
ପବିତ୍ର ସ୍ଥାନ ଗୋଟିଏ ଅଛି ମୁନିବରେ ॥
ଉତ୍ତରକୁରୁ ତା ନାମ ସିଦ୍ଧଙ୍କର ସ୍ଥାନ ।
ତହିଁଥିବା ବୃକ୍ଷ ଯେତେ ଅତି ଶୋଭିବନ ॥
ସବୁବେଳେ ସ୍ୱାଦୁଫଳ ତହିଁରେ ଫଳଇ ।
ସୁଗନ୍ଧ ସୁନ୍ଦର ଫୁଲ ସେ ବୃକ୍ଷେ ଫୁଟଇ ॥

କେହି ବୃକ୍ଷ ସର୍ବକାମ ଫଳକୁ ଦିଅଇ ।
କେଉଁ ବୃକ୍ଷରୁ ଝରତେ କ୍ଷୀର ବହୁଥାଇ ॥
ଷଧୀମୃତ ପ୍ରାୟ ଲାଗେ ଖାଇଲେ ସେ କ୍ଷୀର ।
ତାହାକୁ ବୋଲନ୍ତି ଲୋକେ କ୍ଷୀର ତରୁବର ॥
ସେ ବୃକ୍ଷର ଫଳ ଦିଏ ବସ୍ତ୍ର ଆଭରଣ ।
ମଣିମୟ ଭୂମି ସେହି ଜାଣ ମୁନିଗଣେ ॥
ମାଟି ନାହିଁ ଟିକ ଟିକ କାଞ୍ଚନ ଯେ ବାଲି ।
ପାଣି କାଦୁଅ ନ ଲାଗେ ପାଦେ ଗଲେ ଚାଲି ॥
ସେ ଭୂମିଗୋଟି ପବିତ୍ର ଅତି ନିରମଳ ।
ସେହି ସ୍ଥାନରେ ମିଳଇ ସବୁ ଋତୁ ଫଳ ॥
ଦୋଷକାଶି ଦେବଲୋକେ ଜନମନ୍ତି ତହିଁ ।
ସବୁ ମାନବେ ସେ ସ୍ଥାନେ ଶୁକ୍ଳବର୍ଣ୍ଣ ଦେହି ॥
ସେ ସମସ୍ତ ପୁଣ୍ୟବନ୍ତ ପରମ ସୁନ୍ଦର ।
ସ୍ତ୍ରୀଏ ପୁରୁଷ ଏ ଦୁଇ ଦୁଇ ଘର ଘର ॥
ସେ ସ୍ତ୍ରୀମାନେ ସାକ୍ଷାତେ ସ୍ୱର୍ଗ ଅପସରୀ ।
ବଢ଼ନ୍ତି ସେ କ୍ଷୀରବୃକ୍ଷୁ କ୍ଷୀର ଖାଇକରି ॥
ଅମୃତ ତୁଲ୍ୟ ଲାଗଇ ସେ ବୃକ୍ଷର କ୍ଷୀର ।
ପୁତ୍ର କନ୍ୟା ଦୁଇ ଦୁଇ ଉପୁଜନ୍ତି ନର ॥
ଅତି ବେଗରେ ବଢ଼ନ୍ତି ସେହି ପୁଅ ଝିଏ ।
କ୍ରୀଡ଼ା କରନ୍ତି ଚକୁଆ ଚକୋଇର ପ୍ରାୟେ ॥
ଚକୁଆ ଚକୋଇଙ୍କର ରୂପ ଯେହ୍ନେ ଏକା ।
ନିରୋଗୀ ସକଳ ଲୋକେ ନାହିଁ ବ୍ୟାଧି ଶଙ୍କା ।
ହରଷରେ କାଟିଥାନ୍ତି ସେହି ରାତ୍ର ଦିନ ।
ତାଙ୍କ ଆୟୁର ପ୍ରମାଣ ଶୁଣ ଋଷିଗଣ ॥
ଏଗାର ହଜାର ବର୍ଷ ବଞ୍ଚନ୍ତି ସୁଖରେ ।
ଆଗ ହୋଇ ଜଣେ ଶୀଘ୍ର ଜଣକୁ ନ ମରେ ॥
ଭାରୁଣ୍ଡୀ ନାମରେ ପକ୍ଷୀ ଅଛନ୍ତି ସେ ସ୍ଥାନେ ।
ମଲଲୋକଙ୍କୁ ସେ ଘେନିଯାନ୍ତି ଅଣ୍ଟମୁନେ ॥
ପକାଇ ଦିଅନ୍ତି ନେଇ ପର୍ବତ କନ୍ଦରେ ।
ଶୁଣିଲ ଉତ୍ତର କୁରୁ କଥା ବିପ୍ରବରେ ॥
ଏବେ ମେରୁଗିରି ପୂର୍ବପାଖ କଥା ଶୁଣ ।
ଭଦ୍ରଶାଳ ନାମେ ତହିଁ ଅଛି ଏକ ବଣ ॥
ସବୁଠୁଁ ବଡ଼ ଭଦ୍ରାଶ୍ୱ ନାମେ ବର୍ଷ ସେହି ।
କାଳାମ୍ର ନାମରେ ଏକ ବୃକ୍ଷ ଅଛି ରହି ॥
ଶୋଭାପାଏ ଶୁଭ୍ର ଫଳ ଫୁଲେ ସେ ଝରତେ ।
ସେ ବୃକ୍ଷର ଉଚ୍ଚ ଏକ ଯୋଜନ ପର୍ଯ୍ୟନ୍ତେ ॥

ସିଦ୍ଧଗୂରଣଙ୍କ ଘର ଟେମ.ତରୁର ତଳେ ।
ଶ୍ୱେତବର୍ଣ୍ଣ ତହିଁ ଥିବା ପୁରୁଷ ସକଳେ ॥
ମହାବଳବନ୍ତ ପୁଣି ଅତି ତେଜବନ୍ତ ।
ତହିଁରେ ଥିବା ସ୍ତ୍ରୀଏ ସୁନ୍ଦର ଅତ୍ୟନ୍ତ ॥
କୁମୁଦଫୁଲ ପ୍ରାୟେ ବର୍ଣ୍ଣ ତାହାଙ୍କର ।
ମନ ନ ଛାଡ଼ଇ ଦେଖିବା ଲୋକର ॥
ଧର୍ମ ଜ୍ଞାନ ବଇରାଗ୍ୟ ଅଇଶ୍ୱର୍ଯ୍ୟ ଗୁଣେ ।
ନିତ୍ୟ ଶୋଭା ପାଉଥାନ୍ତି ଜାଣ ଋଷିଗଣେ ॥
ପୂର୍ଣ୍ଣିମୀର ଚନ୍ଦ୍ର ପ୍ରାୟ ସବୁରି ବଦନ ।
ସର୍ବାଙ୍ଗ ଶୀତଳ ଯେହ୍ନେ ଚନ୍ଦ୍ରର କିରଣ ॥
ନୃତ୍ୟ ଗୀତ ବାଦ୍ୟରେ ସେ ସମସ୍ତେ ପ୍ରବୀଣ ।
ହଜାରେ ବର୍ଷ ତାହାଙ୍କ ଆୟୁର ପ୍ରମାଣ ॥
କଳାମ୍ର ବୃକ୍ଷର ରସ ଖାଇ ସେ ବଞ୍ଚନ୍ତି ।
ସବୁକାଳେ ଯୁବା ବାଲ୍ୟ ବୃଦ୍ଧ ନ ଜାଣନ୍ତି ॥
ନୀଳଗିରିର ଦକ୍ଷିଣେ ନିଷଧ ଉତ୍ତରେ ।
ସୁଦର୍ଶନ ନାମେ ଅଛି ଜାମ୍ବୁ ତରୁବରେ ॥
ସେ ପୁଣ୍ୟ ତରୁ ଦିଅଇ ସର୍ବ କାମ ଫଳ ।
ସିଦ୍ଧ ଚାରଣଙ୍କ ଘର ସେ ତରୁର ତଳ ॥
ଅତି ବଡ଼ ବୃକ୍ଷ ତହିଁ ଥାଏ ସବୁକାଳେ ।
ଜମ୍ବୁଦ୍ୱୀପ ବୋଲଇ ସେ ଭୂମି କାଳେ କାଳେ ॥
ମାଲ୍ୟବାନ ପର୍ବତର ଶୃଙ୍ଗରୁ ସେ ଯାଇ ।
ଏଗାର ଶତଯୋଜନ ପୂର୍ବରେ ସେ ଥାଇ ॥
ପଞ୍ଚାଶସହସ୍ର ଯୋଜନ ମାଲ୍ୟବାନ ଗିରି ।
ତହିଁ ଅଛନ୍ତି ମାନବ ଯେତେ ଅବତରି ॥
ଦୋଷକାରୀ ବ୍ରହ୍ମଲୋକ ଜନେ ସେ ଅଟନ୍ତି ।
ତାହାଙ୍କୁ ମହାରଜତ ବୋଲି ଯେ ବୋଲନ୍ତି ॥
ବ୍ରହ୍ମବାଦୀ ଊର୍ଦ୍ଧ୍ୱରେତା ଅଟନ୍ତି ସେମାନେ ।
ଦିବ୍ୟ ତପସ୍ୟାର ବଳେ ସେ ମାନବଗଣେ ॥
ଛଅଶ ଛଷଠିବର୍ଷ ବଞ୍ଚିଣ ରହନ୍ତି ।
ସୂର୍ଯ୍ୟଙ୍କ କୁଟୁମ୍ବ ବୋଲି ସେ ମନେ କରନ୍ତି ॥
ଛଅଶ ଛଷଠି ବର୍ଷ ଖରତାପ ସହି ।
ତହୁଁ ସେ ଯାଇଣ ଚନ୍ଦ୍ରମଣ୍ଡଳରେ ରହି ॥
ପଶ୍ଚିମରେ ଋଷିଗଣେ ଆହେ ମୁନିସୁତ ।
କହି ବର୍ଷ ନାମ ସବୁ ଆବର ପର୍ବତ ॥
ପର୍ବତରେ ଘର କରି ଥାନ୍ତି ଯେତେଲୋକ ।
ଶୁଣିବା କହି ବିସ୍ତାରି ସବୁ କଥାଯାକ ॥

ଏମନ୍ତ ଶୁଣି ଟେବ ଇଲେ ସୂତ ମୁନିବର ।
ଶ୍ୱେତ ପର୍ବତ ଦକ୍ଷିଣ ନିଷଧ ଉତ୍ତର ॥
ଏଗାରହଜାର ପୁଣି ପନ୍ଦର ବରଷ ।
ଧାରବତୀ ନାମେ ନଦୀ ଅଛି ତାର ପାଶ ॥
ନୀଳପର୍ବତ ଦକ୍ଷିଣେ ନିଷଧ ଉତ୍ତରେ ।
ହିରଣ୍ମୟ ବର୍ଷ ନାମ ବୋଲଇ ସଂସାରେ ॥
ରମଣକ ନାମେ ଏକ ବର୍ଷ ଅଛି ଜାଣ ।
ତହିଁର ମାନବଯାକ ସବୁ ଶୁକ୍ଳବର୍ଣ୍ଣ ॥
ବିଧାତା ସୃଷ୍ଟି ଭିତରେ ସେ ଅତି ସୁନ୍ଦର ।
କେହି ଯେ ଜଣେ କାହାର ନାହିଁତ ବଇର ॥
ସମସ୍ତେ ସବୁରି ମିତ୍ର ଜାଣ ଋଷିଗଣ ।
ସେମାନଙ୍କ ଆୟୁ କେତେ ମନ ଦେଇ ଶୁଣ ॥
ପକ୍ଷିରାଜ ଗରୁଡ଼ର ବାସସ୍ଥାନ ସେହି ।
ଯକ୍ଷଙ୍କର ଅନୁଗାମୀ ଜନଯାକ ତହିଁ ॥
ସୁନ୍ଦରମୂରତି ବଳବନ୍ତ ଧନୁର୍ଦ୍ଧର ।
ଆନନ୍ଦେ ଥାନ୍ତି ନିରୋଗୀ ହୋଇ ନିରନ୍ତର ॥
କହୁଅଛି ଶୁଣ ଏବେ ତାହାଙ୍କ ଆୟୁଷ ।
ଏଗାର ହଜାର ପୁଣି ପନ୍ଦର ବରଷ ॥
ଗିରିଶୃଙ୍ଗ ତହିଁ ତିନି ବିଚିତ୍ର ସେ ପୁଣି ।
ତାହାଙ୍କର ନାମ ଶୁଣ କହେ ପରମାଣି ॥
ମଣିମୟ ରୁକ୍ମମୟ ରତ୍ନମୟ ନାମ ।
ଅଛଇ ଅପୂର୍ବ ମଣି ରତନ କାଞ୍ଚନ ॥
ନାନାପ୍ରକାର ଗୃହେ ସେ ଶୋଭା ପାଉଥାନ୍ତି ।
ଦେଖିଲେ ମନୁଷ୍ୟମାନେ ଲୋଭିତ ହୁଅନ୍ତି
ତିନିଶୃଙ୍ଗେ ସ୍ୱୟଂ ପ୍ରଭୁ ଦେବା ଅଧିକାରି ।
ସେ ଦେବା ଘର କରିଣ ଥାନ୍ତି ନିରନ୍ତର ॥
ଶୃଙ୍ଗବାନ ପରବତ ନାମ.ତାର ଜାଣ ।
ସେହି ତିନି ଶୃଙ୍ଗ ତାର ଆହେ ଋଷିଗଣ ॥
ସେ ଗିରି ଗୋଟା ଉତ୍ତରେ ସମୁଦ୍ରର ତୀରେ ।
ଐରାବତ ନାମେ ବର୍ଷ ବୋଲଇ ସଂସାରେ ।
ସୂର୍ଯ୍ୟଙ୍କର ଗତି ନାହିଁ ସେ ସ୍ଥାନକୁ ଜାଣ ।
ଅଜର ହୋଇ ଥାଆନ୍ତି ତହିଁ ଥିବାଜନ ॥
ନିର୍ମଳ ଚନ୍ଦ୍ର ନକ୍ଷତ୍ର ଗଣ ସଙ୍ଗେ ଘେନି ।
ସେ ଭୂମି ଜ୍ୟୋତି ପ୍ରଭରେ ତାଙ୍କ ପ୍ରଭା ହାନି
କେବଳ ରହି ଥାଆନ୍ତି ସେ ସ୍ଥାନ ଆବୋରି ।
ତହିଁ ମାନବଙ୍କ ବର୍ଣ୍ଣ ପଦ୍ମ ଫୁଲ ପରି ॥

ପଦ୍ମଫୁଲ ତୁଲ୍ୟ ପ୍ରଭା ଅଟଇ ତାହାଙ୍କର ।
ପଦ୍ମପତ୍ର ପ୍ରାୟ ନେତ୍ର ସୁଗନ୍ଧ ଆବର ॥
ଅବୟବ ସବୁ ପୂର୍ଣ୍ଣ ନ ହୋଇବା ଯାଏ ।
ପଦ୍ମପତ୍ର ତୁଲ୍ୟ ତାଙ୍କ ଦେହ ନ ଗନ୍ଧାଏ ॥
ସ୍ୱର୍ଗପୁର ହୋଇ ଦେବେ ଜନମନ୍ତି ତହିଁ ।
ଯେତେକ ନାରୀ ତହିଁରେ ଉତ୍ପନ୍ନ ହୋଇ ।
ଜଟେଣ୍ଡୁ ନାରୀଏ ପୁରୁଷ ଯେତେକ ।
ତହିଁ ସକଳେ ଅଟନ୍ତି ଧର୍ମବନ୍ତ ଲୋକ ॥
ତେର ହଜାର ବରଷ ବଞ୍ଚି ସେ ରହନ୍ତି ।
କ୍ଷୀର ସମୁଦ୍ର ଉତ୍ତର ତୀରେ ଶିବପତି ॥
କନକମୟ ଶକଟେ ବାସ ତାହାଙ୍କର ।
ଆଠଗୋଟି ଚକ ଅଛି ସେହି ଶଗଡ଼ର ॥
ମନୋଜବ ରଥ ବୋଲି ବୋଲନ୍ତି ତାହାକୁ
ନରଦେ ଭୂତେ ବହନ୍ତି ସେ ରଥ ଗୋସାଇଁକୁ ॥
ଜମ୍ବୁନଦରେ ସେ ରଥ ଶୋଭା ବିଭୂଷିତ ।
ତେଣୁ ପ୍ରଚଣ୍ଡ ଅନଳ ତୁଲ୍ୟ ତେଜୋବନ୍ତ ॥
ସେହି ପ୍ରଭୁ ଅତି ଶ୍ରେଷ୍ଠ ଅତି ବଡ଼ ଗୁଣୀ ।
ସୃଷ୍ଟି ପ୍ରଳୟ କରତା କାରଣ କାରଣୀ ॥
ସେହି ପ୍ରଭୁ ପୃଥ୍ୱୀ ଜଳ ତେଜ ବାୟୁ ଶୂନ୍ୟ ।
ସବୁ ପ୍ରାଣୀଙ୍କର ପୂଜ୍ୟ ଅଗ୍ନି ତା ବଦନ ॥
ତାର ନାମ ହର ସର୍ବେ ବୋଲ ହର ହର ।
ଗୋପୀନାଥ ବୋଲେ ସର୍ବେ ଯିବ ନାଶେ ତର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ବର୍ଷାଦି
ବର୍ଣ୍ଣନଂ ନାମ ଦ୍ୱିତୀୟୋଽଧ୍ୟାୟଃ ।



# ତୃତୀୟ ଅଧ୍ୟାୟ ।

## ଭାରତବର୍ଷ ବର୍ଣ୍ଣନ ।

ପଚାରିଲେ ଋଷିଗଣ ଆହେ ମୁନିସୂତ ।
ଆମ୍ଭର ବିଚାରେ ତୁମ୍ଭେ ବଡ଼ ବୁଦ୍ଧିବନ୍ତ ॥
ଏଣୁ ପୁଣ୍ୟସ୍ଥାନ ଯେଉଁ ଭାରତ ବରଷ ।
ପୁଣ୍ୟକଥାମାନ ଯହିଁ ଅଛଇ ଅଶେଷ ॥
ତାହା ସବୁ ଆମ୍ଭ ଆଗେ ବିସ୍ତାରଣ କୁହ ।
ଯେମନ୍ତେ ଆମ୍ଭମନରେ ନ ରହେ ସନ୍ଦେହ ॥

ଏମନ୍ତ ଶୁଣି ବୋଇଲେ ମହାମୁନି ସୂତ ।
ଭାରତ ବରଷ କଥା ଶୁଣ ଦେଇ ଚିତ୍ତ ॥
ବୈବସ୍ୱତ ମନୁ ପୃଥୁ ବେଣୁ ନରପତି ।
ଅମ୍ବରୀଷ ମାନଧାତା ଇକ୍ଷ୍ୱାକୁ ଯଯାତି ॥
ମୁଚୁକୁନ୍ଦ ଉଶୀନର ନହୁଷ କୁବେର ।
ଋଷଭ ନୃଗ କୁଶିକ ଐଳ ନୃପବର ॥
ସୋମ ଗାଧି ଦିଲୀପ ଏ ଆଦି ମହାତମା ।
ବୋଲନ୍ତି ଏ ରାଜଋଷି ଗୁଣେରେ ସୁଷମା ॥
ବୁଦ୍ଧିବନ୍ତ ବଳବନ୍ତ ବିଚାରେ ପଣ୍ଡିତ ।
ଚରାଚର ପ୍ରାଣିଙ୍କର ଥିଲେ ପ୍ରିୟପାତ୍ର ॥
ଦେବତାଙ୍କ ମିତ୍ର ମହାକ୍ଷତ୍ରୀ ଯେ ବୋଲନ୍ତି ।
କାଳେ କାଳେ ବିରାଜଇ ଏହାଙ୍କ କୀରତି ॥
ଭାରତ ବରଷ ରାଜା ଅଟନ୍ତି ଏ ଜାଣ ।
ସାତ କୁଳ ପରବତ ନାମ ଏବେ ଶୁଣ ॥
ମହେନ୍ଦ୍ର ଗିରି ମଳୟ ସହ୍ୟ ପରବତ ।
ଶୁକ୍ତିମାନ ଋକ୍ଷବାନ ବିନ୍ଧ୍ୟ ପାରିପାତ୍ର ॥
ଏମନ୍ତେ ଏ ସାତ ଗୋଟି କୁଳପରବତ ।
ଏହାଙ୍କର ଶୃଙ୍ଗ ଅତି ବିଚିତ୍ର ଶୋଭିତ ॥
ସାର ସାର ଦ୍ରବ୍ୟ ସବୁ ଅଛଇ ଗୁପତେ ।
ଏହା ଭିନ୍ନ ପରବତ ଆଉ ଅଛି ଯେତେ ॥
ମେଲେଚ୍ଛ ଜାତି ତହିଁରେ କରିଛନ୍ତି ଘର ।
ସେମାନେ ବର୍ଣ୍ଣ ସଙ୍କର ଜାତି ମ୍ଳେଚ୍ଛାକାର ॥
ଭାରତରେ ଘର କରି ଅଛନ୍ତି ଯେ ପ୍ରାଣୀ ।
ସେମାନେ ନିତ୍ୟ ପିଅନ୍ତି ଯେଉଁ ନଦୀ ପାଣି ॥
ସେମାନଙ୍କ ନାମ ଏବେ କହୁଅଛି ଶୁଣ ।
ପବିତ୍ର ତାହାଙ୍କ ଜଳ ସ୍ୱାଦୁ ସ୍ୱଚ୍ଛ ପୁଣ ॥
ବିପୁଳା ଗଙ୍ଗା ଯମୁନା ସିନ୍ଧୁ ସରସ୍ୱତୀ ।
ଗୋଦାବରୀ ମହାନଦୀ ଭୀମା ବେତ୍ରବତୀ ॥
ଚନ୍ଦ୍ରଭାଗା କଉଶିକୀ ଶତଦ୍ରୁ ନର୍ମଦା ।
ସ୍ୱଚ୍ଛ ବାଲୁକା ବିପାପା ବିପାଶା ବାହୁଦା ॥
ଇରାବତୀ କୃଷ୍ଣବେଣୀ ବିତସ୍ତା ଗୋମତୀ ।
ତ୍ରିଦିବା ସିନ୍ଧୁଳା ବାପୀ ଦୃଷଦ୍ୱତୀ ଶରାବତୀ ॥
କରତୋୟା ଚନ୍ଦ୍ରବତୀ କୃମି ବେଦଶିରା ।
ଦେବସ୍ମୃତି ଧୂତପାପା ବନ୍ଦନା ନିବାରା ॥
ଉତ୍ପଳା ଚର୍ମଣ୍ୱତୀ ପୟୋଷ୍ଣୀ କାବେରୀ ।
ମାଳାବତୀ ପଳାଶିନୀ ହେମା ଧୃତ କରୀ ॥

ହସ୍ତିସୋମା ବେତ୍ରବତୀ ରହସ୍ୟା ନାଚତା ।
ଭଗୀରଥି ଭୀମରଥୀ ଚମନା ଚନ୍ଦ୍ରରଥା ॥
ହବସ୍ରବା ମନ୍ଦାରଥା ମରୁତା ପ୍ରବସ୍ର ।
ଜ୍ୟୋତରଥା ବିଶ୍ୱାମିତ୍ରା ବହୁଳା କୁଶୀର ॥
କୁମ୍ବୀର ରକ୍ତ କଣ୍ଠ କପିଳା ବିଦଶା ।
ତୁଙ୍ଗ ବେଗା କୃଷ୍ଣ ବେଗା ବରୁଣା ସୁନାସା ॥
ବ୍ରହ୍ମମେଧା ଦୃଷଦ୍ୱତୀ ବ୍ରାହ୍ମୀ ବୈତରଣୀ ।
ଋଷିକୁଲ୍ୟା ମନ୍ଦାକିନୀ ମଞ୍ଜୁଳା ବେହ୍ନଶୀ ॥
ମନ୍ଦବାହିନୀ ବ୍ରାହ୍ମଣୀ ସଦା ନୀରମୟୀ ।
ଅନଙ୍ଗା ଲୋହିତା କୃଷ୍ଣା ବୃଷାକର ତୋୟୀ ॥
ଏମନ୍ତେ ବହୁତ ନଦୀ ଅଛଇ ଭାରତେ ।
ଗୋଟି ଗୋଟି କରି ନାମ କହିବଇଁ କେତେ ॥
ମନେ ଯାହା ପଡ଼ିଲା ତା କହିଲି ଆବର ।
ଦେଶ ଯେତେ ଅଛି ଶୁଣ ମନ କରି ସ୍ଥିର ॥
କୁରୁ ପାଞ୍ଚାଳ ଜାଙ୍ଗଳ ଶାମ୍ବ ଶୂରସେନ ।
ପୁଳିନ୍ଦ ମତ୍ସ୍ୟେୟ ବୋଧ ସଉଗନ୍ଧ୍ୟ ସ୍ଥାନ ॥
ଚେଦି କୁନ୍ତି କାଶୀମାଳ ଭୋଜ ଯୁଗନ୍ଧର ।
ପୁଳିନ୍ଦକ ସିନ୍ଧୁ ମଦ୍ର ଅବନ୍ତୀ ନଗର ॥
କରୁଷ ମେକଳ ପୁଣ୍ଡ୍ର, ଉତ୍କଳ କୋଶଳ ।
କୁକୁର ଜଠର ଶକ ଦଶାର୍ଣ୍ଣ କେରଳ ॥
ଅଶ୍ମକ ନପ ବାହ୍ଲିକ କ୍ଷୁଦ୍ର ଗୋପରାଷ୍ଟ୍ର ।
ମଲ୍ଲରାଟ ଗୁଲ୍ମରାଟ ମଲ୍ଲକ କୁଶାଟ ॥
ବିଦର୍ଭ ଗୋମନ୍ତ ବଙ୍ଗ ବିଦେହ ମାଗଧ ।
ମଲୟ ବିଜୟ ଅଙ୍ଗ କଳିଙ୍ଗ ସାମୁଦ୍ର ॥
ମଲ୍ଲ ସୁଦେଷ୍ଣ ପ୍ରହ୍ଲାଦ ବାହ୍ଲିକ ମହିଷ ।
ଶଶିକ ଆଭୀର କୂଟ କେକୟ ଯେ ଦେଶ ॥
ନିଷଧ ନିଷାଦ ଶକ କୁଳିନ୍ଦ ପୁଳିନ୍ଦ ।
ସୁଦେଷ୍ଣ କିରାତ ବଙ୍ଗ ଗାନ୍ଧାର ମିଳିନ୍ଦ ॥
ମସ୍ତ୍ର କଚ୍ଛ କଳୁନ୍ଦକ କାଶ୍ମୀର ବର୍ବର ।
ଗୋପାଳ କଚ୍ଛ ଜାଙ୍ଗଳ ସିନ୍ଧୁ ସଉବୀର ॥
ଦ୍ରାବିଡ଼ ମୂଷିକ ପ୍ରାଚ୍ୟ ବର୍ଦ୍ଧ ହଲ୍ଲୀକ ।
କୁନ୍ତଳ ନଳ କାନନ ତାମ୍ର ମହିଷକ ॥
ଗନ୍ଧିକ ଦଶାର୍ଣ୍ଣ ଶୈଳ କନକ ଅଙ୍ଗାର ।
ମାଳବ ମାରିଷ ମଣିଂଧଳିନୀ ନଗର ॥
ଦାରୁଣ ମ୍ଲେଚ୍ଛ କାମ୍ବୋଜ ସୂତପା ଋଷିକ ।
ସଙ୍ଗ ବେଗଧର ବିନ୍ଧ୍ୟ ସୁତପା ରୁଳକ ॥

ସମଙ୍ଗ ମାରିଷ ଚଣ୍ଡ କୁହୁକ ମଣ୍ଡଳ ।
ସ୍ତନପାଳ ଗିରିମାଳ ନେପାଳ ଭୂପାଳ ॥
ବିଦର୍ଭ ନିଗର୍ଭ ଆଦି ଅଛି ନାନା ଦେଶ ।
ଏକ ଏକ କରି କେତେ କହିବି ଅଶେଷ ॥
ଯେତେକ ମେଳଚ୍ଛ ସବୁ ଅଛନ୍ତି ଉତ୍ତରେ ।
କାମ୍ବୋଜ ଯବନ ହୂଣ ରମଣ ବର୍ବରେ ॥
ହୂଣ କୁଳଟା ଆବର ପାରସିକ ଶର ।
ଚରଦ କିରାତ ଆଦି ଆଭୀର ତୁଷାର ॥
କିର ଭକ୍ଷିକ ଏ ଆଦି ଅଛନ୍ତି ବହୁତ ।
ଭାରତର ଦେଶ ନଦୀ ଶୁଣିଲ ସମସ୍ତ ॥
ଋଷିଏ ବୋଇଲେ କହ ସୂତ ମୁନିବର ।
ଆୟୁଷ ବଳ ଭାରତ ବାସୀ ଜନଙ୍କର ॥
ଶୁଭାଶୁଭ ଫଳ ସବୁ କହିବ ବୁଝାଇ ।
ହରିବର୍ଷ କଥା ତାର ସଙ୍ଗେ ଦେବ କହି ॥
ସୂତ ବୋଇଲେ ଭାରତ ବର୍ଷେ ଯୁଗ ଚାରି ।
ସେ ସବୁ ଯୁଗର ନାମ ଶୁଣ ତପସ୍ୱୀର ॥
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଏହି ଜାଣ ।
ଆଦ୍ୟଯୁଗ ନାମ ସତ୍ୟ ଆହେ ଋଷିଗଣ ॥
ଦ୍ୱିତୀୟ ଯୁଗର ନାମ ତ୍ରେତା ଯେ ଅଟଇ ।
ତୃତୀୟ ଦ୍ୱାପର ଯୁଗ ଶେଷ କଳି ହୋଇ ॥
ସତ୍ୟର ଆୟୁଷ ଚାରି ସହସ୍ର ବରଷ ।
ତିନି ସହସ୍ର ବରଷ ତ୍ରେତାର ଆୟୁଷ ॥
ବେନି ସହସ୍ର ବର୍ଷ ଆୟୁ ଦ୍ୱାପର ଯୁଗର ।
ଗର୍ଭେ ଥାଇ କଳିଯୁଗେ ମରନ୍ତି ଯେ ନର ॥
ଏଣୁ ଏ ଯୁଗେ ଆୟୁର ପରମାଣ ନାହିଁ ।
ଜନମ ହୋଇବା ମାତ୍ରେ ମରଇ ବା କେହି ॥
ସତ୍ୟଯୁଗର ମାନବେ ମହା ବଳବନ୍ତ ।
ବୁଦ୍ଧିମନ୍ତ ଗୁଣବନ୍ତ ବିଶ୍ୱରେ ପଣ୍ଡିତ ॥
ମହା ପ୍ରାଣକୁ ଧରିଣ ଜନମ ହୁଅନ୍ତି ।
ବହୁତ କାଳ ବଞ୍ଚିଣ ପୁଣି ସେ ମରନ୍ତି ॥
ସତ୍ୟଯୁଗର ବାହ୍ମଣେ ମହା ବଳୀୟାର ।
ସତ୍ୟବାଦୀ ଧର୍ମଶୀଳ ପରମ ସୁନ୍ଦର ॥
ସବୁ ବିପ୍ରେ ମୁନିରୂପେ ହୁଅନ୍ତି ଉତ୍ପତ୍ତି ।
ଏଣୁ ସେହି ତପୋଧନ ମହାତ୍ମା ବୋଲନ୍ତି ॥
ସତ୍ୟଯୁଗ କ୍ଷତ୍ରିମାନେ ଦୀର୍ଘ ଦେହଧାରୀ
ଦେଖିବାକୁ ସୁନ୍ଦର ସେ ମହା ଧନୁର୍ଦ୍ଧାରୀ ।

ମହା ବୀର୍ଯ୍ୟବନ୍ତ ପୁଣି ସଂଗ୍ରାମରେ ବୀର ।
ରାଜ ଚକ୍ରବର୍ତ୍ତୀ କ୍ଷତ୍ରୀ ଯେ ତ୍ରେତାଯୁଗର ॥
ଦ୍ୱାପର ଯୁଗରେ ବୀର ଜାଣ ଗୁଣଜାତ ।
ବୀର୍ଯ୍ୟ ସାହସ ଉତ୍ସାହ ସବୁର ସମ୍ପତ୍ତି ॥
ସବୁର ଯୁଦ୍ଧରେ ଇଚ୍ଛା ଜାଣ ମୁନିବରେ ।
କଳିଯୁଗରେ ଜନମ ହୁଅନ୍ତି ଯେ ନରେ ॥
ବୃଥା ଅଭିମାନ ବହି କ୍ରୋଧରେ ମରନ୍ତି ।
ଅଳ୍ପପ୍ରାୟ ଦେଖା ସ୍ପର୍ଦ୍ଧା କରି ନ ପାରନ୍ତି ॥
ଲୋଭରେ ସଙ୍ଗ ସର୍ବଦା କହୁଥାନ୍ତି ମିଛ ।
ଆତ୍ମଗର୍ବ ବହି ଭୂଷା ତାହାଙ୍କର ତୁଚ୍ଛ ॥
କ୍ରୋଧ ଅଭିମାନ କୁଟ କପଟ ବହୁତ ।
ଲୋଭେ ପର ବସ୍ତୁରେ ସଦା ଆସକତ ॥
ପରର ଶିରୀ ଦେଖିଲେ ହୁଅନ୍ତି କାତର ।
ପରସ୍ତ୍ରୀଙ୍କ ସେ ଯେବେ ଦେଖନ୍ତି ସୁନ୍ଦର ॥
ପରବୃତ୍ତି ପରଧନ ଦେଖି ଲୋଭକରି ।
ବଳେ କଉଶଳେ ତାହା ନିଅନ୍ତି ଯେ ହରି ॥
ଏମନ୍ତେ ନାନାଦି ଦୋଷ ଧରି ଉପୁଜନ୍ତି ।
ଦ୍ୱାପରଯୁଗେ ଯେତେକ ଜନମ ହୁଅନ୍ତି ॥
ଗୁଣ ଦୋଷ ସଂକ୍ଷେପରେ ବହିଲି ସେ ପୁଣି ।
କଳିଯୁଗରେ ଜନମ ହୁଅନ୍ତି ଯେତେ ପ୍ରାଣୀ ॥
ଗୁଣ କହିଁତ ତାଙ୍କର ଦୋଷହିଁ ଅପାର ।
ଭାରତବର୍ଷ ମଧ୍ୟରେ ହୈମବତ ସାର ॥
ତାଠାରୁ ଗୁଣରେ ଶ୍ରେଷ୍ଠ ହରିବର୍ଷ ଜାଣ ।
ସବୁ ପୁରାଣହିଁ ସାର ଏ ପଦ୍ମପୁରାଣ ॥
ହରିର ଗୁଣ କରମ ଥିବାରୁ ଏଥିରେ ।
ଶୁଣିଲେ ପଢିଲେ ନିଶ୍ଚେ ମୋକ୍ଷହେବ ନରେ

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଭାରତ-
ବର୍ଷ ବର୍ଣ୍ଣନଂ ନାମ
ତୃତୀୟୋଽଧ୍ୟାୟଃ ।



## ଚତୁର୍ଥ ଅଧ୍ୟାୟ ।

ଦ୍ୱୀପବର୍ଣ୍ଣନ ।

ପଚାରିଲେ ଋଷିଗଣ ଆହେ ମୁନି ସୂତ ।
ଜମ୍ବୁଦ୍ୱୀପ କଥାଯାକ କହିଲ ସମସ୍ତ ॥
ଆଉ କେତେ ଦ୍ୱୀପ ଅଛି ଏ ମହୀମଣ୍ଡଳେ ।
କେତେ ଯେ ସମୁଦ୍ର ଅଛି କହ ତାର ମୂଳେ ॥
ଏମନ୍ତ ଶୁଣି ବୋଇଲେ ସୂତ ମହାମୁନି ।
ବହୁତ ଦ୍ୱୀପ ବହଇ ଜାଣ ଏ ମେଦିନୀ ॥
ବଡ ବଡ ଦ୍ୱୀପ ଅଛି ସାତଗୋଟି ଜାଣ ।
କହୁଅଛି ଶୁଣ ଏବେ ତାର ପରମାଣ ॥
ଜମ୍ବୁଦ୍ୱୀପରେ ଅଛଇ ବହୁତ ପର୍ବତ ।
ଆଉ ଜମ୍ବୁବୃକ୍ଷହିଁ ଅଛଇ ବହୁତ ॥
ଅଠର ହଜାର ପୁଣି ଛଅଶ ଯୋଜନ ।
ଦୀର୍ଘପ୍ରସ୍ଥ ଉପରରେ ଜାଣ ମୁନିଜନ ॥
ଏହାଠାରୁ ଦୁଇଗୁଣ ଲବଣ ସାଗର ।
ବହୁତ ଧାତୁ ଦ୍ରବ୍ୟରେ ଶରୀର ଆବର ॥
ଅନେକ ପର୍ବତ ଅଛି ଏହାର ଗର୍ଭରେ ।
ସିଦ୍ଧ ଚାରଣ ଅନେକ ଅଛନ୍ତି ଏଥିରେ ॥
ମଣ୍ଡଳ ଆକାରେ ରହି ଅଛି ଜାଣ ଏହି ।
ଶାକ ଦ୍ୱୀପ କଥା ଏବେ ଶୁଣ ମନଦେଇ ॥
ଜମ୍ବୁଦ୍ୱୀପ ଠାରୁଁ ସେହି ଦ୍ୱୀପ ଦୁଇଗୁଣ ।
କ୍ଷୀରୋଦ ସିନ୍ଧୁ ବେଢିଛି ତାକୁ ମୁନିଗଣ ॥
ପୁଣ୍ୟ ଦେଶ ସେ ଦ୍ୱୀପରେ ଅଛଇ ବହୁତ ।
ତହିଁ ଜନ୍ମିତ ମାନବେ ନ ହନ୍ତି ଯେ ମୃତ ॥
ଦୁର୍ଭିକ୍ଷ କାହାକୁ ବୋଲି ନ ଜାଣନ୍ତି ସେହି ।
ତାଙ୍କଠାରେ କ୍ଷମାଗୁଣ ତେଜ ଅଛି ରହି ॥
ବିସ୍ତାରି କହୁଛି ଏବେ ଶୁଣ ଦେଇ ମନ ।
ସାତଗିରି ଅଛି ଜମ୍ବୁଦ୍ୱୀପର ସମାନ ॥
ମଣିମୟ ପର୍ବତ ସେ ରତ୍ନର ଆକାର ।
କହୁଅଛି ଗୋଟି ଗୋଟି ନାମ ତାହାଙ୍କର ॥
ପ୍ରଥମ ପର୍ବତ ନାମ ଅଟେ ମେରୁ ଗିରି ।
ଦେବ ଋଷି ଗନ୍ଧର୍ବରେ ସେ ପର୍ବତ ପୂରି ॥
ତହୁଁ ମଳୟ ପର୍ବତ ଅତି ମନୋହର ।
ଏ ପର୍ବତ ଗୋଟି ଜାଣ ମେଘଙ୍କର ଘର ॥
ତହୁଁ ଯାଇ ସବୁଠାରେ ବରଷନ୍ତି ପାଣି ।
ତହିଁ ରହନ୍ତି ସେ ସବୁଠାରୁ ଆସି ପୁଣି ॥
ଜଳ ଧାର ନାମ ଅଛି ଏକ ପରବତ ।
ମହାଗିରି ମଧ୍ୟରେ ସେ ହୁଅଇ ଗଣିତ ॥
ଏହି ପର୍ବତ ମଧ୍ୟରୁ ନିତ ପୁରନ୍ଦର ।
ଉତ୍ତମ ଜଳ ନିଅଇ କରିଣ ଆଦର ॥

ସେ ଜଳ ବରଷା କାଳେ ମନ୍ଦାରେ ବରଷେ ।
ସେ ବରଷା ପାଣି ଖାଇ ବଢ଼ିଯାନ୍ତି ଶସ୍ୟ ॥
ରଇବତକ ନାମରେ ଅଛି ଏକ ଗିରି ।
ଅତି ଉଚ୍ଚ ପର୍ବତ ସେ ତାହାର ଉପରି ॥
ରେବତୀ ନାମ୍ନେ ନକ୍ଷତ୍ର ଅନଳ ଗଗନେ ।
ବ୍ରହ୍ମା ଯେ ତାହାକୁ ଥାପି ଅଛନ୍ତି ସେ ସ୍ଥାନେ ॥
ତା ଉତ୍ତରେ ଶ୍ୟାମ ନାମେ ଅଛି ମହାଗିରି ।
ସେ ମହା ପର୍ବତ ପ୍ରଭା ନବମେଘ ପରି ॥
ଦେଖିବାକୁ ସୁନ୍ଦର ସେ ଗିରି ଉଚ୍ଚ ଅତି ।
ଅତି ଉଜ୍ଜ୍ୱଳ ଦିଶଇ ତା ଦେହର କାନ୍ତି ॥
ଋଷିଏ ବୋଇଲେ ଆହେ ମୁନିବର ସୂତ ।
ତୁମ୍ଭ କଥାରେ ସଂଶୟ ଉପୁଜେ ବହୁତ ॥
ତହିଁର ପ୍ରଜା କେମନ୍ତେ ହୋଇଲେ ଶ୍ୟାମଳ
ସୂତ ବୋଇଲେ ତା ଶୁଣ ହେ ଋଷି ମଣ୍ଡଳ ॥
ସବୁ ଦ୍ୱୀପରେ ଅଛନ୍ତି ଯେତେ ପ୍ରଜାଜନ ।
ଗଉର ବର୍ଣ୍ଣ ଆବର ଜାଣ କୃଷ୍ଣବର୍ଣ୍ଣ ॥
ସ୍ୱର୍ଯ୍ୟ ନରଣରେ ଆନ ବର୍ଣ୍ଣ ଉପୁଜଇ ।
ତେଣୁ ଶ୍ୟାମଳ ବରନ ପ୍ରଜାଗଣ ତହିଁ ॥
ଏ କାରଣୁ ଏ ପର୍ବତ ନାମ ଶ୍ୟାମଗିରି ।
ତହୁଁ ଜାଣ ମହିଦାଦସ୍ଥ ଦୁର୍ଗ ଶୈଳ ପୁଣି ॥
ସେ ଗିରି ଗୋଟି ଅଟଇ ପର୍ବତର ଘର ।
ପ୍ରଳୟ ପର୍ଯ୍ୟନ୍ତେ ତହିଁ ବର୍ଷେ ନିରନ୍ତର ॥
ଏହୁଁ ଯେ ପର୍ବତ ନାମ ଅଟଇ କେଶରୀ ।
ବହୁତ କେଶରେ ସେହି ଗିରି ଅଛି ପୂରି ॥
ଏ ସାତ ପର୍ବତ ନାମ କହିଲି ବୁଝାଇ ।
ଆଦ୍ୟ ଯେତେ ପୁଣ ଦୀର୍ଘ ପ୍ରସ୍ଥରେ ଅଟଇ ॥
ଦ୍ୱିତୀୟ ତାଠାରୁ ଦୁଇ ଗୁଣ ଅଟେ ଜାଣ ।
ତୃତୀୟ ଦୀର୍ଘ ପ୍ରସ୍ଥରେ ତା ଠାରୁ ଦ୍ୱିଗୁଣ ॥
ତୃତୀୟ ଠାରୁ ଚତୁର୍ଥ ଦ୍ୱିଗୁଣ ଅଟଇ ।
ଚତୁର୍ଥ ଠାରୁ ପଞ୍ଚମ ଜାଣ ଗୁଣ ଦୁଇ ॥
ପଞ୍ଚମ ଠାରୁ ଯେ ଷଷ୍ଠ ଦ୍ୱୀପ ଦୁଇଗୁଣ ।
ଷଷ୍ଠଠାରୁ ସପତମ ଦୁଇ ଗୁଣ ଜାଣ ॥
ତହିଁରେ ଯେ ସବୁ ବର୍ଷ ତାହା ଅଛି କହି ।
ଯେଉଁ ଗିରି ଗୋଟି ମହା ମେରୁ ନାମ ବହି ॥
ମହାକାଶ ନାମ ବର୍ଷେ ତାହାର ଶିଖର ।
ମଳୟ ପର୍ବତ ଶିଖ କୁମୁଦ ଉତ୍ତର ॥
ଜଳଧାର ଗିରି ଶିଖ ନାମ ସୁକୁମାର ।
ରୈବତ ପର୍ବତ ଶିଖ ନାମ କଉମାର ॥
ଶ୍ୟାମଗିରି ଶିଖ ମଣି କାଞ୍ଚନ ବୋଲଇ ।
କେଶରୀ ଗିରି ଶିଖକୁ ମନ୍ଦଦକୀ କହି ॥
ସ୍ୱର୍ ଲୋକଯାଏ ବ୍ୟାପି ରହିଛନ୍ତି ଜାଣ ।
ଶାକ ନାମେ ମହାବୃକ୍ଷ ଅଛି ମୁନିଗଣ ॥
ତାର ଦୀର୍ଘ ପ୍ରସ୍ଥ ଜମ୍ବୁ ଦ୍ୱୀପର ସମାନ ।
ସୁଖରେ ଥାନ୍ତି ତହିଁରେ ଥିବା ପ୍ରଜାଗଣ ॥
ଶତ୍ରୁ ତା ନାହିଁ ସମସ୍ତେ ମିତ୍ର ପରସ୍ପରେ ।
ପୁଣ୍ୟ ଦେଶମାନ ସବୁ ଅଛି ଯେ ତହିଁରେ ॥
ଦେବତା ସିଦ୍ଧ ଗୃରଣ ତହିଁ ଆତଯାତ ।
ତହିଁ ଗୃହଜାତ ପ୍ରଜାଗଣ ଧର୍ମବନ୍ତ ॥
ସବୁଜାତ ନିଜ ନିଜ କର୍ମେ ଥାନ୍ତି ରତ ।
ଚୌର ତସ୍କରେ ନାହାନ୍ତି ପ୍ରଜାଗଣ ସୁସ୍ଥ ॥
ବର୍ଷା କାଳ ନଦୀ ପ୍ରାୟ ବଢନ୍ତି ପ୍ରଜାଏ ।
ସମସ୍ତେ ଦୀର୍ଘାୟୁ ନାହିଁ ଜରା ମୃତ୍ୟୁ ଭୟେ ॥
ତହିଁ ଥିବା ନଦୀ ସବୁ ଜାଣ ପୁଣ୍ୟଜଳା ।
ସେଠାବରେ ଗଙ୍ଗା ନଦୀ ହୋଇଣ ବହିଲା ॥
ବହୁତ ଧାର ହୋଇଣ ଯାଇଛନ୍ତି ବହି ।
ତହିଁ ଯେ ବିଖ୍ୟାତ ନଦୀ ନାମ ଶୁଣ କହି ॥
ମହା ନଦୀ ଶିବୋଦକା ସୀତା ସୁକୁମାରୀ ।
ମଣିଜଳା ପୁଣି ଇକ୍ଷୁ ବର୍ଦ୍ଧିକା କୁମାରୀ ॥
ଏ ନଦୀ ମାନଙ୍କ ଧାର ଅଟଇ ବହୁତ ।
ସେ ନଦୀ ଧାରଙ୍କ ଜଳ ପରମ ପବିତ୍ର ॥
ଇନ୍ଦ୍ର ଯେ ତହିଁରୁ ଜଳ ନେଇ ବରଷନ୍ତି ।
ସନ୍ଦିଦ୍ୱରୀ ପୁଣ୍ୟକଣ୍ଠୀ ସେମାନେ ବୋଲନ୍ତି ॥
ତାଙ୍କ ନାମ ପରିମାଣ କହି ନ ହୁଅଇ ।
ଚାରି ଗୋଟି ପୁଣ୍ୟ ଦେଶ ତହିଁରେ ଅଛଇ ॥
ମୃଗ ମଶକ ମାନସ ମଲ୍ଲିକ ଏ ଚାରି ।
ମୃଗଦେଶେ ବିପ୍ର ସବୁ ଛନ୍ତି ଘର କରି ॥
ସେମାନେ ଆପଣା କର୍ମ କରୁଥାନ୍ତି ନିତ୍ୟ ।
ମଶକ ଦେଶବାସୀ ଯେ କ୍ଷତ୍ରିୟ ସମସ୍ତ ॥
ସତ୍ୟବାଦୀ ଧର୍ମବନ୍ତ ସମସ୍ତେ ଅଟନ୍ତି ।
ମାନସ ଦେଶବାସୀ ଯେ ସବୁ ବୈଶ୍ୟଜାତି ॥
ମହାଶୂର ଧର୍ମବାନ ବାଣିଜ୍ୟ କୁଶଳ ।
ମଲ୍ଲିକେ ଘର କରିଣ ଛନ୍ତି ଶୂଦ୍ର କୁଳ ॥

ସେ ସବୁ ଜାଣ ଧାର୍ମିକ ସ୍ୱକର୍ମିରେ ରତ ।
ଆହେ ଋଷିଗଣେ ଶୁଣ ସେ ଦେଶ ବୃତ୍ତାନ୍ତ ॥
ରାଜା ନାହିଁ ଦଣ୍ଡ ଦେବା ଜନ ତହିଁ ନାହିଁ ।
ଦଣ୍ଡ ପାଇବାର ଲୋକ ନାହିଁ ପୁଣି କେହି ॥
ନିଜଧର୍ମ ବଳେ ନିଜେ ନିଜେ ରକ୍ଷା ପାନ୍ତି ।
ଈଶ୍ୱର ଦେଶରେ ଯେତେ ଦ୍ୱୀପ ରହିଛନ୍ତି ॥
ତାହା ଏବେ କହୁଅଛୁ ମନ ଦେଇ ଶୁଣ ।
ସ୍ୱରଗୋଟି ସମୁଦ୍ର ଯେ ଅଛୁ ତହିଁ ପୁଣ ॥
ଘୃତ ଦଧି ସୁରା କ୍ଷୀର ଏ ସ୍ୱର ସାଗର ।
ଦ୍ୱୀପ ଯେତେ ଅଛି ଶୁଣ ପ୍ରମାଣ ତାହାର ॥
ଏକୁଁ ଏକ ଦୁଇ ଗୁଣେ ଜାଣ ଦୀର୍ଘପ୍ରସ୍ତ ।
ପର୍ବତ ସବୁ ସମୁଦ୍ର କୁଟୁମ୍ବ ବୋଲନ୍ତି ॥
ମଧ୍ୟେଥିବା ଦ୍ୱୀପଗୋଟି ଗଉର ବରନ ।
ମନଃଶିଳ ପାହାଡ଼ ଯେ ସବୁହୁଁ ପ୍ରଧାନ ॥
ପଶ୍ଚିମ ଦିଗରେ ଅଛି କୃଷ୍ଣ ପରବତ ।
କେଶବ ଥାଆନ୍ତି ସେହି ପର୍ବତେ ନିରତ ॥
ନାରାୟଣ ସଖା ବୋଲି ସେ ଗିରିକି କହି ।
ଯେତେକ ପ୍ରଜା ଅଛନ୍ତି ବାସ କରି ତହିଁ ॥
ଅତି ସୁଖେ ରହିଥାନ୍ତି କେଶବ ପ୍ରସାଦେ ।
ଯେତେକ ରତ୍ନ ଅଛଇ ସେ ଶଇଳ ମଧ୍ୟେ ॥
ତାହାକୁ ଯତନେ ରଖନ୍ତି ଦେବ ନାରାୟଣ ।
ଯେତେକ ଦେଶ ଅଛଇ ଶରଦ୍ୱୀପେ ଜାଣ ॥
ତା ମଧ୍ୟରେ କୁଶସ୍ତମ୍ବ ଦେଶ ଯେ ପ୍ରଧାନ ।
ନାହିଁ ତାହାକୁ ସଂସାରେ କେହି ଯେ ସମାନ ॥
ଶାଲ୍ମଳୀ ଦ୍ୱୀପେ ଶାଲ୍ମଳୀ ବୃକ୍ଷ ଗୋଟା ବଡ଼ ।
କ୍ରୌଞ୍ଚ ଦ୍ୱୀପେ କ୍ରୌଞ୍ଚଗିରି ରତ୍ନରେ ସୁଦୃଢ଼ ॥
କମଳଲୋଚନ ପ୍ରଭୁ ନାରାୟଣ ହରି ।
ମୋକ୍ଷ କାମନାକାରୀଙ୍କ ମୋକ୍ଷ ଯହିଁ କରି ॥
ଅଛି ତହିଁ ଧାତୁମୟ ଗିରି ଯେ ଗୋମନ୍ତ ।
ଶରଦ୍ୱୀପେ ଏହି ଗିରି ପ୍ରବାଳେ ନିର୍ମିତ ॥
ଦ୍ୟୁତିମାନ ସୁନାମା ଏ ଦୁଇ ହେମଗିରି ।
ଏକୁଁ ଏକ ଦୁଇଗୁଣ ଦୀର୍ଘ ପ୍ରସ୍ତ ଧରି ॥
ଏହା ଭିନ୍ନ ଆଉ ପାଞ୍ଚ ଗିରି ନାମ ଶୁଣ ।
କୁମୁଦ ଯେ ପୁଷ୍ପବାନ କୁଶେଶୟ ପୁଣ ॥
ହରି ପର୍ବତକୁ ଘେନି ଏ ପାଞ୍ଚ ପର୍ବତ ।
ଏକୁଁ ଏକ ଦୁଇଗୁଣ ଜାଣ ଦୀର୍ଘ ପ୍ରସ୍ଥ ॥

ସାତଗୋଟି ବର୍ଷ ତାହା ମଧ୍ୟରେ ପ୍ରଧାନ ।
ଏକ ଏକ କରି କହେ ଶୁଣ ତାଙ୍କ ନାମ ॥
ଉଦ୍ଭିଦ ବେଣୁମଣ୍ଡଳ ସ୍ୱରଥ ଲବଣ ।
ଧୃତିମାନ ପ୍ରଭାକର କପିଳ ଏ ଜାଣ ॥
ଦେବ ଗନ୍ଧର୍ବ ମାନବେ ଏ ବର୍ଷେ ବିହରି ।
ଭୟ କାହାକୁ ଚିତ୍ତରେ ନାହିଁ ତାହାଙ୍କର ॥
କେହି ତହିଁ ନ ମରନ୍ତି ଶ୍ୱେର ଖଣ୍ଡ ନାହିଁ ।
ମ୍ଲେଚ୍ଛଜାତି ଘର କରି ତହିଁ ନାହିଁ କେହି ॥
ସକଳେ ଗଉରବର୍ଣ୍ଣ ଅତି ସୁକୁମାର ।
କ୍ରୌଞ୍ଚ ଦ୍ୱୀପେ ଅଛି ଯେଉଁ କ୍ରୌଞ୍ଚ ଗିରିବର
ତା ପରେ ବାମନ ନାମେ ଅଛି ମହାଗିରି ।
ତହୁଁ ଅନ୍ଧକାର ଗିରି ଜାଣ ତପସ୍ୱରି ॥
ତହୁଁ ପର୍ବତ ଉତ୍ତମ ନାମ ମଇନାକ ।
ତହୁଁ ଗୋବନ୍ଦ ପର୍ବତ ନାମେ ଗିରି ଏକ ॥
ଏକୁଁ ଏକ ଦୁଇଗୁଣ ଜାଣ ଦୀର୍ଘ ପ୍ରସ୍ତ ।
ଦେଶମାନଙ୍କର ନାମ ଶୁଣ ଦେଇ ମତ ॥
କ୍ରୌଞ୍ଚରେ କୁଶଳ ଦେଶ ଏକା ଅଛି ରହି ।
ତହୁଁ ବାମନପର୍ବତ ଦେଶ ସବୁ କହି ॥
ମନୋନୁଗ ଉଷ୍ଣଦେଶ ପ୍ରାବରକ ଦେଶ ।
ଅନ୍ଧକାରକ ଆବର ଦେଶ ମୁନିଦେଶ ॥
ଦୁନ୍ଦଭି ସ୍ୱନ ନାମରେ ଦେଶ ଏକ ଅଛି ।
ସିଦ୍ଧ ଚାରଣଗଣରେ ସଙ୍କୀର୍ଣ୍ଣ ହୋଇଛି ॥
ତହିଁ ଥିବା ବନଜନ୍ତୁ ଗଉର ବରନ ।
ପୁଷ୍କରେ ପର୍ବତ ଏକ ମଣି ରତ୍ନେ ପୂର୍ଣ୍ଣ ॥
ସେ ପର୍ବତ ନାମ ଜାଣ ଅଟଇ ପୁଷ୍କର ।
ଦେବ ପ୍ରଜାପତି ଥାନ୍ତି ତହିଁ କରି ଘର ॥
ନିତି ପୂଜନ୍ତି ତାହାଙ୍କୁ ଦେବ ଋଷିଗଣ ।
ଜମ୍ବୁ ଦ୍ୱୀପେ ଅଛି ଯେତେ ରତ୍ନର ପ୍ରମାଣ ॥
ତହୁଁ ଅଧିକ ପ୍ରମାଣେ ରତ୍ନ ଅଛି ରହି ।
ପ୍ରଜାଙ୍କ ନିମନ୍ତେ ନାନା ଖାଦ୍ୟ ଅଛି ତହିଁ ॥
ଏ ସବୁ ଦ୍ୱୀପର ଋଷେ ଜାଣ ବ୍ରହ୍ମଚାରୀ ।
ଏକୁଁ ଏକଙ୍କର ଆୟୁ ଦୁଇଗୁଣ ଧରି ॥
ସତ୍ୟବାଦୀ ଶାନ୍ତଶୀଳ ସବୁ ପ୍ରଜାଜନ ।
ରୋଗ ଶୋକ ନ ଜାଣନ୍ତି ସୁଖେ ଯାଇ ଦିନ ॥
ଏ ସବୁ ଦ୍ୱୀପବାସିଙ୍କ ଧର୍ମ ଏକ ଜାଣ ।
ପ୍ରଜାପତି ଦଣ୍ଡ ଧରି କରନ୍ତି ରକ୍ଷଣ ॥

ସେହି ରାଜା ସେହି ଶିବ ସେହି ପିତାମହ ।
ସେ ରକ୍ଷା କରନ୍ତି ବିପ୍ର ପଣ୍ଡିତଙ୍କ ଦେହ ॥
ଭୋଜନ ଦ୍ରବ୍ୟ ଯେତେକ ଆସେ ଉପୁଜାଇ ।
ସୁଖେ ରହିଥାନ୍ତି ପ୍ରଜା ନିତ ତାହା ଖାଇ ॥
ଆଉ ଏକ ମହାଗିରି ଅଛି ପୁଣି ତହିଁ ।
ଚାରିକୋଣିଆ ମଣ୍ଡଳ ଆକାରେ ସେ ରହି ॥
ସବୁ ଲୋକର ମର୍ଯ୍ୟାଦା ରଖେ ସେହି ଗିରି ।
ବାମନ ଗଜ ଆବର ଐରାବତ କରି ॥
ସୁପ୍ରତୀକ ଯେଣି ଚାରି ମଦସ୍ରାବୀ ଗଜ ।
ଦିଗ୍‌ଗଜ ଏହାଙ୍କ ନାମ ଏହି ଗଜରାଜ ॥
ଏହାଙ୍କର ପରିମାଣ କହି ନ ହୁଅଇ ।
ଗିରିର ତଳ ଉପର କେତେ ଯୋଜନ କହି ॥
ମଧ୍ୟଭାଗର ପ୍ରମାଣ କହିବଇଁ କାହୁଁ ।
ସବୁ ଦିଗୁ ଆସି ତହିଁ ବହେ ସବୁ ବାୟୁ ॥
ପଦ୍ମତୁଲ୍ୟ ଶୁଣ୍ଡ ଦିଗ ଗଜମାନଙ୍କର ।
ବାୟୁକୁ ଟାଣି ଆଣନ୍ତି ଶୁଣ୍ଡେ କରିବର ॥
ମୁଖ ନାସାବାଟେ ପୁଣି ଛାଡନ୍ତି ଯେ କ୍ଷଣେ ।
ଚାରିଦିଗରେ ବହନ୍ତି ତହୁଁ ସମୀରଣେ ॥
ଏଣୁ ଦୁର୍ଦ୍ଦମ ଅଟନ୍ତି ସେହି ଗଜ ଚାରି ।
ପ୍ରଜା ନାନାସ୍ଥାନୁ ଆସି ତହିଁ ଘର କରି ॥
ଭୂମିଭାଗର ସକଳ କହିଲି ବୁଝାଇ ।
ଯେବଣ ମାନବ ଏହା ଶ୍ରଦ୍ଧାରେ ଶୁଣଇ ॥
ସାଧୁ ସଙ୍ଗ ପାଇ ସବୁ ସିଦ୍ଧି ହୁଏ ତାର ।
ମୋକ୍ଷପାଏ ଆଉ ଜନ୍ମ ନୁହଇ ସେ ନର ॥
ବଳତେଜ ଯଶ ଆୟୁ ବହୁତ ବଢଇ ।
ପର୍ବଦିନେ ବ୍ରତୀ ହୋଇ ଯେ ଜନ ଶୁଣଇ ॥
ତାର ପିତୃଗଣେ ନିସ୍ତେ ଲଭନ୍ତି ସୁପତି ।
ଦୀନ ଗୋପୀନାଥ ମୁଖେ ବୋଲେ ଶିରିପତି ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଭୂବର୍ଣ୍ଣନଂ
ନାମ ଚତୁର୍ଥୋଽଧ୍ୟାୟଃ ।



# ପଞ୍ଚମ ଅଧ୍ୟାୟ ।

## ପୁଷ୍କର ମାହାତ୍ମ୍ୟ ।

ଋଷିଏ ବୋଇଲେ ଆହେ ସୂତ ମୁନିବର
ଅମୃତ ପିଇ ଆନନ୍ଦ ହୁଅନ୍ତି ଯେସନେ ନର ॥
ତେସନ ଶୁଣି ପୁରାଣ ତୁମ୍ଭ ମୁଖୁଁ ଆମ୍ଭେ ।
ଆଉ ଯାହା ପଚାରୁଛୁଁ କହ ତାହା ଏବେ ॥
କହିଲ ପୃଥିବୀ କଥା ଦେଶ ଗିରି ନଈ ।
ଆବର ତହିଁ ଅଛଇ ଯେତେ ତୀର୍ଥ ଭୂଇଁ ॥
ତାର ମହିମା ସକଳ କହ ମୁନିବର ।
ଋଷିଙ୍କ ମୁଖରୁ ଶୁଣି ଏମନ୍ତ ପ୍ରକାର ॥
କହିଲେ ସେ ସୂତମୁନି ଶୁଣ ତପୋଧନେ ।
ଧନ୍ୟ ମାନ୍ୟ ପୁଣ୍ୟ ତୁମ୍ଭେ ଏ ତିନିଭୁବନେ ॥
ଯେଣୁ ମୋତେ ପଚାରିଲ ତୀର୍ଥର ମହିମା ।
ଯେମନ୍ତେ ମୋତେ କହିଛି ବ୍ୟାସ ବେଦବ୍ରହ୍ମା ॥
ଏକ ପୁରାତନ କଥା କହୁଅଛି ଶୁଣ ।
ଯୁଧିଷ୍ଠି ଆଗେ ନାରଦ କହିଥିଲେ ଜାଣ ॥
ମହାରଥ ପଣ୍ଡୁପୁତ୍ର ପାଞ୍ଚଗୋଟି ଭାଇ ।
ପଶାଖେଳରେ ଆପଣା ରାଜ୍ୟକୁ ହରାଇ ॥
ଦ୍ରୌପଦୀଙ୍କି ସଙ୍ଗେ ଘେନି କଲେ ବନବାସ ।
ଦେଖିଲେ ନାରଦ ଋଷି ବ୍ରହ୍ମାଙ୍କର ଶିଷ୍ୟ ॥
ଜଳୁଥିଲ ଅଗ୍ନି ପ୍ରାୟେ ତେଜ ତାହାଙ୍କର ।
ବନରେ ଭେଟିଲେ ସେହି ପାଞ୍ଚ ସହୋଦର ॥
ବ୍ରାହ୍ମୀନଦୀ ଶୀତେ ଦେହ ହୋଇଛି ମଳିନ ।
ବେଳକୁ ବେଳ ଉଜ୍ଜ୍ୱଳ ଦିଶଇ ବଦନ ॥
ଧର୍ମରାଜ ଯୁଧିଷ୍ଠିର ଭାଇ ଭାର୍ଯ୍ୟା ଘେନି ।
ବିରାଜନ୍ତି ଯେସନେ ସ୍ୱର୍ଗେ ଦେବ ସପ୍ତଯୋନି ॥
ସୂର୍ଯ୍ୟ ପ୍ରଭା ମେରୁଗିରି ନ ଛାଡେ ଯେସନେ ।
ସାବିତ୍ରୀ ପ୍ରାୟେ ଯେ ସତୀ ଏ ତିନିଭୁବନେ ॥
ସେହି ଯାଜ୍ଞସେନୀ କୃଷ୍ଣାବନେ ପାର୍ଥପତି ।
ନ ଛାଡ଼ି ରଖିଛି ପ୍ରାଣପଣେ ଧର୍ମ ସତୀ ॥
ନାରଦ ଋଷିଙ୍କି ଦେଖି ଉଠି ପାଞ୍ଚଭାଇ ।
ପାଦ ପୂଜିଲେ ଆସନ ପାଦାସନ ଦେଇ ॥
ବହୁତ ଆଦର ପୂଜାପାଇ ମୁନିବର ।
ବସିଲେ ତାହାଙ୍କ ପାଶେ ଆସନ ଉପର ॥

ମଧୁର ବାକ୍ୟ ପ୍ରବୋଧ କହିଲେ ଏମନ୍ତ ।
ଆହେ ଧର୍ମରାଜ ତୁମ୍ଭେ ସଦା ଧର୍ମବନ୍ତ ॥
ତୁମ୍ଭେ କି ମାଗିବ ମୁହିଁ କି ଦେବି ତୁମ୍ଭଙ୍କୁ ।
ଧର୍ମରାଜ ଯୁଧିଷ୍ଠିର ଘେନିଣ ଭାଇଙ୍କୁ ॥
ପ୍ରଣାମ କରି ମୁନିଙ୍କ କରିଲୁ ପ୍ରଯାର ।
ବୋଇଲେ ମଧୁର ସ୍ବରେ ଆହେ ତପେଶ୍ବର ॥
ତୁମ୍ଭେ ଯେ ପୂଜ୍ୟ ପାଉଛ ଚଉଦ ଭୁବନେ ।
ସକଳ ଜନ ସନ୍ତୋଷ ତୁମ୍ଭର ପ୍ରସନ୍ନେ ॥
ତେସନ ମୁଁ ମନେ କରେ ତୁମ୍ଭ ଦରଶନେ ।
ପାପଛୁଇଁ ନ ପାରଇ ତୋର ସାଧୁଗୁଣେ ॥
ଯେବେ ହି ମୁନି ଆମ୍ଭଙ୍କୁ ହୋଇଲୁ ପ୍ରସନ୍ନ ।
ସନ୍ଦେହରେ ଘାରୁଁ ହୋଇଅଛି ଆମ୍ଭମନ ॥
ତାହା ତୁମ୍ଭେ ଅନୁକ୍ଷଣରେ ପାରିବ ନିବାରି ।
ପୃଥିବୀ କି ପ୍ରଦକ୍ଷିଣ କଲେ ତୀର୍ଥକାରୀ ॥
ଏହିରେ ତାହାର ହୁଏ କି କି ଫଳ କହି ।
ନାରଦ ମୁନି ବୋଇଲେ ଶୁଣ ମହାରାୟି ॥
ଏକଇ ପୁରାଣ କଥା କହୁଅଛି ଶୁଣ ।
ଦିଲୀପ ନାମରେ ଥିଲେ ଏକଇ ରାଜନ ॥
ଅଯୋଧ୍ୟାରେ ତାଙ୍କ ଘର ସୂର୍ଯ୍ୟବଂଶୀ ରାୟ ।
ମହା ପ୍ରତାପୀ ସେ ରାଜା ପ୍ରଧାନ କ୍ଷତ୍ରିୟ ॥
ତାହାଙ୍କର ପୁରୋହିତ ବଶିଷ୍ଠ ଯେ ମୁନି ।
ସବୁ ମୁନିଠାରୁ ଶ୍ରେଷ୍ଠ ଅଟେ ମହାଜ୍ଞାନୀ ॥
କହିଥିଲେ ରାଜା ଆଗେ ତୀର୍ଥର ମହିମା ।
ଯେଉଁ ରୂପେ କହିଥିଲେ ସେହି ମହାତମା ॥
ତାହା ମୁହିଁ ସେହିରୂପେ କହୁଅଛି ଶୁଣ ।
ଭଗୀରଥୀ ତୀରେ ଦିନେ ଦିଲୀପ ରାଜନ ॥
ମୁନି ବେଶରେ ସେ ଧର୍ମ ବ୍ରତକୁ ଆଚରି ।
ଯେଉଁ ଗଙ୍ଗାଜଳ ମହାପାପ ନାଶ କରି ॥
ଦେବତା ଋଷି ସକଳେ ପୂଜନ୍ତି ଯାହାକୁ ।
କରନ୍ତି ତହିଁ ସେ ବେଦ ବିହିତ କର୍ମକୁ ॥
ଦେବ ଋଷି ପିତୃଙ୍କର କରନ୍ତି ତର୍ପଣ ।
ଦିନେ ଜପ କରୁ କରୁ ସେ ମହାରାଜନ ॥
ବଶିଷ୍ଠ ଋଷିଙ୍କ ଦେଖା ଦରଶନ ପାଇ ।
ଦେଖି ଆନନ୍ଦ ଅପାର ହୋଇଲେ ନରସାଇଁ ॥
ଆଦର ବିସ୍ମୟ ହୋଇଲେ ସେହି ମହାରାୟ ।
ବିଧି ବିଧାନେ ବନ୍ଦିଲେ ତାଙ୍କ ପାଦଦ୍ବୟ ॥

ଅର୍ଘ୍ୟ ବନ୍ଦାଇ ଘେନିଲେ ଆସନର ଶିରେ ।
ବୋଇଲେ ନରପତି ଦାସ ମୁଁ ତୋର ପାୟରେ ॥
ମୋ ନାମ ଦିଲୀପ ରାୟ ଆହେ ମୁନିବର ।
ତୁମ୍ଭ ଦର୍ଶନେ ସକଳ ପାପ ଗଲା ଦୂର ॥
କରି ଆଲିଙ୍ଗନ କରୁଣ କହିଣ ଏମନ୍ତ ।
ମଉନ ହୋଇ ରହିଲେ ଦେଖି ତପୋବନ୍ତ ॥
ବୋଇଲେ କୃଶ ତୋହର ଶରୀର କିପାଇଁ ।
ଏଣୁ ମୋ ମନରେ ବଡ଼ କଷ୍ଟ ଉପୁଜଇ ॥
ତୁମ୍ଭେ ଧର୍ମବନ୍ତ ପ୍ରାଣୀ ପୃଥିବୀର ପତି ।
ତୋହର ସତ୍ୟ ବିନୟ ମନରୁଁ ଯେ ଶାନ୍ତି ॥
ଦେଖି ପରମ ସନ୍ତୋଷ ହେଲ ଆରେ ପୁତ୍ର ।
ତୋହର ଯେ ପିତୃଗଣ ହେଲେଣି ପବିତ୍ର ॥
ତେଣୁ ତୁ ପୁତ୍ର ଆଜିରେ ମୋର ଦେଖାପାଇ ।
ଆଜିଠାରୁ ଯଜମାନ ହେଲୁ ମୋର ତୁହି ॥
ଆରେ ବାବୁ କେଉଁ କର୍ମ କରିବ ତୋହର ।
ତୁ ଯାହା ମାଗିବୁ ତୋତେ ଦେବଇଁ କୁମର ॥
ଏମନ୍ତ ଶୁଣି ବୋଇଲେ ଦିଲୀପ ନୃପତି ।
ହେ ଗୁରୁ ବଶିଷ୍ଠ ତୁମ୍ଭେ ଅଟ ମହାଯତି ॥
ପଚାରିବ କଥାଏକ କହିବ ବୁଝାଇ ।
ସନ୍ଦେହ ଯେମନ୍ତେ ମୋର ଦୂର ହୋଇଯାଇ
ତୀର୍ଥ ମାନଙ୍କ ମହିମା କହି ମୋ ଅଗ୍ରତେ ।
ଶୁଣିବି ତବ ମୁଖରୁ କରି ଆଦ୍ୟ ପ୍ରାନ୍ତେ ॥
ବଶିଷ୍ଠ ବୋଇଲେ ବାବୁ ଶୁଣ ସାବଧାନେ ।
କହୁଅଛି ମୁହିଁ ତାହା ଅତ୍ୟନ୍ତ ଯତନେ ॥
ଋଷିଏ ଯହିଁକି ନିତ୍ୟ କରନ୍ତି ଗମନ ।
ଚଞ୍ଚଳ ନୁହଇ ଅତି ଦୃଢ଼ ଯାର ମନ ॥
ହାତ ପାଦ ବିଦ୍ୟା ତପ ଯଶ ଯାର ଥାଇ ।
ସେ ଜନ ତାଣରେ ବାବୁ ତୀର୍ଥ ଫଳ ପାଇଁ ॥
ପବିତ୍ର ପୁଣି ସନ୍ତୋଷ ସର୍ବଦା ଯା ମନ ।
କାହାରିଁ ହାତରୁ ଯେହୁ ନ ଘେନଇ ଦାନ ॥
ଯାହାର ମନରେ ତିଳେ ଅହଂକାର ନାହିଁ ।
ସେ ଜନ ସିନାରେ ବାବୁ ତୀର୍ଥ ଫଳ ପାଇ ॥
କୁହକପଟ ନ ଥାଇ ଚିତ୍ତରେ ଯାହାର ।
ନିତ ଦିନ କରଇ ଯେ ଅଳପ ଆହାର ॥
ଯାଚି ଦେଲେ ଖାଏ କିଛି ନ ମାଗେ କାହାକୁ ।
ନିରୋଧି ରଖିଥାଇ ଯେ ଇନ୍ଦ୍ରିୟମାନଙ୍କୁ ॥

( ବଶିଷ୍ଠ ଓ ଦିଲୀପ । )



ଭାଗୀରଥୀ ତଟରେ ଦିନେ ଦିଲୀପ ରାଜନ ।
ମହାମୁନି ବଶିଷ୍ଠଙ୍କୁ କରି ଦରଶନ ॥
କରିଦୁନ୍ଦିକୁ ଯୋଡ଼ଶ ଅତି ଭକତିରେ ।
ତୀର୍ଥ ମହିମା ପୁଚ୍ଛିଲେ ବିଶେଷ ଭାବରେ ॥

ଯାହାର ଦେହରେ ଦୋଷ ଲେଶମାତ୍ର ନାହିଁ ।
ଏମନ୍ତ ଜନରେ ବାବୁ ତୀର୍ଥ ଫଳପାଇ ॥
କ୍ରୋଧ ଯା ଦେହରେ ନାହିଁ ଆହେ ନୃପବର ।
ସତ କହେ ଯେହୁ ବାକ୍ୟ ଦୃଢ଼ ଅଟଇ ଯାର ॥
ସବୁର ପ୍ରାଣକୁ ନିଜ ପ୍ରାଣ ପ୍ରାୟ ମଣେ ।
ତୀର୍ଥ ଫଳକୁ ଲଭନ୍ତି ଏମନ୍ତ ସୁଜନେ ॥
ଦେବ ମାନବଙ୍କ ପାଇ ଋଷିଗଣେ ବସି ।
ଯଜ୍ଞ ଆଦି ନାନାଧର୍ମ ସବୁଶାସ୍ତ୍ରେ ଭଣି ॥
ଏସବୁ ବିଧି ବିଧାନେ ନାନା ଫଳପାଇ ।
ଇହ ଲୋକେ ପରଲୋକେ ସେ ସକଳ ପାଇ ॥
ନାନାଦି ଉପକରଣ ବହୁତ ସମ୍ଭାର ।
ଯଜ୍ଞରେ ଲୋଡ଼ା ହୁଅଇ ଜାଣ ନୃପବର ॥
ବହୁତ ଧନ ତହିଁରେ ଲୋଡ଼ା ଯେ ହୁଅଇ ।
ଏଣୁ ଦରିଦ୍ର ଜନ ତା କରି ନ ପାରଇ ॥
ଧନୀଜନ ଯାଗ କରେ ଅଥବା ନୃପତି ।
ଋଷିଗଣଙ୍କର ପୁଣି ଗୁପତ ସମ୍ପତ୍ତି ॥
ଦରିଦ୍ର ପାଇ ଯହିଁରେ ଯଜ୍ଞାଦିର ଫଳ ।
ତୀର୍ଥ ଯାତ୍ରା ଅଟେ ବାବୁ ସେ ଧର୍ମର ମୂଳ ॥
ଯଜ୍ଞଠାରୁ ଅଧିକରେ ଫଳ ସେ ଦିଅଇ ।
ଯାତ୍ରା କରିବ ଯେ ଜନ ତୀର୍ଥ ବତ ପାଇଁ ॥
ତିନି ଦିନ ଉପବାସେ ରହିବ ଚଦନ୍ତେ ।
ସୁନାଦାନ ଗୋରୁଦାନ କରି ଶୁଦ୍ଧ ଚିତ୍ତେ ॥
ଦରିଦ୍ର ଜନ ତୀର୍ଥକୁ କରଇ ଗମନ ।
ତହିଁରେ ତାର ଯେ ଫଳ ହୁଅଇ ରାଜନ ॥
ଅଗ୍ନିଷ୍ଟୋମ ଅଶ୍ୱମେଧ ଆଦି ଯଜ୍ଞ ଯେତେ ।
କଲେ ସେ ଫଳ ନ ମିଳେ ତାକୁ କଦାଚିତେ ॥
ତିନିଲୋକରେ ବିଖ୍ୟାତ ଅଛି ଏକ ତୀର୍ଥ ।
ଦେବ ତୀର୍ଥ ବୋଲଇ ସେ ମର୍ତ୍ତ୍ୟ ପୁରେ ସ୍ଥିତ ॥
ତାହାର ନାମ ପୁଷ୍କର ଜାଣ ମହୀପତି ।
ସେ ତୀର୍ଥେ ଯାଇ ଯେ ସ୍ନାନ ଦାନାଦି କରନ୍ତି ॥
ଦେବ ଲୋକର ସମାନ ଲୋକ ଜିଣେ ସେହି ।
ଦଶ କୋଟି ସହସ୍ର ଯେ ତୀର୍ଥ ନିତ୍ୟ ତହିଁ ॥
ସଞ୍ଜ ସକାଳେ ମଧ୍ୟାହ୍ନେ ମିଳନ୍ତି ପୁଷ୍କରେ ।
ଆବର ମିଳନ୍ତି ବସୁ ରୁଦ୍ର ଦିବାକରେ ॥
ସାଧ୍ୟଗନ୍ଧର୍ବ ମରୁତ ଅପସରୀ ଯେତେ ।
ସମସ୍ତେ ନିତ୍ୟ ମିଳନ୍ତି ସେ ପୁଷ୍କର ତୀର୍ଥେ ॥

ଦେବ ଦୈତ୍ୟ ବ୍ରହ୍ମଋଷି ବିପ୍ର ମନୁ ଅଗ୍ନି ।
ତପସ୍ୟା କରନ୍ତି ସେହି ତୀର୍ଥ ସ୍ଥାନେ ବସି ॥
ମହାପୁଣ୍ୟ ଦିବ୍ୟ ଯୋଗ ଲଭନ୍ତି ସେ ତହିଁ ।
ମନେ ମନେ ପୁଷ୍କରକୁ ଯେ ଜନ ଗମଇ ॥
ସର୍ବ ପାପରୁ ମୁକତ ହୁଅଇ ସେ ଜନ ।
ମରଣ ଅନ୍ତେ ସ୍ୱର୍ଗକୁ କରଇ ଗମନ ॥
ଏହି ତୀର୍ଥେ ଦେବ ଦୈତ୍ୟ ବ୍ରହ୍ମ ଆଦି ରହି
ଦେବଗଣ ଋଷିଗଣ ପୁଣ୍ୟ ପାଇ ତହିଁ ॥
ପରମ ସିଦ୍ଧି ଲଭନ୍ତି ଆହେ ନୃପବର ।
ପିତୃ ଦେବତାଙ୍କୁ ପୂଜା କରନ୍ତି ଯେ ନର ॥
ଅଶ୍ୱମେଧ ଯଜ୍ଞ କଲେ ଯେତେ ଫଳ ପାଇ ।
ତହୁଁ ଅଧିକରେ ଦଶ ଗୁଣ ଫଳ ତହିଁ ॥
ସ୍ନାନ କଲେ ଲୋକ ପାଇ ଜାଣ ଏହି ଫଳ ।
ପୁଷ୍କର ନାମେ ଅରଣ୍ୟ ଅଛି ତାର କୂଳ ॥
ସେ ବନେ ଯେ ଜନ ଏକ ବିପ୍ରକୁ ଭୁଞ୍ଜାଇ ।
ତାର ଫଳେ ସେହି ବ୍ରହ୍ମଲୋକରେ ବସଇ ॥
ସଞ୍ଜ ସକାଳେ ପୁଷ୍କର ସ୍ମରେ ଯେ ଜନ ।
ସବୁ ତୀର୍ଥ ଫଳ ସେହି ପାଇ ହେ ରାଜନ ॥
ସ୍ତ୍ରୀ କି ପୁରୁଷ କଲେ ସେ ତୀର୍ଥରେ ସ୍ନାନ ।
ଆଜନମ କୃତ ପାପୁ ହୁଅନ୍ତି ମୋଚନ ॥
ଦେବ ଦେବଙ୍କର ଯେସନେ ଶ୍ରୀମଧୁସୂଦନ ।
ତୀର୍ଥଙ୍କ ମଧ୍ୟେ ପୁଷ୍କର ରାଜନ ତେସନ ॥
ଶୁଦ୍ଧ ଚିତ୍ତେ ଏକମନେ ଯେ ବାର ବରଷ ।
ପୁଷ୍କର ତୀର୍ଥରେ ଘରୁ ଯାଇଁ କରେ ବାସ ॥
ସବୁ ଯଜ୍ଞ ଫଳ ପାଇ ବସେ ବ୍ରହ୍ମଲୋକେ ।
ଏକ ଦିବସ ରହଇ ଯେ ଜନ କାର୍ତ୍ତିକେ ॥
କୃତ୍ତିକା ନକ୍ଷତ୍ର ଚନ୍ଦ୍ର ଯୋଗ ଯେ ରଜନୀ ।
ସେ ରାତ୍ରେକ ବାସ କରେ ସ୍ନାନ କରି ପୁଣି ॥
ପୁଷ୍କର ତୀର୍ଥକୁ ଯିବା ଅଟଇ ଦୁଷ୍କର ।
ତପସହିଁ ଦୁଷ୍କର ତହିଁ ଦାନହିଁ ଦୁଷ୍କର ॥
ଘର କରି ରହିବାର ଦୁଷ୍କର ଅଟଇ ।
ଆଦ୍ୟ ତୀର୍ଥ ଯେ ପୁଷ୍କର ଜାଣ ନରସାଇଁ ॥
ଏହାର ତିନୋଟି ଶୃଙ୍ଗ ଅତି ଶୁଭ୍ର ଜାଣ ।
ତିନିଗୋଟି ଶୃଙ୍ଗ ତାର ପୁଣି ପ୍ରସ୍ରବଣ ॥
ଏଣୁ ଭୁମ୍ବର ପୁଷ୍କର ତୀର୍ଥ ନୃପମଣି ।
ଏ ତୁମ୍ଭ ଆଗରେ କହିଲି ମୁଁ ତଥ୍ୟ ବାଣୀ ॥

ନିଦ୍ରା ଆହାର ମୈଥୁନ ତେଜି ଯେବେ କେହି
ବାର ବରଷ ପୁଷ୍କର ତୀର୍ଥେ ଯାଇଁ ରହି ॥
ସବୁ ପାପ ଦେହୁ ତାର ହୋଇଯାଏ ଦୂର ।
ସବୁ ଯଜ୍ଞର ଯେ ଫଳ ପାଇ ସେହୁ ନର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ପୁଷ୍କର
ମାହାତ୍ମ୍ୟ ବର୍ଣ୍ଣନଂ ନାମ
ପଞ୍ଚମୋଽଧ୍ୟାୟଃ ।



## ଷଷ୍ଠ ଅଧ୍ୟାୟ ।

ନର୍ମଦା ମାହାତ୍ମ୍ୟ ।

ବଶିଷ୍ଠ ମୁନି କହନ୍ତି ଦଲୀପ ଶୁଣନ୍ତି ।
ମାନବ ଯେ ପ୍ରଦକ୍ଷିଣ କରି ଯାଇ ପୃଥ୍ୱୀ ॥
ତହୁଁ ସେ ଅମ୍ବୁ ମାର୍ଗରେ ପ୍ରବେଶ ହୋଇବ ।
ଅତି ପବିତ୍ର ସେ ଅମ୍ବୁ ମାର୍ଗକୁ ଜାଣିବ ॥
ସେ ଅମ୍ବୁ ମାର୍ଗକୁ ଦେବ ଋଷିଏ ପୂଜନ୍ତି ।
ସେ ସ୍ନାନ ମାତ୍ରକେ ଅଶ୍ୱମେଧ ଫଳ ପାନ୍ତି ॥
ଅନ୍ତେ ସେ କରଇ ବିଷ୍ଣୁ ଲୋକକୁ ଗମନ ।
ତହିଁ ଯେ ଦିବସ ଅର୍ଦ୍ଧେ କରେଣ ଭୋଜନ ॥
ପାଅଁ ଦିନ ରହେ ତାର ନ ରହେ ଦୁର୍ଗତି ।
ଉତ୍ତମ ସିଦ୍ଧି ଲଭଇ ସେହି ମହାମତି ॥
ଅମ୍ବୁମାର୍ଗୁଁ ଯାଇ ପୁଣି ଆନନ୍ଦମନରେ ।
ଭୃଣ୍ଡିଲକ ନାମେ ଯେଉଁ ପୁଣ୍ୟ ଆଶ୍ରମରେ ॥
ତତକ୍ଷଣେ ତାର ହୁଅଇ ଦୁର୍ଗତି ଖଣ୍ଡନ ।
ସ୍ୱର୍ଗ ଲୋକରେ ପୂଜିତ ହୁଅଇ ସେ ଜନ ॥
ତହୁଁ ଅଗସ୍ତ୍ୟ ଋଷିର ଆଶ୍ରମରେ ଆସି ।
ତିନି ଦିନ ତିନି ରାତି ହୋଇ ଉପବାସୀ ॥
ପିତୃ ଦେବତା ପୂଜଇ ଆହେ ନରସାଇଁ ।
ଅଗ୍ନିଷ୍ଟୋମ ଯଜ୍ଞ କଲା ଫଳ ଗୋଟି ପାଇ ॥
ତହୁଁ ସେ କଣ୍ୱଋଷିର ଆଶ୍ରମେ ମିଳିବ ।
ଶାକଫଳ ଖାଇ ବ୍ରହ୍ମଗୃସ୍ଥ ଯେ ହୋଇବ ॥
ମୁକତି ପାଇବ ଜାଣେ ହେ ପୃଥ୍ୱୀପତି ।
ଏହି ଆଶ୍ରମକୁ ଧର୍ମାରଣ୍ୟ ଯେ ବୋଲନ୍ତି ॥
ସବୁଠାରୁ ଶ୍ରେଷ୍ଠ ଅତି ପବିତ୍ର ଯେ ସ୍ଥାନ ।
ସେ ସ୍ନାନ ମାତ୍ରକେ ପାପୁଁ ହୋଇବ ମୋଚନ
ଆହାର ନିଦ୍ରା ମୈଥୁନ ତେଜି ଯେବେ କେହି
ପିତୃ ଦେବତର୍ପଣ କଲେ ତହିଁ ରହି ॥
ସର୍ବକାମ ଯଜ୍ଞ ଫଳ ପାଇ ସେହି ଜନ ।
ତହୁଁ ଯେ ମହାକାଳକୁ କରଇ ଗମନ ॥
ସେ ମହା କାଳ ତୀର୍ଥରେ ରହି ନିରାହାରେ
ସେ ତୀର୍ଥ ଜଳରେ ଯେବେ ଆଚମନ କରେ
କୋଟିତୀର୍ଥ ଆଚମନ ଫଳକୁ ସେ ପାଇ ।
ଅଶ୍ୱମେଧ ଯଜ୍ଞ ଫଳ ପାଇ ତହୁଁ ଯାଇ ॥
ଭଦ୍ର ବଟତୀର୍ଥେ ମିଳି ପୂଜଇ ଈଶାନ ।
ଉମାପତିଙ୍କର ସେହି ତୀର୍ଥ ବାସସ୍ଥାନ ॥
ତ୍ରିଲୋକରେ ସେ ତୀର୍ଥକୁ ଜାଣନ୍ତି ସମସ୍ତେ ।
ସହସ୍ର ଗୋଦାନ ଫଳ ପାଇ ସେହି ତୀର୍ଥେ ॥
ମହାଦେବ ପରସାଦେ ସେ ଧାର୍ମିକ ଜନ ।
ଗଣପତି ପଦ ତହିଁ ପାଇଣ ରାଜନ ॥
ତହୁଁ ନର୍ମଦା ତୀର୍ଥକୁ କରିବ ଗମନ ।
ଜାଣନ୍ତି ଯେଉଁ ତୀର୍ଥକୁ ଏ ତିନି ଭୁବନ ॥
ଜାଣ କେହି ସଉଭୁଣୀ ନାହିଁ ନରପତି ।
ନିରତେ ଯହିଁ ମିଳଇ ଶିଖି ଯେ ସମ୍ପତ୍ତି ॥
ତହିଁ ବିଷ୍ଣୁଦେବ ପୂଜା ସ୍ନାନ ତର୍ପଣ ।
କଲି ଲୋକର ଯେ ଫଳ ଶୁଣ ହେ ରାଜନ ॥
ଅଗ୍ନିଷ୍ଟୋମ ଯାଗ ଫଳ ଅକ୍ଳେଶରେ ପାଇ ।
ଏମନ୍ତ ଶୁଣି ବୋଇଲେ ଧର୍ମ ନରସାଇଁ ॥
ହେ ନାରଦ ମୁନିବର ଶୁଣ ମୋ ବଚନ ।
ପାପ ପର୍ବତକୁ କରି ପାରେ ବିଦାରଣ ॥
ସେ ନର୍ମଦା ତୀର୍ଥ କଥା କହ ହେ ବିସ୍ତାରି ।
ଦିଲୀପଙ୍କ ଆଗେ ଯେଉଁରୂପେ ତପସ୍ୱୀ ॥
କହିଥିଲେ ସେହିରୂପେ କହ ମୋ ଅଗ୍ରତେ ।
ସେ ତୀର୍ଥକୁ ସବୁ ଲୋକେ ଜାଣିଲେ କେମନ୍ତେ
ନର୍ମଦା ନାମ ତାହାର ହୋଇଲା କିପାଇଁ ।
ଏମନ୍ତ ଶୁଣି କହିଲେ ନାରଦ ଗୋସାଇଁ ॥
ଯେତେ ନଦୀ ଅଛି ସବୁ ନଦୀ ମଧ୍ୟେ ସାର ।
ସବୁ ପାପ ବିନାଶଇ ସେ ନଦୀର ନୀର ॥
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ୱରି ।
ନିସ୍ତାରଇ ସେ ନର୍ମଦା ଜଳ ଦଣ୍ଡଧାରି ॥
ବଶିଷ୍ଠ କହନ୍ତି ବାଣୀ ଦିଲୀପ ଶୁଣନ୍ତି ।
କୁରୁକ୍ଷେତ୍ରରେ ପବିତ୍ର ଯେମନ୍ତେ ସରସ୍ୱତୀ ॥

କନଖଳ କ୍ଷେତ୍ରେ ଗଙ୍ଗା ପବିତ୍ର ଯେସନେ ।
ଏ ନର୍ମଦା ନଦୀ ପୁଣ୍ୟ ତଥା ସ୍ନାନେ ସ୍ନାନେ ॥
ବନଗ୍ରାମ ଦେଶେ ଦେଶେ ଜାଣ ଯହିଁ ତହିଁ ।
ଏ ନର୍ମଦା ନଦୀ ଜଳ ପବିତ୍ର ଅଟଇ ॥
ଆବର କହୁଛି ଶୁଣ ଧର୍ମ ନୃପବର ।
ତନ୍ନାଦନ କୁରୁ କ୍ଷେତ୍ରେ ରହି ଯେବେ ନର ॥
ସରସ୍ୱତୀ ନଦୀ ଜଳେ ପଶି କରେ ସ୍ନାନ ।
ତେବେ ତା ଦେହୁଁ ପାତକ ହୁଅଇ ମୋଚନ
ସାତଦିନେ ସ୍ନାନ କଲେ ଯମୁନା ଜଳରେ ।
ପାତକରାଶି ନ ରହେ ତାହାର ଶରୀରେ ॥
ଗଙ୍ଗା ଜଳେ ସ୍ନାନମାତ୍ରେ ପାପଯାଇ ଦୂର ।
ନର୍ମଦା ଦର୍ଶନ ମାତ୍ରେ ପବିତ୍ର ଶରୀର ॥
ତ୍ରିଲୋକ ପାବନୀ ନାମ ନର୍ମଦା ବୋଲାଇ ।
କଳିଙ୍ଗ ଦେଶର ପଛପଟେ ବହି ଯାଇ ॥
ଅମର କଣ୍ଟକ ନାମେ ଅଛଇ ପର୍ବତ ।
ତହିଁ ସେ ନର୍ମଦା ନୀର ପରମ ପବିତ୍ର ॥
ଯେତେକ ଦେବ ଅସୁର ଗନ୍ଧର୍ବ ଯେ ଋଷି ।
ସିଦ୍ଧି ଲଭନ୍ତି ତପସ୍ୟା କରି ତହିଁ ବସି ॥
ଇନ୍ଦ୍ରି ନିରୋଧ ନିୟମେ ରହି ଯେବେ କେହି ।
ଆହେ ମହାରାଜ ଜାଣ ରାତ୍ରିଏକ ରହି ॥
ଶତେକ କୂଳ ତାହାର ପାଆନ୍ତି ଉଦ୍ଧାର ।
ଜଳେଶ୍ୱର ତୀର୍ଥେ ଯେବେ ଯାଇ କେହି ନର
ସ୍ନାନ ସାରି ଯଥାବିଧି ପିଣ୍ଡଦାନ କରି ।
ମହା ପ୍ରଳୟ ପର୍ଯ୍ୟନ୍ତେ ପିତୃଙ୍କୁ ଉଦ୍ଧାରି ॥
କୋଟି କୋଟି ଶିବଲିଙ୍ଗ ଗିରି ଚଉପାଶେ ।
ଗୋଟି ଗୋଟିକର ପୂଜା କରେ ଯେବା ତୋଷେ
ଗନ୍ଧ ପୁଷ୍ପ ଧୂପ ଦୀପ ଅକ୍ଷତ ଦେଇଣ ।
ତାକୁ ପ୍ରସନ୍ନ ହୁଅନ୍ତି ରୁଦ୍ର ତତକ୍ଷଣ ॥
ପର୍ବତ ପଶ୍ଚିମ ଦିଗେ ଅଛି ଯେଉଁ ଦେଶ ।
ତହିଁ ବିରାଜନ୍ତି ଦେବଦେବ ସେ ମହେଶ ॥
ସ୍ନାନ କରି ଶୁଚି ହୋଇ ନିରୋଧି ଇନ୍ଦ୍ରିକ ।
ବ୍ରହ୍ମଚାରୀ ହୋଇ ତହୁଁ ଯାଇଣ ତହିଁକି ॥
ବିଧି ବିଧାନେ ଦେବତା ପିତୃଙ୍କ ପୂଜିବ ।
ତିଳ ଉଦକ ଦେଇଣ ତର୍ପଣ କରିବ ॥
ସାତ ଗୋଟି କୁଳ ତାର ସ୍ୱର୍ଗ ପୁରେ ଯାଇ ।
ଦେବ ସ୍ତ୍ରୀଏ ଅପସରାଗଣେ ପୂଜାପାଇ ॥
ଦିବ୍ୟ ଗନ୍ଧ ତା ଶରୀରେ କରନ୍ତି ଲେପନ ।
ଦିବ୍ୟ ଅଳଙ୍କାରେ କରି ସର୍ବାଙ୍ଗ ମଣ୍ଡନ ॥
ଷାଠି ସହସ୍ର ବରଷ ସ୍ୱର୍ଗେ ପୂଜାପାଇ ।
ସ୍ୱର୍ଗୁ ଆସି ପୁଣି ଉଚ୍ଚ ବଂଶେ ଜନ୍ମହୋଇ ॥
ବଳବନ୍ତ ଦାନଶୀଳ ଧାର୍ମିକ ହୁଅଇ ।
ପୁଣି ସେ ତୀର୍ଥକୁ ଯାଇ ସେ ତୀର୍ଥ କରଇ ॥
ସାତ ଗୋଟି କୁଳକୁ ସେ ଉଦ୍ଧାରଣ ପୁଣ ।
ରୁଦ୍ର ଲୋକରେ ବସଇ ଆହେ ଧର୍ମରାଣ ॥
ସେହି ସରିଦ୍ୱରା ତୀର୍ଥ ନର୍ମଦାର ପାର ।
ତାର ପ୍ରମାଣ କହୁଛି ଶୁଣ ଯୁଧିଷ୍ଠିର ॥
ଦୀର୍ଘ ତାର ଶଏ ଯୁଗ ପ୍ରସ୍ଥ ଦୁଇ ଯୁଗ ।
ଅମର କଣ୍ଟକ ଯେଉଁ ପର୍ବତର ନାମ ॥
ତାର ଚାରି ଆଡ଼ ବେଢ଼ି ଅଛି ଯେତେ ତୀର୍ଥ ।
ତାହାର ପ୍ରମାଣ ଶୁଣ ଧର୍ମରାଜ ପାର୍ଥ ॥
ଷାଠି ଗୋଟି ଷାଠି ସସ୍ର ତୀର୍ଥ ଅଛି ରହି ।
ଇନ୍ଦ୍ରିକ ନିରୋଧି ଶୁଚି ବ୍ରହ୍ମଚାରୀ ହୋଇ ॥
କାମକ୍ରୋଧ ଲୋଭ ହିଂସା ଛାଡ଼ି କେହିଁ ଜନ ।
ସବୁ ପ୍ରାଣିଙ୍କର ହିତେ ଥାଇ ନିତି ଦିନ ॥
ବିଧି ବିହିତ ଆଚାରେ ରହି ସବୁ ବେଳେ ।
ଯହିଁ ରହିଣ ଅଛନ୍ତି ଦେବ କ୍ଷେତ୍ରପାଳେ ॥
ତାହାଙ୍କ ପାଖକୁ ଯାଇ ହେ ଧର୍ମ ରାଜନ ।
ତାର ପୁଣ୍ୟଫଳ ଶୁଣ ହୋଇ ସାବଧାନ ॥
ସ୍ୱର୍ଗ ଅପସରା ତାର ଚାରି ପାଖ ଘେରି ।
ନୃତ୍ୟ ଗୀତ ରସେ ତାର ମନ ତୋଷ କରି ॥
ସ୍ୱର୍ଗ ସ୍ତ୍ରୀଏ ତାହାର ବେଢ଼ି ଚଉପାଶ ।
ଦାସୀ ପ୍ରାୟେ ଖଟୁଥାନ୍ତି ରଜନୀ ଦିବସ ॥
ତା ଅଙ୍ଗେ କେହି ରମଣୀ ଚନ୍ଦନ ଲେପଇ ।
ତା ପାଇଁ କେହି ରମଣୀ ଫୁଲ ଗୁଚ୍ଛ ଥାଇ ॥
କେହି ତାହାକୁ ଲୁଧାଇ ଖଞ୍ଜାଇ ବସନ ।
କେହି କେହି ଅଳଂକାରେ କରନ୍ତି ମଣ୍ଡନ ॥
କେହି ଚାମର ଚାଳଇ କେହି ଧୂପ ଦେଇ ।
ଦେବ ଲୋକଙ୍କ ସଙ୍ଗରେ ସେହି ବିହରଇ ॥
ଏମନ୍ତେ ନାନାଦି ଉପଭୋଗ କରସାରି ।
ସ୍ୱର୍ଗରୁ ଆସି ମର୍ତ୍ତ୍ୟରେ ପୁଣି ଅବତରି ॥
ବଳବନ୍ତ ରାଜା ହୋଇ ପୃଥିବୀ ପାଳଇ ।
ଅପୂର୍ବ ନବର ଗୋଡା ତାହାକୁ ମିଳଇ ॥

ଅତି ସୁନ୍ଦର ବନର ସେ ନୃପତି ଘର ।
ହୀରା ନୀଳା କାଚରେ ଖଞ୍ଜା ହୋଇଛି ତାହାର ॥
ବଳଭୂମୀରେ ସୁନ୍ଦର ହୋଇଅଛି ଗୃହ ।
ଦୁଆରେ ଦିଆ ହୋଇଛି ମୁକୁତାର ଜାଲ ॥
ଅଷ୍ଟ ରତ୍ନେ କମ ହୋଇ ଥିବାରୁ ସେ ଘରେ ।
ଝକଝକ ଦିଶୁଥାଏ ଦୂରକୁ ଚାହିଁରେ ॥
ଦାସ ଦାସୀ ବହୁତ ସେ ରାଜାକୁ ଖଟନ୍ତି ।
ଇନ୍ଦ୍ର ଭୁବନୁ ଅଧିକ ସେ ଭୁବନ ଜ୍ୟୋତି ॥
ବହୁତ ମତ୍ତ ମାତଙ୍ଗ ତା ଦୁଆରେ ବନ୍ଧା ।
ଗର୍ଜନ ନାଦେ ସିନ୍ଧୁକୁ କରନ୍ତି ସେ ନିନ୍ଦା ॥
ଲକ୍ଷଣବନ୍ତ ବହୁତ ଘୋଡ଼ା ତାକୁ ମିଳେ ।
ସୁଖରେ ଥାଇ ସୁନ୍ଦରୀ ସ୍ତ୍ରୀରାଜନ ମେଳେ ॥
ରାଜ ରାଜେଶ୍ୱର ହୋଇ ବର୍ଷେ ଶଏବର୍ଷ ।
ନୀରୋଗୀ ହୋଇ ତାହାର ପୂରଇ ଆୟୁଷ ॥
ଅମର କଣ୍ଟକେ ସେହି ଛାଡ଼ଇ ପରାଣ ।
ପୃଥ୍ୱୀରେ ସେ ଗିରି ଜାଣ ମହା ପୁଣ୍ୟ ସ୍ଥାନ ॥
ଜଳେ ବୁଡ଼ି ମଲେ ତହିଁ ଉପବାସେ ମଲେ ।
କିବା ପ୍ରଚଣ୍ଡ ଅନଳ ଜାଳଣ ପଶିଲେ ॥
ପର୍ବତ ଉଡ଼ିଲେ ଯେତେହେଁ ନୁହଇ ନିବାର ।
ସ୍ୱର୍ଗରେ ଗତି ତାହାର ଜାଣ ସେହିପରି ॥
ଭୃଗୁ ପଡ଼ି ମଲପ୍ରାୟ ତହିଁ ଯେ ମରଇ ।
ବହୁତ କାଳ ସ୍ୱର୍ଗରେ ସେ ଲୀଳା କରଇ ॥
ଦିବ୍ୟ ଭୋଗରେ ତାହାର ସୁଖେ ଯାଏ ଦିନ ।
ତିନି ସହସ୍ର ନାରୀଙ୍କର ଭର୍ତ୍ତା ସେହି ଜାଣ ॥
ବହୁତ ଯେ ଦାସ ଦାସୀ ତାକୁ ଖଟୁଥାନ୍ତି ।
ଏପରି ସ୍ଥାନ ପୃଥ୍ୱୀରେ ନାହିଁ ହେ ନୃପତି ॥
ଅମର କଣ୍ଟକ ଗିରି ମହିମା ଏମନ୍ତ ।
ଏହାର ପଶ୍ଚିମେ ଅଛି କୋଟିଏକ ତୀର୍ଥ ॥
ଜଳେଶ୍ୱର ନାମେ ଏକ ମହାଦେବ ତହିଁ ।
ତାଙ୍କୁ ନ ଜାଣିବା ଲୋକ ତିନିପୁରେ ନାହିଁ ॥
ସନ୍ଧ୍ୟା ସାରି ତହିଁ ପିଣ୍ଡ ଦିଅଇ ଯେ ଜନ ।
ଦଶବର୍ଷ ଯାଏ ତୃପ୍ତ ତାର ପିତୃ ଗଣ ॥
ନର୍ମଦା ନଦୀ ଦକ୍ଷିଣ ପାଖେ କିଛି ଦୂରେ ।
କପିଳା ନାମରେ ନଦୀ ବହଇ ପ୍ରଖରେ ॥
ଅର୍ଜୁନ ଆଦି ସରଳ ବୃକ୍ଷ ସବୁ ତହିଁ ।
ତା ଦୁଇତୀରେ ଥିବାରୁ ସୁନ୍ଦର ସେ ଭୂଇଁ ॥

ସେ ପୁଣ୍ୟ ସ୍ଥାନ ଲୋକଙ୍କୁ ମହାଭାଗ୍ୟ ଦିଏ ।
ତିନି ପୁର ଲୋକେ ତାକୁ ଜାଣନ୍ତି ହେ ରାଏ ॥
ଶତ କୋଟିରୁ ଅଧିକ ତୀର୍ଥ ଅଛି ତହିଁ ।
ପୁଣ୍ୟ କର୍ମ କରି ଯେ ସେ ତୀର୍ଥରେ ରହି ॥
କୋଟି ଗୁଣ ଫଳ ତାକୁ ମିଳଇ ରାଜନ ।
ଆମ୍ଭେମାନେ ପୁରାଣରେ ଶୁଣିଛୁଁ ଏସନ ॥
ତାରତୀରେ ଥିବା ବୃକ୍ଷ ଯେତେବେ କାଳବଳେ ।
ଉପ୍ପାଡ଼ି ପଡ଼ି ଲାଗଇ ସେ ନର୍ମଦା ଜଳେ ॥
ସେ ବୃକ୍ଷ ପରମ ଗତି ପାଇ ହେ ରାଜନ ।
ତହିଁ ଆଉ ଏକ ନଦୀ ଅଛି ଶୁଣ ନାମ ॥
ବିଶଲ୍ୟ କରୁଣା ବୋଲି ବୋଲନ୍ତି ସକଳେ ।
ମହା ଭାଗ୍ୟ ମହା ପୁଣ୍ୟ ପାନ୍ତି ସେହିଜଳେ ॥
ତାରତୀରେ ବାସ କରି ସ୍ନାନ କଲା ଜନ ।
ତତକ୍ଷଣେ ବିଶଲ୍ୟ ହୋଏ ହେ ଧର୍ମ ରାଜନ ॥
ଦେବତା ଯେତେ ଅମର କଣ୍ଟକ ପର୍ବତେ ।
କିନ୍ନର ଉରଗ ଯକ୍ଷ ଗନ୍ଧର୍ବ ସହିତେ ॥
ତପୋଧନ ଋଷି ମୁନି ମିଳି ତହିଁ ଆସି ।
ବିଶଲ୍ୟ ତୀର୍ଥ ତା ନାମ ଦେଇଛନ୍ତି ବସି ॥
ସେ ତୀର୍ଥ ଗୋଟି ନର୍ମଦା ନଦୀକି ଲଗିଛି ।
ସବୁ ପାପ ନାଶିବାରୁ ତାକୁ ବାଛି ବାଛି ॥
ଏ ନାମ ଗୋଟି ବିପ୍ରେ ଦେଇଛନ୍ତି ଜାଣ ।
ବ୍ରହ୍ମଚାରୀ ହୋଇ ତହିଁ କରଇ ଯେ ସ୍ନାନ ॥
ଇନ୍ଦ୍ରି ନିରୋଧି ରାତିଏ ତହିଁ ଯେ ରହଇ ।
ତାର ଶତକୁଳକୁ ସେ ଉଦ୍ଧାର କରଇ ॥
ଶୁଣିଅଛି ପୁରାଣରେ ଏମନ୍ତ ରାଜନ ।
ପୂର୍ବକାଳେ ଈଶ୍ୱର ଯେ ଦେବ ତ୍ରିଲୋଚନ ॥
ଲୋକଙ୍କ ହିତ ନିମନ୍ତେ ବିଶଲ୍ୟ କପିଳା ।
ଏ ଦୁଇ ତୀର୍ଥକୁ କଲେ ଜାଣ ପାଣ୍ଡୁବଳା ॥
ସ୍ନାନ କଲା ଜନ ଅଶ୍ୱମେଧ ଫଳ ପାଇ ।
ଯେ ଜନ ଉପାସ କରି ରହେ ବ୍ରତୀ ହୋଇ ॥
ତା ଦେହରୁ ସବୁ ପାପ ଯାଏ ହୋଇ ଦୂର ।
ଇନ୍ଦ୍ରଲୋକକୁ ଗମନ କରଇ ସେ ନର ॥
ନର୍ମଦାରେ ଏହି ସବୁ ତୀର୍ଥ ବ୍ରତ କରି ।
ଅଶ୍ୱମେଧ ଫଳ ପାଇ ସବୁପାପ ହରି ॥
ଆଉରି ପୁରାଣେ ମୁହିଁ ଶୁଣିଅଛି ଏହା ।
ନର୍ମଦା ଉତ୍ତର କୂଳେ ଆହେ ନରନାହା ॥

( ଶ୍ରୀ ବିଷ୍ଣୁ ମହିମା । )



ଶଙ୍ଖ ଚକ୍ର ଗଦା ପଦ୍ମ ଧରି ଶ୍ରୀକରେ ।
ବିଷ୍ଣୁ ବିଜେ କରିଛନ୍ତି ଲୋକ ଉପକାରେ ॥
ଏହି ବିଷ୍ଣୁଙ୍କ ମହିମା କେ ପାରିବ କହି ।
ଭକତି କଲେ ଏହାଙ୍କୁ ଚତୁର୍ବର୍ଗ ପାଇ ॥

ବାସ କଲେ ଲୋକ ଅନ୍ତେ ସ୍ୱର୍ଗପୁର ପାଇ ।
ମୋ ଆଗରେ କହିଲନ୍ତି ଶଙ୍କର ଉମାସାଇଁ ॥
ଗଙ୍ଗାନଦୀ ସରସ୍ୱତୀ ନର୍ମଦା ଏ ତିନି ।
ସମାନ ଫଳ ଦାୟିନୀ ପାତକ ନାଶିନୀ ॥
ଏ ତିନି ନଦୀରେ ସ୍ନାନ ଦାନେ ଏକା ଫଳ ।
ଏ ତିନି ନଦୀର ଜଳ ପବିତ୍ର ନିର୍ମଳ ॥
ଯେ ଜନ ଯାଇ ଅମର କଣ୍ଟକ ପର୍ବତେ ।
ମଲେ ଲୋକ ଶତକୋଟି ବର୍ଷ ପରିଯନ୍ତେ ॥
ଇନ୍ଦ୍ରଲୋକେ ପୂଜାପାଇ ଦେବଲୋକ ସଙ୍ଗେ ।
ନର୍ମଦା ନଦୀର ଫେଣ ପବିତ୍ର ତରଙ୍ଗେ ॥
ଭକତରେ ସେ ଫେଣକୁ ଯେ ଶିରେ ଧରଇ ।
ସକଳ ପାପ ତା ଦେହୁ ଦୂର ହୋଇ ଯାଇ ॥
ସକଳ ପୁଣ୍ୟ ଦିଅଇ ନର୍ମଦାର ଜଳ ।
ବ୍ରହ୍ମହତ୍ୟା ମହାପାପ ବିନାଶର ମୂଳ ॥
ଅହୋରାତ୍ର ଉପବାସ କଲେ ତହିଁ ରହି ।
ବ୍ରହ୍ମହତ୍ୟା ପାପ ତାକୁ ଛୁଇଁ ନ ପାରଇ ॥
ଏମନ୍ତ ମହିମା ସେହି ନର୍ମଦାନଦୀର ।
ତିନି ଭୁବନ ପବିତ୍ର କରଇ ତା ନୀର ॥
ମହାପୁଣ୍ୟ ଦାନ କରେ ତୀର୍ଥ ବଟେଶ୍ୱର ।
ଆଉର ଯେ ତପୋବନ ତୀର୍ଥ ଗଙ୍ଗାଦ୍ୱାର ॥
ଏ ସବୁ ତୀର୍ଥକୁ ଯାଇ କଲେ ତୀର୍ଥବ୍ରତ ।
ପବିତ୍ର ହୁଅନ୍ତି ଜନେ ଜାଣ ପାଣ୍ଡୁ ସୁତ ॥
ପୁରାଣରେ ଶୁଣିଅଛୁ ଆମ୍ଭେ ଯେ ଏମନ୍ତ ।
ଯେତେ ଫଳ ହୁଏ କଲେ ପଥେ ତୀର୍ଥବ୍ରତ ॥
ତହୁଁ ଦଶଗୁଣ ଫଳ ନର୍ମଦାରେ ପାଇ ।
ନର୍ମଦା ମହିମା ତୋତେ କହିଲି ବୁଝାଇ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ନର୍ମଦା ମାହାତ୍ମ୍ୟଂ ନାମ
ଷଷ୍ଠୋଽଧ୍ୟାୟଃ ।



## ସପ୍ତମ ଅଧ୍ୟାୟ ।

ତ୍ରିପୁର ଦହନ ।

ନାରଦ ମୁନି କହିଲେ ହେ ପାଣ୍ଡୁ ନନ୍ଦନ ।
ଧର୍ମ ଆତ୍ମା ପୁଣ୍ୟବନ୍ତ ଯେତେ ମୁନି ଜନ ॥
ତିନି ଭୁବନରେ ଶ୍ରେଷ୍ଠ ଯେ ନର୍ମଦା ନଈ ।
ପବିତ୍ର ବୋଲି ଯାହାକୁ ପୁରାଣ କହଇ ॥
ସେ ନଦୀର ନବଗୁଣ ପଲତା ସରସ୍ୱେ ।
ଶଙ୍କର କହିଲନ୍ତି ଜାଣ ପାଣ୍ଡୁ ତ୍ରୟେ ॥
ସେ ସବୁ ତୀର୍ଥରେ ସ୍ନାନ ଦାନେ ତୁଲ୍ୟ ଫଳ
ଅତି ପବିତ୍ର ଅଟଇ ନର୍ମଦାର ଜଳ ॥
ସ୍ନାନ କଲେ ଲୋକ ସବୁ ପାପ ଯାଏ ତରି ।
ଜଳେଶ୍ୱର ନାମେ ଯେଉଁ ତୀର୍ଥ ଦଣ୍ଡଧାରି ॥
ତିନି ଭୁବନର ଲୋକେ ଯାହାକୁ ଜାଣନ୍ତି ।
ପରମ ତୀର୍ଥ ବୋଲିଣ ଯାହାକୁ କହନ୍ତି ॥
ତାର ଜନ୍ମ କଥା ଏବେ କହୁଅଛି ଶୁଣ ।
ପୂର୍ବେ ଋଷି ମୁନି ଇନ୍ଦ୍ର ଆଦି ଦେବଗଣ ॥
ମିଳି ତହିଁ କଲେ ଦେବଦେବ ଶିବସ୍ତୁତି ।
ପ୍ରସନ୍ନ ସେଠାରେ ଦେଖା ଦେଲେ ପଶୁପତି
ସମସ୍ତେ ବୋଇଲେ ଆହେ ବିରୂପାକ୍ଷ ହର ।
ଆମ୍ଭେ ସକଳେ ହୋଇଛୁ ଭୟରେ କାତର ॥
ରକ୍ଷାକର ରକ୍ଷାକର ତୁମ୍ଭେ ଉମାସାଇଁ ।
ଶରଣ ପଶିଲୁ ଆମ୍ଭେ ମହାଭୟ ପାଇ ॥
ଏମନ୍ତ ଶୁଣି ବୋଇଲେ ଦେବ ମହେଶ୍ୱର ।
ଆହେ ମୁନିଗଣ କୁହ କି ଦୁଃଖ ତୁମ୍ଭର ॥
କାହିଁପାଇଁ ତୁମ୍ଭେ ମିଳି କର ମୋତେ ସ୍ତୁତି ।
ତୁମ୍ଭ ମନରେ ସନ୍ତାପ କାହାକୁ ଯେ ଅତି ॥
କାହୁଁ ସେ ଭୟ ତୁମ୍ଭର ଉପୁଜିଲା କୁହ ।
କହିଲେ କଷ୍ଟୁ ରଖିବି ନ କର ସନ୍ଦେହ ॥
ରୁଦ୍ରଙ୍କ ମୁଖୁଁ ଏମନ୍ତ ଶୁଣି ମୁନିଗଣ ।
କହିଲେ ହେ ବିରୂପାକ୍ଷ ଦେବଦେବ ଶୁଣ ॥
ବାଣାସୁର ନାମେ ଏକ ଦାନବ ଅଛଇ ।
ବଳବନ୍ତ ପଣେ ତାକୁ ସରି କେହି ନାହିଁ ॥
ଭୟଙ୍କର ଦାନବ ସେ ବୀର୍ଯ୍ୟବନ୍ତ ଅତି ।
ମନେ ମହାଗର୍ବ ବହି ସେ ଅସୁର ପତି ॥
କାହାକୁ ନ ମାନେ ପୁଣି ଅତି ଦୁଷ୍ଟ ପଣେ ।
ସୁନ୍ଦର ପୁର ନିର୍ମାଣ କରିଛନ୍ତି ଆପଣେ ॥
ସେ ପୁର ନାମ ତ୍ରିପୁର ଜାଣ ମହେଶ୍ୱର ।
ଅଷ୍ଟ ରତ୍ନରେ ସେ ପୁର କରିଛନ୍ତି ସୁନ୍ଦର ॥
ତାହାର ତେଜ ପ୍ରଭାବେ ସେ ଦାନବ ପତି ।
ଗଗନତଳେ ବିହରେ ନାହିଁ ତାର ଅନ୍ତ ॥

ତାହାର ଉତ୍ତରେ ଆମ୍ଭେ ଏ ସ୍ଥାନରେ ବସି ।
ତୁମ୍ଭଙ୍କୁ ସେ ସ୍ତବ କରୁ ଆମ୍ଭେ କାଶୀବାସି ॥
ଶରଣ ତୁମ୍ଭ ଚରଣେ ପଶିଲୁ ଶଙ୍କର ।
ତୁମ୍ଭେ ଏକାମାତ୍ର ଗତି ଆମ୍ଭ ମାନଙ୍କର ॥
ଏ ମହା ଦୁଃଖରୁ ରକ୍ଷା କର ତ୍ରିଲୋଚନ ।
ଦେବତାଙ୍କ କଥା ଶୋଚେ ଲୋକେ ସର୍ବଦନ ॥
ତୁମ୍ଭେ ନ ରଖିଲେ ଦେବେ ହେବେ ଅରକ୍ଷିତ ।
ଏମନ୍ତେ ଦେବଙ୍କ ମୁଖୁ ଶୁଣି ଉମାକାନ୍ତ ॥
ବୋଇଲେ ତୁମ୍ଭେ ବିଷାଦ ମନରେ ନ କର ।
ତାର ଉତ୍ତରୁ ତୁମ୍ଭଙ୍କୁ କରିବି ଉଦ୍ଧାର ॥
ଅଳପଦିନେ ତୁମ୍ଭର ଯିବ ସବୁ ଦୁଃଖ ।
ଏମନ୍ତେ ତାଙ୍କୁ ପ୍ରବୋଧ କରି ପଞ୍ଚମୁଖ ॥
ସେ ନର୍ମଦା ନଦୀତଟରେ ଜଳେଶ୍ୱର ଘାଟେ ।
ଦୁଷ୍ଟ ଅସୁର ନିଧନ ହେବ କେଉଁ ବାଟେ ॥
ଏମନ୍ତ ମନେ ଭାବନା କଲେ ତହିଁ ହର ।
ବଡ଼ ପ୍ରତାପୀ ଅଟଇ ସେ ବାଣ ଅସୁର ॥
ଏମନ୍ତ ଭାଳି ନାରଦ ମୁନି ସୁମରିଲେ ।
ତକ୍ଷଣେ ମୁନି ସେଠାରେ ଆସି ପହୁଞ୍ଚିଲେ ॥
ନାରଦ କହିଲେ ଆହେ ଦେବଦେବ ହର ।
କିନିମନ୍ତେ ସୁମରିଲେ ବେଗେ ଆଜ୍ଞା କର ॥
ଈଶ୍ୱର ବୋଇଲେ ମୁନି ନାରଦ ହେ ଶୁଣ ।
ଦାନବ ଇନ୍ଦ୍ର ପ୍ରତାପୀ ଅସୁର ଯେ ବାଣ ॥
ତ୍ରିପୁର ନାମରେ ପୁର ଅଛି ତହିଁ ଯିବ ।
ତ୍ରିପୁର ବାସୀ ପୁରୁଷ ଗଣଙ୍କୁ ଦେଖିବ ॥
ତହିଁ ଥିବା ରମଣୀଏ ଅପସରୀ ସରି ।
ଦେବୀ ମାନଙ୍କ ପରାୟେ ପରମ ସୁନ୍ଦରୀ ॥
ତାହାଙ୍କ ତେଜ ପ୍ରଭାବେ ଯେ ତ୍ରିପୁର ପୁର ।
ଗଗନ ମାର୍ଗେ ଭ୍ରମଇ ଆହେ ମୁନିବର ॥
ତହିଁକି ଯାଇ ତାହାଙ୍କୁ କୁମନ୍ତ୍ରଣା ଦେବ ।
ଯହିଁରେ କି ତାହାଙ୍କର ଜ୍ଞାନ ହଜିଯିବ ॥
ନାରଦ ମୁନି ଶଙ୍କର ମୁଖୁଁ ଏହା ଶୁଣି ।
ମିଳିଲେ ତ୍ରିପୁର ପୁରେ କରି ବୀଣାଧ୍ୱନି ॥
ଦେଖିଲେ ଶୋଭା ପାଉଛି ନାନାରୂପେ ପୁର ।
ଶତଯୋଜନ ଅଟଇ ବିସ୍ତାର ତାହାର ॥
ଦୀର୍ଘ ତାହାର ଅଟଇ ଦୁଇଶ ଯୋଜନ ।
ପୁର ମଧ୍ୟରେ ଦେଖିଲେ ବ୍ରହ୍ମାର ନନ୍ଦନ ॥

ବଳ ଦର୍ପେ ବସିଅଛି ରାଜା ବାଣାସୁର ।
କୁଣ୍ଡଳ କର୍ଣ୍ଣେ ଗଳାରେ ଶୋଭେ ରତ୍ନହାର
କରେ କେୟୂର ମୁକୁଟ ଶିରେ ବିରାଜଇ ।
ନାନା ରତ୍ନରେ ତାହାର ହାର ଶୋଭା ପାଇ ॥
ଚନ୍ଦ୍ରକାନ୍ତ ମଣିରେ ସେ ପାଉଅଛି ଶୋଭା ।
କଟି ରତ୍ନ ରସନାର ଦାଉ ଦାଉ ପ୍ରଭା ॥
ବାହୁବନ ଅଳଙ୍କାରେ ହୋଇଛି ମଣ୍ଡିତ ।
ଦୂରୁ ଦେଖିଣ ନାରଦ ମୁନି ତପୋବନ୍ତ ॥
ଆସନୁ ଉଠି ଦାନବପତି ବାଣାସୁର ।
ପୁଷ୍ପ ଚନ୍ଦନେ ପୂଜିଲା ମୁନିଙ୍କ ପୟର ॥
ଆସନ ଦେଇ ବୋଇଲା ନିସ୍ତରିଲି ମୁହିଁ ।
ବ୍ରହ୍ମା ସମାନ ମୁନିଙ୍କ ସ୍ୱନେତ୍ରେ ଦେଖିଲଇଁ ॥
ସ୍ୱଳଙ୍କାରେ ପାଦଧୂଳି ଦେଲେ ମୋର ପୁରେ
ପାଦ୍ୟ ଅର୍ଘ୍ୟ ଦେଲି ନେଇ ମୁନିଙ୍କ ପୟରେ ॥
ତାହାର ରାଣୀର ନାମ ଅଟେ ଅନୁପମା ।
ରୂପରେ ଗୁଣରେ ତାକୁ ନାହିଁ ଯେ ଉପମା ॥
ସୁଲକ୍ଷଣୀ ପତିବ୍ରତା ଅପୂର୍ବ ସୁନ୍ଦରୀ ।
ନାରଦମୁନିଙ୍କ ପାଦଦୁଇ ବନ୍ଦିକରି ॥
ବୋଇଲେ ହେ ମୁନିବର ତୁମ୍ଭେ ବ୍ରହ୍ମାସୁତ ।
ବହୁତ ଦିନେ ତୁମ୍ଭର ମିଳିଲା ସାକ୍ଷାତ ॥
ଏ ଦିବ୍ୟ ଆସନେ ବସ ଅନୁଗ୍ରହ କରି ।
ବହୁତ ଆଦର ପୂଜାକରି ସେ ସୁନ୍ଦରୀ ॥
ବୋଇଲା ବିନୟେ ମୃଦୁ ମଧୁର ବଚନେ ।
କଥାଏକ ପଚାରିବି ଆହେ ମହାମୁନେ ॥
ମର୍ତ୍ତ୍ୟଲୋକରେ ଅଛଇ କହ କେଉଁ ବ୍ରତ ।
ଆବର ନିୟମ ଦାନ ତପ ତପୋବନ୍ତ ॥
ଯହିଁରେ କି ଦେବଗଣ ହୋଇବେ ପ୍ରସନ୍ନ ।
ଏମନ୍ତ ଶୁଣି ନାରଦ ବୋଇଲେ ଯେ ଜନ ॥
ତିଳ ଧେନୁ ଦାନ ଦିଏ ସୁବେଦୀ ବିପ୍ରକୁ ।
ସେ ତିଳ ଦାନର ଫଳ କହୁଛି ତୁମ୍ଭଙ୍କୁ ॥
ସାଗର ସହିତ ନବଦ୍ୱୀପା ମହୀ ଦେଲା ।
ସେ ତିଳ ଧେନୁ ଦାନରେ ଏ ଦାନୀ ହୋଇଲା
ସେ ଦାନ ଗୋଟି ସକଳ କାମନା ଦିଅଇ ।
କୋଟି ସୂର୍ଯ୍ୟ ତୁଲ୍ୟ ଏକ ବିମାନ ସେ ପାଇ ॥
ତହିଁରେ ବସି ବିହାର କରେ ଚିରକାଳ ।
ଆବର ଶୁଣ କଦଳୀବନ ଦାନ ଫଳ ॥

ଆମ୍ବ କଦମ୍ବ କଇଥ ଚମ୍ପା ଯେ ଅଶୋକ ।
ଏ ଆଦି ବନର ଦାନ ଫଳ ଜାଣ ଏକ ॥
ଦ୍ରୁମଦାନ କଲା ଲୋକ ବଟେଁ ଷଡ଼ଦିନ ।
ମହୀମଣ୍ଡଳରେ ସେହି ହୁଅଇ ରାଜନ ॥
ଶୁକ୍ଳ ଅଷ୍ଟମୀ ଆଉର ଶୁକଳ ଚତୁର୍ଥୀ ।
ଶୁକଳ କୃଷ୍ଣ ପକ୍ଷର ଦ୍ୱାଦଶୀ ଯେ ତିଥି ॥
ମହାବିଷୁବ ସଂକ୍ରାନ୍ତି ଦିବସ ଆଉର ।
ଜଳବିଷୁବ ସଂକ୍ରାନ୍ତି ହୁଏ ଯେ ଦିନର ॥
ତନ୍ନିଦିନକୁ ସ୍ମରଣ କରଇ ଯେ ତିଥି ।
ଏ ସବୁ ପୁଣ୍ୟଦିବସ ଜାଣ ତୁଗୋ ସତ ॥
ଯେ ସବୁ ନାରୀଏ ପୁଣ୍ୟଦିନମାନ ଖୋଜି ।
ଉପବାସରେ ରହନ୍ତି ଧର୍ମ କର୍ମ ତେଜି ॥
ସେ ବ୍ରତ ଧର୍ମର ଫଳେ ସ୍ୱର୍ଗେ ସେ ବସନ୍ତି ।
ଏଥିରେ କିଛି ସନ୍ଦେହ ନାହିଁ ଜାଣ ସତ ॥
କାଳର ଭୟ ତାହାଙ୍କୁ ନ ଲାଗଇ ପୁଣି ।
ତାଙ୍କ ଦେହୁ ପାପ ସବୁ ଛାଡ଼ିଯାଏ ରାଣୀ ॥
ଦୁଃଖ ଶୋକହିଁ ତାହାଙ୍କୁ ନ ପାରଇ ଛୁଇଁ ।
କହିଲି ଏ ଦିନମାନ ତୁମ୍ଭଙ୍କୁ ବୁଝାଇ ।
ତୁମ୍ଭର ଯହିଁରେ ଇଚ୍ଛା ତାହା ତୁମ୍ଭେ କର ।
ରାଣୀ ନାରଦଙ୍କ କଥା ଶୁଣି ପୁନର୍ବାର ॥
ବୋଇଲେ ହେ ମୁନିବର ତୁମ୍ଭେ କୃପାକର ।
ଏଥୁ କିଛି ଦାନ ଘେନ କରନ୍ତୁ ପ୍ରସାଶ ॥
ସୁବର୍ଣ୍ଣ ମଣି ରତନ ବସ୍ତ୍ର ଆଭରଣ ।
ଆଉର ଦୁର୍ଲଭ ଦ୍ରବ୍ୟ ବାଛି ବାଛି ଘେନ ॥
ଯାହା ମାଗିବ ତା ଦେବି ତୁମ୍ଭ ହସ୍ତେ ମୁନି ।
ନାସ୍ତି ନ କର ଗୋସାଇଁ ତୁମ୍ଭେ ମହାଜ୍ଞାନୀ ॥
ତୁମ୍ଭଙ୍କୁ ଦେଲେ ସନ୍ତୋଷ ହୋଇବେ ହରି ହର
ଏମନ୍ତ ଶୁଣି ବୋଇଲେ ତାଙ୍କୁ ମୁନିବର ॥
ପରମ ଧନ ମୋହର ଅଟଇ ପ୍ରକୃତ ।
ଆମ୍ଭେ ଯେ ପ୍ରସନ୍ନ ହେଉ ପାଇଲେ ଭକତ ॥
ରାଜ୍ୟ ଧନ ବାଡ଼ ବୃତ୍ତି କି ହେବ ଆମ୍ଭର ।
ନିର୍ଧନୀ ବ୍ରାହ୍ମଣ ଦେଖି ତୁମ୍ଭେ ଦାନକର ॥
ନାରଦ ତାଙ୍କୁ ଏରୂପେ ଉପଦେଶ ଦେଇ ।
ସବୁ ନାରୀଙ୍କ ମନକୁ ବହ୍ଲ କରାଇ ॥
ଗଗନ ମାର୍ଗରେ ଗଲେ ହୋଇ ଅନ୍ତର୍ଦ୍ଧାନ ।
ରାଣୀ ସହିତ ବାଣର ପୁର ନାରୀଗଣ ॥
ବ୍ରତ ଉପବାସାଦିରେ ଆସକତ ହୋଇ ।
ବଢ଼ିଲା ବିଷୟୁ ଲୋଭ ବେଢ଼ି ଦେଲ ତହିଁ ॥
ସତ୍ୟ ଧର୍ମ ନାଶିଗଲା ତେଣୁ ତାହାଙ୍କର ।
ଏ ଛିଦ୍ର ଗୋଟି ଘୋଟିଲା ବାଣ ଅନ୍ତଃପୁର ॥
ଏ ଛିଦ୍ର ଯୋଗୁଁ ବାଣର ମନ୍ତ୍ର ଛିଦ୍ର ହେଲା ।
ଯାହା ପଚାରିଲ ତୁହେ ଶୁଣ କୁନ୍ତୀବାଳା ॥
ନର୍ମଦା ନଦୀର ତୀରେ ଦେବ ମହେଶ୍ୱର ।
ମହେଶ୍ୱର ତୀର୍ଥ ନାମେ ଯେଉଁ ତୀର୍ଥ ସାର ॥
ତହିଁ ତ୍ରିପୁର ନାଶିବା ଚିନ୍ତାରେ ରହିଲେ ।
ମହାମନ୍ଦର ଗିରିକି ଧନୁ ହର କଲେ ॥
ବାସୁକି ନାଗକୁ କଲେ ସେ ଧନୁରେ ଗୁଣ ।
ବୈଶାଖ ନାମରେ ଥିଲା ଏକ ମହାଦ୍ରୁମ ॥
ଯୁଦ୍ଧକୁ ଆଜ୍ଞା ହୋଇଲା ସେହି ମହାବୃକ୍ଷ ।
ସେ ଧନୁରେ ବାଣ ହେଲେ ବିଷ୍ଣୁ ପଦ୍ମାକ୍ଷ ॥
ଅଗ୍ନି ଦେବତା ହୋଇଲେ ସେ ଧନୁର ଫଳ
ସେ ଧନୁର ମୁଠା ହେଲେ ଦେବତା ଅନଳ ॥
ଦେବମୟ ନାମେ ରଥ ନିର୍ମାଣିଲେ ହର ।
ଋଗବେଦ ଗ୍ରହଅଶ୍ୱ ହେଲେ ସେ ରଥର ॥
ଚନ୍ଦ୍ର ସୂର୍ଯ୍ୟ ଦୁଇ ଚକ୍ର ଅକ୍ଷ ଚନ୍ଦ୍ରଧର ।
ଗନ୍ଧର୍ବଗଣ ହୋଇଲେ ସେ ଚକ୍ରର ଅର ॥
ସେ ଧନୁ ସର୍ବାଙ୍ଗେ ଇନ୍ଦ୍ର ଦେବତା ରହିଲେ
କୁବେର ବାଣ ଦକ୍ଷିଣ ହସ୍ତ ଆବୋରିଲେ ॥
ବାମହସ୍ତେ କାଳ ଯମ ଏ ବେନି ଦେବତା ।
ସାରଥି ହୋଇ ସେ ରଥ ଚଳାଇଲେ ଧାତା
ସେହି ସର୍ବ ଦେବମୟ ରଥେ ତ୍ରିପୁରାରି ।
ବସିଲେ ନିଶ୍ଚଳ ହୋଇ ଗିରିବେଶଧର ॥
ସହସ୍ରେ ବରଷ ଏହିରୂପେ ଗଲା ବହି ।
ଏକଦୃଷ୍ଟିରେ ତ୍ରିପୁର ଗଣିକ ସେ ରହି ॥
ଭିନ୍ନ ଭିନ୍ନ ହୋଇ ଶୂନ୍ୟେ ଭ୍ରମଇ ତ୍ରିପୁର ।
ତେଣୁ ବିନ୍ଧି ନ ପାରନ୍ତି ଶର ସୁରେଶ୍ୱର ॥
ତିନି ପୁର ଯାକ ଏକ ହେଲେ ଯେତେବେଳେ
ଧନୁରେ ଯୋଚିଲେ ତିନି ଶର ଏକାବେଳେ ॥
ଛାଡ଼ନ୍ତେ ଗର୍ଜି ଗଗନ ଘୋଟିଲା ସେ ଶର ।
ଭେଦିଲା ବାଣାସୁରର ତିନିଗୋଟି ପୁର ॥
ଯେତେକ ସ୍ତ୍ରୀ ସେ ପୁର ମଧ୍ୟେ ଥିଲେ ରହି ।
ତାହାଙ୍କ ତେଜ ହରିଲା ତିନି ଶର ଯାଇ ॥

ତେଜ ହରନ୍ତେ ତାହାଙ୍କ ବଳ ଗଲା ନାଶ ।
ଘୋର ଉତ୍ପାତ ଚିହ୍ନରେ ଉପୁଜିଲ ତ୍ରାସ ॥
ଛଡ଼ା ବାଣ ହେଲ ତିନି ପୁରର ଯେ କାଳ ।
ସେ ପୁରରେ ଥିବା ଶତ୍ରୁ ପଡ଼ିଲା ସକଳ ॥
କଷ୍ଟ ପାଇ ଅଛି ହାସେ ଏତେ ଚେତଣେ ହେଲେ
ଉତ୍ପାତ ତାରା ଯେସନେ ଗଗନ ମଣ୍ଡଳେ ॥
ହର କ୍ରୋଧେ ପୁରଜନ ବଳ ବୁଦ୍ଧି ହର ।
ଅଚେତ ହୋଇ ପଡ଼ଣ ପୁର ନର ନାରୀ ॥
ଶଯ୍ୟାରେ ଥାଇ ଦେଖିଲେ ବହୁ କୁସ୍ୱପନ ।
ତେଣୁ ମତ ବିହ୍ୱଳରେ ହେଲ ଛନ ଛନ ॥
ସମ୍ବର୍ତ୍ତକ ନାମେ ବାୟୁ ବହିଲ ସେ କାଳେ ।
ଯେ ବାୟୁ ଘୋଟ ରହିଛି ଯୁଗାନ୍ତ ଅନଳେ ॥
ସେ ଅଗ୍ନି ମିଶା ପବନ ବହ ଖରତରେ ।
ପୋଡ଼ିଲ ଉତ୍ତମ ଦ୍ରବ୍ୟ ମାନ ଘରେ ଘରେ ॥
ବୃକ୍ଷ ଯେତେ ଥିଲ ତହିଁ ସବୁ ଉଠେ ଜଳ ।
ସମ୍ବର୍ତ୍ତ ବାୟୁ ପ୍ରବଳେ ବହେ ଭଳ ଭଳ ॥
ହୋଇଲେ ଅତି ବ୍ୟାକୁଳ ତହିଁ ଥିବା ଜନ ।
ହଜିଗଲ ତାହାଙ୍କର ବୁଦ୍ଧି ବଳ ଜ୍ଞାନ ॥
ପିଉଲା ପଶ ରହଣ କଟିଲ ହାହାକାର ।
କଞ୍ଚୁ କଞ୍ଚୁ ଲଗିଗଲ ନିଆଁ ଘର ଦ୍ୱାର ॥
ଚଉର ଆଡ଼ ଘେର ନିଆଁ ଜଳଇ ପ୍ରଖରେ ।
ଉଦ୍ୟମ ହୀନ ହୋଇଲେ ସକଳେ କାତରେ
ବୃକ୍ଷ ବଗର ଯେ ପଶୁ ପକ୍ଷୀ ଯାନ୍ତି ପୋଡ଼ ।
ଗ୍ରାମ ଗୃହ ପୋଡ଼ିଯାଏ ଉଠେ ଘୋର ରଡ଼ ॥
ରୁଅ ବାଉଁଶ ଫୁଟନ୍ତି ହସ୍ତିଏ ଗର୍ଜନ୍ତି ।
ଚେଁଏ ଚେଁଏ ହୋଇ ପକ୍ଷୀ ରଡ଼ି ଯେ ଛାଡ଼ନ୍ତି
ହମ୍ବା ରାବ ଭୟଙ୍କର ଗାଈ ବାଛୁରୀର ।
ବେଙ୍କୁଁ ବେଳ ଭୟଙ୍କର ଅନଳ ପ୍ରଖର ॥
ମଣି ଶିଳ ପ୍ରାୟ ଅଗ୍ନି ଦିଶେ ଜକଜକ ।
ସହସ୍ର ଶିଖା ବିସ୍ତାର ଜଳଇ ପାବକ ॥
ପଳାଶ ଫୁଲ ପରାୟ ରଙ୍ଗବର୍ଣ୍ଣ ପୁର ।
ଗଗନ ଘୋଟିଲ ଧୂଆଁ ହୋଇଲ ଅନ୍ଧାର ॥
ନାକ କାନେ ଧୂଆଁ ପଶି ନିଶ୍ୱାସ ରୁନ୍ଧିଲ ।
ଏ ଘରୁ ସେ ଘରକୁ କେ ଯାଇ ନ ପାରିଲ ॥
ହର କୋପାନଳେ ଦଗ୍ଧ ହୋଇ ପୁରଜନ ।
ସନ୍ତାପିତ ହୋଇ ଦୁଃଖେ କରନ୍ତି ରୋଦନ ॥

ମନ୍ଦ ଆଡ଼େ ଜଳ ଉଠେ ପୋଡ଼ି ଯାଏ ପୁର ।
ସହସ୍ର ସହସ୍ର କୋଟି କୋଟି କୋଠାଘର ॥
ଦୋମହଲ ତିମହଲ ସପତ ମହଲ ।
ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଭୂମିରେ ପଡ଼ିଲ ॥
ନାନାରତ୍ନରେ ଚିତ୍ରିତ ଅନେକ ବିମାନ ।
ଜଳି ଦିଶଇ ବିଦ୍ୟୁତ ବିଜୁଳି ସମାନ ॥
ସୁନ୍ଦର ଗୃହ ସକଳ ହୋଇଲ ପାଉଁଶ ।
ବନ ଉପବନ ଘାଟ ହାଟ ସବୁ ବାସ ॥
ଦେଉଳ ମଣ୍ଡପ ଧାନ୍ୟ ଘର ଘୋଡ଼ାଶାଳ ।
ହାତୀ ଶାଳ ଓଟଶାଳ ଦେବତାଙ୍କ ଆଳ ॥
ସବୁ ସ୍ଥାନ ପୋଡ଼ିଯାଏ ଅବାରଣ ନିଆଁ ।
ଦେବେ ରୋଦନ କରନ୍ତି ନ ସହିଣ ଧୂଆଁ ॥
ଅଗ୍ନିର ତାପ ନ ସହି ପାରି ଦେବଗଣ ।
ଦେଖନ୍ତି ଅଙ୍ଗାର କୁଡ଼ ପର୍ବତ ସମାନ ॥
ତ୍ରାହି ତ୍ରାହି ପ୍ରଭୁ ଶମ୍ଭୁ ଶଙ୍କର ମହେଶ ।
ଏମନ୍ତେ ଶିବଙ୍କ ସ୍ତୁତି ପଢ଼ିଲେ ଅଶେଷ ॥
ଧରାଧରି କୁଣ୍ଡୀ କୁଣ୍ଡୀ ହୋଇଣ ଅସୁରେ ।
ପୋଡ଼ି ମରନ୍ତି ଅନଳେ ପର୍ବତ ଆକାରେ ॥
ଶତ ଯୋଜନ ବିସ୍ତାର ଯେଉଁ ପୋଖରୀର ।
ଅମଳାନ ପଦ୍ମଫୁଲେ ଯେ ଅତି ସୁନ୍ଦର ॥
ହଂସ କାରଣ୍ଡବ ପକ୍ଷୀ ଯହିଁରେ ଖେଳନ୍ତି ।
ସେ ସକଳ ପୋଡ଼ି ଯାଏ ଅଗ୍ନି ନୋହେ ଶାନ୍ତି
ପର୍ବତ ତୁଲ୍ୟ ପ୍ରାସାଦ ମାନ ଭାଙ୍ଗି ପଡ଼ିଲେ ।
କଳା ଦେଖାଯାନ୍ତି ମେଘତୁଲ୍ୟ ଗିରିମାଳେ ॥
ସ୍ତ୍ରୀ ବାଳକ ଯୁବତୀ ଯୁବା ବୁଢ଼ା ଯେତେ ।
ଗୋରୁ ପକ୍ଷୀ ଘୋଡ଼ା ହାତୀ ମାର୍ଜାର ସହିତେ
ସକଳେ ପୋଡ଼ି ମରନ୍ତି କେହି ନ ଉବୁରେ ।
ଶୋଇ ଥିବା ପତି ପତ୍ନୀ ଶଯ୍ୟା ସହିତରେ ॥
ପୁଅ ଝିଅ ଘେନି ଶୋଇ ଥିବା ରମଣୀଏ ।
ପିତା ପୁତ୍ରେ ପୋଡ଼ିଯାନ୍ତି ନ ବଞ୍ଚେ ଗୋଟିଏ ॥
ଏମନ୍ତେ ତ୍ରିପୁର ପୁର ପୋଡ଼ନ୍ତି ଶଙ୍କର ।
ପୁର ମଧ୍ୟେ ଅଗ୍ନି ଜଳି ଉଠିଲ ପ୍ରଖର ॥
କେତେ କେତେ ଅପସରା ପୋଡ଼ିଗଲେ ତହିଁ
ଅପୂର୍ବ ଯୁବତୀ ସବୁ ତହିଁ ଥିଲେ ରହି ॥
ତପତ କାଞ୍ଚନ ପିଠା ସୁନା ପ୍ରାୟ ବର୍ଣ୍ଣ ।
ବକ୍ଷରେ ମୁକୁତା ହାର ମାଳ ଭଳ ଭଳ ॥

ଦୀର୍ଘନେତ୍ରୀ ସୁରୁଦ୍ଧାସୀ କୋକିଳ ବଚନା ।
ଏରୂପେ ସେ ପୁରରେ ଥିଲେ ବହୁତ ଅଙ୍ଗନା ॥
ଜଳ ପାଇଁ ସାହାଇଲେ ଆହେ ଧର୍ମରାୟେ ।
ଏକସଖୀ ପୋଡ଼ି ଯିବା ଦେଖି ସଖୀ କହେ ॥
ହେ ଅନଳ ଦେବତା ତୁ ନକର ବଗ୍ଭର ।
ଏ ଅତି ବାଳକି ଶିଶୁ ଶତ୍ରୁ କି ତୋହର ॥
ଯେବେ ଶତ୍ରୁ ସାଧିବାକୁ ବଳିଛି ତୋ ମନ ।
ଅପକାରି ଜନ ବାଛି କରି ତୁ ଦହନ ॥
ପୁରୁଷେ ସିନା ତୋ ଶତ୍ରୁ ନୁହନ୍ତି ତ ନାରୀ ।
ଶୁଦ୍ଧ ପଞ୍ଜରରେ ଥାନ୍ତି ଦିବସ ଶର୍ବରୀ ॥
ଶୁଦ୍ଧ ପିଞ୍ଜର କୋକିଳା ଏ ନାରୀ ବୋଲନ୍ତି ।
କି ଦୋଷେ ଏହାଙ୍କୁ ପୋଡ଼ ଦେଉ ସ୍ୱାହାପତି ॥
ପାପ ଲାଜକୁ ତୋହର ଟିକେ ନାହିଁ ଭୟ ।
ତେଣୁ ତୋର ଦୟାନାହିଁ ଏଡ଼େ ତୁ ନିର୍ଦ୍ଦୟ ॥
ସ୍ତ୍ରୀଙ୍କ ଠାରେ କି କୋପ କରନ୍ତି ପୁରୁଷେ
କେମନ୍ତେ ତୁ ପୁଣି ପୂଜାପାଉ ଦେଶେ ଦେଶେ
ଦେବତାବୋଲିକେମନ୍ତେବୋଲିବାନାତୋତେ
ନିଷ୍ଠୁର ରାକ୍ଷସ ତୁହି ଅଟୁ ଆମ୍ଭ ମତେ ॥
ପବିତ୍ର କି ଅପବିତ୍ର ବିଗ୍ଭର ତୋ ନାହିଁ ।
ସ୍ତ୍ରୀ ଅବଧ ଜଗତେ ନ ଜାଣୁ କି ତୁହି ॥
ତହିଁରେ ପୁଣି ଗର୍ଭିଣୀ ସ୍ତ୍ରୀ କରୁ ନାଶ ।
ଶିଶୁ ହତ୍ୟା ଭ୍ରୂଣହତ୍ୟା କରୁ ରେ ବାଳାଶ ॥
ବାଳାଶ ବୋଲି ମୂର୍ଖକୁ ତୁ ତହିଁରୁ ଊଣା ।
ତିଳେ ମାତ୍ର ନାହିଁ ଯେଣୁ ତୋଠାରେ କରୁଣା
ମୂର୍ଖହିଁ ସରଳ ହୁଏ ବେଳ କାଳ ଜାଣେ ।
ଦେବତା ହୋଇ ତୁ ଏଡ଼େ ନିଦାରୁଣ ପୁଣି ॥
ଶୁଣି ନାହୁଁ କିରେ କର୍ଣ୍ଣେ ଶାସ୍ତ୍ରର ବଚନ ।
ପୁରୁଷ ମାତ୍ରେ ରଖିବେ ଯତ୍ନେ ସ୍ତ୍ରୀଜନ ॥
ଏ କଠୋର ବ୍ୟବହାର ନାହିଁ ତାଙ୍କ ପ୍ରତି ।
ଦୟା କରୁଣା ସରଳ ପାତ୍ର ସ୍ତ୍ରୀ ଜାତି ॥
ରେ ପାବକ ମୂର୍ଖ ମ୍ଳେଚ୍ଛ ଯତ୍ନେ ରଖେ ସ୍ତ୍ରୀ
ତୁ ତାଙ୍କଠାରୁ ଅଧମ ଅଟୁ ଦୁରାଚାରୀ ॥
ଆରେ ଦୁଷ୍ଟ ମନ୍ଦଭାଗ୍ୟ ପାପୀ ହୁତାଶନ ।
ଆରେକ ସ୍ତ୍ରୀ କହନ୍ତି କରୁଣ ରୋଦନ ॥
ବାଳକେ ପୋଡ଼ି ଯିବାର ଦେଖି କହେ କୋପେ
ସନ୍ନିପାତ ମତ୍ତ ଯେସନ୍ତେ କହଇ ପ୍ରଳାପେ ॥

କେହି କହେ ଏହି ଅଗ୍ନି ହୋଇଲା ବଳସୀ ।
ବେଳୁ ବେଳ ଦେଖ କିଭଳି ଜିହ୍ୱା ଜିହ୍ୱା କରି ॥
କ୍ରମ ସୋଗସ୍ତି ବଢିଗ ନିନ୍ଦି ନ ମାନଇ ।
କି ଗତି ପାଇବୁ କହ ଆମ୍ଭଙ୍କୁ ତୁ ଦହି ॥
ସ୍ତ୍ରୀଙ୍କ ମୁଖୁଁ ଏମନ୍ତ ଶୁଣି ହୁତାଶନ ।
ମୁହିଁ ହୋଇଛି ଏକ୍ଷଣି ପରର ଅଧୀନ ॥
ନ ବୁଝି ନ ଶୁଝି ଯିନା ଦେଉଅଛି ଗାଳି ।
ସତ୍ତ୍ୱର ଆଜ୍ଞାକୁ ମୁହିଁ ସବୁ ବେଳେ ପାଳି ॥
ଦୟା କରିବା ଥାକନ୍ତି ରହିବ କିପରି ।
ତେଣୁ ମୁଁ କୋପେ ପୋଡ଼ଇ କିଛି ନ ବିଗ୍ଭରି
ସିଂହାସନେ ଥାଇ ମହାତେଜା ବାଣାସୁର ।
ଅନଳରେ ପୋଡ଼ି ଯିବା ଦେଖିଣ ତ୍ରିପୁର ॥
ବୋଇଲା ଦେବଙ୍କ ଯୋଗୁ ସରିଲା ସମସ୍ତି ।
ଦୁରାତ୍ମଙ୍କ ହୃଦୟ କ୍ଷୁଦ୍ର ଅଟେ ଅତି ।
କରିଛନ୍ତି ସେ ଶଙ୍କର ଛାମୁରେ ଗୁହାରି ।
ତେଣୁ ତପସ୍ୟା କରନ୍ତି ମୋତେ ତ୍ରିପୁରାରି ॥
ଶମ୍ଭୁବିନା କେହି ଏହା କରି ନ ପାରଇ ।
ଏମନ୍ତ କଥା ମନରେ ପାଇଁ ଦୈତ୍ୟସାଇଁ ॥
ନିତି ଏକ ଶିବ ଲିଙ୍ଗ ପୂଜଇ ଅସୁର ।
ସେ ଶିବଲିଙ୍ଗର ନାମ ତ୍ରିଭୁବନେଶ୍ୱର ॥
ତାହାଙ୍କୁ ଶିରେ ଘେନିଣ ଉଠିଲା ତୁରିତେ ।
ମିତ୍ର ବନ୍ଧୁ ଆଦି ତାର ଥିଲେ ତହିଁ ଯେତେ ॥
ତାଙ୍କୁ ଛାଡ଼ି ବାହାରିଲା ସିଂହଦ୍ୱାର ଡେଇଁ ।
ନଗର ମଣ୍ଡପେ ସେହି ଶିବଲିଙ୍ଗ ଥୋଇ ॥
ଯେତେକ ରାଣୀ ସକଳ ପରିବାରି ଯେତେ ।
ନାନାଦି ବିଚିତ୍ର ରତ୍ନ ତାହାଙ୍କ ସଙ୍ଗତେ ॥
ସେ ମଣ୍ଡପେ ସବୁ ରଖି ଅପୂର୍ବ ରାଜନ ।
ଶିବଙ୍କ ପାଦରେ ରଖି ମନ ଚଇତନ ॥
କର ଦୁଇ ଶିରେ ଦେଇ କରେ ଶିବସ୍ତୁତି ।
ତୋଟକଛନ୍ଦରେ ଶ୍ଳୋକପଢେ ଦୈତ୍ୟପତି ॥
ପ୍ରାକୃତ ଭାଷା ଛନ୍ଦରେ କହୁଅଛି ତାହା ।
ମୁଁ ତୋହର ବଧ ଯୋଗ୍ୟ ଯେବେ ଉମାନାହା
ତେବେ କୋପାନଳେ ବେଗେ ପୋଡ଼ିଦିଅ ମୋତେ
ସେଥି ପାଇଁ ମୋର ଭୟନାହିଁ କଦାଚିତେ ॥
ଏ ଲିଙ୍ଗ ଗୋଷ୍ଠ ମୋହର ଜୀବନର ଧନ ।
ଏହାକୁ ତୁ ରଖାକର ଆହେ ତ୍ରିଲୋଚନ ॥

ଶ୍ରଦ୍ଧା ଭକତରେ ନିତ ଏ ଲିଙ୍ଗ ପୂଜଇ ।
ତେଣୁ ମୁଁ ତୋତେ ଏହାର ନିମନ୍ତେ କହଇ
ଏହାକୁ ନ ମାର ମୋତେ ମାର ମହାଦେବ ।
ମୁଁ ମଲେ ପଛକେ ପୋଡ଼ ମନ୍ତ୍ରୀ ଏହି ଶବ ॥
ଏହାପାଇଁ ତେଜି ପାରେ ଇଷ୍ଟବନ୍ଧୁ ଘର ।
ଏ ମୋହର ଇଷ୍ଟ ଦେବ ଜାଣ ଉମାସାଇଁ ॥
ଆହେ ମହାଦେବ ମୋର ଏତିକି ମାଗୁଣି ।
ଜନ୍ମେ ଜନ୍ମେ ପୂଜୁଥିବ ଏ ଲିଙ୍ଗକୁ ପୁଣି ॥
ତୋର ପଦତଳେ ଥିବ ଭକତି ମୋହର ।
ତୋର ପାଦ ପାଉଥିବ ଜନ୍ମ ଜନ୍ମାନ୍ତର ॥
ଏ ପ୍ରାର୍ଥନା ଗୋଷ୍ଠା ଯେବେହେଁ ନୋହିବ ବିଫଳ
ଏମନ୍ତ କହି ଦନୁଜ ହୋଇଣ ବିକଳ ॥
ନମସ୍ତେ ନମସ୍ତେ ଶିବଶଙ୍କର ହେ ଭବ ।
ସର୍ବଂକର ମହେଶ୍ୱର ଭୀମ ଭଇରବ ॥
କୁସୁମ ଆୟୁଧ ଦେହ ବିନାଶନ କାରୀ ।
ନମୋ ନମୋ ତ୍ରିପୁର ଅନ୍ଧକ ଅନ୍ଧକାର ॥
ନମୋ ନମୋ ଅର୍ଦ୍ଧନାରୀଶ୍ୱର ରୂପଧର ।
ହେ ପ୍ରମଦାପ୍ରିୟ ତୋର ପାଦେ ନମସ୍କାର ॥
ନମସ୍ତେ ହେ ହୟ କପି ସିଂହ ଗଜମୁଖ ।
ଅତି ହ୍ରସ୍ୱମୁଖ ତୁମ୍ଭେ ଅତି ଦୀର୍ଘମୁଖ ॥
ଗଣ ଗଣ ସିଦ୍ଧଗଣ ବନ୍ଦି ତୋ ଚରଣ ।
ପଶିଲି ପଶିଲି ନାଥ ତୋ ପାଦେ ଶରଣ ॥
ଗାଳି ମନ୍ଦ ଦେବା କଥା ତୋତେ ନ ଯୋଗାଇ
ଆଜ ଏ ଅପୁରେ ଅଗ୍ନି ତାପକୁ ନ ସହି ॥
ପୀଡ଼ା ପାଇ ଗାଳିମନ୍ଦ ଦେଉଛନ୍ତି ଯେତେ ।
ସହି ନ ହୁଅଇ ତାହା କର୍ଣ୍ଣରେ ପଶନ୍ତେ ॥
ଭକତରେ ନାଥ ତୋତେ କରନ୍ତି ପ୍ରଣାମ ।
ହେ ଅଚଳ ଚନ୍ଦ୍ରକଳା ଧର ଗୁଣ ଧାମ ॥
ଆହେ ଦେବଦେବ ତୋର ପାଦେ ନମସ୍କାର ।
ଧନ ଦାରା ପୁତ୍ର ନାତି ବନ୍ଧୁ ସହୋଦର ॥
ଯେଝି ସୁମରଣା କରୁଥାଏ ନିତି ତୋତେ ।
ବହୁତ ଦେହ ଧରି ମୁଁ ଅଛି ଅନ୍ତବ୍ୟସ୍ତେ ॥
ଏସନେ ନରକେ ଯାଇଁ ପଡ଼ିବି ହେ ନାଥ ।
ଯେଣୁ ପାପରେ ମୋ ମନ ଦଉଡ଼େ ନିରତ ॥
ପୁଣ୍ୟ କର୍ମକୁ ସେ ଆଉ ଫେରି ନ ଆସଇ ।
ସଂସାର ଚକ୍ରରେ ପଡ଼ି ନିରତେ ଭ୍ରମଇ ॥
ଭ୍ରମ ମୋତେ ଗ୍ରାସିବାରୁ ବୁଦ୍ଧିଭ୍ରଂଶ ମୋର ।
କୁବୁଦ୍ଧି ନାଶି ସୁବୁଦ୍ଧି ଦିଅ ଶୂଳଧର ॥
ଯେ ଜନ ଇନ୍ଦ୍ରଜିତ ଗାଥି ସ୍ତବମନ୍ତ୍ର ଗାଇ ।
ଶ୍ରଦ୍ଧା ଭକତରେ ଏହି ତୋଟକ ପଢ଼ଇ ॥
ବାଣାସୁରକୁ ଯେମନ୍ତେ ରୁଦ୍ର ଦେଲେ ବର ।
ତେମନ୍ତେ ସୁଖେ ରହିବ ସେହି ନିରନ୍ତର ॥
ଏମନ୍ତେ ତୋଟକ ସ୍ତବ ବାଣ ମୁଖୁଁ ଶୁଣି ।
ପ୍ରସନ୍ନ ହୋଇ ବୋଇଲେ ଦେବ ଶୂଳପାଣି ॥
ଭୟ ନାହିଁ ଭୟ ନାହିଁ ଭୟ ନାହିଁ ତୋତେ ।
ପୁତ୍ର ଦାରା ବନ୍ଧୁ ଭୃତ୍ୟ ନାତିଙ୍କ ସହିତେ ॥
ସୁବର୍ଣ୍ଣ ପୁରେ ତୁ ଯାଇ ରହ ବାଣାସୁର ।
ଆଜିଠାରୁ ହେଲୁ ମୋର ବରେ ତୁ ଅମର ॥
ଦେବଗଣ ନ ପାରିବେ କେବେ ତୋତେ ମାରି
ତିନି ଭୁବନର ଲୋକେ ଯିବେ ଯୁଦ୍ଧେ ହାରି ॥
ହେ ପାଣ୍ଡୁନନ୍ଦନ ଧର୍ମ ଏହା କହି ହର ।
ଅନେକ ପ୍ରକାରେ ପୁଣି ଯାଚି ଦେଲେ ବର ॥
ଅକ୍ଷୟ ଅବ୍ୟୟ ହେଲ ଶିବଙ୍କର ବରେ ।
ଜଳୁଥିଲା ସମ୍ବର୍ତ୍ତକ ଅଗ୍ନି ଯେ ପ୍ରଖରେ ॥
ପ୍ରଚଣ୍ଡ ସପତ ଗୋଟି ଶିଖା ଭୟଙ୍କର ।
ସେହି ସେ ଅଗ୍ନିର ଜିହ୍ୱା ଜାଣ ନୃପବର ॥
ନିଭି ଲହି ଲହି କରି ବୁଲଇ ପୋଡ଼ଇ ।
ତାହାକୁ ଗର୍ଭେ ଭରିଲେ ଦେବ ଉମାସାଇଁ ॥
ବାଣର ତୃତୀୟ ପୁର ଗୋଟି ସ୍ୱର୍ଣ୍ଣମୟ ।
ସେ ପୁରେ ବାଣ ରହିଲା ହୋଇଣ ଅଭୟ ॥
ରୁଦ୍ର ତେଜରେ ସେ ପୁର ଭ୍ରମଇ ଗଗନେ ।
ଯକୁତ୍ତ୍ରେ ବାଣ ରହିଅଛି ସେ ଭୁବନେ ॥
ପ୍ରଥମ ଦ୍ୱିତୀୟପୁର ହୋଇଲା ଅଙ୍ଗାର ।
ଦୁଇ ଭାଗ କଲେ ତାକୁ ଦେବଦେବ ହର ॥
ପ୍ରଥମ ପୁର ଅଙ୍ଗାର ପର୍ବତେକ ହେଲା ।
ଶ୍ରୀ ଶୈଳ ନାମ ସେହି ଦନୁ ବୋଲାଇଲା ॥
ଅମର କଣ୍ଟକ ଗିରି ଦ୍ୱିତୀୟ ଯେ ପୁର ।
ଅତି ପବିତ୍ର ଏ ଦୁଇ ଗୋଟି ପର୍ବତର ॥
ଶୁଣ ଆଉ କୋଟି କୋଟି ଶିବଲିଙ୍ଗ ଅଛି ।
ତହୁଁ ଅଗ୍ନି ଜଳ ଉଠିବାରୁ ଧର୍ମ ବସ୍ତି ॥
ସେ ଦନୁ ସେ ଶିବଲିଙ୍ଗ ନାମ ଜାଲେଶ୍ୱର ।
ଗଗନ ଘୋଟିଲା ଅଗ୍ନି ହୋଇଣ ପ୍ରଖର ॥

ଘୋର ବାଣ ଶିବଙ୍କର ଘୋଟେନ୍ତ ଗଗନେ ।
ନ ସହି ପାରି ଅନ୍ତର ହୋଇଲେ ଦେବଗଣେ ॥
ସେ ଶର ଧରି ଭୂମିରେ ପୋତିଲେ ଶଙ୍କର ।
ସେ ଦିନ ସେ ତୀର୍ଥନାମ ହୋଇଲା ମହେଶ୍ୱର ॥
ହେ ପାଣ୍ଡୁନନ୍ଦନ ଯେବେ ଯାଇଁ କେହି ଜନ ।
ଅମର କଣ୍ଟକ ଗିରି ମାଡ଼ଇ ସ୍ୱଜନ ॥
ସହସ୍ର କୋଟି ବରଷ ସ୍ୱର୍ଗପୁରେ ରହି ।
ତିରିଶ କୋଟି ବରଷ ରହେ ଶିବା ତହିଁ ॥
ଚଉଦଭୁବନ ଭୋଗ କରି ସାରି ପୁଣି ।
ଜନମ ହୋଇ ପୃଥ୍ୱୀରେ ହୁଏ ନୃପମଣି ॥
ଏକ ଛତ୍ରର ପତାକା ମହୀରେ ଉଡ଼ାଇ ।
ଅମର କଣ୍ଟକ ଗିରି ପୁଣ୍ୟ ଦେଲ କହି ॥
ଗ୍ରହଣ କାଳେ ଅମର କଣ୍ଟକେ ଯେ ଥାଇ ।
ଅଶ୍ୱମେଧ ଯଜ୍ଞ ଫଳୁଁ ଦଶଗୁଣ ପାଇ ॥
ମିଛ କଦାପି ନୁହଇ ପୁରାଣର ବାଣୀ ।
ମହେଶ୍ୱର ଦରଶନ କରେ ଯେଉଁ ପ୍ରାଣୀ ॥
ନିଶ୍ଚେ ସ୍ୱର୍ଗ ସୁଖପାଇ ହେ ଧର୍ମ ନୃପତି ।
ଗ୍ରହଣରେ ସ୍ନାନ ଦାନ ଶ୍ରାଦ୍ଧ ଯେ କରନ୍ତି ॥
ତହିଁରେ ଯେ ଫଳହୁଏ ଅମର କଣ୍ଟକେ ।
ପାଦ ଦେଲ ମାତ୍ରେ ସେହି ଫଳପାନ୍ତି ଲୋକେ
ଅଧିକ କି କହିବଇ ତୁମ୍ଭର ଅଗ୍ରତେ ।
ପୁଣ୍ଡରୀକ ଯଜ୍ଞ କଲେ ଫଳହୁଏ ଯେତେ ॥
ଅମର କଣ୍ଟକେ ଯେଉଁ ଶିବ ଜାଳେଶ୍ୱର ।
ତହିଁ ସ୍ନାନ କଲେହୁଏ ସେ ଫଳ ତାହାର ॥
ଯେ ତହିଁ ମରେ ତାହାର ଜନ୍ମ ଆଉ ନାହିଁ ।
ଗ୍ରହଣେ ଯେ ସ୍ନାନ ଦାନ କରି ମରେ ତହିଁ ॥
ତାହାର ଫଳ କହୁଛୁଁ ଶୁଣ ସାବଧାନେ ।
ଅମର ନାମେ ଦେବତା ହୋଇ ସେହି ସ୍ଥାନେ
ମହାପ୍ରଳୟ ପର୍ଯ୍ୟନ୍ତେ ରୁଦ୍ର ଲୋକେ ଥାଇ ।
ଅମରେଶ୍ୱର ଦେବତା ବାସ ସ୍ଥାନ ସେହି ॥
ସେ ଜଳେ ଯେ ପର୍ବତେ କିବା ସେହି ସ୍ଥଳେ
କୋଟି କୋଟି ଋଷି ତପ କରନ୍ତି ନିଶ୍ଚଳେ ॥
ଅମର କଣ୍ଟକ ତୀର୍ଥ ପରମାଣ ଶୁଣ ।
ଦୀର୍ଘ ପ୍ରସ୍ଥରେ ଅଟଇ ଏକ ଏକ ଯୁଣ ॥
ସକାମୀ ହେଉ ନିଷ୍କାମୀ ହୋଉ କେହି ଜନ ।
ନର୍ମଦାର ସେହି ଜଳେ କରେ ସ୍ନାନ ଦାନ ॥
ସକଳ ପାପରୁ ତରି ଯାଇ କଇଳାସେ ।
ଶିବ ଅନୁଚର ହୋଇ ରହେ ଶିବ ପାଶେ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ତ୍ରିପୁର
ଦହନଂ ନାମ ସପ୍ତମୋଽଧ୍ୟାୟଃ ।



# ଅଷ୍ଟମ ଅଧ୍ୟାୟ ।

କାବେରୀ ନର୍ମଦା ସଙ୍ଗମ ମହାତ୍ମ୍ୟ ।

ପଚାରିଲେ ଯୁଧିଷ୍ଠିର ହେ ନାରଦ ମୁନି ।
ତୁମ୍ଭେ ସକଳ ପୁରାଣେ ଅଟ ମହାଜ୍ଞାନୀ ॥
କଥାଏକ ପଚାରିବି କହିବ ବୁଝାଇ ।
ଯହିଁରେ କି ମୋର ମନ କଷ୍ଟ ପାରି ଯାଇ ॥
ଶୁଣିଣ ଲୋକେ ପାପରୁ ହୋଇବେ ମୁକତ ।
ପାପ ଛଡ଼ାଇବେ ପାପୀ ଯାଇଁ ଶତ ଶତ ॥
ଏମନ୍ତ ତୀର୍ଥର କଥା କହ ମୋ ଅଗ୍ରତେ ।
ନର୍ମଦା ଯାଇଁ ମିଶିଛି କାବେରୀ ସଙ୍ଗତେ ॥
ସେ ସ୍ଥାନ ମହିମା ମୋତେ କହ ମୁନିବର ।
ଶୁଣିବାକୁ ତାହା ମନ ବଳିଛି ମୋହର ॥
ନାରଦ କହିଲେ ଶୁଣ ଧର୍ମ ନରପତି ।
କୁବେର ଦେବତା ଯେହୁ ଯକ୍ଷଙ୍କର ପତି ॥
କରିଥିଲେ ମହାଯଜ୍ଞ ପାଇଥିଲେ ଫଳ ।
ସାମ୍ରାଜ୍ୟ ପାଇଲେ ଯେହ୍ନେ ତୋଷ ମହୀପାଳ
ତାଠାରୁ ଅଧିକ ଫଳ ତହିଁରୁ ମିଳଇ ।
କହୁଅଛି ଯୁଧିଷ୍ଠିର ଶୁଣ ମନଦେଇ ॥
କାବେରୀ ନଦୀ ନର୍ମଦା ସଙ୍ଗମର ତୀରେ ।
ଯକ୍ଷରାଜ କୁବେର ଯେ ବସି ଆସନରେ ॥
ମହାଘୋର ତପ କଲେ ଅତି କଷ୍ଟ ସହି ।
ଦେବ ବର୍ଷମାନଙ୍କ ଶତ ବର୍ଷ ଗଲା ବହି ॥
ତାହାଠାରେ ମହାଦେବ ହୋଇଲେ ସୁପ୍ରସନ୍ନ ।
ବୋଇଲେ କି ବରେ ଇଚ୍ଛା ମାଗ ହେ ବହନ
କୁବେର ବୋଇଲେ ଆହେ ଦେବଦେବ ହର
ଯେବେ ପ୍ରସନ୍ନ ହୋଇଲ ଦିଅ ଏହି ବର ॥
ସବୁ ଯକ୍ଷଙ୍କ ଉପରେ ହେବି ଅଧିପତି ।
ଏହି ବରଗୋଟି ମୋତେ ଦିଅ ପଶୁପତି ॥

ଦେହବନ୍ଧ ଅନ୍ତର୍ଦ୍ଧାନେ ଗଲେ ତ୍ରିଲୋଚନ ।
ବର ପାଇଣ ଆନନ୍ଦ କୁବେରଙ୍କ ମନ ॥
ଯକ୍ଷଙ୍କ ମଧ୍ୟେ ମେଳନ୍ତେ ସବୁ ଯକ୍ଷେ ଆସି ।
ଖଣ୍ଟିଲେ ତାହାଙ୍କ ପାଦେ ଦେଇ ଧନ ରାଶି ॥
ନରପତି ପଦେ ତାହାଙ୍କୁ କଲେ ଅଭିଷେକ ।
ସେଦିନୁ ହୋଇଲେ ସକଳ ଧନରେ ନାୟକ ॥
ସେତୀର୍ଥ ଗୋଟି ସକଳ ପାପ ବିନାଶଇ ।
ଯେ ମାନବ ଏହି କଥା ଗୋଟା ନ ଜାଣଇ ॥
ଠିକରେ ପଡ଼ିବ ନଟଷ୍ଟ ଜାଣ ନୃପବର ।
ଏଣୁ ଶିରେ ଜାହ୍ନବୀ ସେ ତୀର୍ଥର ନୀର ॥
କାବେରୀ ନର୍ମଦା ଏହି ଦୁଇଗୋଟି ନଈ ।
ସ୍ନାନ ଦାନେ ମହା ପୁଣ୍ୟଫଳ ଉପୁଜାଇ ॥
ପୂଜିବ ବୃଷଭ ଧ୍ୱଜ ସ୍ନାନ କରି ସାରି ।
ଅଶ୍ୱମେଧ ଯଜ୍ଞକଲା ଫଳ ପାଇକରି ॥
କଇଳାସେ ଗଉରବ ପାଇବ ସେ ଜନ ।
ଅନଳ ଜାଳ ତେଜଇ ଯେ ତହିଁ ଜୀବନ ॥
କିବା ଉପବାସ ବ୍ରତେ ଜୀବନ ହାରଇ ।
ପୁନରପି ଏ ସଂସାରେ ଜନ୍ମ ନ ହୁଅଇ ॥
ଏ କଥା ଶଙ୍କର କଟାକ୍ଷ କହିଛନ୍ତି ମୋତେ ।
ତା ପାଇଁ ସ୍ୱର୍ଗୁଁ ବିମାନ ଆସଇ ତୁରିତେ ॥
ଉତ୍ତମ ସ୍ତ୍ରୀ ତାହାର ସେବାରେ ରହନ୍ତି ।
ରୁଦ୍ର ତୁଲ୍ୟ ଆନନ୍ଦରେ ଭୋଗ ପାଏ ନିତି ॥
ଷାଠିଏ ସହସ୍ର ବର୍ଷ ରୁଦ୍ର ଲୋକେ ରହେ ।
କି ଅବା ଷାଠିଏ କୋଟି ବର୍ଷ ସ୍ୱର୍ଗ ପାଏ ॥
ଯହିଁ ତହିଁ ରହିଲେ ସେ ଏକା ପୁରନ୍ଦର ।
ପୁଣ୍ୟମନ୍ତ ଗଲେ ତହିଁ ଆସଇ ସତ୍ୱର ॥
ଉତ୍ତମ ନୃପତି କୁଳେ ଜନମ ହୁଅଇ ।
ଧର୍ମବନ୍ତ ରାଜା ହୋଇ ସୁଖଭୋଗ ପାଇ ॥
ସେ ତୀର୍ଥର ଜଳ ପାନ କରେ ଯେହୁ ଜନ ।
ଚାନ୍ଦ୍ରାୟଣ ବ୍ରତ ଫଳ ପାଇ ସେହିକ୍ଷଣ ॥
ସେ ପବିତ୍ର ଜଳ ପିଇ ପାପକୁ ଛଡ଼ାଇ ।
ସୁଖ ଭୋଗ ପାଇ ସ୍ୱର୍ଗ ଭୁବନରେ ରହି ॥
ଗଙ୍ଗା ଯମୁନା ସଙ୍ଗମ ତୀର୍ଥେ ଯେଉଁ ଫଳ ।
ସେ ଫଳ ଦିଏ କାବେରୀ ନର୍ମଦାର ଜଳ ॥
ପବିତ୍ର ତୀର୍ଥ ସେ ମହା ଫଳ ପ୍ରସବଇ ।
ସର୍ବ ପାପ ବିନାଶଇ ଧର୍ମ ନରସାଇଁ ॥

ତୀର୍ଥେକ ଅଛି ନର୍ମଦା ନଦୀର ଉତ୍ତରେ ।
ପତ୍ରେଶ୍ୱର ତୀର୍ଥ ବୋଲି ବୋଲନ୍ତି ସଂସାରେ ॥
ଯୋଜନେକ ଦୀର୍ଘ ପ୍ରତି ପବିତ୍ର ସେ ସ୍ଥାନ ।
ସକଳ ପାପ ତହିଁରେ ହୁଅଇ ଦହନ ॥
ସେ ତୀର୍ଥରେ ସ୍ନାନ କଲେ ଦେବଙ୍କ ସଙ୍ଗତେ
ବିହରେ ଷାଠିଏ ସହସ୍ର ବର୍ଷ ପର୍ଯ୍ୟନ୍ତେ ॥
ଆନନ୍ଦରେ ବନ ମଧ୍ୟରେ କାମରୂପୀ ହୋଇ ।
ପୂର୍ବେ ରାବଣ ନନ୍ଦନ ମେଘନାଦ ଯାଇ ॥
ସେ ତୀର୍ଥରେ ତପକରି ହୋଇଲା ଇନ୍ଦ୍ରଜିତ ।
ମେଘ ରବ ନାମେ ଅଛି ଆଉ ଏକ ତୀର୍ଥ ॥
ସେ ତୀର୍ଥେ ମେଘ ଗର୍ଜନ ଶବଦ ଶୁଭଇ ।
ମେଘନାଦ ନାମେ ଏକ ଗଣ ଯାଇଁ ତହିଁ ॥
ସେ ତୀର୍ଥରେ ତପକରି ପାଇଥିଲେ ବର ।
ବ୍ରହ୍ମାବର୍ତ୍ତ ନାମେ ତୀର୍ଥ ଅଛି ନୃପବର ॥
ସେ ତୀର୍ଥରେ ବ୍ରହ୍ମା ରହିଥାଇ ଅନୁବ୍ରତେ ।
ଯେ ଜନ ସ୍ନାନ କରଇ ଯାଇ ସେହି ତୀର୍ଥେ ॥
ବ୍ରହ୍ମଲୋକରେ ସେ ଜନ ଗଉରବ ପାଇ ।
ଅଙ୍ଗାରେଶ୍ୱର ନାମରେ ତୀର୍ଥେକ ଅଛଇ ॥
ନିଦ୍ରା ଆହାର ମୈଥୁନ ତେଜି କେହି ଜନ ।
ସେ ତୀର୍ଥ ଜଳରେ ପଶି କରେ ମହାସ୍ନାନ ॥
ସକଳ ପାପ ଛଡ଼ାଇ ରୁଦ୍ର ଲୋକେ ବସେ ।
ଉତ୍ତମ କପିଳା ତୀର୍ଥ ଅଛି ତାର ପାଶେ ॥
ତହିଁ ସ୍ନାନ କଲା ଲୋକ ଆହେ ନୃପସାଇଁ ।
ଗୋରୁଦାନ ଦେଲା ଫଳ ତହିଁରେ ସେ ପାଇ
କାମାକ୍ଷୀ ନାମରେ ତୀର୍ଥ ଆରେକ ଅଛଇ ।
ତହିଁ ସ୍ନାନ କଲାଲୋକ ଗୋଲୋକେ ବସଇ ॥
ନିରତେ ସେ ତୀର୍ଥେ ଥାନ୍ତି ଦେବଋଷି ଗଣ ।
ତହିଁ ସ୍ନାନ ଦାନ କରି ତହୁଁ ଯିବ ପୁଣ ॥
କୁଣ୍ଡଳେଶ୍ୱର ତୀର୍ଥରେ କରିବ ଯେ ସ୍ନାନ ।
ଉମା ମହେଶ୍ୱରଙ୍କର ସେହି ବାସ ସ୍ଥାନ ॥
ସ୍ନାନକଲା ଲୋକ ଦେବେ ଅବଧ୍ୟ ହୁଅଇ ।
ପିପ୍ପଳେଶ୍ୱର ତୀର୍ଥକୁ ତହୁଁ ପୁଣି ଯାଇ ॥
ତହିଁ ସ୍ନାନକଲା ଲୋକ ପାତକ ଛଡ଼ାଇ ।
ରୁଦ୍ର ଲୋକରେ ବହୁତ ଗଉରବ ପାଇ ॥
ବିମଳେଶ୍ୱର ତୀର୍ଥକୁ ତହୁଁ ଯିବ ପୁଣି ।
ପବିତ୍ର ଅତି ନିର୍ମଳ ସେ ତୀର୍ଥର ପାଣି ॥

ଦେବଙ୍କ ଶିଖାପଲ୍ଲବ ଅଛନ୍ତି ଈଶ୍ୱର ।
ତହିଁ ମଲ୍ଲେଶ୍ୱର ପାଏ ରୁଦ୍ରଙ୍କର ବର ॥
ତହୁଁ ପୁଷ୍କରଣୀ ତୀର୍ଥେ କରିବ ଯେ ସ୍ନାନ ।
ସ୍ନାନ କଲା ମାତ୍ରେ ପାଏ ଇନ୍ଦ୍ରର ଆସନ ॥
ରୁଦ୍ରଙ୍କ ଦେହୁଁ ନର୍ମଦା ହୋଇଛି ବାହାର ।
ଚରାଚର ପ୍ରାଣୀଙ୍କି ସେ କରଇ ଉଦ୍ଧାର ॥
ଦେବ ଦେବ ମହେଶ୍ୱର କହିଛନ୍ତି ମୋତେ ।
ମୋ ଦେହୁଁ ସମ୍ଭୂତା ଏହି ନର୍ମଦାର ସ୍ରୋତେ ॥
ସ୍ନାନ କଲା ବେଳେ ଯେବେ ପଢ଼ିବ ଏ ସ୍ତୁତି ।
ପାତକ ନାଶି ପାଇବ ସେ ପରମ ଗତି ॥
ସର୍ବପାପହରା ତୁହି ଅଟୁ ଗୋ ନର୍ମଦା ।
ତୋତେ ସମସ୍ତେ ପ୍ରଣାମ କରନ୍ତି ସର୍ବଦା ॥
ଦେବ ଗନ୍ଧର୍ବେ ପଢ଼ନ୍ତି ନିରତେ ତୋ ସ୍ତୁତି ।
ଅପସରା ତୋ ପଦ୍ମରେ କରନ୍ତି ପ୍ରଣତି ॥
ନମସ୍ତେ ଗୋ ପୁଣ୍ୟଜଳା ତୁହି ଆଦି ନଈ ।
ଶଙ୍କର ଦେହରୁ ତୁ ଗୋ ଆସି ଅଛୁ ବହି ॥
ବରାନନା ଧର୍ମଭୃତା ନମସ୍ତେ ଗୋ ତୋତେ ।
ଦେବ ଋଷିଗଣ ତୋତେ ବନ୍ଦନ୍ତି ଯେ ନିତ୍ୟେ ॥
ସର୍ବ ପବିତ୍ରପାବନି ତୋତେ ନମସ୍କାର ।
ଜଗତ ଜନ ପୂଜନ୍ତି ତୋତେ ନିରନ୍ତର ॥
ଏ ନର୍ମଦା ସ୍ତୋତ୍ର ଗୋଟି ଯେ ନିତ୍ୟ ପଢ଼ଇ
ବ୍ରାହ୍ମଣ ହୋଇଥିଲେ ସେ ବେଦବିଦ୍ୟା ପାଇ
କ୍ଷତ୍ରିୟ ପଢ଼ିଥିଲେ ହୁଏ ଯୁଦ୍ଧରେ ବିଜୟୀ ।
ଶୂଦ୍ର ପଢ଼ିଲେ ଉତ୍ତମ ଗତିକି ଲଭଇ ॥
ଅନ୍ନକଷ୍ଟ ଜନେ ଅନ୍ନ ମିଳଇ ବହୁତ ।
ନିର୍ଧନୀକି ଧନ ମିଳେ କହିଲୁ ଏ ସତ ॥
ଏ ନର୍ମଦା ସ୍ତୁତି ନିତ୍ୟ ପଢ଼ନ୍ତି ଶଙ୍କର ।
ତେଣୁ ପବିତ୍ର ଅଟଇ ଏ ନଦୀର ନୀର ॥
ବ୍ରହ୍ମହତ୍ୟା ମହାପାପ ଯାଇ ଏହା ଜଳେ ।
ଗୋପୀନାଥ ବୋଲେ ଜନେ ପଢ଼ ସ୍ନାନ କାଳେ

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ନର୍ମଦା
କାବେରୀ ସଙ୍ଗମ ମାହାତ୍ମ୍ୟଂ ନାମ
ଅଷ୍ଟମୋଽଧ୍ୟାୟଃ ।

---

# ନବମ ଅଧ୍ୟାୟ ।

## ନର୍ମଦା ଭୃଗୁଆଦି ତୀର୍ଥମାହାତ୍ମ୍ୟ ।

କହିଲେ ନାରଦ ମୁନି ଶୁଣ ହେ ରାଜନ ।
ବ୍ରହ୍ମା ସହିତ ଯେତେକ ଋଷି ତପୋଧନ ॥
ସେ ଦିନୁ ଆଜ ପର୍ଯ୍ୟନ୍ତେ ନର୍ମଦା ସେବନ୍ତି ।
ଶୂଳ ଖସିପଡ଼ିବାରୁ ତହିଁ ପଶୁପତି ॥
ସେ ତୀର୍ଥର ପୁଣ୍ୟ ମୁଖେ କହିଛନ୍ତି ଆପେ ।
ତୀର୍ଥ ନାମ ଶୂଳ ଭେଦ ଦେଲେ ଅନୁରୂପେ ॥
ସେ ମହାତୀର୍ଥର ଫଳ ସବୁଠୁଁ ବହୁତ ।
ସ୍ନାନ କରି ଦେବପୂଜା କଲେ ତହିଁ ନିତ୍ୟ ॥
ସହସ୍ର ଗୋ ଦାନ ଫଳ ପାଇ ସେହି ଜନ ।
ଆପେ ତରଇ ତାରଇ ସର୍ବ ପ୍ରାଣୀଗଣ ॥
ତିନିଦିନ ଉପବାସ କରି ଯେବେ କେହି ।
ମହାଦେବଙ୍କୁ ପୂଜଇ ଜନ୍ମ ତାର ନାହିଁ ॥
ତହୁଁ ଭୀମେଶ୍ୱର ତୀର୍ଥେ ଯିବ ହେ ରାଜନ ।
ତହୁଁ ନର୍ମଦେଶ୍ୱରକୁ କରିବ ଗମନ ॥
ତହୁଁ ଆଦିତ୍ୟେଶ୍ୱରକୁ ଯିବ ପୁଣ୍ୟବନ୍ତ ।
ଘୃତ ମଧୁ ଦେଇ ପୂଜା କରିବ ଏକାନ୍ତ ॥
ମଲ୍ଲିକେଶ୍ୱର ତୀର୍ଥକୁ ସେଠାରୁ ଯାଇ ।
ଆପଣା ଜନ୍ମକୁ ତହିଁ ସଫଳ କରାଇ ॥
ତହୁଁ କରୁଣେଶ୍ୱରଙ୍କୁ ଦର୍ଶନ କରିବ ।
ଉତ୍ତମ ନୀରଜେଶ୍ୱର ଦେବଙ୍କୁ ପୂଜିବ ॥
ନନ୍ଦୀ ଆୟତନ ତୀର୍ଥ କଲେ ଦରଶନ ।
ସବୁ ତୀର୍ଥ ଫଳ ତହିଁ ପାଇବ ରାଜନ ॥
ଯହିଁ ଦେବାସୁରଙ୍କର ହୋଇଥିଲା ରଣ ।
ତାର ନାମ କୋଟି ତୀର୍ଥ ଆଟେ ହେ ଧର୍ମିଗଣ ॥
ପ୍ରତାପୀ ବଳିଷ୍ଠ କୋଟି ଦାନବ ଏ ତୀର୍ଥେ ।
ସଂଗ୍ରାମେ ମରି ପଡ଼ିଲେ ଦେବତାଙ୍କ ହସ୍ତେ ॥
ସେ କୋଟି ଦାନବ ମୁଣ୍ଡ ରଖି ଏକ ଠାବେ
ଲିଙ୍ଗରୂପେ ବିରାଜିଲେ ପ୍ରଭୁ ଦେବଦେବେ ॥
ସେ ଦିନୁ ତାହାଙ୍କ ନାମ ହେଲା କୋଟୀଶ୍ୱର ।
ସେ ତୀର୍ଥ ତାଙ୍କୁ ଦର୍ଶନ କରି ନୃପବର ॥
ସ୍ୱଦେହେ ସ୍ୱର୍ଗକୁ ଯିବା ଦେଖି ପୁରନ୍ଦର ।
ବଜ୍ରକୀଳା ପୋତି ବାଟ ରୁନ୍ଧିଲା ତାଙ୍କର ॥

କେଣ୍ଟ ସ୍ୱର୍ଗପୁରେ ଲୋକେ ଯାଇ ନ ପାରନ୍ତି ।
ସେଠାରେ ପୂତ ଶ୍ରୀଫଳ ଦାନକୁ ଦିଅନ୍ତି ॥
ଯଥାବିଧି ପୂଜାପାଠ ପ୍ରଦକ୍ଷିଣ କରି ।
ତ୍ରୈଲୋକ୍ୟ ମୋହନ ଭକ୍ତରେ ଶିର ପରେ ଧରି ॥
ସବୁ କାମନା ସଫଳ କରି ମୁଧିଷ୍ଠିର ।
ସୁଖ ଭୋଗ କରେ ହୋଇ ରାଜ ରାଜେଶ୍ୱର ॥
ମରଣ ଅନ୍ତେ ସେ ପୁଣି ରୁଦ୍ର ପୁରେ ଯାଇ ।
ଏ ମର୍ତ୍ତ୍ୟ ମଣ୍ଡଳେ ଆଉ ଜନ୍ମ ତାର ନାହିଁ ॥
କୋଟୀଶ୍ୱର ଦର୍ଶନେ ସ୍ୱର୍ଗପୁରେ ରହେ ।
ପୁଣି ପୃଥିବୀରେ ଜନମି ହୁଏ ମହାରାଜେ ॥
ତ୍ରୟୋଦଶୀ ତିଥିରେ ଯେ ଜନ ତହିଁ ଯାଇ ।
ମହା ଦେବଙ୍କୁ ପୂଜଇ ସ୍ନାନ କରି ତହିଁ ॥
ସବୁ ଯଜ୍ଞ କଲା ଫଳ ପାଇ ହେ ରାଜନ ।
ଅଗସ୍ତ୍ୟ ତୀର୍ଥ ଅଟଇ ସବୁହିଁ ପ୍ରଧାନ ॥
ତହିଁ ସ୍ନାନ କଲାମାତ୍ରେ ପାପ ଯାଇ ଦୂର ।
ବ୍ରହ୍ମହତ୍ୟା ମହାପାପ ଅତି ଭୟଙ୍କର ॥
ସେ ତାକୁ ଛୁଇଁ ନ ପାରି ରହେ ଦୂରେ ଯାଇ
କଦଳୀ ପତ୍ର ପରାଏ ଭୟରେ କମ୍ପଇ ॥
କାର୍ତ୍ତିକ ମାସେ ଯେ ଜନ ଯାଇଁ ସେ ତୀର୍ଥରେ
କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥିରେ ଭକ୍ତରେ ॥
ଅଗସ୍ତ୍ୟ ଈଶ୍ୱର ଶିରେ ଘୃତ ଲଗାଇ ।
ଏକୋଇଶ ପୁରୁଷଙ୍କୁ ସେ ମୋକ୍ଷ କରାଇ ॥
ଶିବଲୋକେ ବସନ୍ତି ସେ ନ ହୁଅନ୍ତି ଚ୍ୟୁତ ।
ଦିଅଇ ସ୍ୱର୍ଣ୍ଣ ପାଦୁକା ଯାନ ଛତ୍ର ଘୃତ ॥
ବିପ୍ରଙ୍କୁ ଭୋଜନ ଦେଲେ ଫଳ କୋଟିଗୁଣ ।
ଦିବ୍ୟସ୍ତମ୍ଭ ତୀର୍ଥକୁ ଯେ ଯିବ ତହୁଁ ପୁଣ ॥
ତହିଁ ସ୍ନାନ କଲା ଜନ ସିଂହାସନ ପାଇ ।
ନର୍ମଦା ଦକ୍ଷିଣ କୂଳେ ତୀର୍ଥକ ଅଛଇ ॥
ତାର ନାମ ଚନ୍ଦ୍ର ତୀର୍ଥ ପାଣ୍ଡୁର ନନ୍ଦନ ।
ଏକରାତ୍ର ଉପବାସେ ରହି ତହିଁ ଜନ ॥
ସ୍ନାନଯାଗ ପୂଜାକରି ଦେବ ଜନାର୍ଦ୍ଦନେ ।
ସହସ୍ରେ ଗୋଦାନ ଫଳ ପାଇ ଇହଜନ୍ମେ ॥
ପରକାଳେ ବିଷ୍ଣୁଲୋକେ ରହଇ ସେ ଜନ ।
ତହୁଁ ଋଷିତୀର୍ଥକୁ ଯେ କରିବ ଗମନ ॥
ତହିଁ ସ୍ନାନ କଲା ମାତ୍ରେ ପାପ ଛାଡ଼ିଯାଏ ।
ଶିବଲୋକରେ ସେ ଜନ ଗଉରବ ପାଏ ॥

ତହୁଁ ନାରଦ ତୀର୍ଥକୁ ଯିବ ହେ ରାଜନ ।
ସେ ତୀର୍ଥ ଗୋଟି ଅଟଇ ପରମ ଶୋଭନ ॥
ସହସ୍ରେ ଗୋଦାନ ଫଳ ପାଇ କଲେ ସ୍ନାନ ।
ସେଠାରୁ ଦେବତୀର୍ଥକୁ କରିବ ଗମନ ॥
ପୂର୍ବରୁ ବ୍ରହ୍ମା ସେ ତୀର୍ଥ ନିର୍ମାଣି ଅଛଇ ।
ତହିଁ ସ୍ନାନ କଲେ ଲୋକ ବ୍ରହ୍ମଲୋକ ପାଇ ॥
ଅମର କଣ୍ଟକ ତୀର୍ଥେ ତହୁଁ ଯିବ ପୁଣି ।
ଦେବତାମାନେ ସେ ତୀର୍ଥ ଅଛନ୍ତି ନିର୍ମାଣି ॥
ସହସ୍ର ଗୋଦାନ ଫଳ ମିଳେ କଲେ ସ୍ନାନ ।
ବାମନେଶ୍ୱର ତୀର୍ଥକୁ କରିବ ଗମନ ॥
ସେ ତୀର୍ଥର ଆୟତନ ବୁଲି ଯେ ଦେଖଇ ।
ତତକ୍ଷଣେ ସେ ବ୍ରହ୍ମହତ୍ୟା ପାପ ନିସ୍ତରଇ ॥
ସେ ତୀର୍ଥେ ଅଛନ୍ତି ଯହିଁ ଈଶାନେଶ ହର ।
ମୁକ୍ତିପ୍ରଦ ଋଷି ତୀର୍ଥ ସେହି ନୃପବର ॥
ସେ ସ୍ଥାନେ ଚରଣ ଦେଲେ ମୁକତି ପାଇବ ।
ବଟେଶ୍ୱରଙ୍କୁ ଯେ ତହୁଁ ଦର୍ଶନ କରିବ ॥
ଜନମ ସଫଳ କରି ତହୁଁ ଯିବ ପୁଣି ।
ସର୍ବ ବ୍ୟାଧି ବିନାଶଇ ଯେ ତୀର୍ଥର ପାଣି ॥
ତାର ନାମ ଭୀମେଶ୍ୱର ତୀର୍ଥ ହେ ରାଜନ ।
ସବୁ ଦୁଃଖ ହରି ଯାଇ ତହିଁ କଲେ ସ୍ନାନ ॥
ଉତ୍ତମ ବାମନେଶ୍ୱର ନାମେ ଅଛି ତୀର୍ଥ ।
ସ୍ନାନକଲେ ସବୁ କଷ୍ଟୁ ହୋଇବ ମୁକତ ॥
ଉତ୍ତମ ସୋମତୀର୍ଥକୁ ତହୁଁ ଯାଇ ବେଗେ ।
ସ୍ନାନ କରିବ ସେ ତୀର୍ଥେ ଶ୍ରଦ୍ଧା ଭକ୍ତି ଯୋଗେ
ଚନ୍ଦ୍ର ଦର୍ଶନେ ତକ୍ଷଣେ ଦିବ୍ୟ ଦେହ ଧରି ।
ବହୁକାଳ ଶିବ ପ୍ରାୟେ ଆନନ୍ଦେ ବିହରି ॥
ଷାଠିଏ ହଜାର ବର୍ଷ କୈଳାସେ ରହିବ ।
ଉତ୍ତମ ପିଙ୍ଗଳେଶ୍ୱର ତୀର୍ଥେ ତହୁଁ ଯିବ ॥
ଅହୋରାତ୍ର ଉପବାସେ ତହିଁ କଲା ଜନ ।
ଅତିରାତ୍ର ଯଜ୍ଞଫଳ ପାଇବ ରାଜନ ॥
କପିଳା ଗୋଦାନ କରେ ଯେ ଜନ ସେ ତୀର୍ଥେ
ସେଗାଈ ବାଛୁରୀ ଦେହେ ଲୋମ ଅଛି ଯେତେ
ତେତେ ସହସ୍ର ବରଷ କୈଳାସେ ବସଇ ।
ବହୁତ ପୂଜା ଆଦର ସେଠାରେ ସେ ପାଇ ॥
ସେ ତୀର୍ଥେ ମୃତ୍ୟୁ ଯାହାର ହୁଅଇ ହେ ରାୟ ।
ଯାବତ ଚନ୍ଦ୍ରାର୍କେ ସେହି ହୁଅଇ ଅକ୍ଷୟ ॥

ଆନନ୍ଦରେ ପୁଷ୍ପକ ଭୋଗ କରଇ ସେହି ଜନ ।
ନର୍ମଦା ନଦୀର ତୀରବାସୀ ହୋଇ ରାଜନ ॥
ମଲେ ସେ ସ୍ୱର୍ଗକୁ ଯାନ୍ତି ପୁଣ୍ୟ ତର ପ୍ରାପ୍ତ ।
ପୁଣ୍ୟ ଭାଣ୍ଡେଶ୍ୱର ତୀର୍ଥେ ତହୁଁ ଯିବ ରାୟ ॥
ନାରଦ ତୀର୍ଥ କରଣ ତହୁଁ ପୁଣି ଯିବ ।
କୋଟେଶ୍ୱର ତୀର୍ଥରେ ଯାଇ ସନ୍ଦର୍ଶିବ ॥
ଦଶହରା ଦିନ ସ୍ନାନ କଲେ ଯେତେ ଫଳ ।
ସାତେ ସେ ଫଳ ଦିଅଇ ସେ ତୀର୍ଥର ଜଳ ॥
ତହୁଁ ନନ୍ଦୀ ତୀର୍ଥେ ଯାଇ କରିବ ଯେ ସ୍ନାନ ।
ତା ଠାରେ ନନ୍ଦିକେଶ୍ୱର ସର୍ବଦା ପ୍ରସନ୍ନ ॥
ସୋମଲୋକେ ସେହି ଲୋକ ବହୁ ପୂଜା ପାଇ ।
ବ୍ୟାସ ତୀର୍ଥେ ଦ୍ୱୀପେଶ୍ୱର ଯହିଁ ଛନ୍ତି ରହି ॥
ବ୍ୟାସ ତପୋବନ ସେହି ଜାଣ ନୃପବର ।
ସେ ବାଟ ଦେଇ ବହନ୍ତେ ମହାନଦୀ ନୀର ॥
ହୁଙ୍କାରେ ବ୍ୟାସ ତାହାକୁ କଲେ ନିବାରଣ ।
ଲେଉଟି ଦକ୍ଷିଣ ଦିଗେ ବହିଲା ରାଜନ ॥
ସେ ତୀର୍ଥକୁ ପ୍ରଦକ୍ଷିଣ କଲେ ବ୍ୟାସ ତୋଷ ।
ତାର ମନୋବାଞ୍ଛା ଫଳ ତାକୁ ଦିଅନ୍ତି ବ୍ୟାସ ॥
ଦୀପ୍ତ ବେଦୀ ନାମେ ଏକ ବେଦୀ ଅଛି ତହିଁ ।
ସେ ବେଦୀର ଚଉପାଖେ ଯେ ସୂତା ବେଢ଼ାଇ
ରୁଦ୍ର ପ୍ରାପ୍ତ ସେ ଅକ୍ଷୟ ହୋଇ କ୍ରୀଡ଼ା କରେ ।
ତହୁଁ ଏରଣ୍ଡୀ ତୀର୍ଥକୁ ଯିବ ହେ ସତ୍ୱରେ ॥
ଏରଣ୍ଡୀ ନଦୀ ସଙ୍ଗମ ହୋଇଛି ସେ ଠାବେ ।
ସ୍ନାନ କରନ୍ତି ଯେ ଜନ ଶ୍ରଦ୍ଧା ଭକ୍ତିଭାବେ ॥
ସକଳ ପାପ ତା ଦେହୁ ତତ୍କ୍ଷଣ ପଳାଏ ।
ପାପନାଶିନୀ ବୋଲନ୍ତି ସେ ତୀର୍ଥକୁ ରାୟେ ॥
ଆଶ୍ୱିନ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ।
ସ୍ନାନ କରି ଉପବାସେ ରହେ ସେ ଦିନରେ ॥
ଜଣେ ବିପ୍ରକୁ ଭୋଜନ ଦିଅଇ ସନ୍ତୋଷେ ।
କୋଟି ବିପ୍ରଙ୍କୁ ଭୋଜନ ଦେଲେ ଷଡ଼ରସେ ॥
ଯେ ଫଳ ପାଇ ସେ ଫଳ ମିଳଇ ତାହାକୁ ।
ଯେ ଜନ ଯାଇ ଏରଣ୍ଡୀ ସଙ୍ଗମ ତୀର୍ଥକୁ ॥
ସ୍ନାନ କରଣ ମୃତ୍ତିକା ଲଲାଟେ ଘେନଇ ।
ନର୍ମଦା ଜଳ ଭିତରେ ପଶିଣ ବୁଡ଼ଇ ॥
ସବୁ ପାପ ଝଡ଼ିଯାଇ ଜାଣିଥା ନୃପତି ।
ସେ ତୀର୍ଥକୁ ପ୍ରଦକ୍ଷିଣ ଯେ ଜନ କରନ୍ତି ॥

ତାହାର ପୁଣ୍ୟ ବଦନେ ଅଟଇ ଅକଥନ ।
ସେ ସମସ୍ତ ପୃଥିବୀ ପରିକ୍ରମା କରେ ପ୍ରଦକ୍ଷିଣ ॥
ତହିଁ ଯେ ସୁବର୍ଣ୍ଣ ସିଦ୍ଧାନ୍ତ ତଳ ଲଗାନ୍ତି ।
ସ୍ନାନ କରି ସେ ସୁବର୍ଣ୍ଣ ଯେ ଦାନ ଦିଅନ୍ତି ॥
ତାହାଙ୍କ ବିମାନେ ବସି ଯାଏ ରୁଦ୍ର ପୁରେ ।
ତହିଁ ପୂଜା ପାଇ ଜନ୍ମ ହୁଏ ରାଜାଘରେ ॥
ତହୁଁ ପୁଣି ଇକ୍ଷୁନଦୀ ସଙ୍ଗମେ ମିଳିବ ।
ତହିଁ ଥିବା ଶିବ ଲିଙ୍ଗ ଦର୍ଶନ କରିବ ॥
ସ୍ନାନ କଲେ ସେ ତୀର୍ଥରେ ହେ ଧର୍ମରାଜନ ।
ଗଣପତି ପଦ ତାକୁ ଦେବେ ତ୍ରିଲୋଚନ ॥
ତହୁଁ ସ୍କନ୍ଦ ତୀର୍ଥେ ଯାଇ କରିବ ଯେ ସ୍ନାନ ।
ସେ ତୀର୍ଥ ଜଳ ସକଳ ପାପ ବିନାଶନ ॥
ଆଜନମ କୃତ ପାପୁ ପାଇବ ମୁକତି ।
ତହୁଁ ଅଙ୍ଗୀରସ ତୀର୍ଥେ ଯିବ ହେ ନୃପତି ॥
ସେ ତୀର୍ଥର ମହିମା ଯେ ଅତି ଅଗୋଚର ।
ସହସ୍ର ଗୋଦାନ ଫଳ ଦିଏ ତାର ନୀର ॥
ସ୍ନାନ କଲା ଜନ ରୁଦ୍ରଲୋକେ ପୂଜା ପାଇ ।
ତହୁଁ ଲାଙ୍ଗଳ ତୀର୍ଥକୁ ଯାଇ ନରସାଇଁ ॥
ସବୁ ପାପ ଛଡ଼ାଇବ କରି ତହିଁ ସ୍ନାନ ।
ସପତ ଜନ୍ମ ପାପରୁ ପାଇବ ମୋଚନ ॥
ସବୁ ତୀର୍ଥ ମଧ୍ୟେ ସାର ତୀର୍ଥ ବଟେଶ୍ୱର ।
ସହସ୍ର ଗୋଦାନ ଫଳ ଦିଏ ତାର ନୀର ॥
ସେ ତୀର୍ଥରେ ସ୍ନାନ କରି ଯିବ ତହୁଁ ପୁଣି ।
ପରମେଶ୍ୱର ତୀର୍ଥକୁ ଆହେ ନୃପମଣି ॥
ସକଳ ପାପ ଛଡ଼ାଇ ସ୍ନାନ କରି ତହିଁ ।
କଣ୍ଟକ ସେ ତୀର୍ଥେ ରାଜା କୈବଲ୍ୟ ମିଳଇ ॥
ଭଦ୍ର ତୀର୍ଥେ ସ୍ନାନ କରି ଦେବ ତହିଁ ଦାନ ।
ସବୁ ଦାନର ଫଳକୁ କଲେ କୋଟି ଗୁଣ ॥
ସେ ତୀର୍ଥ ପ୍ରଭାବେ ତାହା ପାଇବ ହେ ରାୟ ।
ମନେ ନ କରିବ ତୁମ୍ଭେ କିଛି ଯେ ସଂଶୟ ॥
ଆବର ବିଚିତ୍ର କଥା କହୁଅଛି ଶୁଣ ।
କାମପ୍ରିୟା ସେ ଜଳରେ ବୁଡ଼ି କଲେ ସ୍ନାନ ॥
ଗୋଷ୍ଠୀ ହୋଇବ ତକ୍ଷଣେ ପାର୍ବତୀଙ୍କ ପରି ।
ଅଙ୍ଗାରେଶ୍ୱର ତୀର୍ଥକୁ ଯିବ ଦଣ୍ଡଧାରି ॥
ତହିଁ ସ୍ନାନ କରି ରୁଦ୍ର ଲୋକେ ପୂଜା ପାଇ ।
ଅଙ୍ଗାରକ ଚତୁର୍ଥୀରେ ତହିଁ ଯେ ବୁଡ଼ଇ ॥

ଶ୍ରୀ ବିଷ୍ଣୁର ପାଶ୍ୱରେ ବସଇ ସେ ଜନ ।
ଅଯୋନି ସଙ୍ଗମ ତୀର୍ଥେ କରିବ ଗମନ ॥
ସେ ତୀର୍ଥ ମାତ୍ରକେ ମର୍ତ୍ତ୍ୟ ଜନମ ନୋହିବ ।
ପାଣ୍ଡବେଶ୍ୱର ତୀର୍ଥରେ ସ୍ନାନ ଯେ କରିବ ॥
ସୁର ଅସୁରର ଅବଧ୍ୟ ହୋଇ ସେହୁ ଜନ ।
ଆନନ୍ଦେ ବହୁତ କାଳ ରହି ସେ ରାଜନ ॥
ଅକ୍ଷୟ ବିଷ୍ଣୁଲୋକକୁ ଗମନ କରଇ ।
ସୁଖରେ କ୍ରୀଡ଼ା କରନ୍ତି ମହାଭୋଗ ଖାଇ ॥
ତହୁଁ ଆସି ମର୍ତ୍ତ୍ୟପୁରରେ ଜନ୍ମନ୍ତି ରାଜାଘରେ ।
ତହୁଁ ଯିବ କମ୍ବୋଡକ ଈଶ୍ୱର ତୀର୍ଥରେ ॥
ସୂର୍ଯ୍ୟଙ୍କ ଉତ୍ତରାୟଣେ କରି ତହିଁ ସ୍ନାନ ।
ଯାହା କାମନା କରିବ ପାଇବ ତକ୍ଷଣ ॥
ତହୁଁ ଚନ୍ଦ୍ରଭାଗା ତୀର୍ଥେ ଯାଇକରି ସ୍ନାନ ।
ସୋମଲୋକରେ ବସିବ ପାଇ ବହୁ ମାନ୍ୟ ॥
ତହୁଁ ଶକ୍ରତୀର୍ଥେ ଯିବ ଆହେ ଧର୍ମରାୟ ।
ସେ ତୀର୍ଥ ଗୋଟି ଅଟଇ ଅତି ପୁଣ୍ୟମୟ ॥
ଦେବଗଣ ଘେନି ଇନ୍ଦ୍ର ସେ ତୀର୍ଥ କରଇ ।
ତହିଁ ସ୍ନାନକରି ଦାନ ଦେବ ନରସାଇଁ ॥
ସୁବର୍ଣ୍ଣ ସଙ୍ଗେ କରିବ ନୀଳବୃଷ ଦାନ ।
ସେ ବୃଷ ସର୍ବାଙ୍ଗ ଯାକ ଅଛି ଯେତେ ରୋମ ॥
ତେତେ ସହସ୍ର ବରଷ ସବୁଶି ପୁରୁଷ ।
ଘେନି ସେ ଜନ କରଇ ହରପୁରେ ବାସ ॥
ବଳବନ୍ତ ରାଜାହୋଇ ଜନମଇ ପୁଣି ।
ସେ ତୀର୍ଥର ପ୍ରଭାବେ ସେ ଆହେ ନୃପମଣି ॥
ଧବଳ ବରନ ଅଶ୍ୱ ଉପରେ ସୁଆର ।
ହୋଇ ସୁଖେ ବନସ୍ତରେ ସେହି ନୃପବର ॥
ତହୁଁ ବ୍ରହ୍ମାବର୍ତ୍ତ ତୀର୍ଥେ ଯିବ ନୃପମଣି ।
ଅତି ପବିତ୍ର ଅଟଇ ସେ ତୀର୍ଥର ପାଣି ॥
ଦେବତା ପିତୃ ତର୍ପଣ କରିବ ସେ ତୀର୍ଥେ ।
ଏକରାତ୍ରି ଉପବାସ ରହି ବିଧିମତେ ॥
ସ୍ନାନ ସାରି ପିଣ୍ଡଦେବ ପିତୃ ନାମ ଧରି ।
କନ୍ୟାରାଶିରେ ଆଦିତ୍ୟ ଥାଇ ଦଣ୍ଡଧାରୀ ॥
ପୃଥିବୀରୁ ରସ ଶୋଷେ ସର୍ଯ୍ୟଇ ଯେମନ୍ତେ ।
ଅକ୍ଷୟ ପୁଣ୍ୟ ସଞ୍ଚୟ କରଇ ତେମନ୍ତେ ॥
କପିଳା ତୀର୍ଥ କରିବ ତହୁଁ ଯାଇ ନର ।
ଅତି ଉତ୍ତମ ଅଟଇ ସେ ତୀର୍ଥର ନୀର ॥
ସ୍ନାନ କରିଣ କପିଳା ଗାଈ ଦାନକଲେ ।
ସମଗ୍ର ପୃଥିବୀ ଦାନ ଫଳ ତାକୁ ମିଳେ ॥
ନର୍ମଦେଶ୍ୱର ନାମେ ଯେ ତୀର୍ଥେକ ଅଛଇ ।
ତାହାଁ ନୋହିବ ଏମନ୍ତ ତୀର୍ଥ ନରସାଇଁ ॥
ଅଶ୍ୱମେଧ ଯଜ୍ଞ ଫଳ ପାଇକଲେ ସ୍ନାନ ।
ସକଳ ପୃଥିବୀ ମଣ୍ଡଳେ ବିଖ୍ୟାତ ସେ ଜନ ॥
ନୀରୋଗୀ ଲକ୍ଷଣବନ୍ତ ନୃପତି ହୁଅଇ ।
ନର୍ମଦା ଉତ୍ତର ତୀରେ ତୀର୍ଥେକ ଅଛଇ ॥
ଆଦିତ୍ୟ ଆୟତ ନାମ ଅଟେ ସେ ତୀର୍ଥର ।
ତହିଁ ବିରାଜନ୍ତି ଦେବଦେବ ମହେଶ୍ୱର ॥
ସ୍ନାନକରି ଯଥା ଶକ୍ତି ଦାନ ଦେଲେ ତହିଁ ।
ସେ ଦାନ ଦ୍ରବ୍ୟ ଅକ୍ଷୟ ଫଳକୁ ଦିଅଇ ॥
ଦରିଦ୍ର ବ୍ୟାଧି ପୀଡ଼ିତ ପାପକାରୀ ଜନ ।
ମୋକ୍ଷ ପାଇ ସୂର୍ଯ୍ୟଲୋକେ କରଇ ଗମନ ॥
ମାଘମାସ ଶୁକ୍ଳପକ୍ଷ ସପ୍ତମୀ ତିଥି ।
ନିରାହାରେ ସେ ଆୟତେ କରଇ ବସତି ॥
ରୋଗ ଶୋକ ବ୍ୟାଧି ପୀଡ଼ା ତାକୁ ନ ଲାଗଇ ।
ଅନ୍ଧ ବଧିର କଣା ସେ କଦାପି ନ ହୋଇ ॥
ଭାଗ୍ୟବନ୍ତ ରୂପବନ୍ତ ହୁଅଇ ସୁନ୍ଦର ।
ବଲ୍ଲଭ ହୋଏ ସୁନ୍ଦରୀ ସ୍ତ୍ରୀମାନଙ୍କର ॥
ଏ ତୀର୍ଥର ପୁଣ୍ୟ ଯେତେ ମୁନି ମାର୍କଣ୍ଡେୟ ।
କହିଅଛନ୍ତି ଏରୂପେ ଆହେ ମହାରାୟ ॥
ଯେ ଜନ ଏ ପୁଣ୍ୟ ତୀର୍ଥେ ପାଦ ନ ଦିଅଇ ।
ସବୁ ଧର୍ମ କର୍ମରୁ ସେ ବଞ୍ଚିତ ହୁଅଇ ॥
ତହୁଁ ଯାଇଁ ମାସେଶ୍ୱର ତୀର୍ଥେ ପହୁଞ୍ଚିବ ।
ସ୍ନାନକରି ମଲାଣ୍ଟେ ସ୍ୱର୍ଗରେ ବସିବ ॥
ସ୍ୱର୍ଗରେ ଚଉଦ ଇନ୍ଦ୍ର ହୋଇବାଯାଏ ରହେ ।
ଇନ୍ଦ୍ରପ୍ରାୟ ସୁଖ ଭୋଗ ତହିଁ କରୁଥାଏ ॥
ନାଗେଶ୍ୱର ତପୋବନ ତହୁଁ ଖଣ୍ଡେଦୂରେ ।
ସ୍ନାନକଲେ ଶତବରେ ରହିବ ସେଠାରେ ॥
କ୍ରୀଡ଼ା କରିବ ବହୁତ ନାଗ କନ୍ୟା ଘେନି ।
ତହୁଁ ଯିବ କୁବେରଙ୍କ ଯହିଁ ରାଜଧାନୀ ॥
ସେହି କୁବେର ଭୁବନେ ଛନ୍ତି କାଳେଶ୍ୱର ।
କୁବେରଙ୍କୁ ଦେଇଥିଲେ ପୂର୍ବେ ସେହି ବର ॥
ତହିଁ ସ୍ନାନକଲେ ସବୁ ସମ୍ପଦ ମିଳଇ ।
ତାର ପଶ୍ଚିମ ଦିଗରେ ତୀର୍ଥେକ ଅଛଇ ॥

ତି ନାମ ମରୁତାଳସ୍ଥ ଧର୍ମ ନର୍‌ମାଇଁ ।
ବୁଦ୍ଧିମନ୍ତ ଜନ ସ୍ନାନ କରି ଶୁଚି ହୋଇ ॥
ଯଥା ଶକତି କାର୍ତ୍ତିକ ଅନ୍ନଦାନ ଦେବ ।
ପୁଷ୍ପକ ବିମାନେ ଯାଇ ସେ ଜନ ବସିବ ॥
ମରଣାନ୍ତେ ବାୟୁଲୋକେ କରିବ ଗମନ ।
ସେଠାରୁ ଯମ ତୀର୍ଥକୁ ଯିବ ହେ ରାଜନ ॥
ମାଘମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ।
ସ୍ନାନସାରି ନକ୍ତ ବ୍ରତ କରିବ ଯେ ଜନ ॥
ଯୋନିଜନମ ସେ କେବେ ନୋହିବ ସଂସାରେ
ତହୁଁ ଯେ ସ୍ନାନ କରିବ ଅହଲ୍ୟା ତୀର୍ଥରେ ॥
ସ୍ନାନମାତ୍ରେ ଅପସରୀ ସଙ୍ଗେ କ୍ରୀଡ଼ାକରି ।
ପୂର୍ବେ ଏହି ତୀର୍ଥରେ ଯେ ଅହଲ୍ୟା ସୁନ୍ଦରୀ ॥
ତପ କରିଣ ମୁକତ ହୋଇଲେ ଯୁଧିଷ୍ଠିର ।
ସେଦିନୁ ଏ ତୀର୍ଥ ନାମ ପରମ ଈଶ୍ୱର ॥
ଚୈତ୍ରମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଦିନ ।
କାମଦେବ ଦିନ ତାକୁ ବୋଲନ୍ତି ସୁଜନ ॥
ସେ ଦିନ ଅହଲ୍ୟା ପୂଜା କରିବ ଯେ ତହିଁ ।
ସେ ମାନବ ଯେଉଁ ସ୍ଥାନେ ଜନମି ଅଛଇ ॥
ତହିଁ ସେ ସବୁରି ପ୍ରିୟ ସ୍ତ୍ରୀମାନଙ୍କର ପୁଣି ।
ଶ୍ରୀମନ୍ତ କନ୍ଦର୍ପ ପ୍ରାୟ ହୋଇବ ନୃପମଣି ॥
ତହୁଁ ଅଯୋଧ୍ୟାକୁ ଯିବ ଅଛି ଏକ ତୀର୍ଥ ।
ଇନ୍ଦ୍ରତୀର୍ଥ ପ୍ରାୟ ସେହି ତ୍ରିଲୋକେ ବିଖ୍ୟାତ ॥
ସହସ୍ର ଗୋଦାନ ଫଳ ପାଇ କଲେ ସ୍ନାନ ।
ସେଠାରୁ ସୋମ ତୀର୍ଥକୁ କରିବ ଗମନ ॥
ଗ୍ରହଣ କାଳେ ଯେ ଜନ ସ୍ନାନ କରେ ତହିଁ ।
ସର୍ବ ପାପରୁ ମୁକତ ହୁଏ ନରସାଇଁ ॥
ଏ ତୀର୍ଥ ଗୋଷ୍ଠି ସକଳ ପାପ କ୍ଷୟକାରୀ ।
ବିଖ୍ୟାତ ଏ ସୋମ ତୀର୍ଥ ଜାଣ ନରପୁରୀ ॥
ମହା ଫଳପ୍ରଦ ତୀର୍ଥ ଏହାକୁ ବୋଲନ୍ତି ।
ଚାନ୍ଦ୍ରାୟଣ ବ୍ରତ କରେ ଯେବେ ହୋଇ ବ୍ରତୀ
ସର୍ବପାପ କ୍ଷୟ ଯାଇ ସୋମ ଲୋକେ ବସେ ।
ସୋଢ଼ ମରେ ବୃଦ୍ଧ ମରେ ମରେ ବା ଉପାସେ
ସୋମ ତୀର୍ଥ ମହିମାରୁ ତାର ଜନ୍ମ ନାହିଁ ।
ସେଠାରୁ ସ୍ନାନ କରିବ ସ୍ୱୟମ୍ଭୁତୀର୍ଥେ ଯାଇଁ ॥
ସ୍ନାନ କଲା ମାତ୍ରେ ସୋମ ଲୋକରେ ବସିବ ।
ଅତି ଉତ୍ତମ ପବିତ୍ର ବିଷ୍ଣୁ ତୀର୍ଥ ଯିବ ॥
ଯୋଧନାମରେ ବିଖ୍ୟାତ ଅଛଇ ସେ ତୀର୍ଥ ।
କୋଟି କୋଟି ଅସୁରଙ୍କ ସଙ୍ଗେ ବିଷ୍ଣୁ ନାଥ ॥
ଯୁଦ୍ଧ କରିବାରୁ ବିଷ୍ଣୁ ତୀର୍ଥ ସେ ବୋଲାଇ ।
ଅଧୋଗତି ଉପବାସ ତହିଁ ଯେ ରହଇ ॥
ବ୍ରହ୍ମହତ୍ୟା ପାପ ତାର ଦୂର ହୋଇ ଯାଏ ।
ବିଷ୍ଣୁର ସେ ଅତି ପ୍ରିୟ ହୋଏ ନୃପରାୟେ ॥
ତହୁଁ ତାପସ ଈଶ୍ୱର ତୀର୍ଥ କରି ଯିବ ।
ଅମୋହକ ତୀର୍ଥ ବୋଲି ତା ନାମ ଜାଣିବ ॥
ତହିଁ ପିତୃଙ୍କ ତର୍ପଣ କରିବ ଶ୍ରଦ୍ଧାରେ ।
ଉଆଁସ ପୂର୍ଣ୍ଣିମା ଦିନ ଯେହୁ ଶ୍ରାଦ୍ଧକରେ ॥
ସ୍ନାନ କରି ପିଣ୍ଡଦେବ ପିତୃ ନାମ ଧରି ।
ସେ ଜଳ ଭିତରେ ଅଛି ପାଷାଣର କରୀ ॥
ସବୁଦିନେ ସେ ଶିଳାରେ ହୁଏ ପିଣ୍ଡଦାନ ।
ବଇଶାଖ ମାସେ ପିଣ୍ଡ ଦିଅଇ ଯେ ଜନ ॥
ଯାବତ କାଳ ମେଦିନୀ ତାର ପିତୃଗଣ ।
ରହିବେ ତାବତ କାଳ ଧର୍ମ ନୃପ ଜାଣ ॥
ସିଦ୍ଧେଶ୍ୱର ତୀର୍ଥ ସ୍ନାନ କରିବ ସେ ଯାଇ ।
ଗଣପତି ପାରୁଶରେ ସେ ଜନ ବସଇ ॥
ଜନାର୍ଦ୍ଦନ ଲିଙ୍ଗ ଯହିଁ ସେ ସ୍ଥାନକୁ ଯିବ ।
ସ୍ନାନ କରି ବିଷ୍ଣୁଲୋକେ ସେ ଜନ ବସିବ ॥
ନର୍ମଦା ଦକ୍ଷିଣ କୂଳେ ତୀର୍ଥେକ ଅଛଇ ।
ପରମ ଶୋଭନ ନାମ ସେ ତୀର୍ଥ ବୋଲଇ ॥
ପୂର୍ବେ ତହିଁ କାମଦେବ କଲେ ଘୋରତପ ।
ଦିବ୍ୟ ବର୍ଷେ ସପ୍ତବର୍ଷ ସହି ଅଗ୍ନି ତାପ ॥
ଶଙ୍କରଙ୍କୁ ସେବା କଲେ ଆହେ ଯୁଧିଷ୍ଠିର ।
ସମାଧି ପର୍ବକୁ ସୋଡ ଦେଇଥିଲେ ହର ॥
ଆଉର ଶ୍ୱେତ ପର୍ବକୁ ସୋଡ କୋପାନଳେ ।
ହୁତାଶ ପର୍ବକୁ ପୁଣି ତହୁଁ ସୋଡଦେଲେ
ଶୁକଳ ପର୍ବ ଦଗଧ ହୋଇଲା ହର କୋପେ ।
କୁସୁମ ଈଶ୍ୱର ତୀର୍ଥ ବସିଲେ ଏ ତପେ ॥
ଦେବ ବରଷେ ସହସ୍ର ବର୍ଷ ଗଲା ବହି ।
ଉମାଙ୍କୁ ଘେନି ଶଙ୍କର ମିଳିଲେକ ତହିଁ ॥
ପ୍ରସନ୍ନ ହୋଇ ତାହାଙ୍କୁ ଦେଇଥିଲେ ବର ।
ସେ ସମସ୍ତେ ରହିଛନ୍ତି ସେ ନର୍ମଦା ତୀର ॥
ସେ ତୀର୍ଥ ମହିମାରେ ସେ ହୋଇଲେ ଦେବତା
ଆପେ ଶଙ୍କର ହୋଇଲେ ତୀର୍ଥେ ବରଦାତା ॥

ବୋଇଲେ ଅଛି ହରମ ତୀର୍ଥ ଏ ବୋଲନ୍ତି ।
ଯେମାନେ ଏରୂପେ ବର ମାଗିଥିଲେ ଯନ୍ତି ॥
ଅର୍ଦ୍ଧ ଯୋଜନ ତାହାର ଅଟଇ ପରିପ୍ରତ ।
ଯେ ତହିଁ ସ୍ନାନ କରଇ ହୁଏ ପୁଣି ବ୍ରତ ॥
କନ୍ଦର୍ପ ପରାୟେ ରୁଦ୍ର ଲୋକେ ପାଏ ମାନ୍ୟ ।
ଏଥେ ତପ କରିଥିଲେ ଅଗ୍ନି ଯମ କାମ ॥
ପବନ ପୁଣି ବରୁଣ ଲୋକ ସବୁ ଯେତେ ।
ତପ କରିଥିଲେ ରହି ଏ ଶୋଭନ ତୀର୍ଥେ ॥
ଏହା ନିକଟେ ଅଳପ ଦୂରେ କେହି ଜନ ।
ସ୍ନାନ ଦାନ କରି ଦିଏ ବିପ୍ରଙ୍କୁ ଭୋଜନ ॥
ପିଣ୍ଡ ଦେଇଣ କରଇ ପିତୃ ତରପଣ ।
ଯେ ଅର୍ଦ୍ଧ ଯୋଜନ ମଧ୍ୟେ ହରଇ ଯେ ପ୍ରାଣ
ଯୋଜମରେ ବୃଦ୍ଧମରେ ଉପବାସେ ମରେ ।
ଜନମ ନୁହଇ ଆଉ ପୁଣି ସେ ମର୍ତ୍ତ୍ୟରେ ॥
ଅଯତ୍ନୁ ସ୍ୱର୍ଗ ଭୁବନେ କାଳେ କାଳେ ଥାଇ ।
ବିଧି ବିଧାନରେ ତହିଁ ଯେ ପିଣ୍ଡ ଦିଅଇ ॥
ମହା ଦେବଙ୍କ ପାଦୁକ ନିହୁଡ଼ଇ ଶିରେ ।
ତାର ପିତୃଲୋକେ ତୃପ୍ତ ହୁଅନ୍ତି ତହିଁରେ ॥
ଯାବତ ଚନ୍ଦ୍ରାର୍କେ ସୁଖେ ସ୍ୱର୍ଗରେ ବସନ୍ତି ।
ସୂର୍ଯ୍ୟଙ୍କ ଉତ୍ତରାୟଣେ ହୋଇ କେହି ବ୍ରତୀ ॥
ସ୍ନାନ କରି ଶୁଚି ହୋଇ ସ୍ତ୍ରୀ ବା ପୁରୁଷ ।
ବିଶ୍ୱେଶ୍ୱର ଆୟତନେ କରି ଯାଇ ବାସ ॥
ପ୍ରଭାତେ କରଇ ସେହି ମହାଦେବ ପୂଜା ।
ସେ ଯେବଣ ଗତି ପାଇ ଆହେ ଧର୍ମରାଜା ॥
ସବୁ ଯଜ୍ଞ କଲେ ଲୋକ ନ ପାଇ ସେ ଗତି ।
ତୀର୍ଥ କାଳ ଦେବଙ୍କୁ ଯେ ପୂଜୁଥାଇ ନିତି ॥
ମର୍ତ୍ତ୍ୟ ମଣ୍ଡଳ ସୁନ୍ଦର ଭାଗ୍ୟବନ୍ତ ସେହି ।
ରାଜା ହୋଇ ଭୋଗ କରେ ଆସମୁଦ୍ର ମହୀ ॥
କ୍ଷେତ୍ରପାଳ ମହାକାଳ ଦଣ୍ଡପାଳ ତିନି ।
ଗୃହଗୋଷ୍ଠି ତୀର୍ଥ କର୍ତ୍ତି କୁଣ୍ଡଳକୁ ଘେନି ॥
ଏ ଗୁରୁ ତୀର୍ଥରେ ପାଦ ନ ପଡ଼େ ଯାହାର ।
ତୀର୍ଥ ଯାତ୍ରା କରିବାର ବୃଥା ଜାଣ ତାର ॥
ଜାଣି ଶୁଣି ଏ ତୀର୍ଥର ଏମନ୍ତ ଯେ ଫଳ ।
ନିତ୍ୟ ସ୍ନାନ କରୁଥାନ୍ତି ଦେବତା ସକଳ ॥
ପଢନ୍ତି ସେ ପୁଷ୍ପ ବୃଷ୍ଟି ମୋଚନଙ୍କ ସ୍ତୁତି ।
ଭୂତେଶ୍ୱରଙ୍କ ସ୍ତବ ତା ସଙ୍ଗେ ପଢନ୍ତି ॥

ଗର୍ଗବେଣୀ ତୀର୍ଥକୁ ଯେ କରନ୍ତି ଗମନ ।
ଏ ତୀର୍ଥରେ ପୂର୍ବେ ଦେବଦେବ ଭଗବାନ ॥
ମାରିଲେ ହୁଂକାର ନାଦେ ବହୁତ ଅସୁର ।
ତହିଁ ସ୍ନାନ କଲେ ପାପ ମୁକ୍ତ ହୁଏ ନର ॥
ଶୁକ୍ଳ ତୀର୍ଥର ଜନମ କଥା କହେ ଶୁଣ ।
ଅତି ପୁରୁଣା ଏ କଥା ଧର୍ମ ନୃପଗଣ ॥
ମହାଜ୍ଞାନୀ କଳପୀ ଯେ ମାରକଣ୍ଡ ମୁନି ।
ହିମାଳୟ ଗିରିଶିଖେ ଯାନ୍ତେ ଭ୍ରମି ଭ୍ରମି ॥
ଦେଖିଲେ ତହିଁ ଅପୂର୍ବ ସୁନ୍ଦର ଯେ ସ୍ଥାନ ।
ବିଚିତ୍ର ପାଠ ଶିଳାରେ ହୋଇଛି ମଣ୍ଡନ ॥
ନାନା ଧାତୁରେ ସେ ଚିତ୍ର ବିଚିତ୍ର ହୋଇଛି ।
ତରୁଣ ଆଦିତ୍ୟ ପ୍ରାୟେ ତେଜ ବିକାଶୁଛି ॥
ତପତ କାଞ୍ଚନ ପ୍ରାୟେ ଫୁଟି ଦିଶେ ଶୋଭା ।
ବିଦୁରେ ହୀରା ସ୍ଫଟିକ ପାହାଚର ପ୍ରଭା ॥
ନାନା ପୁଷ୍ପରେ ମଣ୍ଡନ ହୋଇଛି ସୁନ୍ଦର ।
ଝଙ୍କାର ଶୁଣାପରେ ଅତି ମନୋହର ॥
ଦେଖି ଦେଖି ଯାଉଁ ଯାଉଁ ସେ କଳପୀ ମୁନି ।
ବସିଛନ୍ତି ମହେଶ୍ୱର ପାର୍ବତୀଙ୍କି ଘେନି ॥
ପାଶେ ଅଛନ୍ତି କାର୍ତ୍ତିକ ନନ୍ଦୀ ମହାକାଳ ।
ବୀରଭଦ୍ର ଯେ ବସିଛି କରେ ଘେନି ଶୂଳ ॥
ତାଙ୍କୁ ବେଢ଼ି ବସିଛନ୍ତି ଶିବଗଣ ଯେତେ ।
ଦୂରୁ ଦେଖି ମୁନି ତାଙ୍କୁ ଗଲେ ଯୋଡ଼ହସ୍ତେ ॥
ଚରଣ ବନ୍ଦି ବସିଲେ ପାର୍ଶ୍ୱେ ତାଙ୍କର ।
ବୋଇଲେ ହେ ମହାଦେବ ଦେବଦେବ ହର
ତୁମ୍ଭଙ୍କୁ ଦେଖି କଥାଏ ପଡ଼ିଗଲା ମନେ ।
କହିବ ଯେବେ କହିବ ତବ ସନ୍ନିଧାନେ ॥
ଶଙ୍କର ବୋଇଲେ କହ ନ କର ହୋ ଭୀତ ।
ଏମନ୍ତ ଶୁଣି ବୋଇଲେ ମାରକଣ୍ଡ ଯତି ॥
ସବୁରି ଉପରେ ତୁମ୍ଭେ ଅଟ ଦେବଦେବ ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ତୋତେ ବନ୍ଦନ୍ତି ହୋ ଶିବ
ଜ୍ଞାନର ସମୁଦ୍ର ତୁମ୍ଭେ ଯୋଗୀନ୍ଦ୍ର ପୁରୁଷ ।
ସକଳ ଶାସ୍ତ୍ର ତୁମ୍ଭଙ୍କୁ ଜଣା ହେ ମହେଶ ॥
ତୁମ୍ଭ ଶ୍ରୀ ମୁଖ ବଚନ ଅକାଟ ଅଟଇ ।
ତୁମ୍ଭ ହୃଦୟରେ ନାହିଁ କୁଟ ଯେ କପଟ ॥
ଏ ସଂସାର ଚକ୍ରକୁ ଯେ ମୋର ବଡ଼ ଭୟ ।
ଏଥୁ ରକ୍ଷା ପାଇବାର କହିବ ଉପାୟ ॥

ମହେଶ ଉମାଙ୍କୁ କହିବା ଏ ପ୍ରକାରେ ତର ।
କହ ହେ ଭୂତ ଭାବନ ଦେବ ତ୍ରିପୁରାରି ॥
ଈଶ୍ୱର ବୋଇଲେ ଶୁଣ ବିପ୍ର ମହାଜ୍ଞାନୀ ।
ପ୍ରଳୟ ତୋତେ ନ ବାଧେ ତୁଁ ଜଳଶାୟୀ ମୁନି ॥
ଗୁପତ ତୀର୍ଥେକ ଅଛି ସର୍ବ ପାପହର ।
ମହା ପୁଣ୍ୟପ୍ରଦ ସେହି ଶୁକ୍ଳ ନାମ ତାର ॥
ତହିଁ ସ୍ନାନ କଲେ ବ୍ରହ୍ମହତ୍ୟା ପାପ ଯାଏ ।
ବୃକ୍ଷ ଅଗ୍ରେ ବସି ଯେହ୍ନେ ସେ ତୀର୍ଥକୁ ଚାହେଁ ॥
ସକଳ ପାପ ତା ଦେହୁଁ ଦୂର ହୋଇ ଯାନ୍ତି ।
ଭୟରେ ତାର ପାଖକୁ ପଶି ନ ପାରନ୍ତି ॥
ଉମାକୁ ନେଇ ସେ ତୀର୍ଥେ ଥାଇ ମୁଁ ନିରତେ
ତେଣୁ ଏତେକ ମହିମା ବହଇ ସେ ନିତ୍ୟେ ॥
ବଇଶାଖ ମାସ କୃଷ୍ଣ ଚତୁର୍ଦ୍ଦଶୀ ଦିନ ।
କଇଲାସ ତେଜି ସଙ୍ଗେ ନେଇ ମୋର ଗଣ ॥
ସେହି ତୀର୍ଥରେ ରହଇ ଜାଣ ମୁନିବର ।
ଦେବ ଗନ୍ଧର୍ବ କିନ୍ନର ସିଦ୍ଧ ବିଦ୍ୟାଧର ॥
ଅପସରା ନାଗ ଆଦି ଭୂତଯୋନି ଯେତେ ।
ଧର୍ମ ନିମନ୍ତେ ରହନ୍ତି ଯାଇଁ ଶୁକ୍ଳ ତୀର୍ଥେ ॥
ସର୍ବ କାମପ୍ରଦ ନାମେ ବିମାନ ଆରୋହି ।
ରଜକ ମଳ ଛଡ଼ାଏ ଯେହ୍ନେ ବସ୍ତ୍ର ଧୋଇ ॥
ଧଳା କରଇ ତେସନ ଶୁକ୍ଳ ତୀର୍ଥ ଜଳ ।
ଦେହରୁ ପାପ ଛଡ଼ାଇ କରଇ ଶୁକଳ ॥
ଆଜନ୍ମ ସଞ୍ଚିତ ଦେହେ ପାପ ମଳ ଯେତେ ।
ଧୂଅନ୍ତି ସକଳ ଗଣ ସେହି ଶୁକ୍ଳ ତୀର୍ଥେ ॥
ସ୍ନାନ ଦାନେ ମହାପୁଣ୍ୟ ପାଇ ମୁନିବର ।
ନାହିଁ ନୋହିବ ତା ତୁଲ୍ୟ ତୀର୍ଥ ପୁଣ୍ୟସାର ॥
ବୟସ କାଳେ ମାନବ କରେ ଯେତେ ପାପ ।
ଅହୋରାତ୍ର ଉପବାସେ ରହି କଲେ ତପ ॥
ସେ ତୀର୍ଥ ପ୍ରସାଦେ ତାର ସବୁ ଯାଇ କ୍ଷୟ ।
ନାରଦ କହି ଅଛନ୍ତି ଯାହା ମାର୍କଣ୍ଡେୟ ॥
ତପ ବ୍ରତ ଯଜ୍ଞ ଦାନ ଯଜ୍ଞ ଶତ ଶତ ।
ସେ ତୀର୍ଥ ସମାନ ଫଳ ନ ଦେବେ ଏ ସତ୍ୟ ॥
ଏ ତୀର୍ଥରେ ଶିବଲିଙ୍ଗ ପ୍ରତିଷ୍ଠା ଯେ କରି ।
ସେବା ପୂଜା ଖଞ୍ଜି ଦେଇ ଆପେ ସ୍ନାନ ସାରି
କାର୍ତ୍ତିକ ମାସର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ।
ଘୃତ ଢାଳେ ଶିବ ଶିରେ ହୋଇ ଉପବାସୀ ॥
ଆହେ ମୁନି ଏତେକାଳଗ ପୁଣ୍ୟ ତାହାର ।
ଶିବଲୋକରେ ରହନ୍ତି ପାଇଣ ଆଦର ॥
ଋଷିଗଣ ନେଇ ଭୃଗୁ ତହିଁ କରି ସ୍ନାନ ।
ମନୁ ଅତ୍ରି ଯାଜ୍ଞବଲ୍କ୍ୟ ଯମ ତପୋଧନ ॥
ବୃହସ୍ପତି ଆପସ୍ତମ୍ବ ନାରଦ ଗୌତମ ।
କାଶ୍ୟପ ଅଙ୍ଗିରା ସମ୍ବର୍ତ୍ତକ କାତ୍ୟାୟନ ॥
ଏ ସବୁ ମୁନିଙ୍କ ମନ ଧର୍ମେ ଥାଇ ରହି ।
ଏ ସବୁ ଜାଣିମା ପାଇଁ ତାଙ୍କ ମନ ହୋଇ ॥
ଗଙ୍ଗା ଗୟା କୁରୁକ୍ଷେତ୍ର ପ୍ରୟାଗ ପୁଷ୍କର ।
କନଖଳ ଆଦି ତୀର୍ଥ ଅଛି ଯେ ଆବର ॥
ଏ ସବୁ ଗ୍ରହଣ କାଳେ ଫଳଦ ଯେମନ୍ତ ।
ଦିବାରାତ୍ର ଫଳ ଫଳେ ଏହି ଶୁକ୍ଳ ତୀର୍ଥ ॥
ଦର୍ଶନେ ସ୍ପର୍ଶନେ ସ୍ନାନେ ଧ୍ୟାନେ ତପେ ହୋମେ
ଦାନ ଉପବାସ ବାର ବ୍ରତ ଆଦି କର୍ମେ ॥
ମହାଫଳ ମିଳେ ଆହେ ମୁନି ମାର୍କଣ୍ଡେୟ ।
ପୂର୍ବେ ଏ ତୀର୍ଥେ ଚାଣକ୍ୟ ନାମେ ଏକ ରାୟ ॥
ସିଦ୍ଧ ହୋଇଥିଲେ ଏହା କହିଲି ମୁଁ ତେଣୁ ।
ଯୋଜନ ବ୍ୟାପି ଏ ତୀର୍ଥ ହୋଇଲା ସେ ଦିନୁ ॥
ହେ ରାଜନ ଶୁଣିଲ ତ ଭଜନ ଏହାର ।
ନିତ୍ୟ ଏ ତୀର୍ଥ କରନ୍ତି ସିଦ୍ଧ ମୁନିବର ॥
ସ୍ନାନ କଲେ ଲୋକ ଜନ୍ମ ନ ହୁଅଇ ମର୍ତ୍ତ୍ୟେ ।
ଶିବର ଭକତ ଯେତେ ଏହି ଶୁକ୍ଳ ତୀର୍ଥେ ॥
ସ୍ନାନ କରିଣ ବୃଷଭ ଧ୍ୱଜଙ୍କୁ ପୂଜନ୍ତି ।
ନୃତ୍ୟ ଗୀତ ଆଦି ଉପବାସରେ ତୋଷନ୍ତି ॥
ପ୍ରଭାତେ ଯେ ଶୁକ୍ଳ ତୀର୍ଥେ ପଶି କରେ ସ୍ନାନ ।
ଦେବତା ପୂଜି ବିପ୍ରଙ୍କୁ କରାଇ ଭୋଜନ ॥
ଦକ୍ଷିଣା ଦେଇଣ ତୋଷ କରି ତାଙ୍କୁ ପୁଣି ।
ଦେବତାଙ୍କୁ ପ୍ରଦକ୍ଷିଣ କରି ନୃପମଣି ॥
ଫେରି ଆସଇ ଏରୂପେ କଲେ ତୀର୍ଥବ୍ରତ ।
ତାହାର ଯେ କେତେ ପୁଣ୍ୟ ଶୁଣ ଦେଇ ଚିତ୍ତ
ଦିବ୍ୟ ବିମାନରେ ବସି ଶୂନ୍ୟରେ ଗମଇ ।
ଅପସରାଗଣ ତାର ପାଶେ ଖଟୁଥାଇ ॥
ମହା ପ୍ରଳୟ ପର୍ଯ୍ୟନ୍ତେ ପାଏ ଏହି ସୁଖ ।
ନାରୀ ଏ ଯେବେ ଏ ତୀର୍ଥେ ଦିଅନ୍ତି କନକ ॥
ଶିବ ଶିରେ ଘୃତ ଢାଳି ପୂଜିଲେ କୁମାରୀ ।
ତାହାର ଯେତେକ ଫଳ ଶୁଣ ନୃପବର ॥

ଚଉଦ ଇନ୍ଦ୍ର ପର୍ଯ୍ୟନ୍ତେ ରହେ ଦେବଲୋକେ
ବାଳ କାଟ୍ଟିଥାଇ ତହିଁ ଅତିଶୟ ସୁଖେ ॥
ଉତ୍ତରାୟଣ ସଂକ୍ରାନ୍ତି ଦିନ ଯେହୁ ଜନ ।
ଆବର ଦକ୍ଷିଣାୟନ ସଂକ୍ରାନ୍ତି ଦିନ ॥
ଜଳ ବିଷୁବ ସଂକ୍ରାନ୍ତି ଚତୁର୍ଦ୍ଦଶୀ ତିଥି ।
ମହା ବିଷୁବ ସଂକ୍ରାନ୍ତି ଦିନ ତୀର୍ଥେ ବ୍ରତୀ ॥
ସ୍ନାନ କରଣ କହିବ ମୁଖେ ହରିହର ।
ଶକତିରେ ଦାନ ଦେବ ବିପ୍ରେ ହିସ୍ତର ॥
ଭକତିରେ ଶରଧାରେ ବିପ୍ର କୁମରକୁ ।
ଅଭକ୍ତିରେ ଅଶ୍ରଦ୍ଧାରେ ହେଉ ବା ତାହାକୁ ॥
ବିଭା କରାଇ ସେ ତୀର୍ଥେ ତାର ଫଳ ଶୁଣ ।
ସେ ବିପ୍ରର ଦେହେ ଅଛି ଯେତେ ଲୋମ ଗଣ
ତେତେ ସହସ୍ର ବରଷ ଶିବଲୋକେ ରହେ ।
ତହୁଁ ନରକ ତୀର୍ଥକୁ ଯିବ ପୁଣି ରାଏ ॥
ତହିଁ ସ୍ନାନ କଲେ ନର୍କ ନ ଦେଖିବ କେବେ ।
ଏ ତୀର୍ଥ ମହିମା କହୁଅଛି ଶୁଣ ଏବେ ॥
ଯା ଦେହର ଅସ୍ଥି ପଡ଼େ ଏହି ତୀର୍ଥ ଜଳେ ।
ରୂପବନ୍ତ ହୁଏ ସେହି ଏ ମହୀମଣ୍ଡଳେ ॥
ତହୁଁ ଗୋତୀର୍ଥକୁ ଯାଇ କରିବ ଦର୍ଶନ ।
ସକଳ ପାପ ମୋଚନ ହୋଇବ ରାଜନ ॥
କପିଳା ତୀର୍ଥକୁ ଯିବ ବୁଡିବ ସେ ଜଳେ ।
ସହସ୍ର ଗୋଦାନ ଫଳ ତହିଁରୁ ଯେ ମିଳେ ॥
ଜ୍ୟେଷ୍ଠମାସ ଚତୁର୍ଦ୍ଦଶୀ ଉପବାସ କରି ।
କପିଳା ଧେନୁ ଗୋଟିଏ ଦେବ ସଙ୍ଗେ ବାରି ॥
ଘୃତଦୀପ ଜାଳି ଘୃତ ଢାଳି ଶିବ ଶିରେ ।
ଘୃତ ସହିତ ଶ୍ରୀଫଳ ଧରି ବେଢା କରେ ॥
ସାତବାର ପ୍ରଦକ୍ଷିଣ କରିବ ଶିବଙ୍କୁ ।
ଉତ୍ତମ ଭୋଜନ ଦେଇ ତହିଁ ବ୍ରାହ୍ମଣଙ୍କୁ ॥
କପିଳା ଗାଈବେକରେ ଘଣ୍ଟି ବାନ୍ଧିଦେଇ ।
ଅଙ୍ଗ ଆଭରଣ ସବୁ ତାହାକୁ ପିନ୍ଧାଇ ॥
ଦାନ ଦେଲେ ଶିବ ତୁଲ୍ୟ ଜନ୍ମ ନାହିଁ ତାର
ନବମୀ ମଙ୍ଗଳବାର ପଡ଼େ ଯେ ଦିନର ॥
କିବା ଅମାବାସ୍ୟା ତିଥି ଧରି କରେ ସ୍ନାନ ।
କି ଅବା ଶୁଦ୍ଧ ଚିତ୍ତରେ ହୋଇ ତନମନ ॥
କରାଇ ଶିବଲିଙ୍ଗଙ୍କୁ ହୁଏ ରୂପବନ୍ତ ।
ଘୃତ ସ୍ନାନେ ହୁଅଇ ସେ ସଉଭାଗ୍ୟବନ୍ତ ॥
ପୁଷ୍ପକ ବିମାନେ ବସି ଯାଏ ଶିବ କତି ।
ମନ୍ଦପ୍ରେକ ପରିବାରି ତା ସେବାରେ ଥାନ୍ତି ॥
ଅସଂଖ୍ୟକାଳ ବସଇ ରୁଦ୍ରଲୋକେ ସେହି ।
ପୁଣି ଆସି ମର୍ତ୍ତ୍ୟପୁରେ ଜନ୍ମ ଯେବେ ହୋଇ
ଧର୍ମବନ୍ତ ରୂପବନ୍ତ ବଳବନ୍ତ ହୁଏ ।
ମହୀରେ ନୃପତି ହୋଇ ଗନ୍ଧର୍ବ ପାଏ ॥
ତହୁଁ ଋଷି ତୀର୍ଥେ ଯିବ ଆହେ ଯୁଧିଷ୍ଠିର ।
ଏ ତୀର୍ଥର ମହିମା ଯେ ଅଟଇ ଅପାର ॥
ତୃଣବିନ୍ଦୁ ନାମେ ଋଷି ଅଭିଶାପ ପାଇ ।
ଏ ତୀର୍ଥରେ ରହି ତପକଲେ ବ୍ରତୀ ହୋଇ ॥
ତୀର୍ଥ ପ୍ରଭାବେ ଶାପରୁ ପାଇଲେ ମୁକତି ।
ସେ ତୀର୍ଥେ କରିବ ସ୍ନାନ କରି ହୋଇ ବ୍ରତୀ ॥
ତହୁଁ ଯିବ ଗଣେଶ୍ୱର ତୀର୍ଥେ ହେ ରାଜନ ।
ଶ୍ରାବଣର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ॥
ସ୍ନାନ କଲେ ଜନ ରୁଦ୍ରଲୋକରେ ବସଇ ।
ତରପଣ କଲେ ତିନିଋଣୁ ମୁକ୍ତ ପାଇ ॥
ଗଙ୍ଗାବଦନ ନାମରେ ତାର ପାଶ ତୀର୍ଥ ।
ତହିଁ ସ୍ନାନକଲେ ପାପ ଆଜନ୍ମୁ ସଞ୍ଚିତ ॥
ଛାଡ଼ିଯାଏ ସକାମରେ କିବା ନିଷ୍କାମରେ ।
ଏଥିରେ କିଛି ସନ୍ଦେହ ନ କର ମନରେ ॥
ସବୁଦିନେ ସବୁକାଳେ କରିବ ଯେ ସ୍ନାନ ।
ପିତୃଲୋକ ନାମ ଧରି କରିବ ତର୍ପଣ ॥
ତିନିଗୋଟି ଋଣୁ ମୁକ୍ତ ହୋଇବ ନିଶ୍ଚୟେ ।
ଗ୍ରହଣ କାଳେ ଯେ ସ୍ନାନ କରେ ତହିଁ ରାୟେ
କହିଥିଲେ ପ୍ରୟାଗର ଯେ ଫଳ ଶଙ୍କର ।
ଏ ଗଙ୍ଗାବଦନେ ତୀର୍ଥେ ସେହି ଫଳ ତାର ॥
ଦଶାଶ୍ୱମେଧିକ ତୀର୍ଥ ତହୁଁ ଖଣ୍ଡେ ଦୂରେ ।
ବିଖ୍ୟାତ ତୀର୍ଥ ଜାଣନ୍ତି ତାକୁ ତିନିପୁରେ ॥
ଭାଦ୍ର ଅମାବାସ୍ୟା ରାତ୍ରେ ଉପବାସ କରି ।
ସ୍ନାନ କଲେ ଲୋକ ଯାଇ କଇଳାସ ପୁରୀ ॥
ପର୍ବଦିନେ କଲେ ସ୍ନାନ ତରପଣ ତହିଁ ।
ଅଶ୍ୱମେଧଯଜ୍ଞ କଲା ଫଳ ବେଗେ ପାଇ ॥
ଦଶାଶ୍ୱମେଧ ପଶ୍ଚିମେ ଅଛି ଭୃଗୁ ତୀର୍ଥ ।
ପୂର୍ବେ ଭୃଗୁ କରିବାରୁ ତହିଁ ତୀର୍ଥ ବ୍ରତ ॥
ତେଣୁ ସେ ନାମ ଗୋଟି ସେ ତୀର୍ଥ ଅଛି ବହି
ତପ କରୁଥିଲେ ଭୃଗୁମୁନି ତହିଁ ରହି ॥

ସେ ତୀର୍ଥ ଦକ୍ଷିଣେ ଅଛି କୁଡଆ ତାଙ୍କର ।
ତପକଲେ ଦେବ ବର୍ଷେ ସହସ୍ର ବତ୍ସର ॥
ତପ କରୁଥିଲେ ତହିଁ ବସି ମୁନିବର ।
ଉଇହୁଙ୍କା କଲା ଘୋର ପାରୁଶେ ତାଙ୍କର ॥
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଉମା ମହେଶ୍ୱର
ଗଉରୀ ବୋଇଲେ କହ କହ ହେ ଶଙ୍କର ॥
ଦେବ କି ଦାନବ କିଏ ଏ ହୁଙ୍କା ଭିତରେ ।
ଈଶ୍ୱର ବୋଇଲେ ଭୃଗୁଋଷି ତପକରେ ॥
ସମାଧିରେ ବସି ମୋତେ କରୁଅଛି ଧ୍ୟାନ ।
ବର ପ୍ରାର୍ଥନା କରଇ ଏ ଭୃଗୁ ବ୍ରାହ୍ମଣ ॥
ତାହା ଶୁଣି ହସି ହସି ଗଉରୀ ସତୀ ।
ବୋଇଲେ ଆଜ୍ଞା ଈଶ୍ୱର ତୁମ୍ଭେ ପଶୁପତି ॥
ଧୂମ ପ୍ରାୟ ଶିଖା ସବୁ ବାହାରେ ଏହାର ।
ଉଇ ଚଉପାଖେ ହୁଙ୍କା କଲେଣି ଶରୀର ॥
କେତେବେଳେ ତୁମ୍ଭେ ଏହାକୁ ନୋହୁଛ ପ୍ରସନ୍ନ ।
ଏଣୁ ମୋ ବିଚାରେ ତୁମ୍ଭ ହୃଦୟ କଠିଣ ॥
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଗୋ ପାର୍ବତୀ
ଏହାର ହୃଦରେ ଥିଲେ ନାହିଁ ଗୋ ଭକତି
କ୍ରୋଧେ ତପ କରେ ବସି ଏହି ଦ୍ୱିଜବର ।
ତୁମ୍ଭେ କାହୁଁ ଜାଣିବ ଏ ତପ ସମାଚାର ॥
ପାର୍ବତୀ ହସି ବୋଇଲେ ମିଛ କହ ହର ।
ତୁମ୍ଭ ପାଦେ ଲୟ ରଖି ଏହି ଦ୍ୱିଜବର ॥
ଦେହ ଉଇ ଖାଇଲେଣି ଜାଣି ପାରୁନାହିଁ ।
ତୁମ୍ଭେ କହୁଛ କୋପରେ ତପକରେ ଏହି ॥
ଈଶ୍ୱର ବୋଇଲେ ତୁମ୍ଭ ମନରେ ପ୍ରତୀତ ।
ଯେମନ୍ତେ ଜନ୍ମିବ ତାହା କରୁଛି ପାର୍ବତୀ ॥
ଧର୍ମରୂପୀ ବୃଷଭକୁ ସୁମରିଲେ ହର ।
ତକ୍ଷଣେ ବୃଷ ମିଳିଲା ହରଙ୍କ ପାଖର ॥
ମାନବଙ୍କ ପ୍ରାୟ କଥା କହିଲା ସେ ବୃଷ ।
କାହିଁକି ଡାକିଲେ ଦେବଦେବ ହେ ମହେଶ ॥
ଈଶ୍ୱର ବୋଇଲେ ଅଗ୍ରେ ଦେଖୁଛ ଯେ ହୁଙ୍କା
ଶିଙ୍ଗରେ ତୁହି ସେ ହୁଙ୍କାଗୋଟି ତାଡ଼ି ପକା ॥
ମୁନି ସହିତ ହୁଙ୍କାକୁ ତାଡ଼ିଲା ଶିଙ୍ଗରେ ।
ତକ୍ଷଣେ ସେ ଭୃଗୁମୁନି ଉଠିଲେ କ୍ରୋଧରେ
ହାତ ଉଠାଇ ମାରିବା ପାଇଁ ସେ ଧାଇଁଲେ ।
ଆଗରେ ବୃଷ କାହିଁକି ନିକୁ ତୁ ବୋଇଲେ ॥

ଆରେରେ ବୃଷ ତୁ ଏଡ଼େ ଦୁଷ୍ଟ ଦୁରାଚାର ।
ନିଶ୍ଚୟ ନେବି ଆଜ ଜୀବନ ତୋହର ॥
ଦେଖିବା ରଖିବ ଆସି କେତେ କେଉଁ ବାପ
ଗର୍ବିଣୀ ତୁ ମୂର୍ଖ ମୋର ଏଡ଼େ ବଡ଼ ତପ ॥
ଅନ୍ତରୀକ୍ଷେ ରହିଲା ସେ ବୃଷ ତହିଁ ଯାଇ ।
ମୁନିର ଏହି ଅଦ୍ଭୁତ ଚରିତ୍ର ଦେଖଇ ॥
ହସି ହସି ଋଷି ଆଗେ ମିଳିଲେ ଶଙ୍କର ।
ଦେଖି ଭୃଗୁମୁନି ଲଜ୍ଜା ଭୟରେ କାତର ॥
ଭୂମିରେ ପଡ଼ି ଶୋଇଣ କଲେ ଦଣ୍ଡବତ ।
ସ୍ତୁତିକଲେ ଶିରେ ରଖି ଯୋଡ଼ ବେନିହସ୍ତ ॥
ହେ ଭୁବନପତି ତୁମ୍ଭେ ଜଗତର ନାଥ ।
ଏ ଭବସମୁଦ୍ରେ ଦିବ୍ୟରୂପେ ହେଲୁ ଜାତ ॥
ଭବ ଘୋର ସମୁଦ୍ରକୁ ମୋର ବଡ଼ ଭୟ ।
କହିଁତ କଥା ମୋ ମନେ ହୋଇଛି ଉଦୟ ॥
ହେ ନାଥ ତା ଜଣାଉଛି ମୁଁ ତୋର ଛାମୁରେ
ତୋର ଗୁଣ ବର୍ଣ୍ଣିବାକୁ କେ ଅଛି ସଂସାରେ ॥
ଅହିରାଜ ବାସୁକିର ସହସ୍ରେ ବଦନ ।
ତୋ ଗୁଣ ବର୍ଣ୍ଣି ନ ପାରେ ସେ ନାଗରାଜନ ॥
ହସ୍ତର କଙ୍କଣ ହୋଇ କଲି ତୁମ୍ଭ ସେବା ।
ତୁମ୍ଭପାଦରେ ଭକତି କରି ରାତ୍ର ଦିବା ॥
କାଳିହା ହୋଇଲି ମୁହିଁ ଭୁବନ ଶଙ୍କର ।
ତ୍ରିଭୁବନ ଜନ ତୋର ବନ୍ଦନ୍ତି ପୟର ॥
ତୋ ପାଦେ ପଡ଼ୁଛି ମୁହିଁ କ୍ଷମା କର ଦୋଷ ।
ସତ ରଜ ତମ ଗୁଣ ବହୁ ତୁ ମହେଶ ॥
ତୁ ସୃଷ୍ଟି କରୁ ତା ପାଳୁ ସଂହାରୁ ତୁ ହର ।
ଭୁବନମୋହନ ତୁହି ଭୁବନ ଈଶ୍ୱର ॥
ତୁମ୍ଭ ଛଡ଼ା ଦେବ ନାହିଁ ଏ ତିନିଭୁବନେ ।
ତୋର ଭକତର ମୂଲ୍ୟ ନ ଜାଣନ୍ତି ଜନେ ॥
ଯମ ନିୟମ ଧାରଣା ବେଦପାଏ ଯୋଗ ।
ତପ ସମାଧି ସାଧନା ଆଦି ଯାଗ ଯଜ୍ଞ ॥
ତୋର ଭକତଙ୍କ କରି ସହସ୍ରେକ ଭାଗ ।
ତହିଁର ଉପରେ ଏହାଙ୍କ ସଙ୍ଗେ କଲେ ଯୋଗ
ଏହାର ସଙ୍ଗେ ତୁଳନା ନୋହିବେ କଦାପି ।
ତୁମ୍ଭଙ୍କୁ ପ୍ରଣାମ କରେ ଯେବେ କେହି ପାପୀ ॥
ପାପ ତାର ଛାଡ଼ଯାଏ ପାଏ ମହାସୁଖ ।
ଯୋଗ ସିଦ୍ଧି ହୁଏ ଦୁଃଖ ହୁଅଇ ଅନେକ ॥

ଅଞ୍ଜନ ପାଦୁକା ଆଦି ରସ ରସାୟନ ।
ମନରେ ଧର୍ମ କାମନା କରି ଯେହି ଜନ ॥
ପ୍ରଣାମ କଲେ ତାହାଙ୍କୁ ଦିଅ ମୋକ୍ଷପଦ ।
ଶତପତଶ୍ରେ ଧୂର୍ଜଟଶିଶ ଭଜନ୍ତିଲେ ତୋ ପାଦ ॥
ତାହାଙ୍କ ମନ କାମନା ପୂର୍ଣ୍ଣ କରି ଦେଉ ।
ଏଣୁ ତୁ ସଂସାରେ ହେଲା ମହେଶ ବୋଲାଉ
ଭବ ମୋକ୍ଷକାରୀନାମ ବହେ ତୋ ଭକତ ।
ତୋର ଭକତଙ୍କୁ ତାହା ଦେଉ ପଶୁପତ ॥
ପର ଦାରେ ପରଧନେ ରତ ମୁଁ କରତେ ।
ପରର ଶିରୀ ଦେଖିଲି କାତର ମୁଁ ନିତ୍ୟେ
ପର ସୁନ୍ଦରୀ ମୁଖକୁ ଚାହାଁଇ ନିରେଖି ।
ପରର ସୁଖ ଦେଖିଲି ମୁଁ ହୁଅଇ ଦୁଃଖୀ ॥
ଶୋକ ସନ୍ତାପ ସମୁଦ୍ରେ ବୁଡ଼ିଛି ମୋ ଭେଳା
ଉଦ୍ଧରି ଧରି ତେଜି ନାଥ ନ କରଣ ହେଳ ॥
ମିଥ୍ୟା ଅଭିମାନେ ପୋଡ ମରୁଅଛି ମୁହିଁ ।
ପରମ ଈଶ୍ୱର ତୁମ୍ଭେ କରି ମୋତେ ତ୍ରାହି ॥
କ୍ଷଣ ଭଙ୍ଗୁରି ସକଳ ଦାରାପୁତ୍ର ଧନ ।
ବ୍ୟାକୁଳ ହୋଏ ସର୍ବଦା ତହିଁରେ ମୋ ମନ
କୁମାର୍ଗ ବିନୁ ସୁମାର୍ଗେ ନ ବଳଇ ମତ ।
ପତିତଜନ ମୁଁ ଖଳ ମୋହର ପ୍ରକୃତ ॥
ତ୍ରାହି କରି ତ୍ରାହି କରି ଦେବଦେବ ଈଶ ।
ବନ୍ଧୁ ବାନ୍ଧବ ମୋହର ଅଛନ୍ତି ଅଶେଷ ॥
ଇନ୍ଦ୍ରିୟଗଣଙ୍କର ଆଶା ପୂରାଇଛି ମୁହିଁ ।
ଦରିଦ୍ର ଆଗାରେ ଆଉ ପ୍ରୟୋଜନ ନାହିଁ ॥
ଆଶା ଅତି ତୁଚ୍ଛ ବୋଲି ଜାଣ ତ ଶଙ୍କର ।
ସେ ଆଶାରେ କରାଇଛ କପାଁ ହର ବର ॥
ସେ ଆଶା ଦଉଡ଼ି କାଟି ଦିଅ ମହାଦେବ ।
ଅଚଳା ଲକ୍ଷ୍ମୀଙ୍କି ଦିଅ ମୋ ହୃଦରେ ଠାବ ॥
ଶରଣ ଶରଣ ହର ପାଦୁରେ ତୋହର ।
ମଦ ମୋହ ଦଉଡ଼ିନ କାଟି ଦିଅ ମୋର ॥
ଉଦ୍ଧରି ଧରି ହେ ପ୍ରଭୁ ମରୁଅଛି ବୁଡ଼ ।
ଏ ସ୍ତୋତ୍ର ଗୋଟି ଭକ୍ତିରେ ନିତ୍ୟ ଯେତୁ ପଢି
କରୁଣା ହୁଏ ତାହାର ହୃଦୟେ ଉଦୟ ।
ଏଣୁ ଏ ସ୍ତୋତ୍ରର ନାମ କରୁଣାଭ୍ୟୁଦୟ ॥
ଶଙ୍କର ବୋଇଲେ ବିପ୍ର ହୋଇଲି ପ୍ରସନ୍ନ ।
ତୋର ଇଚ୍ଛା ଅନୁସାରେ ବର ମାଗ ଘେନ ॥

ବର ଦେବା ପାଇଁ ତତେ ଉମା ମହେଶ୍ୱର ।
ଭୃଗୁ ବୋଇଲେ ସନ୍ତୋଷେ ଦେବଦେବବର
ଏସ୍ଥାନ ଗୋଟି ମୋହର ରୁଦ୍ର ଦେବା ହେଉ
ଏହାର ମହିମା ଯୁଗେ ଯୁଗେ ରହିଥାଉ ॥
ଏମନ୍ତ ଶୁଣି ବୋଇଲେ ଉମା ମହେଶ୍ୱର ।
ଆନ ନୋହିବ ଏ କଥା ଜାଣ ଦ୍ୱିଜବର ॥
ରୁଦ୍ରବେଦୀ ବୋଲାଇବ ଆଜି ଏହି ତୀର୍ଥ ।
ଏସ୍ଥାନ ମାଡ଼ିବା ମାତ୍ରେ ହୋଇବେ ଜାତ ॥
ପିତା ମୁନିଙ୍କର ଏଥେ ଉପୁଜିବ କଳି ।
ଏକ କଥା ନୋହି କଥା ହେବ ଭଲ ଭଲି ॥
ପିତା ପୁତ୍ରଙ୍କର କଥା ନ ହୋଇବ ଏକ ।
ବର ଦେଇ ରୁଦ୍ର ତହିଁ ଗଲେ ଶିବଲୋକ ॥
କନ୍ଦର୍ପ ଗଣଙ୍କୁ ଘେନି ବ୍ରହ୍ମା ଆଦିଦେବେ ।
ନିତ୍ୟ ସେ ତୀର୍ଥ କରନ୍ତି ଆସି ଭକ୍ତିଭାବେ ॥
ସେ ତୀର୍ଥ ଦର୍ଶନେ ପାପ ନ ରହିବ କ୍ଷଣେ ।
ତହିଁ ଯେ ମରନ୍ତି ମୋକ୍ଷ ହୁଅନ୍ତି ବ୍ରହ୍ମଜ୍ଞାନେ ॥
ଗୁପତୁ ଅତି ଗୁପତ ସେହି ବ୍ରହ୍ମଜ୍ଞାନ ।
ଅତି କଠୋରେ ମିଳଇ ହେ ଧର୍ମ ରାଜନ ॥
ବିପୁଳ କ୍ଷେତ୍ର ସେ ସର୍ବ ପାତକ ହରଇ ।
ତହିଁ ସ୍ନାନକଲେ ଜନ ନିଶ୍ଚେ ସ୍ୱର୍ଗପାଇ ॥
ପାଦୁକା ଅନ୍ନ କାଞ୍ଚନ ଦାନ କଲେ ତହିଁ ।
ପୁଣି ଏ ସଂସାରେ ଆଉ ଜନ୍ମ ତାର ନାହିଁ ॥
ଗ୍ରହଣ କାଳେ ଯେ କରେ ତହିଁ ସ୍ନାନଦାନ ।
ଅକ୍ଷୟ ଗତି ମୁକତି ପାଇ ସେହି ଜନ ॥
ଶ୍ରୀ ବିଷ୍ଣୁର ମାୟା ମୋହେ ସର୍ବ ମୂଢ଼ ଜନେ
କୃତ୍ସ୍ନତୀର୍ଥ ବୋଲି ତାକୁ ମନରେ ନ ଘେନେ ॥
ଗ୍ରହଣ କାଳେ ଯେ ବୃଷ ଉତ୍ସର୍ଗ କରଇ ।
କଇଳାସ ପୁରେ ଚିରଦିନ ସୁଖ ପାଇ ॥
ଏ ଭୃଗୁ ତୀର୍ଥ ମହିମା ଶୁଣାଇ ଯେ ଜନ ।
ବାରେ ଶୁଣିଲେ ତା ପାପ ହୁଅଇ ଦହନ ॥
ବହୁତ ବାର ଶୁଣିଲେ ବସେ ରୁଦ୍ରଲୋକେ ।
ପଢ଼ିବା ଜନ କଦାପି ନ ପଡ଼େ ନରକେ ॥
ସ୍ତ୍ରୀଏ ଶୁଣିଲେ ପୁତ୍ରବତୀ ଯେ ହୁଅନ୍ତି ।
ସ୍ୱାମିର ତହିଁ ତାଙ୍କର ଜନ୍ମେ ଭକତ ॥
ବିଧବା ନାରୀ ଶୁଣିଲେ ଧର୍ମ ହୋଏ ତାର ।
ଆର ଜନମେ ସଧବା ହୋଇ କରେ ଘର ॥

ତହୁଁ ଗଉତମ ତୀର୍ଥେ ଯିବ ଯୁଧିଷ୍ଠିର ।
ବିଖ୍ୟାତ ନାମ ତାହାର ଗଉତମେଶ୍ୱର ॥
ତହିଁ ସ୍ନାନ ଉପବାସ ବ୍ରତ କଲଜନ ।
କାର୍ଥିନ ଏମାନେ ବ୍ରହ୍ମଲୋକେ ପାଏ ମାନ୍ୟ ॥
ଧଉତ ପାପ ନାମରେ ତୀର୍ଥ ଅଛି ତହିଁ ।
ସେ ତୀର୍ଥରେ ବୃଷ ତାର ପାପଥିଲ ଧୋଇ ॥
ବ୍ରହ୍ମହତ୍ୟା ପାପଛାଡ଼େ ତହିଁ କଲେ ସ୍ନାନ ।
ସେ ତୀର୍ଥ ସେ ରୁଦ୍ରପ୍ରାୟ ବଡ଼ ବଳବାନ ॥
ଚତୁର୍ଭୁଜ ହୋଇ ତିନି ନେତ୍ର ହୋଏ ତାର ।
ସୁଖଭୋଗ କରନ୍ତି ପାଇ କଇଳାସ ପୁର ॥
ପୁଣ୍ୟ କ୍ଷୟ ହେଲେ ପୁଣି ମର୍ତ୍ତ୍ୟେ ଉପୁଜଇ ।
ଏକଛତ୍ର ରାଜା ହୋଇ ପୃଥିବୀ ପାଳଇ ॥
ଏରଣ୍ଡୀତୀର୍ଥକୁ ତହୁଁ ଯିବ ପୁଣି ରାୟେ ।
କହି ଅଛନ୍ତି ଏମନ୍ତ ମୁନି ମାର୍କଣ୍ଡେୟେ ॥
ଏରଣ୍ଡୀତୀର୍ଥରେ ସ୍ନାନ କରନ୍ତି ଯେ ଜନେ ।
ପ୍ରୟାଗ ତୀର୍ଥର ଫଳ ପାଆନ୍ତି ତକ୍ଷଣେ ॥
ଯେଉଜନ ଅପର ପକ୍ଷ ଅମାବାସ୍ୟା ଦିନ ।
ସ୍ନାନ କରି ବିପ୍ରଏକ କରାଇ ଭୋଜନ ॥
କୋଟି ବିପ୍ର ଭୋଜନର ଫଳ ସେହି ପାଏ ।
ଭୃଗୁତୀର୍ଥେ କୋଟିତୀର୍ଥ ଅଛି ମହାରାୟେ ॥
ମନେ ମନେ ସ୍ନାନ କଲେ ପାଏ ଯେଉଁ ଫଳ
ଅଶ୍ୱମେଧ ଯଜ୍ଞ ଫଳ ନୋହିବ ତା ତୁଲ୍ୟ ॥
ଦେବଙ୍କ ସଙ୍ଗେ ଆନନ୍ଦେ ଯାଏ ତାର ଦିନ ।
ଭୃଗୁମୁନି ସିଦ୍ଧ ହେଲେ କରି ତହିଁ ସ୍ନାନ ॥
ସର୍ବଦା ତହିଁ ଅଛନ୍ତି ଗଉରୀ ଶଙ୍କର ।
ବିହଙ୍ଗେଶ୍ୱର ତୀର୍ଥକୁ ଯିବ ନୃପବର ॥
ସେ ତୀର୍ଥ ଦର୍ଶନ କରି ପାତକ ଛଡ଼ାଇ ।
ନର୍ମଦେଶ୍ୱର ତୀର୍ଥକୁ ପୁଣି ତହୁଁ ଯାଇ ॥
ସ୍ନାନ କଲେ ସ୍ୱର୍ଗପୁରେ ପାଇ ଗଉରବ ।
ଅଶ୍ୱତୀର୍ଥକୁ ସେଠାରୁ ପୁଣି ଚାଲିଯିବ ॥
ତହିଁ ସ୍ନାନ କରି ହେବ ପରମ ସୁନ୍ଦର ।
ଭାଗ୍ୟ ସଉଭାଗ୍ୟ ଭୋଗ ପାଇବ ଅପାର ॥
ପିତାମହ ତୀର୍ଥେ ଯିବ ତହୁଁ ପୁଣି ଚାଲି ।
ବ୍ରହ୍ମା ନିର୍ମାଣି ଅଛନ୍ତି ତୀର୍ଥ ଯାକ ଭାଲି ॥
ଶ୍ରଦ୍ଧାରେ ପିତୃଙ୍କ ପିଣ୍ଡଦେବ ସ୍ନାନ କରି ।
ତା ଉପରେ ଦେବ ତିଳ କୁଶ ମିଶା ବାରି ॥

ତୀର୍ଥ ପ୍ରଭାବରେ ସବୁ ହୋଇବ ଅକ୍ଷୟ ।
ସାବିତ୍ରୀ ତୀର୍ଥରେ ସ୍ନାନ କରିବ ହେ ରାୟ ॥
ପାପ ଧୋଇ ବ୍ରହ୍ମଲୋକେ ଗଉରବ ପାଇ ।
ସୁନ୍ଦର ତୀର୍ଥେକ ତହିଁ ଅଛି ନରସାଇଁ ॥
ତହିଁ ସ୍ନାନ କଲ ଜନ ବିଷ୍ଣୁଲୋକେ ରହେ ।
ମାନସ ତୀର୍ଥକୁ ତହୁଁ ଯିବ ପୁଣ୍ୟ ଦେହେ ॥
ତହିଁ ସ୍ନାନ କଲ ଜନ ରୁଦ୍ରଲୋକ ପାଇ ।
ଭୃଗୁତୀର୍ଥକୁ ଆସିବ ପୁଣି ନରସାଇଁ ॥
ସ୍ନାନ କରି ପଶୁ ପୁତ୍ର ଧନ ଆଦି ଯାହା ।
ମନାସିବା ମାତ୍ରେ ତାକୁ ମିଳିବ ଯେ ତାହା ॥
ଦଶକନ୍ୟା ତୀର୍ଥକୁ ଯେ ତହୁଁ ଯିବ ଚାଲି ।
ଯୁଧିଷ୍ଠିର ବୋଇଲେ ହେ କହ ତପଶାଳୀ ॥
ଦଶକନ୍ୟା ନାମ ତାର ହୋଇଲା କେମନ୍ତେ ।
ନାରଦ ବୋଇଲେ ଶୁଣ ତାହା ଏକଚିତ୍ତେ ॥
ସୁବ୍ରତ ନାମରେ ଥିଲେ ଏକ ମହାଋଷି ।
ତାହାଙ୍କର ଦଶ ଗୋଟି କନ୍ୟା ଶୁଭ୍ରକେଶୀ ॥
ଏକୁଁ ଏକ ସୁନ୍ଦରୀ ଯେ ଅତି ଗୁଣବତୀ ।
ଏ ତୀର୍ଥରେ ରହି ତପ କଲେ ହୋଇ ବ୍ରତୀ ॥
ହର ଆମ୍ଭପତି ହେବେ ମନାସି ଏମନ୍ତ ।
କଠୋର ତପେ ବସିଲେ କରି ଏହି ତୀର୍ଥ ॥
ତାଙ୍କ ମନ କଥା ଜାଣି ପାରି ମହେଶ୍ୱର ।
ଦଣ୍ଡି ବେଶରେ ଆଇଲେ ଅତ୍ୟନ୍ତ ସୁନ୍ଦର ॥
ଦଣ୍ଡ କନ୍ଧରେ ଝୋହିଇ ଲଲାଟରେ ଛିତା ।
ଗେରୁଆ ବସନ ଦିଦ୍ଧ ହଉରୀ ପଇତା ॥
ବେଶ ଅତି ଅସୁନ୍ଦର ମୁଖ କଦାକାର ।
କନ୍ୟାଗଣ ମନେ କିଛି ନ କଲେ ବିଚାର ॥
ବରମାଳା ଗଳେ ଦେଇ ଚରଣେ ପଡ଼ିଲେ ।
ଭୋଳାନାଥ ଶଙ୍କର ହର ଈଶ୍ୱର ବୋଇଲେ ॥
ତାହାଙ୍କ ମନ ଜାଣିଣ ସେ ପ୍ରଭୁ ଶଙ୍କର ।
ନିଜ ରୂପକୁ ଧରିଣ ହେଲେ ତାଙ୍କ ବର ॥
କନ୍ୟା କାମନା କରିଣ କଲେ ତହିଁ ସ୍ନାନ ।
ଉତ୍ତମ କାମିନୀ ତାକୁ ମିଳଇ ସୁଜନ ॥
ସେ ନାରୀ ଉତ୍ତମ ବର ମନାସଇ ତହିଁ ।
ମନ ଅନୁସାରେ ବର ତାହାକୁ ମିଳଇ ॥
ସେ ଦିନୁ ଏ ତୀର୍ଥ ନାମ ଦଶକନ୍ୟା ଜାଣ ।
ମହାଦେବଙ୍କ ପୂଜିବ କରିସାରି ସ୍ନାନ ॥

ସକଳ ପାପ ଛଡ଼ାଇ ତହିଁ ଯିବ ଚଳି ।
ସ୍ୱର୍ଗ ବିନ୍ଦୁ ନାମେ ମହାତୀର୍ଥେ ଯାଇଁ ମିଳି ॥
ତହିଁ ସ୍ନାନ କଲା ଜନ ନର୍କ ନ ଦେଖି ।
ଅପସରା ଈଶନାମେ ତୀର୍ଥ ତାହା ପାଖି ॥
ତହିଁ ସ୍ନାନ କଲା ଲୋକ ନାଗ ଲୋକେ ରହେ
ଅପସରା ସଙ୍ଗେ କ୍ରୀଡ଼ା କରେ ପୁଣ୍ୟ ଦେହେ
ତହିଁ ନରକ ତୀର୍ଥକୁ ଯାଇ କଲେ ସ୍ନାନ ।
ପୂଜିଲେ ସେ ତୀର୍ଥେ ଦେବଦେବ ତ୍ରିଲୋଚନ ॥
ନରକ ପଥ ନିରୋଧି ଯିବ ତହିଁ ଚଳି ।
ଯାହାଙ୍କୁ ସକଳେ ଭର ଭୂତ ତୀର୍ଥ ବୋଲି ॥
ସ୍ନାନ କରି ବିରୂପାକ୍ଷ ପୂଜିବ ସେ ତୀର୍ଥେ ।
ରୁଦ୍ର ଲୋକେ ବସିବ ସେ ଜନ ମରଣାନ୍ତେ ॥
ଗଣେଶ ଲୋକେ ରହିବ ତହିଁ ମଲା ଲୋକ ।
ମାସଙ୍କ ମଧ୍ୟେ ଯେ ଶ୍ରେଷ୍ଠ ଅଟଇ କାର୍ତ୍ତିକ ॥
ଯେ ମାସେ ସେ ତୀର୍ଥେ ପୂଜା କଲେ ମହେଶ୍ୱର
ଅଶ୍ୱମେଧ ଫଳୁଁ ଶତ ଗୁଣ ଫଳ ତାର ॥
ଶତ ଗୋଟି ଘୃତଦୀପ ଦେଲେ ସେହି ମାସେ ।
ସୂର୍ଯ୍ୟତୁଲ୍ୟ ତେଜାବନ୍ତ ବିମାନରେ ବସେ ॥
ଶଙ୍କର ଯହିଁ ରହନ୍ତି ତହିଁକି ଗମଇ ।
ଧଳାବୃଷ ସେ ତୀର୍ଥେ ଯେ ପ୍ରଦାନ କରଇ ॥
ବୃଷ ଯୋଗ୍ୟ ବିମାନରେ ରୁଦ୍ର ଲୋକେ ଯାଏ ।
ମଧୁ ଚରୁ କ୍ଷୀରି କରି ବିପ୍ରଙ୍କୁ ଭୁଞ୍ଜାଏ ॥
ତୀର୍ଥର ଫଳ ତାହାର ହୁଏ କୋଟି ଗୁଣ ।
ନର୍ମଦା ନଦୀର ଜଳ ଯେବେ କେହି ଜନ ॥
ବୃଷଭଧ୍ୱଜଙ୍କ ଶିରେ ଅଭିଷେକ କରେ ।
ନରକକୁ ନ ଦେଖଇ ସେହି ନୟନରେ ॥
ଶଙ୍କର ପାଶେ ବସଇ ତୀର୍ଥେ ମଲା ପ୍ରାଣୀ ।
ସେ ତୀର୍ଥ ଜଳରେ ପଶି ଝାସ ଦିଏ ପୁଣି ॥
ହଂସ ଯୋଗ୍ୟ ବିମାନରେ ଯାଏ ରୁଦ୍ର ଲୋକେ
ତହିଁ ସ୍ୱର୍ଗାନ୍ତରେ ଯାଏ ନ ପଡ଼ି ନରକେ ॥
ଚନ୍ଦ୍ର ସୂର୍ଯ୍ୟ ଗଙ୍ଗା ହିମଗିରି ଯେ ସାଗର ।
ଥିବା ଯାଏ ସ୍ୱର୍ଗେ ପୂଜା ପାଏ ସେହି ନର ॥
ଅନାହାରେ ରହି ତହିଁ କଲେ ତୀର୍ଥ ବ୍ରତ ।
ନ ଜାଣିବ ଗର୍ଭ ବାସ ଯନ୍ତ୍ରଣା କେମନ୍ତ ॥
ଅଟବୀ ତୀର୍ଥକୁ ଯାଇଁ କରିବ ଯେ ସ୍ନାନ ।
ଇନ୍ଦ୍ରର ଅର୍ଦ୍ଧ ଆସନ ପାଇବ ସେ ଜନ ॥
ତହିଁ ଶଙ୍ଖ ତୀର୍ଥେ ଯାଇ ସ୍ନାନ କଲା ମାତ୍ରେ ।
ଗଣେଶ ଲୋକ ପାଇବ ତାହାର ଦେହାନ୍ତେ ॥
ଏରଣ୍ଡୀ ନର୍ମଦା ତୀର୍ଥେ ସଙ୍ଗମର ଜଳ ।
ସକଳ ପାପ ଛଡ଼ାଇ ଦିଏ ପୁଣ୍ୟ ଫଳ ॥
ତହିଁ କଲେ ନିତ୍ୟ ସ୍ନାନ ଉପବାସ ବ୍ରତ ।
ବ୍ରହ୍ମହତ୍ୟା ପାତକରୁ ହୁଅଇ ମୁକତ ॥
ତହିଁ ନର୍ମଦା ସାଗର ସଙ୍ଗମକୁ ଯିବ ।
ତହିଁ ଅଛି ଜମଦଗ୍ନି ତୀର୍ଥକୁ ଦେଖିବ ॥
ଫଳ ପାଇଛନ୍ତି ତହିଁ ପ୍ରଭୁ ଜନାର୍ଦ୍ଦନ ।
ତହିଁ ଯଜ୍ଞ କରିଥିଲେ ସହସ୍ରଲୋଚନ ॥
ସେ ତୀର୍ଥ ଜଳେ ଯେ ଜନ ସ୍ନାନ କରେ ଯାଇ
ଅଶ୍ୱମେଧ ଯଜ୍ଞ ଫଳୁ ତିନିଗୁଣ ପାଇ ॥
ପଶ୍ଚିମ ସମୁଦ୍ର ସଙ୍ଗ ନର୍ମଦାର ତୀର ।
ବିମଳେଶ୍ୱର ତୀର୍ଥ ସେ ମୁକତିର ଦ୍ୱାର ॥
ଦେବ ଗନ୍ଧର୍ବ ଚାରଣ ଋଷି ସିଦ୍ଧ ଯେତେ ।
ତ୍ରିକାଳ ସ୍ନାନ କରନ୍ତି ସେହି ମହା ତୀର୍ଥେ ॥
ତହିଁ ସ୍ନାନ କଲା ଲୋକ ରୁଦ୍ର ଲୋକେ ଯାଇ ।
ସେ ତୀର୍ଥ ତୁଲ୍ୟ ଆବର ତୀର୍ଥ ଗୋଟା ନାହିଁ
କେଶିନୀ ତୀର୍ଥକୁ ତହିଁ ଯିବ ହେ ରାଜନ ।
ଉପବାସ କରି ବ୍ରତୀ ହୋଇ କଲେ ସ୍ନାନ ॥
ଛାଡ଼ି ପଳାଇ ତା ଦେହୁ ବ୍ରହ୍ମହତ୍ୟା ପାପ ।
ସାଗରେଶ୍ୱର ନାମରେ ଶିବଲିଙ୍ଗ ରୂପ ॥
ଏକ ଯୋଜନ ଭିତରେ ମଣ୍ଡଳ ଆକାରେ ।
ତୀର୍ଥର ଫଳ ପାଇବ ତାଙ୍କ ଦର୍ଶନରେ ॥
ସର୍ବ ତୀର୍ଥ କଲା ଫଳ ତହିଁରେ ମିଳଇ ।
ପାପୁ ତରି ଯାଇଁ ରୁଦ୍ର ଲୋକରେ ବସଇ ॥
ନର୍ମଦା ନଦୀ ସଙ୍ଗମ ତହୁଁ ହେ ରାଜନ ।
ଅମର କଣ୍ଟକ ଯାଏ ଜାଣ ଯେତେ ସ୍ଥାନ ॥
ତା ଭିତରେ ଦଶ କୋଟି ତୀର୍ଥ ଯେ ଅଛନ୍ତି
ତୀର୍ଥଠାରୁ ତୀର୍ଥାନ୍ତର ଯାତ୍ରା ଯେ କରଇ ॥
ସେ ତୀର୍ଥାନ୍ତର ସେବନ୍ତି କୋଟି ଋଷି ନିତ୍ୟ
ଆବର ବିପ୍ର ଅଛନ୍ତି ଯେତେ ଅଗ୍ନିହୋତ୍ରୀ ।
ବ୍ରହ୍ମଜ୍ଞାନୀ ମହାଜ୍ଞାନୀ ସର୍ବଜ୍ଞ ଯେତେକ ।
ତୀର୍ଥାନ୍ତରେ ଯାନ୍ତି ଯେଣୁ ଏ ସମସ୍ତ ଲୋକ
ଏଣୁ ଏ ବାଞ୍ଛିତ ଫଳ ଦିଅଇ ଜାଣିବ ।
ନର୍ମଦା ନଦୀ ମହିମା ଯେ ଜନ ଶୁଣିବ ॥

ପଢଇ ଅବା ଶୁଣାରେ ତୀର୍ଥ ଫଳ ପାଇ ।
ତା ଠାରେ ନିତ୍ୟ ପ୍ରସନ୍ନ ହେବ ଉମାସାଇଁ ॥
ତା ପ୍ରତି ସଦା ପ୍ରସନ୍ନ ମୁନି ମାର୍କଣ୍ଡେୟ ।
ବନ୍ଧ୍ୟା ନାରୀ ବହୁ ପୁତ୍ର ପାଏ ମହାଶୟ ॥
ଶୁଣିଲେ ଦୁର୍ଭଗା ନାରୀ ସୁଭଗା ହୁଅଇ ।
ମନ ଅନୁସାରେ ବର କୁମାରୀ ଲଭଇ ॥
ଯେ ଯହା ମନେ କରଇ ତାହା ତାକୁ ମିଳେ
ମନାସିବା ଲୋକମନ ଜାଣି ଫଳ ଫଳେ ॥
ପଢ଼ିଲେ ଶୁଣିଲେ ବିପ୍ର ବେଦେ ପାଏ ଜ୍ଞାନ ।
କ୍ଷତ୍ରିୟ ବିଜୟୀ ହୋଏ ନ କରି ସଂଗ୍ରାମ ॥
ବଇଶ୍ୟ ବେପାରେ ରହେ ଧନ ଧାନ୍ୟ ପାଇ ।
ଶୂଦ୍ର ସଦଗତି ପାଏ ଆହେ ନରସାଇଁ ॥
ମୂରୁଖ ହୁଏ ବିଦ୍ୱାନ ପୁଣି ଜ୍ଞାନବାନ ।
ତ୍ରିସନ୍ଧ୍ୟାରେ ଯେ ପଢଇ ଜାଣ ହେ ରାଜନ ॥
ନର୍କ ଦର୍ଶନ ନ କରେ ବସଇ ସ୍ୱର୍ଗରେ ।
ମର୍ତ୍ତ୍ୟେ ଜନମ ତାହାର ନୋହେ ନୀଚଘରେ ॥
ସ୍ୱର୍ଗ ଖଣ୍ଡରେ ଜାଣିବ ଏହି ପୁଣ୍ୟ ବାଣୀ ।
ଗୋପୀନାଥ ବୋଲେ ହରି ହରି ବୋଲ ପ୍ରାଣୀ

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ନର୍ମଦା ଭୃଗୁଆଦି ତୀର୍ଥ ବର୍ଣ୍ଣନଂ ନାମ ନବମୋଽଧ୍ୟାୟଃ ।



## ଦଶମ ଅଧ୍ୟାୟ ।

ରେବାମାହାତ୍ମ୍ୟ ।

ନାରଦ କହିଲେ ଶୁଣ ଶୁଣ ହେ ରାଜନ ।
କରିବୁ ରେବା ନଦୀର ମହିମା ବର୍ଣ୍ଣନ ॥
ନର୍ମଦା ସବୁ ତୀର୍ଥର ମହିମା ଶୁଣିଲି ।
ପିଶାଚେ ମୋକ୍ଷ ପାଇଲେ ପାଇ ରେବାଁ ଜଳ
ନାରଦ ମୁଖୁ ଏମନ୍ତ ଶୁଣି ଯୁଧିଷ୍ଠିର ।
ଆଶ୍ଚର୍ଯ୍ୟ କଥା କହିଲ ତୁମ୍ଭେ ମୁନିବର ॥
ଜଳ ସ୍ପର୍ଶେ ପିଶାଚେ ପାଇଲେ ମୁକତି ।
ଏକଥା ମୋତେ ଆଶ୍ଚର୍ଯ୍ୟ ଲାଗେ ମହାପତି ॥
ସେ ପିଶାଚେ କିଏ ହୋଇଲେ କେମନ୍ତେ ପିଶାଚ
ବୟସ କେତେ ତାଙ୍କର ସେ କାହାର ବଂଶ ॥
କେମନ୍ତେ ମୋକ୍ଷ ପାଇଲେ କହ ତା ବିସ୍ତାର
ନର୍ମଦା ତୀର୍ଥ ବିଚିତ୍ର ମହିମା ଏହାର ॥
ନର୍ମଦା ନର୍ମଦା ତୁମ୍ଭେ ବୋଲି ବୋଲି ନର ।
ଯାବତ ଚନ୍ଦ୍ରାର୍କ ମୋକ୍ଷ ହୁଅଇ ତାହାର ॥
ତହୁଁ ନାରଦ ତବ ମୁଖୁଁ ଶୁଣିଥିଲୁ ଏହା ।
ରେବା ମହିମା ଶୁଣିମା ପାଇଁ ବଢ଼ ସ୍ପୃହା ॥
ନାରଦ ବୋଇଲେ ତାହା ଶୁଣ ଧର୍ମ ରାୟେ ।
କାଷ୍ଠର ଭିତରେ ଅଗ୍ନି ଲୁଚି ଥିବାପ୍ରାୟେ ॥
ଶ୍ରୁଦ ସଙ୍ଗୀତ ନାମରେ ଏକଇ ଗନ୍ଧର୍ବ ।
ତାଦୁହିତା ପ୍ରମୋହିନୀ ସୁନ୍ଦରୀ ଅପୂର୍ବ ॥
ସୁଶୀଳ ଗନ୍ଧର୍ବ କନ୍ୟା ସୁଶୀଳା ଅଟଇ ।
ସୁରବେଦୀ ନାମରେ ଯେ ଗନ୍ଧର୍ବ ଅଛଇ ॥
ସୁସ୍ୱରା ନାମେ ଦୁହିତା ଅଟଇ ତାହାର ।
ଚନ୍ଦ୍ରକାନ୍ତ ନାମରେ ଯେ ଗନ୍ଧର୍ବ ଈଶ୍ୱର ॥
ତାହାର ଦୁହିତା ନାମ ସୁତାରା ଅଟଇ ।
ସୁପ୍ରଭ ଗନ୍ଧର୍ବ କନ୍ୟା ଚନ୍ଦ୍ରିକା ବୋଲଇ ॥
ପ୍ରମୋହିନୀ ଯେ ସୁଶୀଳା ସୁସ୍ୱରା ସୁତାରା ।
ଚନ୍ଦ୍ରିକା ଘେନି ଏ ପାଞ୍ଚ କନ୍ୟା ରତ୍ନହାରା ॥
ପାଞ୍ଚ ଗନ୍ଧର୍ବ ରାଜାର ଏ ପାଞ୍ଚ କୁମାରୀ ।
ସୁନ୍ଦରୀ ପଣେ ଏକକୁ ଏକ ନୋହେ ସରି ॥
ଏକା ମନ ଏକା ପ୍ରାଣ ସେହି ପାଞ୍ଚଙ୍କର ।
ସୋଦର ଭଉଣୀ ପ୍ରାୟ ତାଙ୍କ ବ୍ୟବହାର ॥
ତକାତକି ହୁଅନ୍ତି ସେ ଭଉଣୀ ଭଉଣୀ ।
ସବୁର କେଶ ସୁନ୍ଦର କଳା ମେଘ ଜିଣି ॥
ସବୁର ମୁଖ ବର୍ତ୍ତୁଳ ଚନ୍ଦ୍ରକୁ ନିନ୍ଦଇ ।
ସବୁର କାନ୍ତି ଚନ୍ଦ୍ରମା ପ୍ରାୟ ଝଟକଇ ॥
କାଷ୍ଠ ଭିତରେ ଗୁପତେ ଅଗ୍ନି ରହିଥାଇ ।
କାଷ୍ଠରେ କାଷ୍ଠ ଘଷନ୍ତେ ଯେସନ୍ତେ ଉପୁଜଇ ॥
ଲୁଚିଥାଏ ଚନ୍ଦ୍ରଦେହେ କିରଣ ଯେସନ ।
ଜଗତ ଆଲୁଅ କରେ ଝଟକି ଗଗନ ॥
ତେସନ ସେ ପାଞ୍ଚ କନ୍ୟା ଝଟକି ବିଜୁଳି ।
ରୂପରେ ଏକୁ ଆରେକ ପଡ଼ନ୍ତି ବଳୁଲି ॥
କିରଣ ଯେସନ୍ତେ ଜନର ମନକୁ ହରଇ ।
ଏ ପାଞ୍ଚ କନ୍ୟାଙ୍କ ରୂପ ତେସନ ହରଇ ॥
ଲାବଣ୍ୟ ସମୁଦ୍ରୁ କି ସେ ଜନ୍ମି ଅଛନ୍ତି ।
ତେଣୁ ଜଗତେ ଲାବଣ୍ୟନିଧି ଏ ବୋଲନ୍ତି ॥

ବୈଶାଖ ମାସ କେତକୀ ପ୍ରାୟ ପୟୋଧର ।
ଅଳପ ଫୁଟି ବଢାଇ ଆଚ୍ଛି ନୂପବର ॥
ନବ ଯୌବନ ତାଙ୍କର ଆସଇ ଅଙ୍କୁର ।
ନବପଲ୍ଲବତା ଲତା ପ୍ରାୟ ସେ ସୁନ୍ଦରୀ ॥
ସମସ୍ତେ ପୁଣି ଦଶନ୍ତି ସୁନାପ୍ରାୟ ଗୋରୀ ।
ସୁନାପ୍ରାୟ କାନ୍ତି ପୁଣି ଟିକେ ସବୁର ॥
ସୁନାର ଭୂଷଣ ସବୁ ଅଙ୍ଗେ ବିରାଜଇ ।
ସୁନାଚମ୍ପା ମାଳା ଉରେ ସବୁର ଅଛଇ ॥
ସବୁର ପିନ୍ଧା ବସନ କାନ୍ତି ସୁନାପ୍ରାୟ ।
ସବୁର ପଞ୍ଚମ ସ୍ୱର କୋକିଳ ପରାୟ ॥
ଗ୍ରାମ ମୂର୍ଚ୍ଛା ତାଳଲୟ ଜାଣନ୍ତି ସମସ୍ତେ ।
ବଜାନ୍ତି ମୃଦଙ୍ଗ ଆଦି ବାଦ୍ୟ ଅଛି ଯେତେ
ଦ୍ରୁତ ମଧ୍ୟ ବିଳମ୍ବିତ ତିନି ଲୟ ଜଣା ।
ଜାଣନ୍ତି ସେ ନୃତ୍ୟ ହାବ ଭାବ ବେଣୁ ବୀଣା ॥
ବିପଞ୍ଚି ଆଦି ସେ ଯନ୍ତ୍ର ବଜାଇ ପାରନ୍ତି ।
ଚିତ୍ରବିଦ୍ୟା ଆଦି ସବୁ ବିଦ୍ୟା ସେ ଜାଣନ୍ତି ॥
ମୋହନ କଳା ଅଛଇ ସବୁର ଶରୀରେ ।
ତାଙ୍କ ପିତା ମାତାଙ୍କର ସ୍ନେହ ତାଙ୍କଠାରେ ॥
କୁବେର ପୁରେ ସେ ପାର୍ଥି ଗନ୍ଧର୍ବଙ୍କ ଘର ।
ଦେବଗଣ ନୃତ୍ୟ ଗୀତ ଦେଖି କନ୍ୟାଙ୍କର ॥
ଧନ୍ୟ ଧନ୍ୟ କହି ତାଙ୍କୁ ପ୍ରଶଂସା କରନ୍ତି ।
ସୁର ସୁନ୍ଦରୀଏ ପାର୍ଥିକନ୍ୟା ରୂପ କାନ୍ତି ॥
ଦିନେ ବଇଶାଖ ମାସେ ସେ ପାର୍ଥି ଭଉଣୀ ।
ବୋଇଲେ ଫୁଲ ପୂଜିବା ଈଶ୍ୱର ଘରଣୀ ॥
ଏମନ୍ତ ବିଚାରି ତହୁଁ ପାର୍ଥିକନ୍ୟା ଯାଇ ।
ପିତା ମାତାଙ୍କ ଛାମୁରେ ସକଳ ଜଣାଇ ॥
ମନ୍ଦାର ଫୁଲ ତୋଳିବା ପାଇଁ ଘରୁ ଗଲେ ।
କୁବେର ବଗିଚା ଯାକ ଖୋଜି ନ ପାଇଲେ ॥
ଗହନ ବନସ୍ତେ ପଶି ଫୁଲ ତୋଳି ତୋଳି ।
ଗଉରୀ ଦେବୀ ପୂଜିଲେ ପାର୍ଥିକନ୍ୟା ମିଳି ॥
ସ୍ୱଚ୍ଛୋଦ ନାମେ ଅଛଇ ଏକଇ ପୋଖରୀ ।
ପଦ୍ମଫୁଲ ତୋଳିବାକୁ ଗଲେ ସେ ସୁନ୍ଦରୀ ॥
ଦେଖିଲେ ସେ ପୋଖରୀରେ ଫୁଟିଅଛି ଫୁଲ ।
ସୁନାର ପଦ୍ମ ତାହାକୁ ହେବ ସମତୁଲ ॥
ଆନନ୍ଦେ ସେ ପାର୍ଥି କନ୍ୟା ଫୁଲତୋଳି ଆଣି ।
ଅତିନିର୍ମଳ ଦିଶୁଛି ସେ ପୋଖରୀ ପାଣି ॥
ପୋଖରୀ ଘାଟ ପାହାଚ ସ୍ଫଟିକ ପଥର ।
ସବା ଉପର ପାହାଚ ଦିଶଇ ସୁନ୍ଦର ॥
ବଇଦୁର୍ଯ୍ୟ ମଣିରେ ସେ ହୋଇଅଛି ଗଢା ।
ଚନ୍ଦ୍ରକଣିଆ ଚିକ୍କଣ ଦେଖି ହେଲେ ଛିଡା ॥
ଫୁଲ ଡାଲା ତହୁଁ ରଖି ଗଲେ ଧୀରେ ଧୀରେ ।
ପଶିଲେ ଯାଇଁ ପୋଖରୀ ଜଳର ଭିତରେ ॥
ସ୍ନାନକରି ସାରି ସେହି ଅପୂର୍ବ ସୁନ୍ଦରୀ ।
ଶୁଖିଲା ବସ୍ତ୍ର ପିନ୍ଧିଲେ ସେ ଶିଳା ଉପରି ॥
ମାଟିରେ ଗଉରୀ ମୂର୍ତ୍ତି ଗଢିଲେ ସେ ବସି ।
ଶିଳାଉପରେ ରଖିଣ ପାର୍ଥି ଶୁଭ୍ରକେଶୀ ॥
ଗନ୍ଧଚନ୍ଦନ କୁଙ୍କୁମ ହସ୍ତରେ ଘେନିଲେ ।
ଗଉରୀ ଦେବୀ ସର୍ବାଙ୍ଗ ଯାକ ବୋଳିଦେଲେ ॥
ସର୍ବାଙ୍ଗେ ଖଞ୍ଜିଲେ ସୁନା ମୁକ୍ତା ଆଭରଣ ।
ପିନ୍ଧାଇଦେଲେ ତାହାଙ୍କୁ ଉତ୍ତମ ବସନ ॥
କରିପୁଣି ତାଙ୍କୁ ପଦ୍ମଫୁଲରେ ମଣ୍ଡନ ।
ପୂଜାଉପହାର ତାଙ୍କୁ କରି ନିବେଦନ ॥
ଭକତିରେ ପୂଜି ତାଙ୍କୁ ନାନା ଉପହାରେ ।
ସେ ପାର୍ଥି ହରିଣୀନେତ୍ରୀ ଯନ୍ତ୍ରଧରି କରେ ॥
ନାନା ଛନ୍ଦବନ୍ଧେ ନୃତ୍ୟ କଲେ ତାଙ୍କ ଆଗେ
ମଧୁରସ୍ୱରେ ଗାଇଲେ ଗୀତ ନାନାରାଗେ ॥
ସଙ୍ଗୀତ ରସେ ରସିଲେ ସେ ପାର୍ଥି ସୁନ୍ଦରୀ ।
ଏଥୁଅନ୍ତେ ଯାହା ହେଲା ଶୁଣ ଦଣ୍ଡଧାରି ॥
ବେଦନିଧି ନାମେ ଥିଲେ ଏକ ମୁନିବର ।
ତାହାଙ୍କର ଜ୍ୟେଷ୍ଠ ପୁତ୍ର ପରମ ସୁନ୍ଦର ॥
ତୀର୍ଥ ସ୍ନାନର ନିମନ୍ତେ ବନେବନେ ଗଲେ ।
ଅଚ୍ଛୋଦ ପୋଖରୀ କୂଳେ ଯାଇଣ ମିଳିଲେ ॥
ଅତି ସୁନ୍ଦର ତାହାର ବୟସ ଅଳପ ।
କାମଦେବ ପ୍ରାୟ ତାର ଅନୁପମରୂପ ॥
ଫୁଟି ଥିବା ପଦ୍ମଫୁଲ ପ୍ରାୟ ଚକ୍ଷୁଦୁଇ ।
ବୁଷାଳି ଅତିସୁନ୍ଦର ଲମ୍ବ ବାହୁ ଦୁଇ ॥
ଓଷାରିଆ ଛାତି କାନ୍ତି ଶ୍ୟାମଳ ତା ବର୍ଣ୍ଣ ।
ସର୍ବାଙ୍ଗ ତାର ସୁନ୍ଦର ସାକ୍ଷାତେ ମଦନ ॥
ସମ୍ପୂର୍ଣ୍ଣ ଯୁବା ବୟସ କଣ୍ଠେ ଶୋହେ ଦଣ୍ଡ ।
ଅପୂର୍ବ ବ୍ରହ୍ମଚାରୀ ସେ କନ୍ଦର୍ପର କାଣ୍ଡ ॥
ଯୁବତୀ ଜନ ମୋହନ ତା ସୁନ୍ଦର ଶିଖା ।
କନ୍ଧରେ ଶୁକ୍ଳ ପଇତା ବ୍ରହ୍ମଚାରୀ ଦୀକ୍ଷା ॥

କଟୀରେ ମୃଗର ଚର୍ମ ରୂପକୁ ସାଜଇ ।
ସେ ଚର୍ମର କାନ୍ତି ହେମତୁଲ୍ୟ ବିରାଜଇ ॥
ଦେଖି ସେ ପୋଷାକଶ୍ରୀ ଶିବେ ସେ ପାର୍ଥି ସୁନ୍ଦରୀ
ମଦନ ଜାଲରେ ଅବଶ୍ୟ ହେବ ଏ ଆମ୍ଭର ॥
ଆନନ୍ଦ ଜଉତୁକ ଯେ ବଢ଼ିଲା ତାଙ୍କର ।
ନୃତ୍ୟଗୀତ ସବୁ ଛାଡ଼ି ପାର୍ଥି ରାମାବର ॥
ଶବର ବାଣେ ହରିଣୀ ହୁଅନ୍ତି ଯେସନ ।
ମଦନ ବାଣେ ସୁନ୍ଦରୀ ରହିଲେ ତେସନ ॥
ମୋହନ ଯୁବା ରୂପକୁ ଚାହିଁ ମୋହହୋଇ ।
ଦେଖ ଦେଖ ବୋଲି ଏକ ଆରେକକୁ କହି ॥
ନେତ୍ର ପଙ୍କଜେ ପୂଜାଇ ସେ ଯୁବା ସୁନ୍ଦର ।
ଚାହିଁ ଚାହିଁ ବଖାଣନ୍ତି ରାମାଗଣ ସାର ॥
କାମ ହୋଇଥିଲେ ଥାନ୍ତା ଏହା ସଙ୍ଗେ ରତି
ଅଶ୍ୱିନୀ କୁମାର ବୋଲି ବୋଲିବା କେମତ ॥
ଯୁଗଳ ମୂରତି ସେହି ସ୍ୱର୍ଗର ସୁନ୍ଦର ।
ଏହିତ ତାହା ନୁହଇ ଅଟେ ଏକେଶ୍ୱର ॥
ଗନ୍ଧର୍ବ କିବା କିନ୍ନର ଏ ସିଦ୍ଧ ପୁରୁଷ ।
କାମରୂପ ଧରି ଏଥେ ହୋଇଛି ପ୍ରବେଶ ॥
କିବା କେଉଁ ଋଷିର ଏ ସୁନ୍ଦର କୁମର ।
ଯାହା ତାହା ହେଉ ଭାଗ୍ୟବନ୍ତ ଜନଙ୍କର ॥
ପୂର୍ବପୁଣ୍ୟ କର୍ମଫଳେ ନିଧି ଆସି ମିଳେ ।
ତେସନ ଆସି ମିଳନ୍ତି ଆମ୍ଭ ପୁଣ୍ୟଫଳେ ॥
ଏହାକୁ ପଠାଇଛି ବିଧି ଆମ୍ଭର ନିମନ୍ତେ ।
ଗଉରୀଙ୍କି ପୂଜିବାକୁ ଆସିଅଛୁ ଏଥେ ॥
ଗଉରୀ ଦେବୀ କୃପାରୁ ବରିବା ଗୋ ଚାଲ ।
ପ୍ରମୋହିନୀ ବୋଇଲେ ଏହା ନମଣ ଗୋ ଗେଲ
ସୁଶୀଳା ବୋଇଲେ ଗୋ ଗେଲ ନୁହଇ ଭଉଣୀ
ତୁମ୍ଭେ ତା ଘରଣୀ ହେଲେ ମୁଁ ହେବି ଘରଣୀ
ତାରା ବୋଇଲେ ଭଉଣୀ ନ ବୋଲ ଏମନ୍ତ ।
ତୁମ୍ଭର ଯେ କାନ୍ତ ସଖି ଆମ୍ଭର ସେ କାନ୍ତ ॥
ସୁସ୍ୱରା ଚନ୍ଦ୍ରିକା ବେନି ବୋଇଲେ ଭଉଣୀ ।
ଆମ୍ଭପାର୍ଥିଙ୍କର ଆତ୍ମା ଭିନ୍ନ ନୋହେ ପୁଣି ॥
ଚାଲ ସମସ୍ତେ ପୁରୁଷ ରତ୍ନକୁ ବରିବା ।
ରତ୍ନକୁ ଛାଡ଼ିଲେ ଆଉ ରତ୍ନ କି ପାଇବା ॥
ମନ ଆମ୍ଭର ଗୋ ଯାଇଁ ରହିଲାଣି ତହିଁ ।
ତୁମ୍ଭ ଚାରିଜଣ ବର ବରିଲଣି ମୁହିଁ ॥

ମୁଁ ବରିବି ମୁଁ ବରିବି ସମସ୍ତେ କହିଲେ ।
ହେନ ରାଜନ ମୁନି ପୁତ୍ର ଜଳରେ ପଶିଲେ ॥
ସ୍ନାନ ସନ୍ଧ୍ୟା ତରପଣ ଆଦି କ୍ରିୟାମାନ ।
ପାର୍ଥିକନ୍ୟା କଥା ଶୁଣି ମନରେ ବିସ୍ମର ॥
କି ଅପୂର୍ବ ସୁନ୍ଦରୀ ଏ ପାର୍ଥିଗୋଷ୍ଠ ନାରୀ ।
ଚଉଦ ଭୁବନେ କେହି ନୋହିବେକ ସରି ॥
ବ୍ରହ୍ମାବିଷ୍ଣୁ ମହେଶ୍ୱର ଆଦି ଦେବ ଯେତେ ।
ମହାମୁନି ସିଦ୍ଧ ଯୋଗୀ ଏମାନେ ସମସ୍ତେ ॥
ଏ ପାର୍ଥି ଅବଳାଙ୍କର କଟାକ୍ଷ ଚାହାଣୀ ।
ତାଙ୍କ ମନ ଚଇତନ ନିମେଷେ ନେବ ଟାଣି ॥
ଏହାଙ୍କ କଟାକ୍ଷ ଲୀଳା ମଦନମୋହନ ।
ନିତ୍ୟ ହୃଦୟ ସ୍ଥଳକୁ କରଇ ଦହନ ॥
କାମ ଏହାଙ୍କ କଟାକ୍ଷ ବାଣ କରେ ଧରି ।
କାହାର ମନ ମୃଗକୁ ନ ପାରିବ ମାରି ॥
ଯେପର୍ଯ୍ୟନ୍ତ କାମିନୀର କଟାକ୍ଷ ବାଣରେ ।
ପୁରୁଷ ଆଘାତ ପାଇ ନ ପଡ଼େ ମୋହରେ ॥
ତାବତ ଥାଇ ତାହାର ସକଳ ବିଚାର ।
ତାବତ ନୀତି ଶାସ୍ତ୍ରରେ ଜ୍ଞାନ ଥାଇ ତାର ॥
ତାବତ ଜାତି କୁଳକୁ ଥାଇ ତାର ଡର ।
ତାବତ ତାର ସମାଜଭିତରେ ଆଦର ॥
ତାବତ କାଳ ଇନ୍ଦ୍ରିୟ ପାରଇ ନିରୋଧି ।
ତାବତ ତାହାର ଜପତପ ଯେ ସମାଧି ॥
ତାବତ କାଳର କୁଳମର୍ଯ୍ୟାଦା ରହଇ ।
ତାବତ କାଳ ମଧ୍ୟରେ ତପୀ ସେ ବୋଲାଇ ॥
ତାବତ କାଳ ତାହାର ବ୍ରତ ଉପବାସ ।
ତାବତ ଲୋକ ସମାଜେ ବୋଲାଇ ପୁରୁଷ ॥
ସ୍ତ୍ରୀଏ ଆପଣା ହାବ ଭାବକୁ ଦେଖାଇ ।
ବିଷୟ ଅନୁରାଗିକ ମୋହରେ ପକାଇ ॥
ଉନମତ୍ତ କରି ତାର ହରନ୍ତି ସୁଜ୍ଞାନ ।
ପ୍ରାଣପଣେ କଲେ ମୁହିଁ ମୋ ଧର୍ମ ରକ୍ଷଣ ॥
ଏ ସୁନ୍ଦରୀ ସୁଲଳିତ ଅପାଙ୍ଗେ ଅନାଇ ।
ମୋର ଅଟଳ ଚିତ୍ତକୁ ଦିଅନ୍ତି ଟଳାଇ ॥
ଧନ୍ୟ ଧନ୍ୟ ବିଧାତାର କି ଅପୂର୍ବ ଲୀଳା ।
ମନ ମୋହିନୀ ଅଟନ୍ତି ଏ ସୁନ୍ଦରୀ ବାଳା ॥
ଏ ସଂସାରେ କହିଛନ୍ତି ସାଧୁ ସଜ୍ଜନେ ।
ମନୋହାରିଣୀ ଦାରୁଣା ରମଣୀଙ୍କ ବାଣେ ॥

ମୃତ ଅଞ୍ଜନ ପଣରେ କାମୁକ ମରାଣୀ ।
ମଳ ମୂତ୍ର ରକ୍ତ ମାଂସ ନାହିଁ ନ ମାଳ ॥
ସଦା ଆନନ୍ଦକ ଥାନ୍ତି ଜ୍ଞାନୀ ନ ହୁଅନ୍ତି ।
ମୋ ପାଦକୁ ନ ଆସୁଣୁ ଆଜ୍ଞ ଏ ଯୁବତ ॥
ସେଠାରୁ ହୋଇ ଅନ୍ତର ସିଦ୍ଧ ମୁନି ଘରେ ।
ଏମନ୍ତ ଭଳ ମନରେ ସେ ଦ୍ୱିଜ କୁମରେ ॥
ହେ ରାଜନ ବଇଷ୍ଣବ ମଣି ବ୍ରହ୍ମଋଷି ।
ଯୋଗବଳେ ରହୁଁ ରହୁଁ ଶୂନ୍ୟରେ ବିହର ॥
ବିପ୍ର ଅଦୃଶ୍ୟ ହୁଅନ୍ତେ ଭଳନ୍ତି ସୁନ୍ଦରୀ ।
ଆଶ୍ଚର୍ଯ୍ୟ ହୋଇ ରହାନ୍ତି କୁରଙ୍ଗୀଙ୍କ ପର ॥
ଅକ୍ଷି ବୁଲାଇ ଦେଖନ୍ତି ଚଉଦିଗେ ବାଳା ।
ଏମନ୍ତ ଅଦ୍ଭୁତ ସଖି କାହିଁ ନ ଦେଖିଲୁ ॥
ଦେଖା ଦେଇ ଲୁଚିଗଲା ବିଜୁଳୀ ପରାୟ ।
ଇନ୍ଦ୍ର ଜାଲ ମାୟା ଜାଣେ ଏ ଯୁବା ନିଶ୍ଚୟ ॥
କୋହଲେକ ଦେଖୁ ଦେଖୁ ଅଦୃଶ୍ୟ ହୁଅନ୍ତା ।
ଗଲା ଗଲା ଆମ୍ଭମନେ ଦେଲା ଯାହା ଚିନ୍ତା ॥
ଦାବାନଳ ପୋଡେ଼ ଯେହ୍ନେ ସୁନ୍ଦର କାନନ ।
ବିରହ ଅଗ୍ନି ପୋଡ଼ିଲା ଆମ୍ଭ ହୃଦବନ ॥
ହେ କାନ୍ତ ଏ ଇନ୍ଦ୍ରଜାଲ ମାୟା ଛାଡ ଛାଡ ।
ଆମ୍ଭଙ୍କୁ ଦେଖା ନ ଦଅ ତୁମ୍ଭେ ଏଡେ ରାଢ ॥
ମହୁମାଛି ମହୁ ସଞ୍ଚି ଭକ୍ଷିବାର ବେଳେ ।
ମଧୁହାରୀ ମଧୁଭାଙ୍ଗି ନିଏ କଉଶଳେ ॥
ଆମ୍ଭେ ମହୁ ତୁମ୍ଭେ ନାଥ ଅଟ ମଧୁହାରୀ ।
ବିଧାତା ଏଥିରେ ଜାଣ ମହୁ ପୋକ ସର ॥
ଲୁଚି ରହିବା ତୁମ୍ଭର ନୁହଇ ବେଭାର ।
ଆହାକ କଷ୍ଟ ବିହିଲୁ ବିହି ଦୁରାଚାର ॥
ଦେଖାଇ କପାଇଁ ପୁଣି ହରି ନେଲୁ କହ ।
ଅବିଧି କରି କେମନ୍ତେ ବିଧି ନାମ ବହ ॥
ଜାଣିଲୁ ତୋହର କଥା ଏବେ ରେ ବିଧାତା ।
ଆମ୍ଭମନେ ଦେବାପାଇଁ ଏହି ଉଘାର ଚିନ୍ତା ॥
ସନ୍ତାପ ଅନଳେ ଦଗ୍ଧ କରିବା ନିମନ୍ତେ ।
ଗଳାର ରତ୍ନକୁ ଆଣି ଦେଖାଇଲୁ ଏଥେ ॥
ଜାଣିଲୁ ତୁ ଗଢ଼ିପାରୁ ସନ୍ତାପ କେବଳ ।
ନିର୍ଦ୍ଦୟ ପୁରୁଷଙ୍କର ଅଟୁ ତୁହି ମୂଳ ॥
ଦୟାଥିଲେ କି ତୋହର କରନ୍ତୁ ତୁ ଏହା ।
ଆହେ କାନ୍ତ ତୁମ୍ଭେ ପରା ଅଟ ଆମ୍ଭ ନାହା ॥

ଏଡେ ନିଷ୍ଠୁର କପାଇଁ ହେଲ ହୋଇ ନାଥ
ଆମ୍ଭେ ଯେ ଅବଳା ନାରୀ ତୁମ୍ଭେ ବଳବନ୍ତ ॥
ଆମ୍ଭମନ ହରିବାକୁ ଆସିଦେଲ ଦେଖା ।
କିବା କରୁଅଛ ନାଥ ଆମ୍ଭଙ୍କୁ ପରୀକ୍ଷା ॥
ତୁମ୍ଭେ କି ନ କର ନାଥ ଆମ୍ଭଙ୍କୁ ପରତେ ।
ସ୍ନେହ ମମତା କି ନାଥ ନାହିଁ ତୁମ୍ଭ ଚିତ୍ତେ ॥
କିବା କପଟୀ ମାୟାବୀ ପୁରୁଷ ସୁନ୍ଦର ।
ମନ ହରିବା ନିମନ୍ତେ କେବଳ ଚତୁର ॥
ତାରିବା ଉପାୟ ଯେଣୁ ତୁମ୍ଭଙ୍କୁ ଅଜଣା ।
ଏଣୁ ଶଠମଧ୍ୟେ ତୁମ୍ଭେ ନୋହିବ କି ଗଣା ॥
ବିନା ଅପରାଧେ କ୍ରୋଧ କର ଯିନା ତୁମ୍ଭେ ।
ଠକବିଦ୍ୟା ଜାଣିଥିବା ଲୋକ ଠକେ ଦମ୍ଭେ ॥
ଯାହାକୁ ଠକେ ତା ମନେ ହୁଏ ଯେତେ ଦୁଃଖ
ତାହାକି ତୁମ୍ଭେ ନ ଜାଣ ଅବଳାଙ୍କୁ ଠକ ॥
ନ ଦେଖୁଁ ଯେବେ ତୁମ୍ଭଙ୍କୁ ଆହେ ପ୍ରାଣେଶ୍ୱର ।
ମରଣ ନିଶ୍ଚୟ ଜାଣ ଆମ୍ଭ ପାଞ୍ଚଙ୍କର ॥
ତୁମ୍ଭ ଦରଶନ ପାଇଁ ଧରିଛୁ ଜୀବନ ।
ତୁମ୍ଭେ ଏଠାରୁ ଯହିଁକି କଲ ହେ ଗମନ ॥
ତହିଁକି ଆମ୍ଭଙ୍କୁ ନିଅ ମାଗୁଛୁଁ ଏତକ ।
ଆହା ବିହି ଦେଖାଇ ତୁ ହରିଲୁ କାହିଁକି ॥
ଆମ୍ଭ ଆନନ୍ଦ ଗଡ଼ାକୁ ଭାଙ୍ଗିଲୁ କେମନ୍ତେ ।
ଏବେ ଆମ୍ଭଙ୍କୁ ଭେଟାଇ ଦଅ ତୁ ତୁରିତେ ॥
ଦାରୁଣ ବୁଦ୍ଧିକି ଛାଡ଼ କରୁଣା ତୁ କର ।
ସାଧୁଏ କଷ୍ଟ ନ ସହି ପାରନ୍ତି କାହାର ॥
ଏମନ୍ତେ ବହୁତ ରୂପେ ବିଳାପ କରଣ ।
ଅପେକ୍ଷା କରି ସେଠାରେ ରହି କିଛି କ୍ଷଣ ॥
ପଡାର ଭୟେ ଗୃହକୁ ଫେରିଗଲେ ବେଗେ
ବିପ୍ର ବିଚ୍ଛେଦ ଲୋତକ ରଖି ନେତ୍ର ଯୁଗେ ॥
ତାଙ୍କ ମାତାମାନେ ଦେଖି ପଚାରିଲେ ତାଙ୍କୁ ।
ଏତେ ବିଳମ୍ବ କାହିକି କଲ ଆସିବାକୁ ॥
ଅଚ୍ଛେଦ ପୋଖରୀ ଜଳେ କରୁଥିଲୁ ସ୍ନାନ ।
କଳସି ଗଣ ଭେଟିଲୁ ଆମ୍ଭେ ଆଜଦନ ॥
କ୍ରୀଡ଼ା କରୁଁ କରୁଁ ବେଳା ହୋଇଲା ଉଚ୍ଛୁର
ଜାଣି ପାରନ୍ତେ ଆମ୍ଭଙ୍କୁ ମାଡ଼ିଲା ଯେ ଡର ॥
ବାଟେ ଦଉଡ଼ ଦଉଡ ଅଇଲୁ ଗୋ ମାତ ।
ପଥଶ୍ରମ ଯୋଗୁଁ ଆମ୍ଭ ମନେ ଦୁଃଖ ଜାତ ॥

କାହାର କଥା ଟିକା ଭଲ ଆମ୍ଭଙ୍କୁ ନ ଲାଗେ ।
ପ୍ରଖର ହୋଇ ନିଶ୍ୱାସ ବହେ ନାସା ଯୁଗେ ॥
ଭୋଜନ ଦ୍ରବ୍ୟ ଆମ୍ଭଙ୍କୁ ଲାଗେ ବିଷ ପିତା ।
ଆଉ କିଛି କଥା କହି ନ ପାରିଲୁ ମାତା ॥
ଏହା କହି ମଣିମୟ ଭୂମିରେ ଲୋଟିଲେ ।
ମନର ବ୍ୟଥା ଗୁପତ କରିଣ ରଖିଲେ ॥
ଆନ କଥା କହି ଦେଲେ ମାତାଙ୍କୁ ଭୁଲାଇ ।
ଭୁଲିଗଲେ ସେ କଥାରେ ହୋଇଣ ଯେ ମୋହି
ଧର୍ମଗର୍ଭ ପାଳିଥିଲେ ଯେବଣ ମୟୂର ।
ନିତ କ୍ରୀଡ଼ା କରଇ ସେ ତାର ସଙ୍ଗତର ॥
ନୃତ୍ୟ କରଇ ମୟୂର ନୃତ୍ୟକୁ ଦେଖାଇ ।
ସେ ରାତ୍ରେ ସେ କ୍ରୀଡ଼ା ମୟୂରକୁ ନ କରଇ ॥
ପ୍ରେମୋହନୀ ପୋଷିଥିଲେ ଯେଉଁ ଶୁଆଗୋଟି ।
ପଢ଼ାଏ ତାକୁ ରାତରେ ବସି ସେ ବିମ୍ବୋଷ୍ଠୀ ॥
କଉତୁକେ ଶୁଣୁଥାଏ ତାର ପାଠ ପଢ଼ା ।
ସେ ରାତ୍ର ସେ ଶୁକପକ୍ଷୀ ନ ହେଲା ତା ଲୋଡ଼ା
ପଞ୍ଜୁରୀ ଥିବା ଶୁକକୁ କିଛି ନ ପଢ଼ାଇ ।
ବିପ୍ର ବିଚ୍ଛେଦେ ତାହାର ମନ ଘାଣ୍ଟି ହୋଇ ॥
ନେଉଳେକ ପାଳିଥିଲେ ସୁଶୀଳା ସୁନ୍ଦରୀ ।
ତାକୁ ଆଦର ନ କଲେ ସେହି ପୂର୍ବପରି ॥
ବିପ୍ରବିଚ୍ଛେଦେ ତାହାର ମନ ଯାଏ ପୋଡ଼ି ।
ତେଜିଲେ ସେ ସବୁ କ୍ରୀଡ଼ା କଉତୁକ ଏଡ଼ି ॥
ଚନ୍ଦ୍ରିକା ସୁନ୍ଦରୀ ଦୁହେଁ ପୋଷିଥିଲେ ହଂସ ।
ଦେଖୁଥାନ୍ତି ନିତ୍ୟ ବସି ତାଙ୍କ କ୍ରୀଡ଼ାରସ ॥
ଏମନ୍ତେ ସେ ପାର୍ଥିକନ୍ୟା କ୍ରୀଡ଼ା କଉତୁକ ।
ଛାଡ଼ି ସବୁ ରାତ୍ର ଯାକ କଲେ ବସି ଶୋକ ॥
କ୍ରୀଡ଼ା ମନ୍ଦିରେ ତାହାଙ୍କୁ ସୁଖ ନ ଲାଗିଲା ।
ବନ୍ଧୁ ବାନ୍ଧବଙ୍କ କଥା ବିଷ ଜଣା ଗଲା ॥
ବୀଣା ନ ବଜାଇଲେ ସେ ନ ଗାଇଲେ ଗୀତ ।
ପାରିଜାତ ପୁଷ୍ପ ତାଙ୍କୁ ହେଲା ବିଷବତ ॥
ମନ୍ଦାର ଫୁଲ ଆମୋଦ ନ ଘେନିଲେ ସେହି ।
ମଧୁର ମଧୁ ନ ପିଇ ଯୋଗି ପ୍ରାୟ ରହି ॥
ଯୋଗୀଏ ଯେମନ୍ତେ ଯୋଗସାଧିବାର ବେଳେ
ନାସା ଅଗ୍ରକୁ ଅନାଇ ରହନ୍ତି ନିରୋଳେ ॥
ପୁରୁଷ ଉତ୍ତମଠାରେ ରଖିଥାନ୍ତି ମନ ।
କିଛି ନ କହି ନିଶ୍ଚଳେ କରୁଥାନ୍ତି ଧ୍ୟାନ ॥

ତେସନ ସେ ପୁରୁଷର ରୂପ କଲେ ଚିନ୍ତା ।
ତହୁଁ ପୁଣି ଉଠି ଯାଇ ହେଲେ ଉନମତ୍ତା ॥
ଯେଉଁ ଶ୍ରେଷ୍ଠ ମଣିନାମ ଅଟଇ ଚନ୍ଦ୍ରକାନ୍ତ ।
ଯାହାର ଦେହରୁ ନୀର ଝରେ ଅବିରତ ॥
ସେ ମଣି ଜଡ଼ା କନ୍ଦରେ ରହି କ୍ଷଣ କାଳ ।
ଜଳା କବାଟ ଫିଟାଇ ନିରେଖି ସକଳ ॥
ଜଳ ଯନ୍ତ୍ର ଥିବା ସ୍ଥାନେ ରହି ପୁଣି କ୍ଷଣେ ।
ଏମନ୍ତେ ସେ ରାତ୍ର ଯାକ ହୋଇ ଏଣେତେଣେ
କେତେବେଳେ ପଦ୍ମପତ୍ର ବିଛାଇ ଶୁଅନ୍ତି ।
ସଖୀମାନେ ପଦ୍ମପତ୍ର ଧରି ବିଞ୍ଚୁଥାନ୍ତି ॥
କିନ୍ତୁ ମଣନ୍ତି ସେ ମନ୍ଦ ଶୀତଳ ପବନ ।
ବିରହ ଜ୍ୱରେ ତାପିତ ହୋଇ ପାର୍ଥିଜଣ ॥
ଅନ୍ତଦ୍ୱାରେ ରହି କଷ୍ଟେ ରାତ୍ର ପୁହାଇଲେ ।
ପ୍ରଭାତରେ ଗଗନରେ ସୂର୍ଯ୍ୟଙ୍କୁ ଦେଖିଲେ ॥
ବର୍ଷିବା ଆଶାରେ ତହୁଁ ଗଲେ ଧୀରେ ଧୀରେ
ନିଜ ନିଜ ଜନନୀଙ୍କି ଜଣାଇ ମଧୁରେ ॥
ଦେଉଳ ପୂଜିବା ପାଇଁ ଘେନି ଅନୁମତ ।
ଗନ୍ଧ ପୁଷ୍ପ ଧୂପ ଦୀପ ଘେନିଣ ଚଳନ୍ତି ॥
ଗୀତ ଗାଇ ଗାଇ ମିଳି ପୋଖରୀର କୂଳେ ।
ଦ୍ୱିଜ ପୁତ୍ର ସ୍ନାନ କରେ ଦେଖି ତାକୁ ଡୋଳେ
ସୂର୍ଯ୍ୟଙ୍କୁ ଦେଖିଲେ ଯେହ୍ନେ ଫୁଟେ ପଦ୍ମଫୁଲ
ତେସନ ତାହାଙ୍କ ମନ ହୋଇଲା ପ୍ରଫୁଲ୍ଲ ॥
ବ୍ରହ୍ମଚାରୀ ନିକଟକୁ ବେଗେ ଗଲେ ଧାଇଁ ।
ଘେରି ରହିଲେ ତାହାଙ୍କୁ ଚଉଆଡ଼ୁ ଯାଇଁ ॥
କେ ବାମ ହାତ ଧଇଲା କେ ଡାହାଣ ହାତ ।
ଭୁଜେ ଭୁଜ ଭିଡ଼ କେହୁ କଲା କୋଳାଗ୍ରତ ॥
କେ ବାମ ପାଦ ଧଇଲା କେ ଦକ୍ଷିଣ ପାଦ ।
ଏମନ୍ତେ ବାନ୍ଧି ବୋଇଲେ କାଳି କଲ ଫାନ୍ଦ ॥
ଆଜ ଦେଖିବା ହେ ନାଥ ଯିବ ତୁମ୍ଭେ କେଣେ
ବାନ୍ଧିଛୁ ଆଜ ତୁମ୍ଭଙ୍କୁ ଆମ୍ଭେ ପାର୍ଥିଜଣେ ॥
ପତିପଣେ ବରିଅଛୁଁ ତୁମ୍ଭଙ୍କୁ ହେ ନାଥ ।
ବାହୁ ପାଶେ ଥାଇଁ ବିପ୍ର କହିଲେ ଏମନ୍ତ ॥
ତୁମ୍ଭେମାନେ ଭଲ କଥା କହିଲ ସୁନ୍ଦରୀ ।
ଆମ୍ଭେତ ବିଦ୍ୟା ଅଭ୍ୟାସୀ ବିପ୍ର ବ୍ରହ୍ମଚାରୀ ॥
ଗୁରୁଘରେ ରହି ଆମ୍ଭେ କରୁଅଛୁ ବ୍ରତ ।
ଆମ୍ଭ ବ୍ରତ ନଷ୍ଟ ହେବ କଲେ ଯେ ଏମନ୍ତ ॥

ଆଶ୍ରମ ଧର୍ମ ପାଳିବା ଉଚିତ ଆମ୍ଭର ।
ଏଣୁ ବିଭା ହୋଇବାର ନୁହଇ ବେଭାର ॥
ସେ ପାଖେଁ ସୁନ୍ଦରୀ ଶୁଣି ବିପ୍ରର ବଚନ ।
ବସନ୍ତ କାଳେ ଯେସନ କୋକିଳର ସ୍ୱନ ॥
ତେମନ୍ତ ମଧୁର ସ୍ୱରେ କହିଲେ ହେ କାନ୍ତ ।
ଧର୍ମରୁ ଉତ୍ପନ୍ନେ ଅର୍ଥ ଅର୍ଥୁଁ କାମ ଜାତ ॥
ସେ କାମରୁ ସୁଖମୟ ଫଳ ଉପୁଜଇ ।
ସବୁ ପଣ୍ଡିତଙ୍କ ମତ ଏମନ୍ତ ଅଟଇ ॥
ଅଧିକ ଧର୍ମର ବଳ ଥିବାରୁ ତୁମ୍ଭର ।
ତୁମ୍ଭଙ୍କୁ କାମ ମିଳିଲା ଆସି ଦ୍ୱିଜବର ॥
ଏଣୁ ତୁମ୍ଭେ ତାହା ଘେନି କର ସୁଖ ଭୋଗ ।
ତୁମ୍ଭେ ତ ଅତି ନିର୍ମଳ ଯୋଗୀ ମହାଭାଗ ॥
ଏମନ୍ତ ଶୁଣି ବୋଇଲେ ପୁଣି ଦ୍ୱିଜବର ।
ତୁମ୍ଭର ବଚନ ସତ ନାହିଁ ତହିଁ ପାର ॥
ବ୍ରତର ଶେଷେ ଗୁରୁଙ୍କ ଆଜ୍ଞା ଘେନି ଶିରେ ।
ବିଭା ହେବୁଁ ଏଥକେଡ଼େ ଆନନ୍ଦୋହ୍ୱ ପାରେ
ଏମନ୍ତ ଶୁଣି ବୋଇଲେ ସେ ପାଖେଁ ସୁନ୍ଦରୀ ।
ହେ ସୁନ୍ଦର ବର ତୁମ୍ଭେ ମୃଡ଼ ସଙ୍ଗେ ସରି ॥
ପଣ୍ଡିତେ ସିଦ୍ଧ ଔଷଧି ସିଦ୍ଧ ରସାୟନ ।
ସିଦ୍ଧ ବିଧି ସିଦ୍ଧ କୁଳବନ୍ତ କନ୍ୟା ଗଣ ॥
ସିଦ୍ଧ ମନ୍ତ୍ର ସିଦ୍ଧ ରସ ନ ଛାଡ଼ନ୍ତି କେବେ ।
ପାଇଲେ ନେଇ ସମ୍ପାଦ ରଖନ୍ତି ତା ଜବେ ॥
କାର୍ଯ୍ୟ ଯେବେ ସିଦ୍ଧ ହୁଏ ଦଇବର ବଳେ ।
ତାହା କ ଛାଡ଼ ପାରନ୍ତି ନୀତଜ୍ଞ ସକଳେ ॥
ଏଣୁ ବିଳମ୍ବ କରିବା ନୁହଇ ଉଚିତ ।
ଧୋଇ ଧାଇ ନେବ ପାଇ ବିଷରୁ ଅମୃତ ॥
ଅପବିତ୍ର ସ୍ଥାନୁ ନେବ କାଞ୍ଚନକୁ ଧୋଇ ।
ଉତ୍ତମ ବିଦ୍ୟା ଶିଖିବ ଥିଲେ ନୀଚ ଠାଇଁ ॥
ସ୍ତ୍ରୀରତ୍ନ ନୀଚକୁଳୁ ପାଇଲେ ଆଣିବ ।
ଜନ ଜଗତରେ ସେହି ଧନ୍ୟ ବୋଲାଇବ ॥
ଅନୁରାଗିଣୀ କୋମଳଭାଷିଣୀ ସୁନ୍ଦରୀ ।
ନବ ଯଉବନା ରୂପ ଗୁଣ ଯୁତା ନାରୀ ॥
ନ ଖୋଜୁଣୁ ଆପେ ଆସି କରଇ ବରଣ ।
ଏ ସଂସାରେ ସେ ପୁରୁଷ ବୋଲାଇଛି ଧନ୍ୟ ॥
ଇତର ଜନେ ଏମାନ କଦାପି ନ ପାଇ ।
ଆମ୍ଭେ ପାଖେଁ କନ୍ୟା ସୁର ସୁନ୍ଦରୀ ବୋଲାଇ ॥

ତୁମ୍ଭେ ତପୀ ବ୍ରହ୍ମଚାରୀ ପୁରୁଷ ସୁନ୍ଦର ।
ଆମ୍ଭ ତୁମ୍ଭ ଭେଟ କାହିଁ ମନରେ ବିଚାର ॥
ବିଧିର ବିଧାନ କେହୁ କରିପାରେ ଆନ ।
ଅଟକ୍ଷଦ ପୋଖରୀ କାହିଁ ମନ ମଧ୍ୟେ ଧ୍ୟାନ ॥
ଏଠାରେ ଆଣି ମିଳନ କଲା ସିନା ବିଧି ।
ଏ ମଙ୍ଗଳ କଥା ତୁମ୍ଭେ ନ କର ଯେ ବାଧି ॥
ଗାନ୍ଧର୍ବ ବିବାହ ବିନା ନାହିଁ କିଛି ଆନ ।
ଲଗ୍ନ ବେଳା ଧରିବାର ନାହିଁ ପ୍ରୟୋଜନ ॥
ଏମନ୍ତ ଶୁଣି ବୋଇଲେ ବଟୁ ବ୍ରହ୍ମଚାରୀ ।
ଯେ ଜନ ଏକା ଧର୍ମକୁ ଧନ ପ୍ରାୟେ କରି ॥
ହେଳେ ତାକୁ ଛାଡ଼ି ପାରେ କୁରଙ୍ଗୀନୟନା ।
ଧର୍ମ ଅର୍ଥ କାମ ମୋକ୍ଷ ଚଉବର୍ଗ ସିନା ॥
ଏକ ଏକ ସିଦ୍ଧ ହେଲେ ଫଳ ସିନା ପାଇ ।
ଏ ଚଉ ବର୍ଗର ମୂଳ ଧର୍ମ ଯେ ଅଟଇ ॥
ଆଗ ଧର୍ମକୁ ସାଧିଲେ ସିନା ହେବ ଅର୍ଥ ।
ଅର୍ଥୁଁ କାମ କାମୁଁ ମୋକ୍ଷ ହୁଅଇ ପ୍ରାପତ ॥
ମୂଳକୁ ଛାଡ଼ି ଡାଳକୁ ଧଇଲେ ବିଫଳ ।
ବିପରୀତ କର୍ମ କଲେ ବିପରୀତ ଫଳ ॥
ବ୍ରତୀ ହୋଇ ଅକାଳରେ ବିଭା ହେବ ନାହିଁ ।
କାଳ ନ ଜାଣିବା ଲୋକ ଫଳହିଁ ନ ପାଇ ॥
ଯେଣୁ ଧର୍ମ କର୍ମରେ ମୋ ମନ ଆସକତ ।
ନ ଛାଡ଼ି ପାରଇ ମୁହିଁ ସେହି ଧର୍ମ ବ୍ରତ ॥
ବିପ୍ରର ମୁଖୁଁ ଏମନ୍ତ ଶୁଣି ପ୍ରମୋହିନୀ ।
ହାତ ଛାଡ଼ି ଦେଇ ପାଦ ଧଇଲା ତକ୍ଷଣି ॥
ଦୁଇବାହୁକୁ ଧଇଲେ ସୁଶୀଳା ସୁସ୍ୱରୀ ।
ଏମନ୍ତେ ସେ ମୁଗ୍ଧା ହେଲେ ହୋଇ ଅତହ୍ୱରୀ
ସୁତାରୀ ବଟେଳ ବିପ୍ରକୁ କଲା ଆଲିଙ୍ଗନ ।
ଚନ୍ଦ୍ରିକା ବିପ୍ର ମୁଖରେ ବିହିଲା ଚୁମ୍ବନ ॥
ନିର୍ବିକାର ପୁରୁଷ ସେ ବିପ୍ରର କୁମର ।
ବେଢ଼ୁଁ ବେଳ କ୍ରୋଧ ତାର ବଢ଼ିଲା ଅପାର ॥
ଦିଶିଲା ପ୍ରଳୟ ଅଗ୍ନି ପ୍ରାୟ ବ୍ରହ୍ମଚାରୀ ।
କ୍ରୋଧଯୋଗୁଁ ସଦଜ୍ଞାନ ହଜିଲା ତାହାର ॥
ଶାପ ଦେଲା ଧରି ତୁମ୍ଭେ ପିଶାଚୀ ଶରୀର ।
ପିଶାଚୀ ପ୍ରାୟ ବେଭାର ଯେଣୁ ଗୋ ତୁମ୍ଭର ॥
ଶାପ ପାଇ ଭୟୁ ଛାଡ଼ ଦେଇ ହେଲେ ଠିଆ ।
ବୋଇଲେ ରେପାପ ଏଡ଼େ କାଷ୍ଠୁର ତୋହିୟା

ନତର୍ଦ୍ଧାଣୀ ଜନଙ୍କୁ ଶାପ ଦେଲ ଅକାରଣେ ।
ମଁଛ ବୋଲୁ ଧର୍ମ ଥାଏ ମନ ଅନୁକ୍ଷଣେ ॥
ଆମ୍ଭଙ୍କୁ ପିଶାଚୀ କଲୁ ଆରେ ଦୁରାଚାର ।
ହିତଜ୍ଞାନର ଅହିତ କରୁ ରେ ପାମର ॥
ଧିକ ଧିକ ତୋର ବ୍ରତ ବ୍ରାହ୍ମଣର ଧର୍ମ ।
କେହି କରିନାହିଁ କଲୁ ତୁହି ଯେଉଁ କର୍ମ ॥
ଶୁଣିନାହୁଁ ଜନେ ବେଦ ବେଦାଙ୍ଗ ପୁରାଣେ ।
ଭୃତ୍ୟ ଭକ୍ତ ମିତ୍ରଦ୍ରୋହୀ ଇହପର ଜନେ ॥
ବହୁତ ଦୁଃଖ ପାଇଣ ପଡ଼ଇ ନରକେ ।
ଆମ୍ଭ ଶାପେ ତୁ ପିଶାଚ ହୁଅ ଇହଲୋକେ ॥
କହୁଁ କହୁଁ ଦ୍ୱିଜବର ପିଶାଚ ହୋଇଲା ।
କ୍ଷୁଧାରେ ଆକୁଳ ହୋଇ ସେ ବନେ ବୁଲିଲା ॥
ପିଶାଚୀ ହୋଇ ବୁଲିଲେ ସେ ପାଞ୍ଚ କୁମାରୀ ।
ଦାରୁଣ କ୍ଷୁଧାର କ୍ଳେଶ ସେ ସହି ନ ପାରି ॥
କାନ୍ଦି କାନ୍ଦି ଆଦରିଲେ ଆପଣା କର୍ମକୁ ।
ରହିଲେ ସେ ପୂର୍ବଜନ୍ମ ଫଳ ଭୁଞ୍ଜିବାକୁ ॥
ପୂର୍ବାର୍ଜିତ କର୍ମଫଳ ଅଟଇ ଅନିବାର ।
ଦେବତା ହେଲେ ତହିଁରୁ ନ ପାଇ ନିସ୍ତାର ॥
ଆପଣାର ସ୍ଥାନ ପର ସଙ୍ଗରେ ଗୋଡ଼ାଇ ।
ସମସ୍ତ ପଡିଲେ ବନେ ସେ ମାତ ବସଇ ॥
କନ୍ୟାଙ୍କର ପିତା ମାତା ଭାଇ ବନ୍ଧୁ ଶୁଣି ।
କାନ୍ଦି କାନ୍ଦି ଗଲେ ଯହିଁ ଅଛି ପୁଷ୍କରିଣୀ ॥
ଦଇବର ବଳ କେହି ନ ପାରେ ନିବାରି ।
ଏମନ୍ତ କହି ଘରକୁ ଅଇଲେକ ଫେରି ॥
ଏଣେ ତେଣେ ଧାଇଁ ଧାଇଁ ରହିଲେ ତା ତୀରେ
ଏମନ୍ତେ ବହୁତ ଦିନ ବହିଗଲା ପରି ॥
ଲୋମଶ ମୁନି ମିଳିଲେ ଭ୍ରମି ଭ୍ରମି ତହିଁ ।
ପିଶାଚୀଗଣ ଧାଇଁଲେ ଖାଇବାର ପାଇଁ ॥
ଆଁ ଆଁ କରିଣ ଅଇଲେ ମୁନିର ପାଖକୁ ।
ଦୂରୁ ପଶି ନ ପାରିଲେ ଦେଖି ସେ ମୁନିଙ୍କୁ ॥
ମୁନିର ତେଜ ସହସ୍ର କିରଣକୁ ଜିଣି ।
ଦଗଧ ହୋଇ ପିଶାଚୀ ଗଲେ ପ୍ରାଣ ଘେନି ॥
ଦୂରରେ ଥାଇଁ ଦେଖନ୍ତି ସେ ମୁନିବରଙ୍କୁ ।
ପିଶାଚୀ ବିପ୍ର ଏକାଳେ ସହି ସେ ତେଜକୁ ॥
ପୂର୍ବକର୍ମ ଫଳେ ମୁନି ପାଖରେ ମିଳିଲା ।
ସାଷ୍ଟାଙ୍ଗ ପ୍ରଣାମ କରି ଭୂମିରେ ଗଡ଼ିଲା ॥

ଶିରେ କର ଯୋଡ଼ି ବୋଲେ ହେ ମୁନିଗୋସାଇଁ
ପୂର୍ବ ଭାଗ୍ୟ ଥିଲେ ସିନା ସାଧୁ ସଙ୍ଗ ପାଇ ॥
ଗଙ୍ଗା ଆଦି ପୁଣ୍ୟ ତୀର୍ଥ କରିଥିବା ଜନ ।
ସାଧୁଙ୍କୁ ଭେଟି କରଇ ସାଧୁ ଦରଶନ ॥
ସାଧୁସଙ୍ଗକାରୀ ଜନ ଧନ୍ୟ ଏ ଜଗତେ ।
ଭାଗ୍ୟବଳେ ଗୁରୁପାଦ ମିଳେ ଅକସ୍ମାତେ ॥
ଗୁରୁ ଦରଶନ ଦଏ ଶୁଭାଶୁଭ ଫଳ ।
ରୋଗ ଶୋକ ହରେ ଦଏ ସ୍ୱର୍ଗାଦି ସକଳ ॥
ଅଜ୍ଞାନ ହରଇ ପୁଣି ଦଏ ସଦଜ୍ଞାନ ।
ପୂର୍ବକଥା ଯାକ ସବୁ କହିଲା ବ୍ରାହ୍ମଣ ॥
ବେଦନିଧି ବିପ୍ରର ମୁଁ ଅଟଇ କୁମର ।
ସ୍ନାନ ନିମନ୍ତେ ଅଇଲି ଏ ପୋଖରୀ ତୀର ॥
ଏହି ଯେ ପାଞ୍ଚ ପିଶାଚୀ ଦେଖୁଅଛ ଆଗେ ।
ସୁନ୍ଦରୀପଣେ ପ୍ରଶଂସା ପାଆନ୍ତି ଏ ସ୍ୱର୍ଗେ ॥
ଏହାଙ୍କ ତୁଲ୍ୟ ସୁନ୍ଦରୀ ନାହିଁ ତ୍ରିଭୁବନେ ।
ଏ ପାଞ୍ଚ ଗନ୍ଧର୍ବ କନ୍ୟା ରହି ଏହିସ୍ଥାନେ ॥
ବର କାମନାରେ ପୂଜା କରନ୍ତି ଗଉରୀ ।
ମୋ ରୂପ ଦେଖି କନ୍ଦର୍ପ ଶରେ ହୋଇ ଘାରି
ବୋଇଲେ ଆମ୍ଭର ସ୍ୱାମୀ ହୁଅ ଦ୍ୱିଜବର ।
ମୁଁ ବୋଇଲି ଧର୍ମନଷ୍ଟ ହେବ ଗୋ ଆମ୍ଭର ॥
ନାସ୍ତି କରିବାରୁ ମୋତେ କଲେ ବଳାତ୍କାର ।
ଶାପ ମୁଁ ଦେଲି କ୍ରୋଧରେ ହୋଇଣ ଅଧୀର
ଗାଳି ଦେଇ ପାଞ୍ଚ କନ୍ୟା ଶାପ ଦେଲେ ମୋତେ
ପିଶାଚ ପିଶାଚୀ ହୋଇ ଭ୍ରମିଲୁଁ ବନସ୍ତେ ॥
କ୍ଷୁଧାତୁରେ ଭ୍ରମି ଭ୍ରମି ରହୁ ଆସି ଏଥେ ।
ଭାଗ୍ୟେ ତୁମ୍ଭଙ୍କୁ ଭେଟିଲୁ ଆଜ ଏ ସମସ୍ତେ ॥
ହେ ସ୍ୱାମି ଆମ୍ଭମାନଙ୍କୁ କରନ୍ତୁ ନିସ୍ତାର ।
ସୂର୍ଯ୍ୟ ଯେସନେ ନାଶଇ ଘୋର ଅନ୍ଧକାର ॥
ବିପ୍ରର କଥା ଶୁଣି ସେ ଲୋମଶ ଗୋସାଇଁ ।
ଦୟାରେ ତାହାଙ୍କ ଶିର ପାଣି ହୋଇଯାଇ ॥
ବୋଇଲେ ଆମ୍ଭ ପ୍ରସାଦେ ହେଉ ସର୍ବଜ୍ଞାନ ।
ନିରତେ ଧର୍ମ କର୍ମରେ ରହୁ ତୁମ୍ଭ ମନ ॥
ଧର୍ମ କଲେ ହେବ ନିଶ୍ଚେ ଶାପରୁ ମୁକତ ।
ପିଶାଚ ମୁନି ମୁଖରୁ ଶୁଣିଣ ଏମନ୍ତ ॥
ବୋଇଲା ହେ ମହାତ୍ମନେ ଧର୍ମ ଯାହା କହି ।
ଧର୍ମ କଲେ ବିକମ୍ପେ ପାଇବୁ ନା ଦେହି ॥

ଦାରୁଣ ଶାପ ଅନଳେ ମରୁଅଛୁ ପୋଡ଼ି ।
ଲୋମଶ ମୁନି କହିଲେ ଏ ସ୍ଥାନକୁ ଛାଡ଼ି ॥
ମୋର ସଙ୍ଗେ ଚାଲ ରେବାନଦୀ ଯାଏ ।
ସେ ଜଳେ ସ୍ନାନ କରିଣ ପାପ କର କ୍ଷୟେ ॥
ସେ ରେବା ଶାପୁଁ ମୁକତ କରିବ ତୁମ୍ଭଙ୍କୁ ।
ରେବା ସ୍ନାନ ଫଳ ଜଣା ଅଛଇ ଆମ୍ଭଙ୍କୁ ॥
ବିପ୍ର ବୋଇଲା କହିବା ହୋଇ କୃପା କରି ।
ରେବା ସ୍ନାନ ଫଳ କଥା ଶୁଣୁଁ ତପସ୍ୱୀ ॥
ଲୋମଶ ବୋଇଲେ ବିପ୍ର ଶୁଣ ସାବଧାନେ ।
ଆଉରି ମନ ଦେଇଣ ଶୁଣ କନ୍ୟାମାନେ ॥
ରେବା ସ୍ନାନେ ଜାଣିଲୁଁ ଶାପ ମୋଚନ ହୋଇବ
ଅନଳରେ ଭୁଜା ହୋଇଗଲ ପ୍ରାୟେ ଯିବ ॥
ସାତ ଜନମର ପାପ ରେବା ସ୍ନାନେ ଯାଇ ।
ଶାସ୍ତ୍ରେ ଯେ ପାପକୁ ଜାଣ ପ୍ରାୟଶ୍ଚିତ୍ତ ନାହିଁ ॥
ନର୍ମଦାଜଳେ ସେ ପାପ ଛାଡ଼ଯାଏ ତାର ।
ଜ୍ଞାନ ମୋକ୍ଷ ଫଳ ଦିଏ ନର୍ମଦାର ନୀର ॥
ସବୁ ପୁଣ୍ୟ ତୀର୍ଥ ସବୁ ପାପକୁ ହରଇ ।
ରେବାତୀର୍ଥ କଲେ ଇନ୍ଦ୍ରଲୋକରେ ବସଇ ॥
ଯାହା ଯେତୁ ମନାସଇ ତାହା ତହିଁ ମିଳେ ।
ମୋକ୍ଷ ପାଏ ସ୍ନାନ କଲେ ରେବାନଦୀ ଜଳେ
ସକଳ ପାପ ନାଶିନୀ ରେବାନଦୀ ନୀର ।
ନର୍ମଦା ନଦୀର ଜଳ ଦିଏ ବିଷ୍ଣୁପୁର ॥
ଯମୁନା ନଦୀର ସ୍ନାନେ ସୂର୍ଯ୍ୟଲୋକ ପାଇ ।
ସରସ୍ୱତୀ ନଦୀ ସ୍ନାନେ ବ୍ରହ୍ମଲୋକେ ଯାଇ ॥
ବିଶାଳା ଜଳ ବିଶାଳ ଫଳକୁ ଦିଅଇ ।
ପୁନର୍ଜନ୍ମ ବିନାଶଇ ନର୍ମଦା ଯେ ନଈ ॥
ପାପବନ ଦହନେ ସେ ଅଟଇ ଦାବାନଳ ।
ବିଷ୍ଣୁ ଭୁବନେ ବସାଇ ନର୍ମଦାର ଜଳ ॥
ସରଯୂ ଗଙ୍ଗା ସିନ୍ଧୁ ଚନ୍ଦ୍ରଭାଗା ନଈ ।
କଉଶିକୀ ଗୋଦାବରୀ ତାପୀ କ୍ଷମା ଏହି ॥
କୃଷ୍ଣବେଣୀ ତୁଙ୍ଗଭଦ୍ରା ପୟୋଷ୍ଣୀ କାବେରୀ ।
ଏ ନଦୀମାନଙ୍କ ମଧ୍ୟେ ଶ୍ରେଷ୍ଠ ରେବାବାରି ॥
ପୂର୍ବ ଜନ୍ମ ପୁଣ୍ୟଫଳେ ରେବାତୀର୍ଥ ପାଇ ।
ଦେବଗଣେ ଏହା ସବୁବେଳେ ମୁଖେ ଗାଇ ॥
ତହିଁ ସ୍ନାନ କଲେ ଲୋକ ବିଷ୍ଣୁଲୋକେ ବସେ ।
ସ୍ୱର୍ଗପୁରେ ସୁଖ ଭୋଗ କରେ ଅବଶେଷେ ॥
ଯାଗ ଯଜ୍ଞ ଆଦି ଫଳ ତୁଳିଲେ ତା ସଙ୍ଗେ ।
ରେବାର ଫଳ ଅଧିକ କହିଲେ ତା ଆଗେ
ଯେଣୁ ସେ ବିଷ୍ଣୁ ଲୋକରେ ଦିଅଇ ମୁକତି ।
ନାରଦ କହିଲେ ଶୁଣ ଧର୍ମ ନରପତି ॥
ପିଶାଚ ପିଶାଚୀ ମୁନି ମୁଖୁଁ ଏହା ଶୁଣି ।
ଲୋମଶ ମୁନିଙ୍କ ସଙ୍ଗେ ସଙ୍ଗେ ଗଲେ ପୁଣି ॥
ରେବାନଦୀ ନିକଟରେ ହୁଅନ୍ତେ ପ୍ରବେଶ ।
ଦଇବବଳେ ହୋଇଲା ହିତ ଯେ ବତାସ ॥
ରେବା ଜଳବିନ୍ଦୁ ଉଡ଼ି ପିଶାଚୀଙ୍କ ଦେହେ ।
ପଡ଼ନ୍ତେ ଶାପୁଁ ମୁକତ ହୁଅନ୍ତେ ପାଇଁହେଁ ॥
ପୂର୍ବ ଦେହ ପାଇ କଲେ ନର୍ମଦାକୁ ସ୍ତୁତି ।
ପିଶାଚ ବିପ୍ର ତହିଁରେ ପାଇଲା ମୁକତି ॥
ସମସ୍ତେ ମୁନିଙ୍କ ପାଦେ ପଡ଼ି ହେଲେ ଭକ୍ତ ।
ଲୋମଶ ବୋଇଲେ ବିପ୍ର ହୁଅ ତୁମ୍ଭେ ବର୍ତ୍ତ ॥
ଏ ପଞ୍ଚ ସୁରସୁନ୍ଦରୀ ଅନୁରୂପ ତୁମ୍ଭ ।
ବିଭା ହୋଇ ଘର କରି ଥାଅ ଏଠେ ରହି ॥
ଏମନ୍ତ କହି ଲୋମଶ ଗଲେ ଆନତୀର୍ଥେ ।
ବିଭା ହୋଇ ସୁଖ ଭୋଗ କଲେ ଦିନାକେତେ
ନର୍ମଦା ସ୍ନାନର ଫଳେ ବିଷ୍ଣୁଲୋକ ପାଇ ।
ଶୁଣିଲ ରେବା ମହିମା ଆତ୍ରେ ନରସାଇଁ ॥
ସବୁପାପ ନାଶି ରାଜା ହୁଅ ପୁଣ୍ୟବନ୍ତ ।
ଗୋପୀନାଥ କହେ ଜନେ କର ତୀର୍ଥ ବ୍ରତ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ରେବା
ମାହାତ୍ମ୍ୟ ବର୍ଣ୍ଣନଂ ନାମ ଦଶମୋଽଧ୍ୟାୟଃ ।



## ଏକାଦଶ ଅଧ୍ୟାୟ ।

### ସକଳ ତୀର୍ଥ ମାହାତ୍ମ୍ୟ ।

ଯୁଧିଷ୍ଠିର ବୋଇଲେ ହେ ବ୍ରହ୍ମାର ନନ୍ଦନ ।
ବଶିଷ୍ଠ ମୁଖୁଁ ଶୁଣିଲେ ଦିଲୀପ ରାଜନ ॥
ସର୍ବପାପ ହାରି ତୀର୍ଥ ମହିମା ଯେମନ୍ତେ ।
ବୁଝାଇ କହ ହେ ମୁନି ଆମ୍ଭର ଅଗ୍ରତେ ॥
ନାରଦ କହିଲେ ଯେତେ ବ୍ରହ୍ମହତ୍ୟା ହୋଇ ।
ଦକ୍ଷିଣ ସିନ୍ଧୁରେ ଯେବେ ସ୍ନାନ କରେ ଯାଇଁ ॥

ଅଗ୍ନିଷ୍ଟୋମ ଯାଗଫଳ ପାଇ ସେହି ଜନ ।
ଦିବ୍ୟ ବିମାନେ ଚଳଇ ଅମର ଭୁବନ ॥
ଚର୍ମଣ୍ୱତୀ ନଦୀଜଳେ ଯେ ସ୍ନାନ କରଇ ।
ନିତ୍ୟ ଦେବତାଙ୍କୁ ତହିଁ ପୂଜେ ବ୍ରତୀ ହୋଇ ॥
ଅଗ୍ନିଷ୍ଟୋମ ଯାଗ କଲା ଫଳ ସେହି ପାଏ ।
ତହୁଁ ଅର୍ବୁଦ ପର୍ବତେ ଯିବ ମହାଶୟେ ॥
ହିମବନ୍ତ ପର୍ବତର ଅଟଇ ସେ ପୁତ୍ର ।
ପୃଥିବୀର ଛିଦ୍ର ସ୍ଥାନ ଜାଣ ସେ ପର୍ବତ ॥
ବଶିଷ୍ଠ ମୁନି ଆଶ୍ରମ ଅଛି ଜାଣ ତହିଁ ।
ରାତ୍ରଏ ଯେ ଜନ ଉପବାସୀ ହୋଏ ରହି ॥
ସହସ୍ର ଗୋରୁ ଦାନର ଫଳ ତାକୁ ମିଳେ ।
ବ୍ରହ୍ମଚାରୀ ହୋଇ ଜନ ପିଙ୍ଗା ତୀର୍ଥ କଲେ ॥
ଶତ କପିଳା ଦାନର ଫଳ ସେହି ପାଇ ।
ପ୍ରଭାସ ତୀର୍ଥକୁ ତହୁଁ ଯିବ ନରସାଇଁ ॥
ନିରତେ ତହିଁ ଥାଆନ୍ତି ଦେବ ହୁତାଶନ ।
ଯେଉଁ ଅଗ୍ନିର ସାରଥି ଅଟଇ ପବନ ॥
ସବୁ ଦେବତାଙ୍କ ମୁଖ ଯେ ଅଗ୍ନି ବେଦତ ।
ପ୍ରଭାସ ତୀର୍ଥର ସେହି ଦେବ ବରଦାତା ॥
ସେ ତୀର୍ଥ ବ୍ରତେର ଅତିରାତ୍ର ଫଳପାଇ ।
ତହୁଁ ସରସ୍ୱତୀ ତୀର୍ଥେ ଯିବ ନରସାଇଁ ॥
ସାଗର ସଙ୍ଗେ ସେ ଯହିଁ ମିଶିଛି ରାଜନ ।
ସେ ତୀର୍ଥ ବ୍ରତ କରଇ ଯାଇ ଯେଉଁ ଜନ ॥
ଗୋ ସହସ୍ର ଦାନ ଫଳ ତହିଁ ସେହି ପାଇ ।
ଅଗ୍ନି ପ୍ରାୟେ ତେଜୋବନ୍ତ ସେ ପୁଣି ହୁଅଇ ॥
ଦିବ୍ୟ ଦେହେ ପୂଜା ପାଇ ଯାଇ ସ୍ୱର୍ଗପୁରେ ।
ସମୁଦ୍ର ତୀର୍ଥରେ ସ୍ନାନ କଲେ ଯେଉଁ ନରେ ॥
ଶୁଦ୍ଧମନେ ତିନିରାତ୍ର କରେ ଉପବାସ ।
ତର୍ପଣେ ପିତୃ ଦେବତା କରାଇ ସନ୍ତୋଷ ॥
ଚନ୍ଦ୍ର ପ୍ରାୟେ ବିରାଜଇ ଶରୀର ତାହାର ।
ଅଶ୍ୱମେଧ ଯଜ୍ଞଫଳ ପାଇ ଯୁଧିଷ୍ଠିର ॥
ଯହିଁ ବିଷ୍ଣୁଙ୍କୁ ଦୁର୍ବାସା ଦେଇଥିଲେ ବର ।
ବରଦାନ ତୀର୍ଥ ନାମ ହୋଇଛି ତାହାର ॥
ଗୋ ସହସ୍ର ଦାନ ଫଳ ସ୍ନାନ କଲେ ପାଇ ।
ତହୁଁ ଦ୍ୱାରବତୀ ତୀର୍ଥ ଯିବ ବ୍ରତୀ ହୋଇ ॥
ପିଣ୍ଡାରକେ ସ୍ନାନ କଲେ ବହୁ ସୁନା ମିଳେ ।
ପଦ୍ମ ଆଦି ଚିହ୍ନ ଥିବା ମୁଦ୍ରା ସେହି ସ୍ଥଳେ ॥
ଆଜଯାଏ ଅଛି ତାହା ଏ ଅତି ବିଚିତ୍ର ।
ସେ ତୀର୍ଥର ଅଧିପତି ଦେବ ପଦ୍ମନେତ୍ର ॥
ଯେ ସ୍ଥାନେ ତ୍ରିଶୂଳ ହସ୍ତେ ତହିଁ ମହାଦେବ ।
ସିନ୍ଧୁ ସାଗର ସଙ୍ଗମ ତହିଁ ନରଦେବ ॥
ଶୁଦ୍ଧ ମନେ ସେ ସାଗର ତୀର୍ଥେ କରି ସ୍ନାନ ।
କରିବ ପିତୃଦେବତା ଋଷିଙ୍କ ତର୍ପଣ ॥
ତେଜୋବନ୍ତ ହୋଇ ଯିବ ବରୁଣ ଭୁବନ ।
ଶଙ୍କୁକର୍ଣ୍ଣ ଦେବ ପୂଜା କଲେ ହେ ରାଜନ ॥
ତୀର୍ଥ ଫଳ ଦଶଗୁଣ ହୁଅଇ ତାହାର ।
ଏଥିରେ ତୁମ୍ଭେ ତିଳହେଁ ସନ୍ଦେହ ନ କର ॥
ବ୍ରହ୍ମା ଆଦି ଦେବଗଣ ଯାଇଁ ଯେଉଁସ୍ଥାନେ ।
ମହେଶ୍ୱର ଦେବ ପୂଜା କରନ୍ତି ବିଧାନେ ॥
ସେ ତୀର୍ଥର ନାମ ତିନି ପାପବିମୋଚନ ।
ପ୍ରଦକ୍ଷିଣ କରି ତହିଁ ସ୍ନାନ କଲା ଜନ ॥
ଦେବଗଣ ସହିତରେ ରୁଦ୍ର ପୂଜା କରି ।
ଜନ୍ମ ଜନ୍ମାନ୍ତର ପାପପଙ୍କୁ ଯାଇ ତରି ॥
ମହୀରେ ତନି ତୀର୍ଥକୁ ଦେବେ ପ୍ରଶଂସନ୍ତି ।
ସ୍ନାନ କଲା ଜନେ ଅଶ୍ୱମେଧ ଫଳ ପାନ୍ତି ॥
ପୂର୍ବେ ଏ ତୀର୍ଥରେ ବିଷ୍ଣୁ ଦଇତ୍ୟ ସଂହାରି
ଦେବ କଣ୍ଟକ ଦାନବ ଗଣ ପୁଣି ମାରି ॥
ଏ ତୀର୍ଥ ପବିତ୍ର କରିଥିଲେ ହେ ରାଜନ ।
ତହୁଁ ବସୁଧାରା ତୀର୍ଥେ କରିବ ଗମନ ॥
ସେ ତୀର୍ଥ ମାତ୍ରକେ ଅଶ୍ୱମେଧ ଫଳ ପାଇ ।
ସ୍ନାନ ତର୍ପଣ କଲେ ବିଷ୍ଣୁ ଲୋକେ ଯାଇ ॥
ବସୁଦଗ ନାମେ ଅଛି ତହିଁ ତୀର୍ଥବର ।
ତହିଁ ସ୍ନାନ କରି ଜଳପାନ କଲା ନର ॥
ବସୁଗଣରେ ପୂଜିତ ହୋଇ ସୁଖ ପାଇ ।
ତହୁଁ ସିନ୍ଧୁତମ ତୀର୍ଥେ ପାପକୁ ଛଡ଼ାଇ ॥
ଅମୂଲ୍ୟ ସୁବର୍ଣ୍ଣ ତହିଁ ପାଇ ହେ ରାଜନ ।
ବ୍ରହ୍ମତୁଙ୍ଗ ତୀର୍ଥଜଳେ ପଶି କରି ସ୍ନାନ ॥
ପୁଣ୍ୟବଳେ ବ୍ରହ୍ମଲୋକେ କରିବ ଗମନ ।
କୁମାରିକା ନାମ ତୀର୍ଥ ବ୍ରତ କଲା ଜନ ॥
ସେହି ସିଦ୍ଧ ତୀର୍ଥଫଳେ ଇନ୍ଦ୍ରଲୋକେ ଯିବ ।
ରେଣୁକାନାମେ ତୀର୍ଥେକ ଅଛି ନରଦେବ ॥
ସେ ତୀର୍ଥ କରନ୍ତି ନିତି ଦେବଲୋକେ ଆସି ।
ତହିଁ ସ୍ନାନ କଲେ ଲୋକ ଚନ୍ଦ୍ରପ୍ରାୟେ ଦିଶି ॥

ତହୁଁ ପଞ୍ଚନଦ ତୀର୍ଥେ ଯିବ ଶୁଚି ହୋଇ ।
ସାଧିଗୋଷ୍ଟ ଯଜ୍ଞ ଫଳ ସେ ତୀର୍ଥରେ ପାଇ ॥
ତହୁଁ ଭୀମାତୀର୍ଥେ ଯାଇ କରିବ ଯେ ସ୍ନାନ ।
ପୁଣି ସେ ସଂସାରେ ଆଉ ନୋହିବ ଜନମ ॥
ସ୍ୱନସ୍ତ ମରତ ଧରି ହୁଏ ଦେବୀ ପୁତ୍ର ।
ଶତସସ୍ର ଗୋଦାନର ଫଳ ହୁଏ ପ୍ରାପ୍ତ ॥
ଆଶ୍ୱପାଏ ଯହିଁ ଅଛି ସୁନାରୂପା ମାଛ ।
ସେ ତୀର୍ଥେ ସ୍ନାନ କରିବ ଆହେ ଧର୍ମ ବସ୍ତ୍ର ॥
ବାଜପେୟ ଯାଗଫଳ ପାଇବ ସେ ସ୍ଥାନେ ।
ପରମ ଗତି ପାଇବ ପାପ ବିନାଶନେ ॥
ତହୁଁ ବିତସ୍ତା ନଦୀର ତୀରେ ପହୁଞ୍ଚିବ ।
ପିତୃ ଦେବ ଋଷିଙ୍କର ତର୍ପଣ କରିବ ॥
ସେ ତୀର୍ଥରେ ବାଜପେୟ ଯାଗ ଫଳ ପାଇ ।
କାଶ୍ମୀର ଦେଶେ ତକ୍ଷକ ନାମେ ନାଗ ଯାଇ
ବିତସ୍ତା ନାମରେ ଏକ ଘର କରି ଥିଲା ।
ସେ ତୀର୍ଥରେ ସ୍ନାନ କରି ପାପ ଛଡ଼ାଇଲା ॥
ପରମ ଗତି ପାଇବ ସେ ତୀର୍ଥରେ ନର ।
ତହୁଁ ମଳଦ ତୀର୍ଥକୁ ଯିବ ଯୁଧିଷ୍ଠିର ॥
ସନ୍ଧ୍ୟା ସକାଳେ ତହିଁରେ ସ୍ନାନ ଆଚମନ ।
କରି ସାରି ଯତନରେ ରାନ୍ଧି ଚରୁଅନ୍ନ ॥
ସପ୍ତାର୍ଚ୍ଚି ନାମରେ ଅଗ୍ନି ଥାପି ବିଧାନରେ ।
ସେ ଚରୁ ଅନ୍ନରେ ହୋମ କରିବ ମନ୍ତ୍ରରେ ॥
ଅକ୍ଷୟ ଦାନ ହେବ ସେ ପିତୃ ଲୋକଙ୍କର ।
ଶତ ରାଜସୂୟ ଯାଗ ଫଳ ପାଇବାର ॥
ଶତ ସହସ୍ର ଗୋଦାନ ଫଳ ପୁଣି ପାଇ ।
ସହସ୍ରେକ ଅଶ୍ୱମେଧ ଯାଗ ଯେ କରଇ ॥
ତାହାର ସମାନ ଫଳ ଚରୁ ହୋମେ ଜାଣ ।
ରୁଦ୍ରାସ୍ପଦ ନାମେ ଅଛି ତୀର୍ଥେକ ପ୍ରଧାନ ॥
ମହାଦେବଙ୍କୁ ପୂଜିବ ସେ ସ୍ଥାନକୁ ଯାଇ ।
ଅଶ୍ୱମେଧ ଯାଗ କଲା ଫଳ ତହିଁ ପାଇ ॥
ମଣିମନ୍ତ ତୀର୍ଥେ ଯିବ ହୋଇ ବ୍ରହ୍ମଗୃସ୍ତ ।
ସମାଧିରେ ଏକ ରାତ୍ର ତହିଁ ରହି କରି ॥
ଅଗ୍ନିଷ୍ଟୋମ ଯାଗ କଲା ଫଳ ତହିଁ ପାଇ ।
ଦେବିକା ତୀର୍ଥ କରିବ ସେ ଠାବରୁ ଯାଇ ॥
ସେ ଅଟଇ ବିପ୍ରଙ୍କର ଉତପତ୍ତି ସ୍ଥାନ ।
ଆଦରେ ବିପ୍ରେ ହୋଇଲେ ସେସ୍ଥାନେ ଜନମ

ଆବର ସେ ସ୍ଥାନେ ରହିଥାନ୍ତି ଶୂଳପାଣି ।
ସ୍ନାନ କରି ତାଙ୍କୁ ତହିଁ ଦେବ ଫୁଲପାଣି ॥
ସର୍ବ କାମ ଯାଗ କଲା ଫଳ ତହିଁ ପାଇ ।
କାମ ନାମେ ଏକ ତୀର୍ଥ ସେଠାରେ ଅଛଇ ॥
ସେ ତୀର୍ଥକୁ ରୁଦ୍ରତୀର୍ଥ ବୋଲନ୍ତି ସମସ୍ତେ ।
ଦେବଋଷି ସେ ତୀର୍ଥକୁ ଆସୁଥାନ୍ତି ନିତ୍ୟେ ॥
ତହିଁ ସ୍ନାନ କଲା ଲୋକ ଶୀଘ୍ରଫଳ ପାଇ ।
ଯଜନ ଯାଜନ ତୀର୍ଥ କରିବ ଯେ ଯାଇଁ ॥
ଆବର ବ୍ରହ୍ମବାଳକ ପୁଷ୍ପନ୍ୟାସ ତୀର୍ଥ ।
ତହିଁ ଯେ ସ୍ନାନ କରିବ ଆହେ ନରନାଥ ॥
ମରଣ ଜନ୍ମତ ଶୋକ ନ ଘଟିବ ତାକୁ ।
ଦେବିକା ତୀର୍ଥ ପ୍ରମାଣ କହୁଛି ତୁମ୍ଭଙ୍କୁ ॥
ଅର୍ଦ୍ଧ ଯୁଣ ଦୀର୍ଘ ତାରି ପ୍ରତି ପାଞ୍ଚ ଯୁଣ ।
ପୂର୍ବେ ତହିଁ ବ୍ରହ୍ମା ଆଦି ଯେତେ ଦେବଗଣ ॥
ସିଦ୍ଧଗଣ ମହା ଋଷିଗଣ ପୁଣି ଯେତେ ।
ତହିଁ ଯାଗ କଲେ ବହୁ କାଳ ପର୍ଯ୍ୟନ୍ତେ ॥
ତେଣୁ ସେ ତୀର୍ଥର ନାମ ହେଲା ଦୀର୍ଘସତ୍ର ।
ସେ ତୀର୍ଥ ମାଡିଲେ ଜନ ହୁଅଇ ପବିତ୍ର ॥
ରାଜସୂୟ ଅଶ୍ୱମେଧ ଯାଗ ଫଳ ପାଇ ।
ତହୁଁ ସରସ୍ୱତୀ ତୀର୍ଥେ ଯିବ ନରସାଇଁ ॥
ସରସ୍ୱତୀ ଯହିଁ ମରୁଭୂମିରେ ବହଇ ।
ଚମସ ଭେଦ ବୋଲିଣ ସ୍ଥାନେକ ଅଛଇ ॥
ଶିବ ଭେଦ ନାଗ ଭେଦ ବୋଲି ଦୁଇସ୍ଥାନ ।
ଏତିନି ସ୍ଥାନରେ ଜଳ ପାଇବ ରାଜନ ॥
ଏହାଛଡ଼ା ସରସ୍ୱତୀ ନଇଯାକ ବାଲି ।
ସ୍ନାନ କରିବା ନିମନ୍ତେ ତହିଁ ଯିବ ଚାଲି ॥
ତିନିସ୍ଥାନେ ସ୍ନାନ ଫଳ କହୁଅଛି ଶୁଣ ।
ଚମସ ଭେଦରେ ଅଗ୍ନିଷ୍ଟୋମ ଫଳ ଜାଣ ॥
ଶିବ ଭେଦେ ଗୋ ସହସ୍ର ଦାନ ଫଳ ପାଇ ।
ନାଗ ଭେଦେ ସ୍ନାନ କଲେ ନାଗଲୋକେ ଯାଇ
ଶଶାରୂପ ଧରି ଯହିଁ ଅଛଇ ପୁଷ୍କର ।
ଶଶଯାନତୀର୍ଥ ନାମ ଅଟଇ ତାହାର ॥
ସରସ୍ୱତୀର ସେ ତୀର୍ଥ ଅଟଇ ପ୍ରଧାନ ।
କାର୍ତ୍ତିକ ମାସେ କରନ୍ତି ସର୍ବେ ଯାଇ ସ୍ନାନ ॥
ଶିବଙ୍କ ପ୍ରାୟ ସମସ୍ତେ ଧଳା ହୋଇ ଯାନ୍ତି ।
ଆବର ସହସ୍ରେ ଗୋରୁ ଦାନ ଫଳ ପାନ୍ତି ।

କୁମାର କୋଷ୍ଟ ତୀର୍ଥରେ ଯେ କରଇ ସ୍ନାନ ।
ଆଉର ପିତୃଦେବଙ୍କୁ କରଇ ଅର୍ଚ୍ଚନ ॥
ଅଯୁତ ଗୋଦାନ କଲା ଫଳ ତହିଁ ପାଇ ।
ଆପଣାର କୋଟି କୋଟି କୁଳ ଉଦ୍ଧାରଇ ॥
ରୁଦ୍ର କୋଟି ତୀର୍ଥେ ତହୁଁ କରିବ ଗମନ ।
ତାହାର ପୂର୍ବର କଥା ଶୁଣ ହେ ରାଜନ ॥
କୋଟିଏକ ଋଷି ତହିଁ ଶିବ ଦରଶନେ ।
ସମାଧିରେ ରହି ଯୋଗ ସାଧି ଯୋଗାସନେ ॥
ସ୍ଥାନ ମହିମାରୁ ସର୍ବେ ହେଲେ ସିଦ୍ଧ ଋଷି ।
ଆଜ ମୋତେ ଏକା ଶିବ ଦେଖା ଦେବେ ଆସି
ମୁଁ ଦେଖିବି ମୁଁ ଦେଖିବି ବୋଲି କଲେ କଳି
କୋଟି ଋଷିଙ୍କର ମନ ଜାଣିଣ କପାଳୀ ॥
ଏକାବେଳେ କୋଟିରୁଦ୍ରରୂପେ ଦେଲେ ଦେଖା
ଏକାବେଳେକେ ଦେଖିଲେ ଭାଙ୍ଗିଗଲା କଷା ॥
ରୁଦ୍ର କୋଟିତୀର୍ଥ ନାମ ହେଲା ସେହିଦିନୁ ।
କହିଲିଁ ତଥ୍ୟକଥା କର ଅନୁମାନୁ ॥
ଶୁଚିମନ୍ତ ହୋଇ ତହିଁ ସ୍ନାନ ଯେ କରଇ ।
ଅଶ୍ୱମେଧ ଫଳ ପାଇ କୁଳ ଉଦ୍ଧାରଇ ॥
ସରସ୍ୱତୀର ସଙ୍ଗମ ତୀର୍ଥ ତହୁଁ ଯିବ ।
ତହିଁ ପୁଣି ଜନାର୍ଦ୍ଦନ ଦେବଙ୍କୁ ପୂଜିବ ॥
ଚଇତ୍ର ଶୁକ୍ଳ ପକ୍ଷ ଚତୁର୍ଦ୍ଦଶୀ ଦିନ ।
ବ୍ରହ୍ମଆଦି ଦେବ ଋଷି ସିଦ୍ଧହିଁ ଚାରଣ ॥
ସ୍ନାନ କରନ୍ତି ସମସ୍ତେ ସେ ତୀର୍ଥକୁ ଆସି ।
ତହିଁ ସ୍ନାନ କଲେ ଲୋକ ପୁନା ପାଏ ବେଶି ॥
ଯହିଁ ସବୁ ଯଜ୍ଞ ହୋଇ ଥିଲା ସମାପତ ।
ତହିଁ ଯେ ଜନ୍ତୁ ହୁଅଇ ମୁକ୍ତି ପରାପତ ॥
ସହସ୍ର ଗୋ ଦାନ କଲା ଫଳ ସେହି ପାଇ ।
ଧ୍ୟାନ ଗୋପୀନାଥ ବୋଲେ ତୀର୍ଥକର ଯାଇଁ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ସକଳ ତୀର୍ଥ ମାହାତ୍ମ୍ୟଂ ନାମ
ଏକାଦଶୋଽଧ୍ୟାୟଃ ।



## ଦ୍ୱାଦଶ ଅଧ୍ୟାୟ ।

### କୁରୁ କ୍ଷେତ୍ରାଦି ମାହାତ୍ମ୍ୟ ।

ନାରଦ ବୋଇଲେ ଶୁଣ ହେ ଧର୍ମ ରାଜନ
କୁରୁ କ୍ଷେତ୍ର ତୀର୍ଥ ଗୋଟା ଅଟଇ ପ୍ରଧାନ ॥
ସବୁ ପ୍ରାଣିଙ୍କି କରଇ ପାପରୁ ମୁକତ ।
କୁରୁ କ୍ଷେତ୍ରେ ଘରକରି ରହେ ଯେ ନିରତ ॥
ଯେବା କୁରୁତୀର୍ଥ କ୍ଷେତ୍ର ମାଗଇ ହେଉସ୍ନ ।
ସକଳ ପାପ ତାହାର ଦେହୁ ଯାଏ କ୍ଷୟ ॥
ବ୍ରହ୍ମା ଆଦି ଦେବଗଣ ବ୍ରହ୍ମଋଷି ଯେତେ ।
ଚାରଣ ଯକ୍ଷ ଗନ୍ଧର୍ବ ପନ୍ନଗ ସହିତେ ॥
ସିଦ୍ଧ ଗଣ ଅପସରୀ ଯେତେ ଦେବଯୋନି ।
ଏମାନେ କୁରୁକ୍ଷେତ୍ରକୁ ଯାନ୍ତି ନିତି ପୁଣି ॥
ସେହି ସରସ୍ୱତୀ ତୀର୍ଥେ ବୁଦ୍ଧିମନ୍ତ ଜନ ।
ଏକମାସ ଘରକରି ରହଇ ଯେ ଜନ ॥
ମନେ ମନେ କୁରୁକ୍ଷେତ୍ର ତୀର୍ଥକୁ କରଇ ।
ସକଳ ପାପ ବିନାଶି ବ୍ରହ୍ମଲୋକେ ଯାଇ ॥
ଶରଧାରେ କୁରୁକ୍ଷେତ୍ରେ ଯେ କରେ ଗମନ ।
ରାଜସୂୟ ଅଶ୍ୱମେଧ ଫଳ ତା ସମାନ ॥
ଦ୍ୱାରପାଳ ନାମେ ଏକ ତୀର୍ଥ ଅଛି ତହିଁ ।
ସେ ତୀର୍ଥକୁ ଯାଇ ତାକୁ ଯେ ସ୍ତୁତି କରଇ ॥
ସହସ୍ର ଗୋରୁ ଦାନର ଫଳ ତାକୁ ମିଳେ ।
ସତତ ନାମରେ ତୀର୍ଥ ଅଛି ତାର କୂଳେ ॥
ପ୍ରଧାନ ସ୍ଥାନ ବିଷ୍ଣୁର ଅଟଇ ସେ ଜାଣ ।
ନିରତେ ହରି ସେଠାରେ ରହିଥାନ୍ତି ପୁଣ ॥
ସ୍ନାନସାରି କଲେ ତହିଁ ଶ୍ରୀହରି ଦର୍ଶନ ।
ଅଶ୍ୱମେଧ ଫଳ ତାକୁ ମିଳଇ ରାଜନ ॥
ଶ୍ରୀ ବିଷ୍ଣୁଲୋକକୁ ରଥେ ବସଇ ସେ ଯାଇ
ପାରିପ୍ଳବ ତୀର୍ଥେ ତହୁଁ ଯିବ ନରସାଇଁ ॥
ଅତିମାତ୍ର ଅଗ୍ନିଷ୍ଟୋମ ଯଜ୍ଞଫଳ ପାଇ ।
ଗୋ ସହସ୍ର ଦାନ ଫଳ ପୃଥ୍ୱୀ ତୀର୍ଥେ ଥାଇ ॥
ତହୁଁ ଶାଲୁକିନୀ ତୀର୍ଥେ କରିବ ଗମନ ।
ଦଶାଶ୍ୱମେଧି ଘାଟରେ ପଶି ସାରି ସ୍ନାନ ॥
ପୂର୍ବେ କହିଥିବା ଫଳ ସେ ତୀର୍ଥରେ ପାଇ ।
ସର୍ପିନଦୀ ଜଳେ ସ୍ନାନ କରିବ ସେ ଯାଇଁ ॥

ଏହି ତୀର୍ଥ ଗୋଟା ଅଛଇ ନାଗଲୋକଙ୍କର ।
ଅଗ୍ନିଷ୍ଟୋମ ଫଳ ପାଇ ସ୍ନାନ କଲେ ନର ॥
ନାଗଲୋକରେ ବସଇ ସାଇ ଗଉରବ ।
ତେଣୁ ତହୁଁ ପୁଣି ଦ୍ୱାରପାଳ ତୀର୍ଥେ ଯିବ ॥
ସେ ତୀର୍ଥରେ ଏକରାତ୍ରି ବାସକଲେ ଯାଇଁ ।
ସହସ୍ର ଗୋରୁଦାନର ଫଳ ତହିଁ ପାଇ ॥
ତହୁଁ ପଥିନଦ ତୀର୍ଥ ପଶି କଲେ ସ୍ନାନ ।
ଅଶ୍ୱମେଧଯଜ୍ଞ ଫଳ ପାଇବ ରାଜନ ॥
ଅଶ୍ୱିନୀକୁମାର ତୀର୍ଥ ରୂପବନ୍ତ ହୋଇ ।
ବରାହ ତୀର୍ଥ ମିଳିବ ତହୁଁ ପୁଣ ଯାଇ ॥
ବିଷ୍ଣୁ ବରାହରୂପରେ ଥିଲେ ସେହି ସ୍ଥାନେ ।
ଅଗ୍ନିଷ୍ଟୋମ ଫଳ ପାଇ ବାସ କଲେ ଜନେ ॥
ତହୁଁ ଜଇନୀ ଦେଶରେ ସୋମ ତୀର୍ଥ ଯିବ ।
ସ୍ନାନକର ରାଜସୂୟ ଫଳକୁ ପାଇବ ॥
ଏକହଂସ ତୀର୍ଥେ ସ୍ନାନ କଲେ ଯାଇଁ ନର ।
ଗୋ ସହସ୍ର ଦାନ ଫଳ ପାଇ ନୃପବର ॥
ତହୁଁ କୃତ ଶୌଚ ତୀର୍ଥ କରିବ ଗମନ ।
ପୁଣ୍ଡରୀକ ଯଜ୍ଞ ଫଳ ପାଇ ହେ ରାଜନ ॥
ଶୁଦ୍ଧମନ୍ତ ହୋଇ ତହୁଁ ବୁଦ୍ଧିମନ୍ତ ଜନ ।
ମହାଦେବଙ୍କର ତୀର୍ଥ ମୁଞ୍ଜୀବଟ ନାମ ॥
ସେ ତୀର୍ଥେ ରାତ୍ରଏ ରହି ଗାଣପତ୍ୟ ହେବ ।
ଯକ୍ଷା ତୀର୍ଥ ଯାଇ ସ୍ନାନ ଦାନାଦି କରିବ ॥
ମନର କାମନା ପୂର୍ଣ୍ଣ କରିଯିବ ତହୁଁ ।
କୁରୁକ୍ଷେତ୍ର ଦ୍ୱାର ବୋଲି ଜାଣ ରାଜା ଏହୁ ॥
ଏ ତୀର୍ଥଗୋଟି ଅଛଇ ପର୍ଶୁରାମଙ୍କର ।
ପ୍ରଦକ୍ଷିଣ କରି ସେହି ଯକ୍ଷା ସରୋବର ॥
ସ୍ନାନ ପିତୃଦେବ ତରପଣ କରି ସାରି ।
ଅଶ୍ୱମେଧ ଯଜ୍ଞଫଳ ତହୁଁ ପାଇ କରି ॥
ଯହିଁ ରାମହ୍ରଦ ସେହି ତୀର୍ଥ ପହୁଞ୍ଚିବ ।
ଶୁଣିଅଛୁ ଆମ୍ଭେ ଏହା ଆହେ ନରଦେବ ॥
ପରଶୁରାମ ଯେ ଥିଲେ ଯମଦଗ୍ନି ସୁତ ।
ଏକୋଇଶ ବାର କରି କ୍ଷତ୍ରିଙ୍କି ନିପାତ ॥
କ୍ରୋଧଭରେ କଲେ ତହିଁ ପାଞ୍ଚଗୋଟି ହ୍ରଦ ।
କ୍ଷତ୍ରିଙ୍କ ରୁଧିର ପୂର୍ଣ୍ଣ କଲେ ବହି କ୍ରୋଧ ॥
ସେ ହ୍ରଦରେ କଲେ ପିତୃଗଣଙ୍କୁ ତର୍ପଣ ।
ପ୍ରହର୍ଷେ ତାଙ୍କୁ ବୋଇଲେ ତାଙ୍କ ପିତୃଗଣ ॥
ଆହେ ରାମ ଭୃଗୁବଂଶ ଜନ୍ମାରଣକାରୀ ।
ଆମ୍ଭେ ତୋର ପିତୃ ପିତାମହ ପର୍ଯ୍ୟ ଧାରୀ ॥
ପିତୃ ଭକତି ଆଚର ବୀରପଣ ତୋର ।
ଦେଖି ପ୍ରସନ୍ନ ହୋଇଲୁ ମାଗ ଘେନ ବର ॥
ଯାହା ତୁ ମାଗିବୁ ତାହା ଦେବୁ ଆମ୍ଭେ ତୋତେ
ରାମ ଶୁଣିଣ ପିତୃଙ୍କ ମୁଖରୁ ଏମନ୍ତେ ॥
କର ଆଞ୍ଜୋଳି କରିଣ ବୋଇଲେ ଏସନ ।
ମୋର ତହିଁ ଯେବେ ତୁମ୍ଭେ ହୋଇଲ ପ୍ରସନ୍ନ
ଜାଣିଲି ତପ ମୋହର ହୋଇଲା ସଫଳ ।
କ୍ରୋଧ ଯୋଗୁଁ ସଂହାରିଲି ମୁହିଁ କ୍ଷତ୍ରିକୁଳ ॥
ମହାପ୍ରାଣି ବଧ ପାପ ଲାଗିଲାକ ମୋତେ ।
ସେ ପାପୁଁ ମୁକତ ମୁହିଁ ହୁଅଇ ଯେମନ୍ତେ ॥
ଏ ପାଞ୍ଚହ୍ରଦ ମୋହର ହେଉ ମହାତୀର୍ଥ ।
ରାମହ୍ରଦ ନାମେ ହେଉ ଜଗତେ ବିଖ୍ୟାତ ॥
ଏମନ୍ତ ଶୁଣି ବୋଇଲେ ତୋଷେ ପିତୃଗଣ ।
କ୍ଷତ୍ରିବଧ ମହାପାପ ହୋଇଲା ମୋଚନ ॥
ତହିଁରେ ତୋହର କିଛି ନ ଲାଗିଲା ଦୋଷ ।
ଆପଣାର କର୍ମଫଳେ ଗଲେ ଯମପାଶ ॥
ଆଜଠାରୁ ତୀର୍ଥ ହେଲା ଏ ହ୍ରଦ ତୋହର ।
ଏ ପାଞ୍ଚଗୋଟି ହ୍ରଦରେ ସାନକରି ନର ॥
ପିତୃ ତରପଣ ଯେବେ କରେ ଭକତରେ ।
ପିତୃଗଣ ତୋଷେ ବର ଦିଅନ୍ତି ନିରନ୍ତରେ ॥
ଦୁର୍ଲ୍ଲଭ ମନ କାମନା ପୂର୍ଣ୍ଣକରି ଦିଅନ୍ତି ।
ପିତୃଗଣେ ବରଦେଇ ଯାଆନ୍ତି ନୃପତି ॥
ରାମହ୍ରଦ କଥା ଯାହା ଶୁଣିଥିଲୁ ଆମ୍ଭେ ।
ତୁମ୍ଭ ଅଗ୍ରତେ କହିଲୁ ଶୁଣିଲ ତା ଏବେ ॥
ଶୁଚି ବ୍ରହ୍ମଚାରୀ ହୋଇ କଲେ ତହିଁ ସ୍ନାନ ।
ରାମଙ୍କୁ ପୂଜିଲେ ପାଏ ବହୁତ ସୁବର୍ଣ୍ଣ ॥
ବଂଶମୂଳ ତୀର୍ଥ ସ୍ନାନେ ବଂଶକୁ ଉଦ୍ଧାରେ ।
କାୟଶୋଧନ ତୀର୍ଥରେ କାୟ ଶୁଦ୍ଧି କରେ ॥
ବସଇ ଉତ୍ତମ ଲୋକେ ଆହେ ଯୁଧିଷ୍ଠିର ।
ତ୍ରୈଲୋକ୍ୟ ଦୁର୍ଲ୍ଲଭତୀର୍ଥ ଯେଉଁ ଲୋକୋଦ୍ଧାର
ପୂର୍ବେ ପ୍ରଭବିଷ୍ଣୁ ବିଷ୍ଣୁ ଏ ସ୍ଥାନରେ ରହି ।
ଲୋକମାନଙ୍କୁ ଉଦ୍ଧାର କରିଥିଲେ ତହିଁ ॥
ତିନିଭୁବନେ ବିଖ୍ୟାତ ଅଛି ତୀର୍ଥବର ।
ସେ ତୀର୍ଥ ସ୍ଥାନରେ ଲୋକେ ପାଇବେ ଉଦ୍ଧାର

ତହୁଁ ଶ୍ରୀ ତୀର୍ଥରେ ସ୍ନାନକରି ପାଇ ସିଦ୍ଧି ।
ସେଠାରୁ ଯିବ ସେ ନର ହୋଇ ବ୍ରହ୍ମଋଷି ॥
କପିଳା ତୀର୍ଥ ଜଳରେ କରିବ ଯେ ସ୍ନାନ ।
ଦେବତା ପିତୃଲୋକଙ୍କୁ କରିବ ଅର୍ଚ୍ଚନ ॥
ସହସ୍ର କପିଳା ଗୋରୁଦାନ ଫଳପାଇ ।
ଶୁଦ୍ଧମନେ ସୂର୍ଯ୍ୟତୀର୍ଥେ ତହୁଁ ନର ଯାଇ ॥
ସ୍ନାନସାରି ଉପବାସେ ପିତୃଙ୍କୁ ପୂଜିବ ।
ଅଗ୍ନିଷ୍ଟୋମ ଫଳ ପାଇ ସୂର୍ଯ୍ୟ ଲୋକେ ଯିବ ॥
ଗୋଭବନ ତୀର୍ଥେ ତହୁଁ କରିବ ଯେ ସ୍ନାନ ।
ଗୋ ସହସ୍ର ଦାନଫଳ ପାଇଣ ରାଜନ ॥
ଗଙ୍ଗାତୀର୍ଥେ ଯାଇ କୋଟୀତୀର୍ଥେ କଲେ ସ୍ନାନ
ବୀର୍ଯ୍ୟବନ୍ତ ହୋଇ ତହୁଁ କରିବ ଗମନ ॥
ପ୍ରକାଶ ଯେ ଦ୍ୱାରପାଳ ତୀର୍ଥେ ପହୁଞ୍ଚିବ ।
ତହିଁ ସ୍ନାନକରି ସର୍ବ ପାପ ବିନାଶିବ ॥
ମହେନ୍ଦ୍ର ତୀର୍ଥ ପରି ସେ ସରସ୍ୱତୀ ଗର୍ଭେ ।
ରହିଛି ସେ ତୀର୍ଥଗୋଟି ଶୁଣ ରାଜେନ୍ଦ୍ର ଏବେ ॥
ତହିଁ ସ୍ନାନ କଲେ ଅଗ୍ନିଷ୍ଟୋମ ଫଳ ପାଇ ।
ତହୁଁ ବ୍ରହ୍ମାବର୍ତ୍ତ ତୀର୍ଥେ ଯିବ ନରସାଇଁ ॥
ସ୍ନାନ କରି ବ୍ରହ୍ମଲୋକ ପାଇବ ଆଦରେ ।
ତହୁଁ ଯେ ସ୍ନାନ କରିବ ସୁତୀର୍ଥକ ନୀରେ ॥
ପିତୃଗଣ ଦେବଗଣ ନିତ୍ୟ ତହିଁ ଥାନ୍ତି ।
ତାଙ୍କୁ ପୂଜା କରି ଅଶ୍ୱମେଧ ଫଳ ପାନ୍ତି ॥
ତହୁଁ କାଶୀଶ୍ୱର ତୀର୍ଥେ କରିବ ଯେ ସ୍ନାନ ।
ସବୁ ବ୍ୟାଧିରୁ ମୁକତ ହୋଇବ ରାଜନ ॥
ବ୍ରହ୍ମ ଲୋକେ ଗଉରବ ପାଇବ ବହୁତ ।
ସେଠାରୁ ଯାଇଁ କରିବ ଜନ୍ମ ମାତୃତୀର୍ଥ ॥
ପ୍ରଜାବର୍ଦ୍ଧିତ ହୋଇବ ତହିଁ କଲେ ସ୍ନାନ ।
ତହୁଁ ଏକ ବକ୍ତ ଖାଇ ଯିବ ଶୀତବନ ॥
ସଂସାରେ ଦୁର୍ଲ୍ଲଭ ଅଟେ ସେହି ତୀର୍ଥବର ।
ସେ ତୀର୍ଥ ଦର୍ଶନ ଯାଇଁ କରେ ଯେହୁଁ ନର ॥
ଦର୍ଶକ ଭିତରେ ଦେହ ପବିତ୍ର ହୋଇବ ।
ତହିଁ ଆନତୀର୍ଥ ବରି ଅଛି ନରଦେବ ॥
ସ୍ନାନ ଲୋକାର୍ଥିହ ବୋଲି ବୋଲନ୍ତି ତାହାକୁ ।
ସ୍ନାନ କଲ ମାତ୍ରେ ଦିଏ ପରମ ଗତିକୁ ॥
ସ୍ୱର୍ଣ୍ଣଲୋମା ପନସ୍ୟନ ନାମେ ଏକତୀର୍ଥ ।
ସେ ତୀର୍ଥରେ ପ୍ରାଣାୟାମ କଲେ ନରନାଥ ॥

ଲୋମ ମୂଳରୁ ତାହାର ପାପ ଛାଡ଼ି ଯାଇ ।
ପବିତ୍ର ହୋଇ ପରମ ଗତିକି ସେ ପାଇ ॥
ମାନୁଷ ତୀର୍ଥକୁ ତହୁଁ ଯିବ ହେ ରାଜନ ।
ପୂର୍ବ କାଳେ ସେ ତୀର୍ଥରେ କୃଷ୍ଣ ମୃଗଗଣ ॥
ବ୍ୟାଧଭୟେ ପଳାଇ ପଶିଲେ ତାର ନୀରେ ।
ମନୁଷ୍ୟ ହୋଇ ବାହାର ଉଠିଲେ ତୀରେ
ବ୍ରହ୍ମଋଷି ହୋଇ କଲେ ସେ ତୀର୍ଥରେ ସ୍ନାନ
ସ୍ୱର୍ଗ ବସେ ସର୍ବ ପାପୁ ହୋଇ ବିମୋଚନ ॥
ତହୁଁ କୋଶକରେ ପୂର୍ବେ ନଦୀ ଯେ ଆପଗା
ସ୍ୱର୍ଗଂବନ୍ତ ହୁଏ ତହିଁ ଗଲେ ମହାଭାଗା ॥
ମିଷ୍ଟ ଗୃହସ୍ଥେ କରନ୍ତି ସେ ନଦୀରେ ସ୍ନାନ ।
ଯେ ଜନ ସେ ତୀର୍ଥେ ପୂଜି ଦେବ ପିତୃଗଣ ॥
ଶୁଣ ଆ ଲଇଫୁଲ ଗନ୍ଧ ଦିଅଇ ତାହାଙ୍କୁ ।
ବହୁତ ଧର୍ମ ପ୍ରାପତ ହୁଅଇ ତାହାକୁ ॥
ଯେ ଏକ ବିପ୍ରକୁ ତହିଁ ଦିଅଇ ଭୋଜନ ।
କୋଟି ବିପ୍ର ଭୁଞ୍ଜାଇବା ଫଳ ତା ସମାନ ॥
ରାତିଏ ତହିଁ ରହିଲେ ଅଗ୍ନିଷ୍ଟୋମ ଫଳ ।
ବ୍ରହ୍ମାନୁସ୍ୱାର ତୀର୍ଥକୁ ଯିବ ମହୀପାଳ ॥
ସେ ତୀର୍ଥ ଗୋଟି ବ୍ରହ୍ମାର ସପ୍ତ ଋଷିକୁଣ୍ଡ ।
କେଦାର ତୀର୍ଥ କପିଳ ତୀର୍ଥ ତହିଁକୁଣ୍ଡ ॥
ସ୍ନାନ କରି ଶୁଚି ହୋଇ ଶୁଦ୍ଧମନେ ଯିବ ।
ବ୍ରହ୍ମାଙ୍କର ଶ୍ରୀ ଛାମୁରେ ପ୍ରବେଶ ହୋଇବ ॥
ସକଳ ପାପ ଛଡ଼ାଇ ବ୍ରହ୍ମଲୋକ ପାଇ ।
ଦୁର୍ଲ୍ଲଭ କେଦାର ତୀର୍ଥ କହିଶୁଣେ ଥାଇ ॥
ତହିଁ ତପୋବନେ ଦେବ କଳିଙ୍କୁ ପୋତ ।
ପାଇବ ଶୂନ୍ୟେ ଲୁଟିବା ଶୂନ୍ୟେ ଯିବା ଇଡ଼ ॥
ପ୍ରସିଦ୍ଧ ସରକ ତୀର୍ଥେ ଯିବ, ତହୁଁ ରାଜା ।
କୃଷ୍ଣ ଚତୁର୍ଦ୍ଦଶୀଦିନ ପୂଜିବ କପାଳୀ ॥
ମନର କାମନା ପୂର୍ଣ୍ଣ କରି ସ୍ୱର୍ଗ ଯିବ ।
ଆଉ ଭବଧାମକୁ ସେ ଫେରି ନ ଆସିବ ॥
ରୁଦ୍ରକୋଟି କୂପହ୍ରଦେ ତିନି କୋଟି ତୀର୍ଥ ।
ଗୃହଆଡ଼େ ଅଛି ଜାଣ ଅହେ ନରନାଥ ॥
ତହିଁ ହଳାମ୍ବ୍ରଦ ତୀର୍ଥେ କରିବ ଯେ ସ୍ନାନ ;
ଆବର ତହିଁ ପୂଜିବ ଦେବ ପିତୃଗଣ ॥
ଦୁର୍ଗତି ବିନାଶି ବାଜପେୟ ଫଳପାଇ ।
କିଂଦାନ ତୀର୍ଥ କିଂଯଜ୍ଞ ତୀର୍ଥ ଯେ କରଇ ।

ଅଗ୍ନିମିତ ଦାନ ଯଜ୍ଞ ଫଳ ତହିଁ ମିଳେ ।
କଳଶୀରେ ଜଳ ଆଣି ଶିରେ ଯେହୁ ଢାଳେ
ବହୁତ ଫଳ ତାହାକୁ ମିଳଇ ରାଜନ ।
ସନ୍ନିକ ତୀର୍ଥ ସର୍ବରେ ତୀର୍ଥ ଗମନନ୍ତ ॥
ଅନନ୍ତ ପୁଣ୍ୟ ତୀର୍ଥ ସେହି ନାରଦ ମୁନିର ।
ଯେ ତୀର୍ଥକୁ ଯାଇ ସ୍ନାନ କରଇ ଯେ ନର ॥
କିବା କେହି ସେ ତୀର୍ଥରେ ଜୀବନ ଛାଡଇ ।
ଦୁର୍ଲ୍ଲଭ ଲୋକେ ନାରଦ ତାହାକୁ ବସାଇ ॥
ଶୁକ୍ଳ ଦଶମୀରେ ଯିବ ପୁଣ୍ଡରୀକ ତୀର୍ଥ ।
ସ୍ନାନେ ପୁଣ୍ଡରୀକ ଯଜ୍ଞ ଫଳ ତହୁଁ ପ୍ରାପ୍ତ ॥
ତହୁଁ ଯାଇଁ ତ୍ରିପିଷ୍ଟପ ତୀର୍ଥରେ ମିଳିବ ।
ବଇତରଣୀ ନଦୀକି ସେଠାରେ ଦେଖିବ ॥
ପାତକ ନାଶିନୀ ଅତି ପବିତ୍ର ତା ପାଣି ।
ସ୍ନାନ କରିଣ ପୂଜିବ ତହିଁ ଶୂଳପାଣି ॥
ସକଳ ପାପ ଛାଡ଼ାଇ ସଦଗତି ପାଇ ।
ଫଳ ଜୀବନ ତୀର୍ଥକୁ ତହୁଁ ଚାଲିଯାଇ ॥
ବହୁ ସହସ୍ର ବରଷ ରହି ସେହି ତୀର୍ଥେ ।
ତପ କରିଥିଲେ ତହିଁ ଦେବଗଣ ଯେତେ ॥
ଦୃଷଦ୍ବତୀ ନଦୀ ଜଳେ ପଶି କରି ସ୍ନାନ ।
ପିତୃ ଦେବଙ୍କ ତର୍ପଣ କରିବ ରାଜନ ॥
ଅତି ରାତ୍ର ଅଗ୍ନିଷ୍ଟୋମ ଯାଗ ଫଳ ପାଇ ।
ସର୍ବ ଦେବ ତୀର୍ଥେ ସ୍ନାନ କରିବ ଯେ ଯାଇ ॥
ଗୋ ସହସ୍ର ଦାନ ଫଳ ପାଇ ତହୁଁ ଯିବ ।
ପାଣି ଖାତ ତୀର୍ଥ ଜଳେ ପଶିଣ ବୁଡ଼ିବ ॥
ଦେବତା ଆଉ ପିତୃଙ୍କୁ କରିବ ତର୍ପଣ ।
ରାଜସୂୟ ଯଜ୍ଞ ଫଳ ପାଇବ ତକ୍ଷଣ ॥
ତହୁଁ ଯାଇ ଋଷି ଲୋକେ ବସିବ ନୃପତି ।
ତୀର୍ଥେକ ଅଛି ମିଶ୍ରକ ନାମେ ତାର ଖ୍ୟାତି ॥
ସବୁ ତୀର୍ଥକୁ ମିଶାଇ ଛନ୍ତି ତହିଁ ବ୍ୟାସ ।
ସେ ମିଶ୍ରକ ତୀର୍ଥେ ସ୍ନାନ କରିବ ନରେଶ ॥
ସର୍ବ ତୀର୍ଥ ସ୍ନାନ ଫଳ ସେଠାରୁ ପାଇ ।
ତହୁଁ ପୁଣି ବ୍ୟାସ ବନେ ଯିବ ବ୍ରତୀ ହୋଇ ॥
ମନୋଜବ ତୀର୍ଥ ଜଳେ କରିବ ଯେ ସ୍ନାନ ।
ଗୋ ସହସ୍ର ଦାନ ଫଳ ପାଇବ ରାଜନ ॥
ଦେବୀ ସ୍ଥାନେ ମଧୁବଟୀ ତୀର୍ଥେକ ଅଛଇ ।
ତହିଁ ପିତୃଦେବ ପୂଜା କରି ଶୁଚି ହୋଇ ॥

ଦେବୀ ବରେ ଗୋସହସ୍ର ଦାନ ଫଳ ପାଇ ।
କଉଶିକୀ ଦୃଷଦ୍ବତୀ ଏହି ଦୁଇ ନଈ ॥
ଏ ଦୁଇ ସଙ୍ଗମେ ସ୍ନାନ କରି ଉପବାସେ ।
ସକଳ ପାପ ଛଡ଼ାଇ ଯିବ ଯହିଁ ବ୍ୟାସେ ॥
ପୁତ୍ରଶୋକେ ଦେହତ୍ୟାଗ କରୁଥିଲେ ତହିଁ ।
ଦେବଗଣେ ବଞ୍ଚାଇଲେ ତାଙ୍କୁ ତହିଁ ରହି ॥
ତାର ନାମ ବ୍ୟାସ ସ୍ଥଳୀ ତୀର୍ଥ ହେ ରାଜନ ।
ଗୋ ସହସ୍ର ଦାନ ଫଳ ପାଇ କଲେ ସ୍ନାନ ॥
ଋଣାନ୍ତ କୂପେ କରିବ ତିଳପ୍ରସ୍ଥ ଦାନ ।
ସକଳ ଋଣ ତାହାର ହୋଇବ ମୋଚନ ॥
ପରମ ସିଦ୍ଧିକି ପାଇ ଦେବୀ ତୀର୍ଥ ଯିବ ।
ସ୍ନାନେ ସହସ୍ର ଗୋଦାନ ଫଳକୁ ପାଇବ ॥
ଅହ ସୁଦନ ଦୁର୍ଲ୍ଲଭ ତୀର୍ଥ ଏହି ବେନି ।
ସ୍ନାନ କଲେ ସୂର୍ଯ୍ୟ ଲୋକ ପାଇ ନୃପମଣି ॥
ତହୁଁ ଯେ ବିଖ୍ୟାତ ମୃଗଧୂମ ତୀର୍ଥେ ଯିବ ।
ରୁଦ୍ର ପଦେ ସ୍ନାନ କରି ରୁଦ୍ରଙ୍କୁ ପୂଜିବ ॥
ଅଶ୍ୱମେଧ ଯଜ୍ଞ ଫଳ ପାଇ ହେ ରାଜନ ।
ଗୋ ସହସ୍ର ଦାନ ଫଳ ଗୋଷ୍ଠ ତୀର୍ଥେ ସ୍ନାନ ॥
ତହୁଁ ବିଖ୍ୟାତ ବାମନ ତୀର୍ଥକୁ ଯେ ଯିବ ।
ବିଷ୍ଣୁ ପଦେ ସ୍ନାନ କରି ବାମନ ପୂଜିବ ॥
ଆପଣା କୁଳ ପବିତ୍ର କରି ତହୁଁ ନର ।
ପବନ ହ୍ରଦ ନାମରେ ଯେଉଁ ତୀର୍ଥ ବର ॥
ମରୁତ ଗଣଙ୍କ ତୀର୍ଥ ବୋଲଇନ୍ତି ସେହି ।
ସ୍ନାନ କଲେ ଜନ ବାୟୁ ଲୋକେ ଯାଇଁ ରହି ॥
ଅମର ହ୍ରଦକୁ ଯାଇଁ ଇନ୍ଦ୍ରଙ୍କୁ ପୂଜିବ ।
ଦେବ ବରେ ସ୍ୱର୍ଗପୁରେ ଆଦର ପାଇବ ॥
ଶାଳିହୋତ୍ର ତୀର୍ଥେ ଯାଇଁ ତହୁଁ କଲେ ସ୍ନାନ
ଶାଳି ସୂର୍ଯ୍ୟପୂଜା ତହିଁ କରିବ ରାଜନ ॥
ଗୋ ସହସ୍ର ଦାନ ଫଳ ପାଇଁ ତହୁଁ ଯିବ ।
ସରସ୍ୱତୀର ଶ୍ରୀକୁଞ୍ଜ ତୀର୍ଥରେ ମିଳିବ ॥
ସ୍ନାନ କରି ଅଗ୍ନିଷ୍ଟୋମ ଯାଗ ଫଳ ପାଇ ।
ନଇମିଷ କୁଞ୍ଜ ତୀର୍ଥେ ତହୁଁ ପୁଣି ଯାଇ ॥
ନଇମିଷ ବନବାସୀ ତପୋଧନ ଯେତେ ।
ତୀର୍ଥ ଯାତ୍ରା କରି ତହୁଁ ଗଲେ କୁରୁକ୍ଷେତ୍ରେ
ସରସ୍ୱତୀ ନଦୀତୀରେ କୁଞ୍ଜ ଏକ କରି ।
ତହିଁ ରହନ୍ତେ ଦେହରୁ ଶ୍ରମ ଯାଏ ହରି ॥

ସେ କୁଣ୍ଡ ତୀର୍ଥରେ ରହି ସ୍ନାନ କଲା ଜନ ।
ଗୋ ସହସ୍ର ଦାନ ଫଳ ପାଇ ହେ ରାଜନ ॥
ଧ୍ୟାନ ଗୋପୀନାଥ ବୋଲେ କର ତୀର୍ଥ ବ୍ରତ ।
ସ୍ୱର୍ଗରେ ବସିବ ହୋଇ ପାପରୁ ମୁକତ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ କୁରୁକ୍ଷେତ୍ରାଦିତୀର୍ଥ ମହାତ୍ମ୍ୟଂ ନାମ ଦ୍ୱାଦଶୋଽଧ୍ୟାୟଃ ।



# ତ୍ରୟୋଦଶ ଅଧ୍ୟାୟ ।

ମଙ୍କଣକ ଓ ପୃଥୂଦକ ତୀର୍ଥ ମାହାତ୍ମ୍ୟ ।

ନାରଦ ବୋଇଲେ ଶୁଣ ହେ ଧର୍ମରାଜନ
ତହୁଁ ଯାଇ କନ୍ୟା ତୀର୍ଥେ କରିବ ଯେ ସ୍ନାନ ॥
ଅଗ୍ନିଷ୍ଟୋମ ଫଳ ପାଇ ବ୍ରହ୍ମ ତୀର୍ଥ ଯିବ ।
ସ୍ନାନକଲେ ନୀଚ ଜାତି ବ୍ରହ୍ମଣ୍ୟ ହୋଇବ ॥
ବ୍ରାହ୍ମଣ ଯେବେ ସେ ତୀର୍ଥେ ସ୍ନାନ କରେ ଯାଇ
ପବିତ୍ର ହୋଇ ପରମ ଗତିକି ସେ ପାଇ ॥
ତହୁଁ ଯାଇ ସୋମତୀର୍ଥେ କରିବ ଯେ ସ୍ନାନ ।
ତାର ଫଳେ ସୋମଲୋକେ ବସିବ ରାଜନ ॥
ତହୁଁ ଯିବ ମଙ୍କଣକ ନାମେ ତୀର୍ଥବର ।
ମଙ୍କଣକ ନାମେ ବ୍ରହ୍ମ ଋଷି ଯୁଧିଷ୍ଠିର ॥
ତପକରି ତହିଁ ସିଦ୍ଧ ପୁରୁଷ ହୋଇଲେ ।
ସେ ତୀର୍ଥକୁ ସାରସ୍ୱତ ତୀର୍ଥ ଯେ କହିଲେ ॥
ସପ୍ତସାରସ୍ୱତ ତୀର୍ଥ ନାମ ଯେ ତାହାର ।
ପୁରାତନ କଥା ଗୋଟା ଶୁଣ ଯୁଧିଷ୍ଠିର ॥
ତପ କଲେ ମଙ୍କଣକ ନାମେ ମୁନିବର ।
ଅତିବାହିତ ହୋଇଲା କେତେ ସମ୍ବତ୍ସର ॥
ଯୋଗ ସାଧି ସାଧି ସିଦ୍ଧ ପୁରୁଷ ହୋଇଲେ ।
କେବଳ ସେ ମୁନି ଶାକରସ ପିଉଥିଲେ ॥
ଏକ ଦିନକର କଥା ଶୁଣ ହେ ରାଜନ ।
କୁଶହସ୍ତ ହୋଇଥିଲେ ସେହି ତପୋଧନ ॥
କୁଶ ଅଗ ବାଜିଗଲା ହସ୍ତେ ତାହାଙ୍କର ।
ଶାକରସ ସେ ରନ୍ଧ୍ରରୁ ହୋଇଲା ବାହାର ॥
ତାହା ଦେଖି ଋଷିଙ୍କର ଆନନ୍ଦ ଅପାର ।
ଆଶ୍ଚର୍ଯ୍ୟ ହୋଇ ସ୍ୱହିଁଲେ ନାଚିଲେ ଆବର ॥
ନାଚୁ ନାଚୁ ମୁନିଙ୍କର ତେଜ ପ୍ରଭାବରେ ।
ମୋହିତ ହୋଇଲେ ସ୍ଥାବର ଜଙ୍ଗମ ସେଠାରେ
ତାଙ୍କ ସଙ୍ଗେ ସଙ୍ଗେ ସେହି ସବୁ କଲେ ନୃତ୍ୟ
ତାହା ଦେଖି ବ୍ରହ୍ମା ଦେବଗଣଙ୍କ ସହିତ ॥
ମହାଦେବଙ୍କ ଛାମୁରେ ଯାଇଁ ଜଣାଇଲେ ।
ଆହେ ଦେବ ମହାଦେବ ଶୁଣ ତୁମ୍ଭେ ଭଲେ
ମଙ୍କଣକ ଯୋଗୁଁ ନାଶ ଯିବ ଏ ସଂସାର ।
ତାଙ୍କ ହସ୍ତୁ ଶାକରସ ହୋଇବାରୁ ବାହାର ॥
ଆନନ୍ଦରେ ନାଚୁଛନ୍ତି ତାଙ୍କ ନୃତ୍ୟ ଦେଖି ।
ନାଚୁ ଅଛନ୍ତି ପତଙ୍ଗ କୀଟ ପଶୁ ପକ୍ଷୀ ॥
କି କହିବୁ ବନଗିରି ଆଦି ଯେ ସ୍ଥାବର ।
ଦେବଗଣଙ୍କ ସହିତ ଗଲେ ମହେଶ୍ୱର ॥
ଜଗତ ହିତ ନିମନ୍ତେ ସେଠାରେ ମିଳି ।
ଦେଖିଲେ ଆନନ୍ଦେ ନୃତ୍ୟ କରେ ତପଶାଳୀ ॥
ବୋଇଲେ ତୁ ମହାଋଷି ଧର୍ମ କଥା ଜାଣୁ ।
ବାତୁଳଙ୍କ ପ୍ରାୟ ନୃତ୍ୟ କରୁ କି କାରଣୁ ॥
ଏଡ଼େ ଆନନ୍ଦ ତୋହର କପାଁ ମୁନିବର ।
ମଙ୍କଣକ ବୋଇଲେକ ଶୁଣ ଦ୍ୱିଜବର ॥
ମୋ ସମାନ ତପୀ ଆଉ ଧର୍ମବନ୍ତ ପ୍ରାଣୀ ।
ନାହିଁ ବା ନୋହିବ ଜାଣ କେହି ଏ ଧରଣୀ ॥
ମୋର ହସ୍ତେ କୁଶମୂଳ ବାଜି ହୋଏ କ୍ଷତ ।
ଶାକରସ ସେ ପଥରେ ବହିଲା ବହୁତ ॥
ତାହା ଦେଖି ମୋର ମନ ଆନନ୍ଦେ ଅଧୀର
ସେ କାରଣେ ନୃତ୍ୟ କରେ ମନନୋହେ ସ୍ଥିର
ହସି କରି ବୋଇଲେ ସେ ଦେବ ମହେଶ୍ୱର
ରାଗେ ମୋହିତ ହୋଇଛ ତୁମ୍ଭେ ମୁନିବର ॥
ଏ କିଛି ଅତି ଆଶ୍ଚର୍ଯ୍ୟ କଥା ନୋହେ ମୁନି ।
ତୁହି ମୋତେ ଦେଖୁ କିନା ଅହୋ ନୃପମଣି ॥
ମହାଦେବ ସେ ଋଷିଙ୍କି କହିଣ ଏମନ୍ତ ।
ସବୁ ଦେବଙ୍କ ଉପରେ ଦେବ ଭୂତନାଥ ॥
ଏ ଚଉଦ ବ୍ରହ୍ମାଣ୍ଡର ତୁମ୍ଭେ ଏକା ଗତି ।
ତୁମ୍ଭେ ଚରାଚର ସୃଷ୍ଟି କର ପଶୁପତି ॥
ପ୍ରଳୟକାଳେ ପଶନ୍ତି ସବୁ ତୋ ଗର୍ଭରେ ।
ତୁମ୍ଭର ମହିମା ନ ଜାଣନ୍ତି ସୁରାସୁରେ ॥
ମାନବ ଛାର ମୁହିଁ ତା ଜାଣିବ କେମନ୍ତେ ।
ତୋ ତହୁଁ ଜାତ ବ୍ରହ୍ମାଦି ଦେବଗଣ ଯେତେ

ସକଳ ପ୍ରାଣି ସ୍ୱରୂପ ରୁଦ୍ର ମହେଶ୍ୱର ।
ଚଉଦ ବ୍ରହ୍ମାଣ୍ଡ ହର୍ତ୍ତା କର୍ତ୍ତା ବିଶ୍ୱେଶ୍ୱର ॥
ତୁମ୍ଭ ପରସାଦେ ଦେବେ ହୁଅନ୍ତି ଆତପାତ ।
ଏମନ୍ତ ସ୍ତୁତି ବହୁତ କଲା ଯୋଡ ହସ୍ତ ॥
ଭକତରେ ସାଦେ ସତ୍ୟ କହେ ମୁଣି ଦେବ ।
ତୁମ୍ଭେ ଦେବଦେବ ମହାଦେବ ଭବ ଶିବ ॥
ତୁମ୍ଭ ପ୍ରସାଦେ ଯେମନ୍ତ ତପ ନୋହୁ କ୍ଷୟ ।
ପ୍ରସନ୍ନ ହୋଇ ବୋଇଲେ ଅନାଦି ତନୟ ॥
ଅରେ ବିପ୍ର ମୋ ପ୍ରସାଦେ ଏ ତପ ତୋହର ।
ସହସ୍ର ପ୍ରକାର ହୋଇ ବଢୁ ନିରନ୍ତର ॥
ତୋହର ସଙ୍ଗେ ରହିଛି ଏ ଆଶ୍ରମ ମୁହିଁ ।
ଏହି ସପ୍ତ ସାରସ୍ୱତ ହେଲା ତୀର୍ଥ ଭୂଇଁ ॥
ଯେ ଜନ ସ୍ନାନ କରଣ ପୂଜିବ ଆମ୍ଭନ୍ତ ।
ଜଗତେ ତାଙ୍କୁ ଦୁର୍ଲ୍ଲଭ ନାହିଁ କିଛି ମାତ୍ର ॥
ଇହଲୋକେ ପରଲୋକେ ଜାଣିଥା ତୁ ମୁକ୍ତି ।
ଏଣୁ ସାରସ୍ୱତ ତୀର୍ଥେ ଯିବ ନୃପମଣି ॥
ଏହା କହି ମହାଦେବ ଗଲେ ଅନ୍ତର୍ଦ୍ଧାନେ ।
କହୁଅଛୁ ଯାହା ଏବେ ଶୁଣ ସାବଧାନେ ॥
ତହୁଁ ଉଶନା ତୀର୍ଥରେ ପଶି କଲେ ସ୍ନାନ ।
ବ୍ରହ୍ମା ଆଦି ଦେବଗଣ ଋଷି ତପୋଧନ ॥
କାର୍ତ୍ତିକେୟ ସହିତରେ ଏ ତୀର୍ଥକୁ ଆସି ।
ଭାର୍ଗବ ପ୍ରିୟ କାମନା କରନ୍ତି ଯେ ବସି ॥
ତିନିସନ୍ଧ୍ୟାରେ ଆସନ୍ତି ଏ ତୀର୍ଥକୁ ନିତ୍ୟ ।
କପାଳ ମୋଚନ ନାମେ ଅଛି ଏକ ତୀର୍ଥ ॥
ତହିଁ ଜନ ସ୍ନାନ କରି ସର୍ବପାପ ହରି ।
ତହୁଁ ଅଗ୍ନି ତୀର୍ଥେ ପଶି ସ୍ନାନ ସନ୍ଧ୍ୟା ସାରି ॥
ଅଗ୍ନି ଲୋକେ ଯାଇ ନିଜକୁଳ ଉଦ୍ଧାରଇ ।
ସେଠାବରେ ବିଶ୍ୱାମିତ୍ର ତୀର୍ଥ ଯେ ଅଛଇ ॥
ତହିଁ ସ୍ନାନ କଲେ ଜନ ବ୍ରାହ୍ମଣ ହୋଇବ ।
ତହୁଁ ବ୍ରହ୍ମଯୋନି ତୀର୍ଥେ ସ୍ନାନ ଯେ କରିବ ॥
ସ୍ନାନକଲେ ବ୍ରହ୍ମଲୋକେ ଯାଇଁଣ ବସିବ ।
ଦେହାନ୍ତେ ନିଶ୍ଚୟ ସେହୁ ମୁକତି ପାଇବ ॥
ତା ସଙ୍ଗେ ତା ସାତକୁଳ ଉଦ୍ଧାର ପାଆନ୍ତି ।
ପୃଥୂଦକ ତୀର୍ଥେ ତହୁଁ ଯିବ ନରପତି ॥
ତହିଁ ସ୍ନାନ କରି ପିତୃ ଦେବତା ପୂଜିବ ।
ଜ୍ଞାନ ବା ଅଜ୍ଞାନ କୃତ ପାପ ଛଡ଼ାଇବ ॥

ଅଶ୍ୱମେଧ ଫଳ ପାଇ ବସିବ ସ୍ୱର୍ଗରେ ।
ଜ୍ଞାନୀ ବୃଦ୍ଧଜନେ କହି ଅଛନ୍ତି ଶାସ୍ତ୍ରରେ ॥
ସକଳ ତୀର୍ଥଙ୍କୁ ପବିତ୍ର ଅଟେ କୁରୁକ୍ଷେତ୍ର ।
ତାହାଠାରୁ ମଲ୍ଲିସ୍ୱତୀ ତୀର୍ଥ ଯେ ପବିତ୍ର ॥
ତହୁଁ ପୃଥୂଦକ ତୀର୍ଥ ପବିତ୍ର ଅଟଇ ।
ଏ ତୀର୍ଥଜଳ ଦେହରୁ ପାତକ ଛଡ଼ାଇ ॥
ତହିଁ ସ୍ନାନ କଲେ ଲୋକ ସ୍ୱର୍ଗପୁରେ ବସେ ।
ମଧୁସ୍ରବ ନାମେ ତୀର୍ଥ ଅଛଇ ତା ପାଶେ ॥
ସ୍ନାନକାରୀ ଗୋସହସ୍ର ଦାନଫଳ ପାଇ ।
ଦେବୀନଦୀ ସରସ୍ୱତୀ ଅରୁଣା ଏ ନଈ ॥
ଏ ତିନି ସଙ୍ଗମ ଯହିଁ ସେ ବିଖ୍ୟାତ ତୀର୍ଥ ।
ତହିଁ ଉପବାସ କରି ରହି ତିନି ରାତ୍ର ॥
ବ୍ରହ୍ମହତ୍ୟା ମହାପାପ ଛଡ଼ାଇବ ସ୍ନାନେ ।
ଅଗ୍ନିଷ୍ଟୋମ ଅତି ରାତ୍ର ଫଳ ପାଇ ଦାନେ ॥
ଆପେ ତରି ସାତଗୋଟି କୁଳକୁ ଉଦ୍ଧାରି ।
ତା ପାଖେ ଅଛଇ ଅବକୀର୍ଣ୍ଣ ତୀର୍ଥ ବାରି ॥
ଦର୍ଭିଋଷିଙ୍କର ଏହି ତୀର୍ଥଗୋଟି ଜାଣ ।
ବିପ୍ରଙ୍କ ହିତ ନିମନ୍ତେ ଏ ତୀର୍ଥ ନିର୍ମାଣ ॥
ବ୍ରତ ଉପନୟନାଦି ଉପବାସ କଲେ ।
ବ୍ରହ୍ମ ତେଜକୁ ପ୍ରାପତ ହୁଏ ଜନ ଭଲେ ॥
କ୍ରିୟା କର୍ମ ମନ୍ତ୍ର ଯନ୍ତ୍ର ନ କରିବା ଜନ ।
କେବଳ ଯେବେ ସେ ତୀର୍ଥେ କରେ ଯାଇଁ ସ୍ନାନ
ବୃଦ୍ଧ ଋଷି କହିଛନ୍ତି ବିପ୍ର ସେ ହୁଅଇ ।
ସତ ଏହା ମିଛ ନୋହେ ଧର୍ମ ନରସାଇଁ ॥
ସାକ୍ଷାତରେ ଦେଖିଛନ୍ତି ପୂର୍ବ ଋଷିଜନେ ।
ଚାରି ସମୁଦ୍ରକୁ ଆଣି ଦର୍ଭି ତପୋଧନେ ॥
ସେଠାରେ ରଖି ସେ ତୀର୍ଥ ନିର୍ମାଣି ଅଛନ୍ତି ।
ତହିଁ ସ୍ନାନ କଲେ ଜନେ ଦୁର୍ଗତି ନାଶନ୍ତି ॥
ଚାରିଗୋଟି ଗୋ ସହସ୍ର ଫଳ ପାଇ ଜନ ।
ଶତସହସ୍ରେକ ତୀର୍ଥ ଯିବ ହେ ରାଜନ ॥
ସହସ୍ରେକ ତୀର୍ଥ ତହିଁ ଅଛଇ ଆବର ।
ବିଖ୍ୟାତ ଏ ତୀର୍ଥ ଦୁଇ ଜାଣ ନୃପବର ॥
ଗୋ ସହସ୍ର ଦାନଫଳ ମିଳେ ତୀର୍ଥ ସ୍ନାନେ ।
କହି ନ ପାରଇ ଧାତା ଚତୁରବଦନେ ॥
ସହସ୍ରେ ଗୁଣ ହୁଅଇ ଦାନ ଉପବାସ ।
ସେଠାରୁ ଯାଇ ରେଣୁକା ତୀର୍ଥେ କରି ବାସ ॥

ତହିଁ ସ୍ନାନକରି ପିତୃଦେବତା ପୂଜିବ ।
ସବୁ ପାପରୁ ମୁକତ ସେ ଜନ ହୋଇବ ॥
ଅନୋଧୀ ହୋଇବ ଅଗ୍ନିଷ୍ଟୋମ ଫଳ ପାଇ ।
ବିମୋଚନ ତୀର୍ଥେ ଯିବ ତହୁଁ ଯତ ହୋଇ ॥
ଦାନ ଦେଇ ଥିବା ପାପ ଛୁଟିଯାଇ ସ୍ନାନେ ।
ତହୁଁ ପର୍ଥିବଟ ତୀର୍ଥ କରିବେ ସୁଜନେ ॥
ଯତ ବ୍ରହ୍ମଚାରୀ ହୋଇ ସେ ତୀର୍ଥ କରିବ ।
ପୁଣ୍ୟବନ୍ତ ହୋଇ ସ୍ୱର୍ଗେ ଗୌରବ ପାଇବ ॥
ଯୋଗୀନ୍ଦ୍ର ପୁରୁଷ ହରି ସେ ତୀର୍ଥ କରନ୍ତି ।
ପଜାକଲା ଜନ ସିଦ୍ଧ ପୁରୁଷ ହୁଅନ୍ତି ॥
ବାରୁଣ ତୀର୍ଥରେ ଅଛିଯାଇ ବିରାଜଇ ।
କାର୍ତ୍ତିକେୟ ସେନାପତି ପଦ ତହିଁ ପାଇ ॥
ତହିଁ ଅଭିଷେକ କଲେ ଦେବଗଣ ମିଳି ।
ତାଙ୍କ ସଙ୍ଗେ ବ୍ରହ୍ମା ବିଷ୍ଣୁ ହରି ତପଶାଳୀ ॥
ତାନ୍ତ ପୂର୍ବଦିଗେ କୁରୁକ୍ଷେତ୍ର ତୀର୍ଥବର ।
ସ୍ନାନ ମାତ୍ରେ ଦେହୁ ପାପ ହୋଇ ଯାଇ ଦୂର
ରୁଦ୍ରଲୋକେ ବସେ ଯାଇଁ ପାଇ ଗଉରବ ।
ତହୁଁ ସ୍ୱର୍ଗଦ୍ୱାର ତୀର୍ଥେ ଯାଇଁ ବ୍ରତୀ ହେବ ॥
ଅଗ୍ନିଷ୍ଟୋମ ଫଳକୋଟି ପାଇବ ସେ ପୁରେ ।
ଅନରକ ତୀର୍ଥେ ଯିବେ ତୀର୍ଥ ବ୍ରତୀ ନରେ ॥
ସ୍ନାନ କରି ନାଶିବ ସକଳ ଦୁର୍ଗତି ।
ବ୍ରହ୍ମାବିଷ୍ଣୁ ଦେବଗଣ ଯେଉଁ ରହିଥାନ୍ତି ॥
ତାପାଶରେ ରୁଦ୍ରବେଦୀ ଅଛି ମହୀପତି ।
ସର୍ବଦା ସେହିବେଦୀରେ ଦେବୀ ରହିଥାନ୍ତି ॥
ସେଦେବୀଙ୍କି ପୂଜା କଲେ ଦୁର୍ଗତି ତୁଟଇ ।
ଉମାପତି ଶିବ ପୂଜା କରିବ ଯେ ତହିଁ ॥
ସକଳ ପାପୁଁ ମୁକତ ହୋଇବ ରାଜନ ।
ଯହିଁ ଛନ୍ତି ପଦ୍ମନାଭ ଦେବ ନାରାୟଣ ॥
ତାଙ୍କୁ ପୂଜିଲେ ଶରୀର ଦିଶିବ ସୁନ୍ଦର ।
ବିଷ୍ଣୁ ଭୁବନେ ପାଇବ ପରମ ଆଦର ॥
ସର୍ବଦେବତୀର୍ଥେ ସ୍ନାନକଲା ମାତ୍ରେ ଜନ ।
ସକଳ ଦୁରିତ ଖଣ୍ଡି ହେବ ଦ୍ୟୁତିମାନ ॥
ଅସ୍ଥିପୁର ତୀର୍ଥେ ସ୍ନାନ ତରପଣ ସାରି ।
ଅଗ୍ନିଷ୍ଟୋମଯଜ୍ଞଫଳ ପାଇ ଯିବ ତରି ॥
ତହିଁ ଅଛି ଗଙ୍ଗାହ୍ରଦ କୂପ ମହୀପତି ।
ତିନିକୋଟି ତୀର୍ଥ ସେହି କୂପେ ବିରାଜନ୍ତି ॥

ତହିଁ ସ୍ନାନ କରି ବ୍ରହ୍ମ ଲୋକରେ ବସିବ ।
ଆପଗା ନଦୀରେ ବୁଡ଼ି ଶିବଙ୍କୁ ପୂଜିବ ॥
କୁଳ ଉଦ୍ଧାରି ସେଠାରୁ ଯିବ ସ୍ଥାଣୁ ବଟେ ।
ସ୍ନାନ କରି ଏକରାତ୍ର ରହି ତାରି ତଟେ ॥
ରୁଦ୍ର ଲୋକ ପାଇ ଯିବ ବଦରୀକବନ ।
ସେବନେ ଅଛଇ ଯହିଁ ବଶିଷ୍ଠ ଆଶ୍ରମ ॥
ବରି କୋଳି ଖାଇ ତହିଁ ରହନ୍ତି ତ୍ରିରାତ୍ର ।
ବାର ବରଷ ରହିବ କରି ତୀର୍ଥ ବ୍ରତ ॥
ବରକୋଳି ଖାଇତହିଁ ରହି ତିନିରାତି ।
ଉପବାସ କରଇ ଯେ ହୋଇ ଯତ ବ୍ରତୀ ॥
ଏଦୁଇ ବ୍ରତରେ ଫଳ ଅଟଇ ସମାନ ।
ତହୁଁ ଇନ୍ଦ୍ରମାର୍ଗ ତୀର୍ଥେ କରିବ ଯେ ସ୍ନାନ ॥
ଅହୋରାତ୍ର ଉପବାସ କଲେ ସ୍ୱର୍ଗେ ବସେ ।
ଏକରାତ୍ର ତୀର୍ଥେ ଏକରାତ୍ର ଉପବାସେ ॥
ବ୍ରହ୍ମଲୋକେ ବସଇ ସେ ଗଉରବ ପାଇ ।
ଆଦିତ୍ୟ ଦେବତା ଯହିଁ ସଦା ରହିଥାଇ ॥
ସେ ଆଦିତ୍ୟ ତୀର୍ଥେ ଯାଇଁ କରିବ ଯେ ସ୍ନାନ
ଆଦିତ୍ୟ ପୂଜି ସେ ଯିବ ଆଦିତ୍ୟ ଭୁବନ ॥
ଆପେ ଉଦ୍ଧରି ଆପଣା କୁଳ ଉଦ୍ଧାରିବ ।
ସୋମତୀର୍ଥେ ସ୍ନାନ କଲେ ସୋମଲୋକେ ଯିବ
ପବିତ୍ର ଦଧୀଚି ଋଷି ତୀର୍ଥରେ ବୁଡ଼ିବ ।
ବାଜପେୟ ଯଜ୍ଞ ଫଳ ସେ ତହିଁ ପାଇବ ॥
ପୂର୍ବେ ସାରସ୍ୱତ ନାମେ ଏକ ମୁନିବର ।
ସ୍ନାନ କରି ହେଲେ ସିଦ୍ଧଗଣଙ୍କ ଈଶ୍ୱର ॥
ସ୍ନାନକଲା ଜନ ସାରସ୍ୱତୀ ଗତିପାଇ ।
କନ୍ୟା ତୀର୍ଥେ ଯିବ ଯତ ବ୍ରହ୍ମଚାରୀ ହୋଇ ॥
ଉପବାସେ ତିନିରାତ୍ର ଯେ ତହିଁ ରହିବ ।
ଅତି ସୁନ୍ଦରୀ ଯୁବତୀ ଶଏ ସେ ପାଇବ ॥
ଆଉରି ବସିବ ସେହି ବ୍ରହ୍ମଲୋକେ ଯାଇ ।
ତହୁଁ ସନ୍ନିହିତା ତୀର୍ଥେ ଯିବ ନରସାଇଁ ॥
ବ୍ରହ୍ମା ଆଦି ଦେବଗଣ ତପୋଧନ ଋଷି ।
ସେ ପୁଣ୍ୟ ତୀର୍ଥ କରନ୍ତି ପ୍ରତିମାସେ ଆସି ॥
ସୂର୍ଯ୍ୟ ଗ୍ରହଣ କାଳରେ ସାନ କଲା ଜନ ।
ଯେଉଁ ଅଶ୍ୱମେଧ ଦିଏ ବ୍ରହ୍ମାର ଭୁବନ ॥
ସେହି ଶତ ଅଶ୍ୱମେଧ ଫଳକୁ ସେ ପାଇ ।
ଏହା ନାମ ସନ୍ନିହିତା ହେଲା ଯହିଁପାଇଁ ॥

କହୁଅଛି ସାବଧାନେ ଶୁଣ ନୃପବର ।
ଯେତେକ ପ୍ରାଣୀ କରନ୍ତି ଗଗନେ ବିହାର ॥
ମର୍ତ୍ତ୍ୟରେ ଯେତେକ ତୀର୍ଥ କୂପ ହ୍ରଦସ୍ଥାନ ।
ମାସେକେ ଥରେ କରନ୍ତି ତା ପାଖେ ଗମନ ॥
ଆବର ଅମାବାସ୍ୟାରେ ଆସନ୍ତି ତହିଁକି ।
ଏଣୁ ବିଧାତା ତା ନାମ ସନ୍ନିହିତା ରଖି ॥
ତିନିଭୁବନର ଲୋକ ଭ୍ରମୁଥାନ୍ତି ତହିଁ ।
ସକଳ ତୀର୍ଥ ଯେଉଁଣ ସ୍ଥାନ ଜାଣ ଏହି ॥
ସ୍ନାନ ଦାନପାନ କଲେ ଲୋକ ସ୍ୱର୍ଗେ ବସେ ।
ସୂର୍ଯ୍ୟଗ୍ରହଣ କାଳରେ ଉଆଁସ ଦିବସେ ॥
ଶ୍ରାଦ୍ଧକଲେ ଜନ ପୁଣ୍ୟଫଳ ଯେତେ ଶୁଣ ।
ଯେତେଫଳ ସହସ୍ରେକ ଅଶ୍ୱମେଧଯଜ୍ଞ ଣ ॥
ସ୍ନାନ ସାରି ଶ୍ରାଦ୍ଧକଲେ ସେ ଫଳ ପାଇବ ।
ସ୍ତ୍ରୀ ବା ପୁରୁଷ ଯେତେ ପାପ କରିଥିବ ॥
ସ୍ନାନ କଲେ ମାତ୍ରେ ତାର ଦେହୁଁ ଯିବ ଛାଡ଼ ।
ବହ୍ମଲୋକେ ଯିବ ପଦ୍ମବର୍ଣ୍ଣ ଯାନ ଚଢ଼ି ॥
ଦ୍ୱାରପାଳ ମଚକ୍ରୁକ ତୀର୍ଥକୁ ଯେ ଯିବ ।
ବହୁତ ରୂପେ ତାହାକୁ ସ୍ତୁତି ସେ କରିବ ॥
ତହୁଁ ଗଙ୍ଗା ହ୍ରଦ ତୀର୍ଥେ ଯିବ ବ୍ରତୀ ହୋଇ ।
ସ୍ନାନେ ରାଜସୂୟ ଅଶ୍ୱମେଧ ଫଳ ପାଇ ॥
ନଇମିଷ ତୀର୍ଥ ପୁଣ୍ୟ ମର୍ତ୍ତ୍ୟରେ ରାଜନ ।
ଅନ୍ତରୀକ୍ଷରେ ପୁଷ୍କର ତୀର୍ଥ ଅଟଇ ପୁଣ୍ୟ ॥
କୁରୁକ୍ଷେତ୍ର ପୁଣ୍ୟ ତୀର୍ଥ ଏ ତିନି ଭୁବନେ ।
କୁରୁକ୍ଷେତ୍ର ଧୂଳି ରାଶି ଉଡ଼ଣ ପବନେ ॥
ଯେତେ ଦୂର ଯାଏ ଯାଇ ଯା ଦେହେ ପଡ଼ଇ
ତାର ପାପ ଛାଡ଼ଯାଇ ସଦଗତି ପାଇ ॥
ସରସ୍ୱତୀର ଦକ୍ଷିଣେ ଉତ୍ତରେ ଆବର ।
କୁରୁକ୍ଷେତ୍ରେ ରହିଅଛି କରିଣ ଯେ ଘର ॥
ମୁଖେ ବୋଲଇ ମୁଁ କୁରୁକ୍ଷେତ୍ରବାସୀ ଜନ ।
ଯେ କହେ ମୁଁ କୁରୁକ୍ଷେତ୍ରେ କରୁଛି ଗମନ ॥
କି ଅବା ଦେହ ମୁହିଁ ତହିଁ କରିବଇଁ ଘର ।
କହୁଁ କହୁଁ ସ୍ୱର୍ଗପୁରେ ପାଇ ସେ ଆଦର ॥
ବ୍ରହ୍ମ ବେଦୀରେ ରହିଛି ଯେଉଁ କୁରୁକ୍ଷେତ୍ର ।
କହନ୍ତି ବ୍ରହ୍ମ ଋଷିଏ ଯହିଁ ତୀର୍ଥ ବ୍ରତ ॥
ପୁଣ୍ୟ ତୀର୍ଥ ବୋଲି ଯାକୁ କହନ୍ତି ରାଜନ ।
ତହିଁ ନିତ୍ୟ ଘରକରି ରହିଥିବା ଜନ ॥

ତାକୁ କେବେ ରୋଗ ଶୋକ ବାଧା ନ ଲାଗିବ
ଏହି କଥା ଗୋଟି ଜାଣ ଅଟଇ ଯେ ଧ୍ରୁବ ॥
ତରନ୍ତୁକ ଅରନ୍ତୁକ ତୀର୍ଥ ଯେ ଆବର ।
ରାମହ୍ରଦ ମଚକ୍ରୁକ ଧୁଇ ତୀର୍ଥ ବର ॥
ଏ ଚାରିତୀର୍ଥଙ୍କ ମଧ୍ୟ ଅଟେ କୁରୁକ୍ଷେତ୍ର ।
ସମନ୍ତ ପଞ୍ଚକ ନାମେ ଏ ଅତି ପବିତ୍ର ॥
ଏହାଙ୍କ ପିତାମହର ଏ ଉତ୍ତର ବେଦୀ ।
ଏଣୁ ସମନ୍ତ ପଞ୍ଚକ ନାମେ ଏ ପ୍ରସିଦ୍ଧି ॥

ଇତି ଶ୍ରୀ ପଦ୍ମ ପୁରାଣେ ସ୍ୱର୍ଗଖଣ୍ଡେ ମଙ୍କଣକ
ପୃଥୂଦକାଦି ତୀର୍ଥ ମାହାତ୍ମ୍ୟଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।



## ଚତୁର୍ଦ୍ଦଶ ଅଧ୍ୟାୟ ।

ଯମୁନା ମାହାତ୍ମ୍ୟ ।

ନାରଦ ବୋଇଲେ ଧର୍ମ ନୃପବର ଶୁଣ ।
ଧର୍ମ ଦେବତାଙ୍କ ତପ ସ୍ଥାନ ଯେହୁ ପୁଣ ॥
ସେହି ପୁରାତନ ଧର୍ମ ତୀର୍ଥକୁ ଯେ ଯିବ ।
ଆଗେ ସେ ତୀର୍ଥ ନିର୍ମାଣ କଲେ ଧର୍ମ ଦେବ ॥
ଆପଣା ନାମକୁ ରଖି ତୀର୍ଥନାମ ଦେଲେ ।
ଧର୍ମଶୀଳ ଜନ ସିନା ଯିବ ତହିଁ ଭଲେ ॥
ସ୍ନାନକରି ସାତକୁଳ ପବିତ୍ର କରିବ ।
କଳାପବନ ତୀର୍ଥକୁ ଧର୍ମବନ୍ତ ଯିବ ॥
ବ୍ରତୀହୋଇ ସେ ତୀର୍ଥରେ କରିବ ଯେ ସ୍ନାନ ।
ଅଗ୍ନିଷ୍ଟୋମ ଯଜ୍ଞଫଳ ପାଇବ ରାଜନ ॥
ଅନ୍ତକାଳେ ସେହି ଜନ ବହ୍ମଲୋକେ ବସେ ।
ତପୀ ମୁନି ବ୍ରହ୍ମା ଆଦି ସକଳ ତ୍ରିଦଶେ ॥
ସିଦ୍ଧ ଚାରଣ ଗନ୍ଧର୍ବ ନାଗ ଯକ୍ଷ ଗଣ ।
ନିତ୍ୟ ବନ ଯେ ତୀର୍ଥକୁ କରନ୍ତି ଗମନ ॥
ସୌଗନ୍ଧିକ ବନ ବୋଲି ନାମ ଯେ ଅଟଇ ।
ସେ ସ୍ଥାନ ମାଡ଼ିବା ମାତ୍ରେ ପାପ ଛାଡ଼ଯାଇ ॥
ଯାର ନାମ ପ୍ଲକ୍ଷା ବେଦୀ ଯିବ ସେହି ସ୍ଥାନ ।
ନଦୀ ମଧ୍ୟେ ଯେଉଁ ନଦୀ ବୋଲାଇ ଉତ୍ତମ ॥
ସେ ସରସ୍ୱତୀ ନଦୀର ପୁଣ୍ୟ ସ୍ଥାନ ସେହି ।
ତୁଙ୍ଗାରୁ ବାହାର ଜଳ ଯାଉଅଛି ବହି ॥

ତହିଁ ସ୍ନାନ ତର୍ପଣ ଦେବ ପୂଜା କଲେ ।
ଅଶ୍ୱମେଧ ଯଜ୍ଞ ଫଳ ପାଇବନ୍ତି ଭଲେ ॥
ଦୁର୍ଲଭ ତୀର୍ଥ ଈଶାନ ଅଧ୍ୟୁଷିତ ନାମ ।
ତହିଁଥିବା ଶୃଙ୍ଗ ପ୍ରଦକ୍ଷିଣ କଲେ ମର୍ତ୍ତ୍ୟସ୍ୱାମ ॥
ସେ ଶୃଙ୍ଗ ଉପରୁ ଡେଇଁ ପଡ଼ଇ ଯେ ଜନ ।
ଭୃଗୁପାତ ଠାରୁ ଫଳ ତାର ଷଡ଼ଗୁଣ ॥
ସହସ୍ର କପିଳା ଦାନ ଫଳ ପୁଣି ପାଇ ।
ଆବର ଅଶ୍ୱମେଧର ଫଳ ତାର ହୋଇ ॥
ପୂର୍ଣ୍ଣା ପୂର୍ଣ୍ଣା ଲୋକେ ଦେଖି କହୁଥାନ୍ତି ।
ଏଣୁ ମିଥ୍ୟା ନୁହେଁ ସତ୍ୟ ଜାଣ ନରପତି ॥
ସୁଗନ୍ଧା ଯେ ଶତକୁମ୍ଭା ପଞ୍ଚ ଯଜ୍ଞ ତୀର୍ଥ ।
ଏତିନି ତୀର୍ଥ ମାଡ଼ିଲେ ସ୍ୱର୍ଗ ପ୍ରାପତ ॥
ଦୁର୍ଲଭ ତ୍ରିଶୂଳପାତ ତୀର୍ଥେ ତହୁଁ ଯିବ ।
ସ୍ନାନ କରି ତହିଁ ପିତୃ ଦେବତା ପୂଜିବ ॥
ଅନ୍ତକାଳେ ଗଣପତି ପଦକୁ ସେ ପାଇ ।
ଶାକମ୍ଭରୀ ଦେବୀ ଯେଉଁ ସ୍ଥାନେ ବିରାଜଇ ॥
ସେ ଦେବୀ ପାଖରେ ଅଛି ରାଜଗୃହ ତୀର୍ଥ ।
ଏକଥା ଲୋକେ କହନ୍ତି ଆହେ ନରନାଥ ॥
ଦେବ ବରଷେ ସହସ୍ର ବରଷରୁ ମାସେ ।
ଶାକ କେବଳ ଆହାର କରନ୍ତି ହରଷେ ॥
ତେଣୁ ସେ ଦେବୀର ନାମ ଅଟେ ଶାକମ୍ଭରୀ ।
ଅତିଥି ସେବା କରନ୍ତି ଶାକଦେଇ କରି ॥
ବ୍ରତୀ ଯତି ହୋଇ ଯିବ ଶାକମ୍ଭରୀ ତୀର୍ଥ ।
ଉପବାସରେ ରହିବ ତହିଁ ତିନି ରାତ୍ର ॥
ଶାଗ ଖାଇବ କେବଳ ଆହେ ନୃପବର ।
ବାରବରଷ କରଇ ଶାକ ହେଁ ଆହାର ॥
ତହିଁରେ ଯେ ଫଳ ହୁଏ ସେ ଫଳ ସେ ପାଇ
ତହୁଁ ସୁବର୍ଣ୍ଣାଖ୍ୟ ତୀର୍ଥେ ଯିବ ନରସାଇଁ ॥
ପୂର୍ବେ ବିଷ୍ଣୁ ରୁଦ୍ରପୂଜା କରିଥିଲେ ଏଥେ ।
ପାଇଲେ ଦୁର୍ଲଭ ବର ବିଷ୍ଣୁ ଏହି ତୀର୍ଥେ ॥
ସୁପ୍ରସନ୍ନେ କହିଥିଲେ ଶିବ ତାଙ୍କୁ ଏହା ।
ପ୍ରାଣୀଙ୍କର ପ୍ରାଣ ଯେତେହେଁ ପ୍ରିୟ ଟଉବାହା ॥
ତେସନ ସବୁଜଗତ ପ୍ରିୟ ହେଉ ତୋର ।
ବୃଷଧ୍ୱଜଙ୍କୁ ପୂଜିବ ଯାଇଁ ଯେଉଁ ନର ॥
ଅଶ୍ୱମେଧ ଯଜ୍ଞ କଲା ଫଳକୁ ସେ ପାଇ ।
ଗଣପତି ପଦ ପାଇ ଶିବ ଲୋକେ ଯାଇ ॥

ତହୁଁ ଧୂମବତୀ ତୀର୍ଥେ ଯିବ ନରବର ।
ତିନି ରାତ୍ର ଉପବାସେ ରହି ଯେଉଁ ନର ॥
ମନରେ ଯାହା ବାଞ୍ଛିବ ତାହା ସେ ପାଇବ ।
ତହୁଁ ଦେବୀଙ୍କ ଦକ୍ଷିଣେ ଅଛି ଶୈଳଶିବ ॥
ରଥାବର୍ତ୍ତ ନାମେ ତୀର୍ଥ ଅଛି ଖଣ୍ଡେ ଦୂରେ ।
ସେ ତୀର୍ଥ ଗୋଟା ମାଡ଼ିବ ଅତି ଶିରଧାରେ ॥
ମହାଦେବ ପରସାଦେ ପାଇବ ସୁଗତି ।
ତହୁଁ ପ୍ରଦକ୍ଷିଣ କରି ଯିବ ମହୀପତି ॥
ଧାରା ତୀର୍ଥଜଳେ ବୁଡ଼ି କରିବ ଯେ ସ୍ନାନ ।
ସକଳ ପାପଛଡ଼ାଇ ହେବ ଶୋକଶୂନ୍ୟ ॥
ମହାଗିରିନ୍ଦ୍ର ସୁମରି ଯିବ ଗଙ୍ଗାଦ୍ୱାରେ ।
କୋଟିଏ ତୀର୍ଥ ଅଛନ୍ତି ସେ ତୀର୍ଥ ସଙ୍ଗରେ ॥
ସ୍ୱର୍ଗଦ୍ୱାର ତୁଲ୍ୟ ସେହି ତୀର୍ଥ ଗଙ୍ଗାଦ୍ୱାର ।
ସ୍ନାନ କଲେ କୁଳ ତାର ପାଇବେ ଉଦ୍ଧାର ॥
ପୁଣ୍ଡରୀକ ଯଜ୍ଞ ଫଳ ଆବର ପାଇବ ।
ଯେ ଜନ ସେ ଗଙ୍ଗାଦ୍ୱାରେ ରାତିଏ ରହିବ ॥
ଗୋ ସହସ୍ର ଦାନକଲା ଫଳ ତହିଁ ପାଇ ।
ସପତ ଗଙ୍ଗା ତ୍ରିଗଙ୍ଗ ଶକ୍ରାବର୍ତ୍ତେ ଯାଇ ॥
ଏତିନି ଗୋଟି ତୀର୍ଥରେ ପଶି କରି ସ୍ନାନ ।
ଆବର କରିବ ପିତୃ ଦେବତା ତର୍ପଣ ॥
ପୁଣ୍ୟ ଲୋକେ ଗହରିବ ପାଇବ ନିଶ୍ଚୟ ।
କନଖଳ ତୀର୍ଥେ ତହୁଁ ଯିବ ଆହେ ରାୟ ॥
ତିନିରାତ୍ର ଉପବାସେ ରହିବ ସେ ତୀର୍ଥେ ।
ଅଶ୍ୱମେଧ ଫଳ ପାଇ ଯିବ ସ୍ୱର୍ଗପଥେ ॥
କପିଳା ବଟ ତୀର୍ଥକୁ ଯିବ ହେ ରାଜନ ।
ସେ ତୀର୍ଥେ ରହିବ ଏକ ରାତ୍ର ଏକମନ ॥
ଗୋ ସହସ୍ର ଦାନଫଳ ପାଇବ ନୃପମଣି ।
ତହୁଁ ନାଗ ତୀର୍ଥେ ଯିବ ବ୍ରତୀ ହୋଇ ପୁଣି ॥
ସେ ତୀର୍ଥ ଗୋଟା କରିଛି କପିଳ ଯେ ନାଗ ।
ତହିଁ ଯେ ସ୍ନାନ କରିବ ତେଜି ତମ ରାଗ ॥
ସହସ୍ର କପିଳା ଦାନ ଫଳକୁ ପାଇବ ।
ତହୁଁ ଲଳିତକା ତୀର୍ଥେ ସ୍ନାନେ ପୁଣି ଯିବ ॥
ଏ ଉତ୍ତମ ତୀର୍ଥ ଗୋଟା କରିଛି ଶାନ୍ତନୁ ।
ତହିଁ ସ୍ନାନ କଲେ ଶୋକ ଛଡ଼ିଯିବ ମନୁ ॥
ସକଳ ଦୁର୍ଗତି ନାଶି ପାପକୁ ଛଡ଼ାଇ ।
ତହୁଁ ଯମୁନା ତୀର୍ଥକୁ ଯିବ ନରସାଇଁ ॥

କୁରୁକ୍ଷେତ୍ର ବ୍ରହ୍ମାବର୍ତ୍ତ ସୁବର୍ଣ୍ଣ ପୁଷ୍କର ।
ପୃଥୂଦକ ଅବମୁକ୍ତ ଆଦି ତୀର୍ଥବର ॥
ଏଥି ସ୍ନାନ କଲେ ଜନେ ଯେଉଁ ଫଳ ପାଆନ୍ତି ।
ଯମୁନା ସ୍ନାନେ ସେ ଫଳ ଜାଣ ନରପତି ॥
ସ୍ୱର୍ଗ ସୁଖ ଭୋଗେ ଯାର ଶରଧା ବଳିବ ।
ସ୍ନାନ ଦାନେ ଅବଲମ୍ବେ ସେ ସୁଖ ମିଳିବ ॥
ଆୟୁ ଆରୋଗ୍ୟ ଏ ଭୁବ ସମ୍ପତ୍ତି ଯାହାର ।
ରୂପ ଯଉବନେ ଶ୍ରଦ୍ଧା ବଳନ୍ତି ଆବର ॥
ନରକ ଆଦିକ ଭୟ କରଇ ଯେ ମନେ ।
ଯମୁନା ସ୍ନାନ କରିବ ସେହି ପ୍ରତିଦିନେ ॥
ଦାରିଦ୍ର୍ୟ ଆଦି ଦୁଃଖକୁ ଡରଇ ଯେ ଜନ ।
ଯମୁନା ଜଳରେ ନିତ୍ୟ କରୁ ସେହି ସ୍ନାନ ॥
ଦାରିଦ୍ର୍ୟ ପାପ ଦୁର୍ଭାଗ୍ୟ ପଙ୍କ ଘୋରତର ।
ତହୁଁ ଉଦ୍ଧରିବା ପାଇଁ ମନ ବଳେ ଯାର ॥
ଯମୁନା ଜଳରେ ବୁଡ଼ି ଧୋଇ ଧାଇ ହେଉ ।
ଉଦ୍ଧରିବାର ଉପାୟ ନାହିଁ କିଛି ଆଉ ॥
ଶରଧା ନ ଥାଇ କର୍ମ କରି ଯାଇ ଯେତେ ।
ଅଳପ ଫଳ ଦିଅଇ କହନ୍ତି ସମସ୍ତେ ॥
ଆହେ ଯୁଧିଷ୍ଠିର ଏହି ଯମୁନାର ସ୍ନାନ ।
ବାରଣ ନ କରି କିଛି କରେ ଫଳ ଦାନ ॥
ଶରଧା ବା ଅଶରଧା କିଛି ନ ବାରଇ ।
ସ୍ନାନ କଲି ମାତ୍ରେ ତାର କାମନା ପୂରଇ ॥
ଭକତି ଥାଉ ମନରେ ନ ଥାଉ ଭକତି ।
ଯମୁନା ଜଳରେ ପଶି ସ୍ନାନ କରେ ନିତି ॥
ମନରେ କିଛି କାମନା ଥାଉ ବା ନ ଥାଉ ।
ଯମୁନାରେ ବୁଡ଼ିଲେ ପାତକ ଜଳି ଥାଉଁ ଥାଉଁ ॥
ଇହକାଳେ ପରକାଳେ ଦୁଃଖ ସେ ନ ପାଇ ।
ଚନ୍ଦ୍ର ଯେସନେ ପକ୍ଷେ ବଢେ ପକ୍ଷେକ ଛିଡ଼ଇ ॥
ତେସନ ଯମୁନା ସ୍ନାନେ ପାପ ଯାଇ କ୍ଷୟ ।
ପୁଣ୍ୟ ବଢଇ ତାହାର ଆହେ ମହାଶୟ ॥
ଇଚ୍ଛାରେ ଆସି ସମୁଦ୍ରେ ରତ୍ନ ଯେସନେ ପଶେ ।
ତେସନ ଧନ ସମ୍ପଦ କଳତ୍ର ଆସୁ ସେ ॥
ମିଳନ୍ତି ଯମୁନା ସ୍ନାନ କଲି ନର ପାଖେ ।
କାମଧେନୁ ଯେଉଁରୂପେ କାମନାକୁ ରଖେ ॥
ମନରେ ଯାହା କାମନା କରଣ ଦୁହିବ ।
ଚର ବାଟେ କାମଧେନୁ ନିଶ୍ଚେ ତାହା ଦେବ ॥

ଆହେ ଯୁଧିଷ୍ଠିର ଯେଉଁ ରୂପେ ଚିନ୍ତାମଣି ।
ଚିନ୍ତା କରିବ ଯାହା ତା ଦିଏ ସେହିକ୍ଷଣି ॥
ଯମୁନା ସ୍ନାନରେ ଫଳ ସେହିରୂପେ ଜାଣ ।
ଯାହା ମାଗିବ ତା ଦେବ କଲକ୍ଷଣି ସ୍ନାନ ॥
ସତ୍ୟଯୁଗେ ତପ ବିନା ଫଳ ତାହିଁ ନାହିଁ ।
ତ୍ରେତା ଯୁଗେ ଜ୍ଞାନବନ୍ତ ହେଲେ ଫଳ ପାଇ
ଦ୍ୱାପର ଯୁଗରେ ଯାଗ କଲି ଯୁଗେ ଦାନ ।
ସବୁ ଯୁଗେ ଫଳ ଦିଏ ଏ ଯମୁନା ସ୍ନାନ ॥
ଯମୁନାର ପୁଣ୍ୟ ଜଳ ଧାରି ସ୍ନାନେ ନର ।
ଗ୍ରହ ଯେ ଜାତି ଆବର ବର୍ଣ୍ଣରେ ଶଙ୍କର ॥
ଗ୍ରହ ଗୋଷ୍ଠ ଆଶ୍ରମ ଯେ ଉଚ୍ଚ ନୀଚ ଜାତି ।
ସ୍ନାନ କରଣ ଅନେକ ପୁଣ୍ୟ ଅରଜନ୍ତି ॥
ଏହି ଯେ ଭାରତ ବର୍ଷ ଅଟେ କର୍ମ ଭୂଇଁ ।
ଏଥେ ଯେ ଯମୁନା ଜଳେ ସ୍ନାନ ନ କରଇ ॥
ତାର ଜନମ ଅସାର ଜାଣ ଯୁଧିଷ୍ଠିର ।
ଯେମନ୍ତେ ଭିଆସ ତଥି କରଇ ଅନ୍ଧାର ॥
ଚନ୍ଦ୍ର ମଣ୍ଡଳ ସେ ଦିନ ଶୋଭା ନ ଦିଶଇ ।
ତେମନ୍ତ ତାହାର ପୁଣ୍ୟ କର୍ମ ନରସାଇଁ ॥
ଜାଣିବ ଏ କଥା ଗୋଟି ଅଟଇ ପ୍ରମାଣ ।
ଯମୁନା ସ୍ନାନ ବିହୀନେ ଅଶୁଭ ତେସନ ॥
ଯମୁନା ସ୍ନାନେ ଶ୍ରୀହରି ପ୍ରସନ୍ନ ଯେମନ୍ତେ ।
ଜପ ତପ ଦାନ ଆଦି ସତ କର୍ମ ଯେତେ ॥
ଜାଣିଥିବ ଏହି କଥାଗୋଟି ଅଟେ ତଥ୍ୟ ।
ତହିଁରେ ହରି ପ୍ରସନ୍ନ ନୁହନ୍ତି ତେମନ୍ତ ॥
ସୂର୍ଯ୍ୟ ତେଜେ ସବୁ ତେଜ ହୁଏ ଯେସନେ ଲୀନ
ଯାଗ ଯଜ୍ଞ ଦାନ ଧ୍ୟାନ ଆଦି ସତ କର୍ମ ॥
ଯମୁନା ସ୍ନାନର ସଙ୍ଗେ ତୁଳନା ନୋହନ୍ତେ ।
ବାସୁଦେବ ପ୍ରୀତି ଅର୍ଥେ ସକଳ ମାନବେ ॥
ଆବରୁ ସକଳ ପାପ ଛଡ଼ାଇବା ପାଇଁ ।
ସ୍ନାନ କରିବେ ଯମୁନା ଜଳେ ପଶି ଯାଇଁ ॥
ଏ ଦେହ ଛାଡ଼ିଲେ ଦିବ୍ୟ ଦେହକୁ ପାଇବେ
ସ୍ୱର୍ଗ ପୁରେ ରହି ମହା ସୁଖେ ବିହରିବେ ॥
ଯମୁନା ସ୍ନାନ ଏ ଦେହେ ଘଟିନାହିଁ ଯାର ।
ବଳବନ୍ତ ବପୁବନ୍ତ ହେଲେହେଁ ସୁନ୍ଦର ॥
ଏମନ୍ତ ଦେହ ଥାଇ କି ଫଳ ହେବ ତାର ।
ଏ ଦେହରେ ହାଡ଼ ମାଂସ ଖମ୍ବ ଯୁଧିଷ୍ଠିର ॥

ନାଡ଼ୀ ସେ ହାଡ଼ ଗ୍ରନ୍ଥିର ବନ୍ଧନ ଦୃଢ଼ ।
ମାଝ ପ୍ରାୟ ରକ୍ତ ମାଂସ ଅସ୍ଥି ତହିଁ ଢଙ୍ଗ ॥
ଚମ ଆବରି ତାହାକୁ ରଖିଛି ଘୋଡ଼ାଇ ।
ଦୁର୍ଗନ୍ଧ ବିଷ୍ଠା ମୂତ୍ର ତା ଭିତରେ ପୂରିଲ ॥
ରୋଗ ଶୋକ ଜରା ଆଦି ବିପଦ ବହୁତ ।
ରୋଗର ମନ୍ଦିର ବୋଲି କହନ୍ତି ପଣ୍ଡିତ ॥
ବିଷୟ ବିଷ ରସରେ ସଦା ଆସକତ ।
ଶକତି ଅତି ଅଳପ ନୋହେ ମୁଣି ନିତ୍ୟ ॥
ଏ ଦେହ ସବୁ ଦୋଷର ଅଟଇ ଯେ ଖଣି ।
ସାଧୁ ମନରେ ସନ୍ତାପ ଉପୁଜାଇ ମୁଣି ॥
ନାନା ପୀଡ଼ା ପାଇ ଘୋର ପାଟେ ଯାଏ ସଢ଼
ପରର ଛିଦ୍ର ଚିନ୍ତଇ ଲୋଭରୁ ମୋହେ ପଡ଼ ॥
ଖଳ କ୍ରୂର ଅପବିତ୍ର କୃତଘ୍ନ କାସ୍ତ୍ରୁର ।
କାମ କ୍ରୋଧ ଧର୍ମହୀନ ନରକର ଦ୍ୱାର ॥
ଦୁର୍ଗନ୍ଧ ଛେପ ଖଙ୍କାରେ ଅଶୁଚି ନିରନ୍ତେ ।
ତା ଭିତରେ କୃମି କୀଟ ଅଛନ୍ତି ଯେ କେତେ
ମଡ଼ା ହୋଇ ପୋଡ଼ ଯାଇ ହୁଅଇ ପାଉଁଶ ।
ଏମନ୍ତ ଅସାଇଁ ଦେହ ଥାଇ ପାଣ୍ଡୁ ଶିଷ୍ୟ ॥
କି ହେବ ଯେବେ ଯମୁନା ଜଳେ ବୁଡ଼ ନାହିଁ
କେବଳ ଜନ୍ମ ତାହାର ଜାଣ ମୃତ୍ୟୁ ପାଇଁ ॥
ଜଳର ଫୋଟକା ଯେହ୍ନେ ଜଳେ ହୋଏ ଲୀନ
ପୁରୁଷ ବିହୁନେ ଅଣ୍ଡା ଉପୁଜେ ଯେସନ ॥
ସେ କାହାରି କିଛି କରି ନ ପାରି ମରଇ ।
ତେମନ୍ତ ଏ ଦେହ ଗୋଟା ମରଇ ସଢ଼ଇ ॥
ଯେଉଁ ବିପ୍ର ବଇଷ୍ଣବ ନୋହି ତେଜେ ପ୍ରାଣ ।
ପିଣ୍ଡ ନ ବାଢ଼ିଲେ ଶ୍ରାଦ୍ଧ ବିଫଳ ଯେସନ ॥
ବିପ୍ରକୁ ନ ରଖି କ୍ଷତ୍ରୀ ଯେବେ କି ମରଇ ।
ଆସ୍ତର ବିହୀନ କୁଳ ଯେହ୍ନେ କ୍ଷୟ ଯାଇ ॥
ସଦସ୍ୟ ବିହୁନେ ଧର୍ମ ଯେହ୍ନେ ହୋଏ କ୍ଷୟ ।
କ୍ରୋଧ ଯୋଗୁଁ ତପ ଯେହ୍ନେ କ୍ଷୟ ଯାଏ ରାୟ
ଜ୍ଞାନ ଦୃଢ଼ ନୋହିଥିଲେ ଯେସନ ବିନାଶ ।
ପ୍ରମାଦ ପଡ଼ିଲେ ହତ ଶାସ୍ତ୍ରର ଅଭ୍ୟାସ ॥
ପରରତାନାସ୍ତି ଯେହ୍ନେ ବିନାଶକୁ ପାଇ ।
ବ୍ରହ୍ମଘ୍ନ ଗର୍ବୀ ହେଲେ ଯେହ୍ନେ ନାଶ ଯାଇ
ଭକ୍ତି ନ ଥିବା ଅଗ୍ନିରେ ହୋମ ଯେହ୍ନେ ବୃଥା
କପଟ ଭକତ ନାଶ ପାଇ ମୁଣି ଯଥା ॥

ପର ଉପଜୀବୀ କନ୍ୟା ଯେହ୍ନେ ନଷ୍ଟା ହୁଏ ।
ସ୍ୱାର୍ଥ ଥିବା ଯାଜକ କ୍ରିୟା ଯେହ୍ନେ ବୃଥା ଯାଏ ॥
ଶୂଦ୍ର ଭିକ୍ଷାଗ୍ରାହୀ ଯୋଗ ନିହତ ଯେସନ ।
ଯେସନେ ବିନାଶ ପାଏ କୃପଣର ଧନ ॥
ଅଭ୍ୟାସ ବିହୁନେ ବିଦ୍ୟା ଯେହ୍ନେ ନାଶଯାଇ
ବିରୋଧ କଲେ ବିପ୍ରର ଯେହ୍ନେ ନ ରହଇ ॥
ଜୀବନ ଉପାୟ ତୀର୍ଥ ନିହତ ଯେସନ ।
ଜୀବିକା ଅର୍ଥେ ଯେ ବ୍ରତ ପାଳନ୍ତି ନିଧନ ॥
ମିଥ୍ୟା କୂଟ କଥା ବୃଥା ହୁଅଇ ଯେମନ୍ତେ ।
ନିଷ୍ଫଳ ଯେସନ ଜପ ହୁଏ ବ୍ୟଗ୍ର ଚିତ୍ତେ ॥
ଷଟକର୍ଣ୍ଣ ଭେଦ ମନ୍ତ୍ର ବିନାଶ ଯେସନ ।
ବୃଥା ଯେମନ୍ତ ପତିତ ଦ୍ୱିଜ ହସ୍ତେ ଦାନ ॥
ନାସ୍ତିକ ହୋଇଲେ ଯେହ୍ନେ ନିନ୍ଦାପାନ୍ତି ଜନେ
ପରଲୋକ ପାଇଁ କର୍ମ ହତ ଶ୍ରଦ୍ଧା ବିନେ ॥
ଦରିଦ୍ରର ଇହଲୋକେ ଯେହ୍ନେ ସୁଖ ନାହିଁ ।
ଯମୁନାର ସ୍ନାନ ବିନା ଜନ୍ମ ବୃଥା ଯାଇ ॥
ପାତକ ଉପପାତକ ଯେ ମହାପାତକ ।
ସକଳ ଭସ୍ମ କରଇ ଯମୁନା ଉଦକ ॥
ଯମୁନାନଦୀକି ଯାଇ ଯେବେ କେହି ଜନ ।
ସର୍ବ ପାପ ବିନାଶନ ଜଳେ କରେ ସ୍ନାନ ॥
ସକଳ ପାପ ହୁଅନ୍ତି ଭୟେ ଥରହର ।
ଅନଳ ପ୍ରାୟ ଜଳଇ ତାହାର ଶରୀର ॥
ଅଗ୍ନି ଯେସନେ କାଷ୍ଠକୁ କରଇ ଦହନ ।
କାୟମନ ବାକ୍ୟ କୃତ ପାତକ ତେସନ ॥
ଓଦା ସରୁ ଶୁଖିଲ ବା ମୋଟା ଗୋଟା ହେଉ ।
ପୋଡ଼ଇ ଯମୁନା ସ୍ନାନ ହୋଇ ଦାଉ ଦାଉ ॥
ପ୍ରମାଦ କୃତ ଅଜ୍ଞାନ କୃତ ଜ୍ଞାନକୃତ ।
ଯମୁନା ସ୍ନାନେ ଏ ସବୁ ପାପ ହୁଏ ହତ ॥
ଯମୁନା ସ୍ନାନେ ଯାହାର ଦେହେ ପାପ ନାହିଁ ।
ସେହି ସ୍ୱର୍ଗ ଭୁବନରେ ସୁଖ ଭୋଗ ପାଇ ॥
ପାପୀ ବିଶୁଦ୍ଧ ହୁଅଇ ଯମୁନାର ସ୍ନାନେ ।
ଏହି କଥା ଗୋଟି ତଥ୍ୟ ରଖିଥିବ ମନେ ॥
ବିଷ୍ଣୁ ଭକ୍ତରେ ସବୁରି ଯେହ୍ନେ ଅଧିକାର ।
ତେସନ ଯମୁନା ସ୍ନାନେ ଅଛି ନୃପବର ॥
ସବୁକାଳରେ ଯମୁନା ପାପ ବିନାଶିନୀ ।
ପରମ ମନ୍ତ୍ର ସ୍ୱରୂପ ଯମୁନାର ପାଣି ॥

ଯମୁନା ସ୍ନାନ ପାପର ପ୍ରାୟଶ୍ଚିତ୍ତ ଜାଣ ।
ପରମ ତପ ଯମୁନା ସ୍ନାନ ନୃପରାଣ ॥
ପୂର୍ବ ଜନ୍ମର ସଂସ୍କାର ବଳେ ଯେତେକ ପ୍ରାଣୀ
ପୁଣି ଜନ୍ମ ହେବା ମାତ୍ରେ ହୁଏ ମହାଜ୍ଞାନୀ ॥
ତେସନ ଜନ୍ମ ଜନ୍ମାନ୍ତ ଅଭ୍ୟାସର ବଳେ ।
ଯମୁନା ସ୍ନାନ କରିବା ପାଇଁ ମନ ବଳେ ॥
ସଂସାର ପଙ୍କ ଧୋଇବା ଶକ୍ତି ଏକା ତାର ।
ପାବନକାରଗଣଙ୍କ ପାବନତା ନୀର ॥
ସବୁ କାମନାର ଫଳ ସେ ଦେଇ ପାରଇ ।
ରକ୍ଷଣ ସ୍ନାନରେ ସବୁ ସୁଖ ଭୋଗ ଦେଇ ॥
ମଥୁରା ପାଶ ଯମୁନା ଦିଏ ମୋକ୍ଷଫଳ ।
ପୁଣ୍ୟକୁ ବଢାଇ ଦିଏ ସେ ଯମୁନା ଜଳ ॥
ମହାପାତକ ନାଶନୀ ଆନ ଆନ ସ୍ନାନେ ।
ବିଷ୍ଣୁ ଭକତି ପାଇବ ଏ ଯମୁନା ସ୍ନାନେ ॥
ଶ୍ରଦ୍ଧା ଭକ୍ତିରେ ଯେ ଜଳେ ବୁଡଇ ଯେ ଜନ
ମରଣ ଅନ୍ତେ ସେ ପାଏ ବିଷ୍ଣୁ ସନ୍ନିଧାନ ॥
ସହସ୍ର କୋଟି କଳପ ରହେ ସେ ବୈକୁଣ୍ଠେ ।
ବ୍ରହ୍ମଜ୍ଞାନ ସାଧି ନ ଥିଲେ ସେ ମହାକଷ୍ଟେ ॥
ଯମୁନା ପାନର ବଳେ ଲଭଇ ମୁକତି ।
ତୃପ୍ତ ହୋଇ ପିତୃଗଣ ସ୍ୱର୍ଗରେ ବସନ୍ତି ॥
ଶତକୋଟିକଳ୍ପ ତହିଁ ରହନ୍ତି ସନ୍ତୋଷେ ।
ଯମୁନାର ଜଳପାନ କରନ୍ତି ଯେ ଦେଶେ ॥
ସହସ୍ର ପଞ୍ଚଗବ୍ୟର ପାନକଲା ଫଳ ।
ଦିଅଇ ନିଶ୍ଚେ ତାହାକୁ ଯମୁନାର ଜଳ ॥
ସହସ୍ରେକ କୋଟି ତୀର୍ଥ କରିବ କାହିଁକି ।
ସ୍ନାନ ନିମନ୍ତେ ନ ଯାଇ ଯମୁନା ନିଛକ ॥
ଦାନ ହୋମକଲେ ଫଳ ଯହିଁ କୋଟି ଗୁଣ ।
ଗୋପୀନାଥ କହେ କର ଯମୁନାରେ ସ୍ନାନ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଯମୁନା
ମାହାତ୍ମ୍ୟଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।



# ପଞ୍ଚଦଶ ଅଧ୍ୟାୟ ।

## ହେମକୁଣ୍ଡଳ ଚରିତ ।

ନାରଦ ବୋଇଲେ ଶୁଣ ଧର୍ମ ଯୁଧିଷ୍ଠିର
କହୁଅଛି ଏକ ପୁରାତନ କଥା ସାର ॥
ସତ୍ୟଯୁଗର ଏ କଥା ଶୁଣ ମନଦେଇ ।
ନିଷଧ ନାମେ ଅପୂର୍ବ ନଗରେକ ଅଛଇ ॥
ସବୁ ନଗର ମଧ୍ୟରେ ଶ୍ରେଷ୍ଠ ସେ ନଗର ।
ବୈଶ୍ୟ ଏକ ରହିଥିଲ ତହିଁ କରି ଘର ॥
ହେମ କୁଣ୍ଡଳ ତା ନାମ ସେ ଅତି କୁଳୀନ ।
କୃଷି ବାଣିଜ୍ୟ କରଇ ନାହିଁ ରାତ୍ର ଦିନ ॥
କିଣଇ ଯାହା ବିକଇଁ ଲଭ୍ୟଧନ ନେଇ ।
ସବୁ ଦ୍ରବ୍ୟର ସେ ବୈଶ୍ୟ ଅଟେ ବ୍ୟବସାୟୀ
ହାଟ ବାଟେ ଗୋରୁ କିଣି କରଇ ବେପାର ।
ଘୋଡା ବେପାର କରଇ ହୋଇ ସୌଦାଗର
ଛେଳି ମଇଁଷି ଘୋରୁହ ବେପାର କରଇ ।
ନବା ପଶୁ ଯୋଡି ଖୋଇ ପେଇଣ ବଢାଇ ॥
ଅଳପ ଧନେ କିଣଇ ବିକଇ ବହୁତ ।
ଦହି ଦୁଧ ଘିଅ ଛେନା ଲହୁଣୀ ସହିତ ॥
ପକ୍ଷି ଗୁଣ୍ଡା ଛଣ କାଠ ଫଳମୂଳ ଯେତେ ।
ମରିଚ ଅଦା ପିପ୍ପଳୀ ମସଲ ସହିତେ ॥
ଧାନ ଶାଗ ତେଲ ବସ୍ତ୍ର ଆଦି ଏ ସମସ୍ତ ।
କିଣଇ ବିକଇ ସେହି ବୈଶ୍ୟ ନିତ୍ୟ ନିତ୍ୟ ॥
ଜଡା ସୋରିଷ ଏ ଆଦି ଶସ୍ୟହିଁ ଯେତେକ ।
ଲୁଣ ଶର୍କରା ତାମ୍ବୁଳ ନଡିଆ ଗୁବାକ ॥
ଏମନ୍ତେ ନାନାଦି ଦ୍ରବ୍ୟ କିଣଇଂ ବିକଇ ।
ଲୁହା କଂସା ତମ୍ବା ଆଦି କିଛି ନ ଛାଡଇ ॥
ଏମନ୍ତେ ନାନା ବେପାର କରେ ସୌଦାଗର ।
ନାନା ଉପାୟେ କଉଡି ହୋଇଲା ଅପାର ॥
ଆଠ କୋଟି ମୋହର ସେ ରଖିଲା ସମ୍ପାଦି ।
ତାହାର ଜଣେହେଁ କେହି ନାହାନ୍ତି ବିବାଦୀ ॥
ଧନୀ କୁବେର ବୋଲନ୍ତି ତାହାକୁ କେତେକ ।
ଧନୀ ସୌଦାଗର ବୋଲି ସୁଖେ ଆତେ ଡାକ ॥
ବୁଢା ହୋଇଲା ସେ ତାର ବାଳ ପାଚିଗଲା ।
ଚମ ଲୋଥ ହେଲା ଲହିଲହିଁ ସେ ଗଲା ॥

କାନକୁ ତା ନ ଶୁଭିଲା ଦାନ୍ତ ଗଲା ଝଡ଼ି ।
ଧର୍ମ କର୍ମେ ମନ ଦେଲା ଅର୍ଥ ଚିନ୍ତା ଛାଡ଼ି ॥
ମନେ ବିଚାରିଲା ଧନ କି ହେବ ମୋହର ।
ଏ ଧନରେ ଧର୍ମ କର୍ମ କରିବି ଅପାର ॥
ଧର୍ମ କେବଳ ସଙ୍ଗରେ ଯିବ ମଲା ବେଳେ ।
ଏମନ୍ତ ଭାଳି ମନରେ ଧନୀ ବୁଢ଼ା କାଳେ ॥
ତୋଳାଇଲା ଶ୍ରୀବିଷ୍ଣୁର ମନ୍ଦିର ଇଟାରେ ।
ଦେଉଳ ତୋଳାଇ ଶିବ ଥାପିଲା ତହିଁରେ ॥
ସେବା ପୂଜା ଖଞ୍ଜି ଦେଲା ଚିରକାଳ ଯାଏ ।
ନିର୍ଜଳ ସ୍ଥାନେ ପୋଖରୀ ବହୁତ ଖୋଳାଏ ॥
କୂପ ବାପୀ ତଡ଼ାଗ ସେ ଖୋଳାଇ ବହୁତ ।
ଲଗାଇଲା ଆମ୍ବ ଜାମୁ ବଟ ଯେ ଓଶସ୍ତ ॥
ଫୁଲ ବଗିଚା ବହୁତ କଲା ଦେବାଳୟେ ।
ଜଳ ଛତ୍ର ଦେଲା ଘୋର ନିଦାଘ ସମୟେ ॥
ଘର ଆଡ଼େ ଅନ୍ନ ଛତ୍ର ସଦାବର୍ତ୍ତ ଖଞ୍ଜି ।
ଦୁଃଖି ଦରିଦ୍ରଙ୍କୁ ଧନ ଦିଏ ମନ ରଞ୍ଜି ॥
ଯେଉଁ ସବୁ ଦାନ ଲେଖା ଅଛି ପୁରାଣେ ।
ସେ ସବୁ ଦାନ ସେ ଦେଲା ଡ଼କାଇ ବ୍ରାହ୍ମଣେ ॥
ଜ୍ଞାନ କୃତ ଯେ ଅଜ୍ଞାନ କୃତ ପାପମାନ ।
ଦେହୁଁ ଛଡ଼ାଇଲା କରି ଚାନ୍ଦ୍ରାୟଣ ଦାନ ॥
ଯେ ପାପକୁ ପ୍ରାୟଶ୍ଚିତ୍ତ ଲେଖା ଅଛି ଯାହା ।
ବିପ୍ରଙ୍କ ଠାରୁଁ ବୁଝିଣ କଲା ସବୁ ତାହା ॥
ଅନ୍ଧ ବଧିରେ ବହୁତ କଲା ଧନ ଦାନ ।
ଠାବେ ଠାବେ ବସାଇଲା ବ୍ରାହ୍ମଣ ଶାସନ ॥
ଦେବ ଦେବୀଙ୍କି ପୂଜିଲା ଅତିଥି ସେବିଲା ।
ଏମନ୍ତେ ବହୁତ ଧର୍ମ କର୍ମ ସବୁ କଲା ॥
ଦୁଇଟି ପୁତ୍ର ତାହାର ଶୁଣ ତାଙ୍କ ନାମ ।
ଶ୍ରୀକୁଣ୍ଡଳ ବିକୁଣ୍ଡଳ ଆହେ ଦେବ ଧର୍ମ ॥
ସେ ହେମ କୁଣ୍ଡଳ ବୈଶ୍ୟ ଧନ ତାଙ୍କୁ ଦେଇ
ଘର ଦ୍ୱାର ଛାଡ଼ି ଗଲା ବନଚାରୀ ହୋଇ ॥
ଶରୀରକୁ କୃଶ କଲା ଘୋର ତପ କରି ।
ନିରତେ ବାସୁଦେବଙ୍କୁ ମନରେ ସୁମରି ॥
ଶ୍ରୀଗୋବିନ୍ଦ ଆରାଧନେ ପାଇ ସଦଜ୍ଞାନ ।
ଅନ୍ତ କାଳେ ଗଲା ସେହି ଶ୍ରୀବିଷ୍ଣୁ ଭୁବନ ॥
ରୋଗ ଶୋକ ଜରା ମୃତ୍ୟୁ ବାଧା ଯହିଁ ନାହିଁ ।
ଆନନ୍ଦେ ରହିଲା ବୈଶ୍ୟ ବଇକୁଣ୍ଠ ପାଇ ॥

ସେ ଦୁଇ ପୁତ୍ର ତାହାର ଅତି ବୁଦ୍ଧିମନ୍ତ ।
ଅତି ସୁନ୍ଦର ଆବର ଯୁବା ରୂପବନ୍ତ ॥
ବହୁତ ଧନ ପାଇଣ ମନେ ଗର୍ବ ବଢ଼ି ।
ଦୁଷ୍ଟ ସ୍ୱଭାବ ତାଙ୍କର ବେଢ଼ୁଁ ବେଳ ହୋଇ ॥
ପଶା ଖେଳିବା ଆବର ଚଢ଼େଇ ପାଳିବା ।
ଗୀତ ବାଦ୍ୟରେ ସର୍ବଦା ମନ ବଳାଇବା ॥
ପାରି ଉଡ଼ାଇବା କଉଡ଼ିକେ ଦିନ ନେବା ।
ବେଶ୍ୟା ରଖିବା କଳହ ବିବାଦ କରିବା ॥
ସଞ୍ଜ ସକାଳେ ଦିବସେ ନିଦରେ ଶୋଇବା ।
ମଦ ଯେ ଖାଇବା ବେଣୁ ବୀଣା ବଜାଇବା ॥
ସଙ୍ଗୀତ ରସେ ମାତିବା ବାର ନାରୀ ଘେନି ।
ଫୁଲ ହାରରେ ଦେହକୁ କରିବା ମଣ୍ଡଣି ॥
ଗନ୍ଧ ଚନ୍ଦନ ସୁବାସ ଆମୋଦ ପ୍ରମୋଦ ।
ସୁଖରେ ଦିନ ହରିବା ଘେନି ସଉଗନ୍ଧ ॥
ଗନ୍ଧ କର୍ପୂର କସ୍ତୁରୀ ଚିତାରେ ଚିତ୍ରିତ ।
ନାନା ରତ୍ନ ଅଳଙ୍କାରେ ହୋଇଣ ମଣ୍ଡିତ ॥
ଫୁଲ ମାଳ ମୁକ୍ତା ହାର କଣ୍ଠେ ଲମ୍ବାଇବା ।
ଗଜ ଅଶ୍ୱ ରଥ ଆଦି ଯାନ ଆରୋହିବା ॥
ସୁନ୍ଦରୀ ସ୍ତ୍ରୀରି ଦେଖିବା ମାନସେ ଭ୍ରମିବା ।
ବଡ଼ପଣ ଦେଖାଇବା ଦୁର୍ଲଭ ହୋଇବା ॥
ଏମନ୍ତେ ନାନାବ୍ୟସନେ କଟାଇଲେ କାଳ ।
ପରସ୍ତ୍ରୀଙ୍କି ହରିଲେ ପାଇ ଧନ ବଳ ॥
କାହାରିକି ନ ମାନିଲେ ମନେ ଗର୍ବ କରି ।
ଗୁରୁଜନଙ୍କୁ ମଣିଲେ ଶତ୍ରୁଜନ ପରି ॥
ସତକୁ କଟୁ ମଣିଲେ ଯହିଁରେ କି ହିତ ।
କଥାବାର୍ତ୍ତା ନ ହୋଇଲେ ତାହାଙ୍କ ସହିତ ॥
ଅପ୍ରିୟ କଟୁ ବଚନ କହନ୍ତି ଯେତେକ ।
ସେମାନେ ହେଲେ ତାଙ୍କର ଅତିପ୍ରିୟ ଲୋକ
ଏମନ୍ତେ ପିତୃ ସଞ୍ଚିତ ଧନ ଗଲା ସରି ।
ଊଷର ଭୂମିରେ ବୀଜ ବୁଣିଲେ ଯେପରି ॥
ଅସତ ମାର୍ଗେ ସେ ଧନ ଯାକ କଲେ ବ୍ୟୟ ।
ଏମନ୍ତେ ସଞ୍ଚିତ ଧନ ଯାକ ଗଲା କ୍ଷୟ ॥
ବିଟ ଧୂର୍ତ୍ତଙ୍କେ ଖାଇଲେ ସେ ଧନ ତାହାର ।
ଭାଟ ବନ୍ଦୀ ମାଲ କେଳା ପୁଣି ନଟକାର ॥
ଏମାନେ ଖାଇଲେ ବିପ୍ରମୁଖେ ନ ପଡ଼ିଲା ।
ଅଗ୍ନି ମୁଖେ ନ ପଡ଼ିଲା ଏମନ୍ତେ ସରିଲା ॥

ଦେବ ଦେବୀଙ୍କ ଦୃଷ୍ଟିରେ ନ ପୂଜିଲ ଦିନେ ।
ଧନକୁ ଦାନ ଦରିଦ୍ର ହେଲେ ନିଜ ଜନେ ॥
କ୍ଷୁଧାରେ ଆକୁଳ ହୋଇ କଲେଁ ଯେସି ଶୋକ
ପାଖେ ନ ପଶିଲେ ଚାଟୁ କହୁଥିବା ଲୋକ ॥
ମୁହିଁ ମୋଡ଼ି ଚାଲ୍ୟାନ୍ତି ନ ଚାହାନ୍ତି ତାଙ୍କୁ ।
ନ ଶୁଣିଲେ ଚାକରେ ଯେ ତାହାଙ୍କ ଡାକକୁ ॥
ସ୍ୱଜନ ବାନ୍ଧବ କେହି ନ ପଶିଲେ କାଡ ।
ବନ୍ଧୁ ବାନ୍ଧବେ ବହୁତ ଧିକ୍କାର କହନ୍ତି ॥
ନ ସହି ପାରି ନଗରେ ପଶି କଲେ ଚୋର ।
ବହୁତ ମାଡ଼ ମାଇଲେ ଲୋକେ ତାଙ୍କୁ ଧରି ॥
ଚୋର ଚୋର ବୋଲି ହୁରି ପଡ଼େ ଚାରି ଆଡ଼େ
ଯେ ତହିଁ ଧରନ୍ତି ତହିଁ ଦିଅନ୍ତି ସେ ମାଡ଼େ ॥
ଯେ ବଣ୍ଠି ଥିଲେ ତାହାଙ୍କ ହସ୍ତ ଧନ ଖାଇ ।
ସେମାନେ ମାଡ଼ ମାଇଲେ ମୁହିଁକୁ ନ ଚାହିଁ ॥
ଭୟେ ଘରୁ ନ ବାହାର୍ ମୋହ ଭାଇ ବେନି ।
ଚିନ୍ତାଭରେ ଘରେ ବସି କରନ୍ତି ଭାଳେଣି ॥
ଦେଖ ଭାଇ ଏ ସଂସାର ଜନଙ୍କର ରୀତ ।
ଯେତେବେଳେ ଥିଲା ଭାଇ ଆମ୍ଭର ସମ୍ପତ୍ତି ॥
ଭରସି କହୁ ନ ଥିଲେ ଆମ୍ଭଙ୍କୁ କେ ଡରେ ।
ପ୍ରିୟ ହୋଇ ରହୁଥିଲେ ଧନର ଲୋଭରେ ॥
ଦାସ ଦାସୀ କେତେ ଖଟୁ ନ ଥିଲେ ଆମ୍ଭଙ୍କୁ ।
କେହି ଯେ ନ ପଚାରିଲେ ସେ ଧନ ଗଲାକୁ ॥
ବନ୍ଧୁ ବାନ୍ଧବେ ଆମ୍ଭଙ୍କୁ କହିଲେ ବୁଝାଇ ।
ତାହା ଆମ୍ଭେ ନ ଶୁଣିଲୁ ସିନା ତାଙ୍କ ପାଇଁ ॥
ଏବେ ସେ ମାଡ଼ ମାଇଲେ ନ ଚାହିଁଲେ ମୁହିଁ
ବନରେ ପଶି ରହିବା ଛାଡ଼ି ଏହି ଗୃହ ॥
ଏମନ୍ତ ଶୁଣି ସେ ଦୁହେଁ ଘରୁ ପଳାଇଲେ ।
ବନରେ ପଶି ତାମଣା କାଠେ ଧନୁ କଲେ ॥
ବାଉଁଶର ଗୁଣ କରି ଯୋଜି କାଣ୍ଡଶର ।
ବିଷ ଲେପିଣ ତହିଁରେ ଭ୍ରମି ବନ ଘୋର ॥
ବିନ୍ଧି ମାଇଲେ ବୃକ୍ଷରେ ଥିବା ପକ୍ଷିଗଣ ।
ମୃଗ ବରାହ ଶୂକର ଟିଶଳ ହରିଣ ॥
ଗୋଧି ଶଲକ ମାରଣ ପୋଡ଼ିଲେ ଉଦର ।
ଶବରଙ୍କ ସଙ୍ଗେ ରହି ହୋଇଲେ ଶବର ॥
ପଶୁପକ୍ଷୀ ମାରି ଖାଇ ରଖିଲେ ଜୀବନ ।
ଜୀବବଧ ପାପକୁ ସେ ଭୟ ନ କରଣ ॥

ଦିନକର କଥା ତୁମ୍ଭେ ଶୁଣ ମନ ଦେଇ ।
ଜଣେ ପର୍ବତକୁ ଗଲା ଜଣେ ବନ ଭୂଇଁ ॥
ବଡ଼ଭାଇଙ୍କ ବାଟରେ ବାଘ ଖାଇ ଗଲା ।
ସାନଭାଇଙ୍କ ଯେ ସାପ କାମୁଡ଼ିଲା ମଲା ॥
ଏକ ଦିନେ ସେହି ଦୁଇ ପାପୀ ଗଲେ ମରି ।
ଯମର ଦୂତେ ଦୁହିଙ୍କ ପାଶେ ବାନ୍ଧି କରି ॥
ଯମର ଭୁବନେ ଯମ ଛାମୁରେ ଥୋଇଲେ ।
ଦୁହିଙ୍କର ପାପଯାକ ବିସ୍ତାରି କହିଲେ ॥
ଆବର ବୋଇଲେ ତୁମ୍ଭେ ଅଟ ଧର୍ମରାଜ ।
ବିଚାରି ଦଣ୍ଡ ଏହାଙ୍କୁ ପ୍ରଭୁ ଦେବା ଆଜ ॥
ଭୃତ୍ୟଙ୍କୁ ଯାହା କହିବେ ସେ ତାହା କରିବେ
ପ୍ରସନ୍ନ ହୋଇ କହନ୍ତୁ କି କରିବୁ ଆମ୍ଭେ ॥
ଦୂତଙ୍କ ମୁଖୁ ଏମନ୍ତ ଶୁଣି ଜନ୍ତୁସାଇଁ ।
ତକ୍ଷଣେ ଚିତ୍ର ଗୁପତ ମୁଖକୁ ଅନାଇ ॥
ଇଷତ୍ ପାଇ ତୁରତେ ସେ ଚିତ୍ର ଗୁପତ ।
ପାଞ୍ଜି ଫିଟାଇ ବୁଝାଇ କହିଲେକ ଏମନ୍ତ ॥
ଯମ ସବୁ ଶୁଣି ଶୁଣି ମନରେ ବିଚାରି ।
ଦୂତଙ୍କୁ ବୋଇଲେ ଆରେ ଯମ ଆଜ୍ଞାକାରି ॥
ତୀବ୍ର ବେଦନା ନାମରେ ଯେ ନରକ କୁଣ୍ଡ ।
ଯହିଁ ମହା ପାପୀମାନେ ହୋଇଛନ୍ତି ଚୂର୍ଣ୍ଣ ॥
ସେ କୁଣ୍ଡେ ଜଣକୁ ଧରି ଦିଅ ରେ ପକାଇ ।
ଆର ଜଣକୁରେ ନିଅ ବିମାନେ ବସାଇ ॥
ରଖାଇ ଆସ ଉତ୍ତମ ଭୁବନ ଯେ ସ୍ୱର୍ଗ ।
ଅତି ଉତ୍ତମ ଦ୍ରବ୍ୟ ସେ ରହି କରୁ ଭୋଗ ॥
ଆହେ ଯୁଧିଷ୍ଠିର ଯମ ଆଜ୍ଞା ପାଇ ଦୂତେ ।
ବଡ଼ଭାଇଙ୍କ ଘେନିଣ ଗଲେ ସେ ତୁରତେ ॥
ପକାଇ ଦେଲେ ରୌରବ ଘୋର ନର୍କ କୁଣ୍ଡେ
ଲୁହା ଅଗ୍ନିରେ ଖୁମ୍ପିଲେ କାକେ ତାର ମୁଣ୍ଡେ
ସାନ ଭାଇର ନାମ ଯେ ଅଟେ ବିକୁଣ୍ଡଳ ।
ଦୂତେ କହିଲେ ତାହାକୁ ବଚନ କୋମଳ ॥
ଆମ୍ଭ ସଙ୍ଗେ ଆସ ଏହି ବିମାନରେ ବସ ।
ସ୍ୱର୍ଗ ଭୁବନରେ ରହି ସୁଖରେ ବିଳସ ॥
ତୋର ପୁଣ୍ୟ ବଳେ ସ୍ୱର୍ଗ ସୁଖ କର ଭୋଗ ।
ଆନନ୍ଦରେ ବିକୁଣ୍ଡଳ ହୋଇ ଉଦବେଗ ॥
ଦୂତଙ୍କ ସଙ୍ଗେ ଚଳିଲ ଯିବା ବେଳେ ବାଟେ ।
ବୋଇଲା ଏକ ସଂଶୟ ମୋ ହୃଦେ ପ୍ରକଟେ ॥

ପଚାରିବା ପାଇଁ ମନ ବଳାଇଛ ମୁହିଁ ।
ତୁମ୍ଭ ବିନା ନ ତୁଟିବ ସେ ସଂଶୟ କାହିଁ ॥
ତୁମ୍ଭେ ଅଟ ଦେବ ଦୂତ ଜାଣ ସବୁକଥା ।
ଏହି ଗର୍ଭ ଉପୁଜିଲୁ ଆମ୍ଭେ ବେନି ଭ୍ରାତା ॥
ଭାଇ ଯାହା କଲା ପୁଣି ମୁହିଁ ତାହା କଲି ।
ସେ ପୁଣି ଯେ ଦିନ ମଲା ମୁଁ ସେ ଦିନ ମଲି ॥
ତାକୁ ଯେ ସାପ ଖାଇଲା ବାଘଖାଏ ମୋତେ ।
ତାର ପାପ ମୋର ପାପ ସମାନ ଯୁକତେ ॥
ଅପମୃତ୍ୟୁରେ ଯେ ମଲୁ ଆମ୍ଭେ ଭାଇଦୁଇ ।
ସେ କିପାଁ ନର୍କ ଯାଇଲା ସ୍ୱର୍ଗପାଏ ମୁହିଁ ॥
ଏ ବିଷମ ସନ୍ଧି କଥା ଅତି ଚମତ୍କାର ।
ଜାଣିଥିଲେ ଏ ସଂଶୟ ମନୁ କରଦୂର ॥
ଦେବ ଦୂତ କହିଲେ ହେ ଶୁଣ ବିକୁଣ୍ଡଳ ।
ପିତା ମାତା ଜନମର ହୋନ୍ତି ଯେ କେବଳ ॥
ଭାଇ ଭଉଣୀ ଭାରିଯା ପୁଅ ନାମଧାରୀ ।
ବୃକ୍ଷ ରହିଥାଏ ଯେସନେ ବହୁଡାଳ ମେଳି ॥
ନାନା ନାମଧାରୀ ପକ୍ଷୀ ଗୃହଆଡୁ ଆସି ।
କ୍ରୀଡା କରୁଥାନ୍ତି ସେହି ବୃକ୍ଷଡାଳେ ବସି ॥
ପୁଣି ସେ ଉଡି ଯାଆନ୍ତି ପୁଣି ଯେଝା ସ୍ଥାନେ ।
ଏମାନଙ୍କ ମେଳ ତୁମ୍ଭେ ଜାଣ ହୋ ତେସନେ
ପୂର୍ବ ପୂର୍ବ ଜନମର କର୍ମ ଶୁଭାଶୁଭ ।
ପର ପର ଜନମରେ ଭୋଗନ୍ତି ତା ସର୍ବ ॥
ଯାହା ଯେ କରିଥାଇ ସେ ସେ ଫଳ ଭୁଞ୍ଜଇ
ତାହାକୁ ଯେ କେହି ଆନ କରି ନ ପାରଇ ॥
ଏକ କର୍ମ ଫଳ ଭୋଗ ଆରେକ ନ କରେ ।
ଘୋର ପାପେ ତୋର ଭାଇ ପଡେ ନରକରେ
ତୋର ପୁଣ୍ୟଫଳେ ହେବ ସ୍ୱର୍ଗ ସୁଖ ଭୋଗ ।
ବୋଇଲା ସେ ବିକୁଣ୍ଡଳ ଯୋଡି କରଯୁଗ ॥
ବାଳକାଳୁ ଯେମନ୍ତେ ତା ମନ ପାପେ ଥାଇ ।
ସେ ଯାହା କରଇ ମୁହିଁ ସେ ପାପ କରଇ ॥
ତାହାର ମୋହର ପାପ ଅଟଇ ସମାନ ।
ଦିନେ କ୍ଷଣେ କରି ନାହୁଁ ଆମ୍ଭେ ପୁଣି ପୁଣ୍ୟ
ପୂର୍ବ ଜନମର ଯେବେ ଥାନ୍ତା ପୁଣ୍ୟ ବଳ ।
ପୁଣ୍ୟ କର୍ମେ ଯାଉଥାନ୍ତା ଆମ୍ଭବାଳକାଳ ॥
ଏଥୁ ଜଣା ଯାଏ ପୂର୍ବେ କରି ନାହୁଁ ପୁଣ୍ୟ ।
ଏ ଜନମ ଗୋଟା ଯାକ କଲୁ ପାପକର୍ମ ॥

ମୋର ଜାଣିବାରେ କିଛି ନାହିଁ ପୁଣ୍ୟ ମୋର
ତୁମ୍ଭେ ଜାଣିଥିଲେ ତାହା କହ ମୋ ଆଗର ॥
ଦେବ ଦୂତେ ବୋଇଲେ ରେ ବିକୁଣ୍ଡଳ ବୈଶ୍ୟ
ଆମ୍ଭଙ୍କୁ ସବୁରି ଜନ୍ମ ଫଳ ହୁଏ ଦୃଶ୍ୟ ॥
ତୁମ୍ଭେ କାହୁଁ ଜାଣିବ ତା ଆମ୍ଭେ ଅଛୁଁ ଜାଣି ।
ହରିମିତ୍ର ନାମେ ଥିଲା ଏକ ବିପ୍ରମଣି ॥
ସୁମିତ୍ର ବିପ୍ର ଅଟଇ ତାହାର କୁମର ।
ଯମୁନଦୀର ଦକ୍ଷିଣ ତଟେ ତାର ଘର ॥
ସେ ଆଶ୍ରମ ତାର ଅତି ପବିତ୍ର ଅଟଇ ।
ଆହେ ବୈଶ୍ୟବର ତୁମ୍ଭେ ସେ ବନରେ ଥାଇ
ଜୀବ ମାରି ପୋଷୁଥିଲ ଆପଣା ଜୀବନ ।
ମିତ୍ର ହୋଇଲା ତୁମ୍ଭର ସୁମିତ୍ର ବ୍ରାହ୍ମଣ ॥
ତୁମ୍ଭ ଦୁହିଙ୍କର ମନ ଏକାଠି ମିଳିଲା ।
ସାଧୁ ସଙ୍ଗେ ସାଧୁ ଆଚାରେ ତୁମ୍ଭ ମନ ଗଲା ॥
ଦୁହେଁ ମିଳି ଯମୁନାରେ କଲ ମାଘସ୍ନାନ ।
ତେଣୁ ତୁମ୍ଭେ ହୋଇ ସବୁପାପରୁ ମୋଚନ ॥
ଦୁଇମାଘ ମାସସ୍ନାନ କଲେ ତୁମ୍ଭେ ଦୁଇ ।
ସର୍ବ ପାପହାରି ତୀର୍ଥ ଯମୁନାର ଯହିଁ ॥
ସେ ତୀର୍ଥ ଜଳ ଖାଇଲ ମାଘସ୍ନାନ କଲ ।
ଏକ ମାଘସ୍ନାନ ପାଇଁ ମୁକତ ହୋଇଲ ॥
ଆର ମାଘସ୍ନାନ ଫଳେ ସ୍ୱର୍ଗସୁଖ ପାଇ ।
ତୁମ୍ଭ ପୂର୍ବ ଜନ୍ମ ପୁଣ୍ୟ ଫଳ ସିନା ଏହି ॥
ଜନ୍ମ ଜନ୍ମାନ୍ତର ପାପୀ ତୁମ୍ଭ ବଡ ଭାଇ ।
ସେପାପ ଫଳେ ଏ ଘୋର ନରକ ଭୋଗଇ
ଖଡଗେ ହାଣନ୍ତି ତାକୁ ପିଟନ୍ତି ମୁଦ୍ଗରେ ।
ପଥର ନେଇ ପକାନ୍ତି ଦେଖ ତାର ଶିରେ ॥
ଚୂନା କରିଣ ଭାଜନ୍ତି ତତଲା ଅଙ୍ଗାରେ ।
ବାୟସେ ଲୁହା ଥଣ୍ଟରେ ଖୁମ୍ପନ୍ତି ମୁଣ୍ଡରେ ॥
ଦୂତଙ୍କ ମୁଖ ଏମନ୍ତ ଶୁଣି ବିକୁଣ୍ଡଳ ।
ଭାଇର ଏ କଷ୍ଟ ଶୁଣି ପାଇଲା ବିକଳ ॥
ଥରେ ଅଙ୍ଗ ଥରେ ଲୋମମୂଳ ଟାଙ୍କୁରନ୍ତି ।
ଲୋତକରେ ପୂର୍ଣ୍ଣହୋଇଲା ତା ଲୋଚନ ଦୁଇ ॥
ବିନୟ କରି କହିଲା ମଧୁର ବଚନ ।
ତୁମ୍ଭେମାନେ ଦେବ ଦୂତ ଅତି ସାଧୁଜନ ॥
ସାଧୁଜନ ସଙ୍ଗ ଅଟେ ଉପକାରୀ ତରୁ ।
ସେ ବୃକ୍ଷର ସାତ ଗୋଟି ଚେର ମହାମେରୁ ॥

ସେ ବୃକ୍ଷର ଯେଉଁ ଫଳ ଫଳେ ସେ ମଧୁର ।
ମିତ୍ର ଭାବରେ କରିବ ମୋର ଉପକାର ॥
ମନେ କରୁଅଛି ତୁମ୍ଭଙ୍କ ସର୍ବଙ୍କ କହିବ ।
ଆଉ ଅଛି ମୁହିଁ ତୁମ୍ଭ ମୁଖରୁ ଶୁଣିବ ॥
କଦାଚିତ୍ ପ୍ରାଣୀ ନ ଦେଖେ ଯମର ଭୁବନ ।
କାହିଁକି ଘୋର ନରକେ ନ ପଡଇ ଜନ ॥
ଦୟାକରି ମୋତେ ତାହା କହିଲା ଗୋସାଇଁ ।
ଦେବଦୂତ କହନ୍ତି ସେ ବୈଶ୍ୟ ମୁଖ ଚାହିଁ ॥
ପାପ ନ ଥିବାରୁ ଦେହେ ପରିତେଜ ଏଥା ।
ପାପ ନଥିଲେ ସବୁରି ପୁରୁଷରେ ହୁଅ ॥
ତେଣୁ ତାହାର ଏମନ୍ତ ବୃଦ୍ଧି ଉପୁଜଇ ।
ପର ସେବାରେ ଯଦ୍ୟପି ଆତ୍ମାଦନ ପାଇ ॥
କେତେ କହି ନ ପାରିଲେ କହିବୁ କହିଁତେ ।
ଶ୍ରଦ୍ଧା ସ୍ନେହ ଥିବାଯୋଗୁଁ ତୁମ୍ଭ ପ୍ରୀତି ଅର୍ଥେ ॥
ମନରେ କିବା କଥାରେ କାର୍ଯ୍ୟରେ ଯେ ଜନ
ପରକୁ ପୀଡ଼ା ନ ଦିଏ ହେ ବୈଶ୍ୟ ନନ୍ଦନ ॥
ସବୁବେଳେ ସବୁକାଳେ ସବୁ ଅବସ୍ଥାରେ ।
ଯମ ଭୁବନ ନପଡ଼େ ତାହାର ଦୃଷ୍ଟିରେ ॥
ପ୍ରାଣୀଠାରେ ହିଂସାଥାଏ ଯେଉଁ ପୁରୁଷରେ ।
ନର୍କକୁଣ୍ଡେ ପଡ଼ି କଷ୍ଟ ପାଏ ନିରନ୍ତର ॥
ଯେତେ ସେ ବେଦ ପଢିଲେ ନିସ୍ତାର ନ ପାଇ
ଯେତେ ଦାନଦେଲେ ସେହି ପାପ ନ ତରଇ
ଯେତେ ଯଜ୍ଞ ଯେତେ ତପ କଲେହେଁ କହିବ
ସ୍ୱର୍ଗ ନ ପାଇ ନିଶ୍ଚୟ ନର୍କରେ ପଡ଼ିବ ॥
ମୁନିମାନେ ଏହି କଥା କହନ୍ତି ନିରନ୍ତେ ।
ଅହିଂସା ପରମ ଧର୍ମ ଏ ସବୁର ମତେ ॥
ଅହିଂସା ପରମ ତପ ପରମ ଯେ ଦାନ ।
ଅହିଂସକାରୀ ନ ଦେଖେ ଯମର ଭୁବନ ॥
ଯେ ଦୟାନ୍ୱିତଜନ ପ୍ରାଣି କଷ୍ଟ ନ ଦେଖଇ ।
ଦେଖିଲେ ଉଦ୍ଧାର ପାଇଁ ଉଦ୍ୟମ କରଇ ॥
ମଶା ଏଣୁଅ ଡାଆଁସ ଉକୁଣୀ ସହିତେ ।
ସ୍ୱରଖାନି ଜୀବଜନ୍ତୁ ମହୀରେ ଏ ଯେତେ ॥
ଏମାନଙ୍କ ଦ୍ୱେଷ ହିଂସା ହୃଦେ ନାହିଁ ଯାର ।
କଦାପି କାହିଁ କାହାକୁ ନାହିଁ ତାର ଡର ॥
ଆପଣା ପ୍ରାୟ ମଣଇ ସକଳ ପ୍ରାଣୀଙ୍କି ।
ଦୂର ପଳାନ୍ତି ତାହାକୁ ଯମଦୂତେ ଦେଖି ॥
ତପତ ଅଙ୍ଗାର ଜ୍ୱାଳା ନଳା ଘୋଷମାନା ।
ସହି ନୁହାଇ ନର୍କର ଏ ଘୋର ଯନ୍ତ୍ରଣା ॥
ପୂଜ ଶୋଣିତ ଖଙ୍କାର ମଳ ମୂତ୍ର ନଈ ।
ଏସବୁ ନରକ କୁଣ୍ଡ ସେହି ନ ଦେଖଇ ॥
ଜୀବନ ରଖିବା ପାଇଁ ଯେ ଏହି ଜଗତେ ।
ପ୍ରାଣୀଙ୍କି ମାରଇ ଦୟା ନ ଥାଇ ତା ଚିତ୍ତେ ॥
ପଶୁପକ୍ଷୀ ମୀନ ଆଦି ଜୀବ ମାଂସଖାଏ ।
କାଳସୂତ୍ର ନରକରେ ସେହି ପଡ଼ି ଥାଏ ॥
ଚର୍ବି ଶ୍ୱାନ ମାଂସ ଖାଏ ପୂଜରକ୍ତ ପିଏ ।
ବସାପଙ୍କେ ବୁଡ଼ି ରହିଥାଏ ଶିରୁଁ ଯାଏ ॥
ନିରତେ କାମୁଡୁଥାନ୍ତି କୃମି କୀଟେ ତାକୁ ।
ମୁଣ୍ଡଟେକିଲେ ବାୟସେ ଖୁମ୍ପନ୍ତି ତା ଚକ୍ଷୁ ॥
କ୍ଷୁଧାର ଅଗ୍ନି ତାଙ୍କର ସେ ଅତି ମୁନିଆ ।
ଘୋର ଅନ୍ଧକାରେ ହେଉଥାନ୍ତି ବୁଆବୁଆ ॥
ଥରିଥରି ମରି ମରି ହେଉଥାନ୍ତି ତହିଁ ।
ଉଚ୍ଚସ୍ୱରେ କାନ୍ଦୁଥାନ୍ତି ମଲି ମଲି କହି ॥
ଏମନ୍ତେ କେତେ କଳପ ପାଆନ୍ତି କଷଣ ।
ଆହେ ବୈଶ୍ୟ ତୁମ୍ଭେ ଶୁଣି ହାତେ ଦେବ କର୍ଣ୍ଣ
ନରକୁ ଉଦ୍ଧାର ପାଇ ହୁଅନ୍ତି ସ୍ଥାବର ।
ନାନାଦି ପକ୍ଷୀ ଯୋନିରେ ଭ୍ରମନ୍ତି ଆବର ॥
ଅନ୍ଧ କଣା କୁଜା ପଙ୍ଗୁ ଦରିଦ୍ର ହୁଅନ୍ତି ।
ଅଙ୍ଗହୀନ ହୋଇ ବାରଂବାର ଉପୁଜନ୍ତି ॥
ଏଣୁ ବୈଶ୍ୟ ଇହ ପରଲୋକ ସୁଖ ପାଇଁ ।
ଧର୍ମବନ୍ତ ପ୍ରାଣୀ କେବେ ତାହା ନ କରଇ ॥
ମନେ ନ ଧରଇ ତାହା ମୁଖେ ନ ଭାଷଇ ।
ହିଂସାକାରୀ ଇହ ପରଲୋକେ ଦୁଃଖ ପାଇ ॥
ଏହି ଚଉଦ ବ୍ରହ୍ମାଣ୍ଡେ ଅହିଂସକାରୀର ।
କେତେବେଳେ କାହାକୁ ଯେ ନାହିଁ ତା ଡର
ସିଧା ବଙ୍କା ହୋଇ ନଈ ସବୁ ବହି ଯାଇ ।
ଯେମନ୍ତେ ସମୁଦ୍ର ଗର୍ଭେ ପଶି ଲୀନ୍ତ ପାଇ ॥
ତେସନ ଅହିଂସା ଗର୍ଭେ ସବୁ କର୍ମ ଲୀନ ।
ଅଭୟ ଦାନ ପ୍ରାଣୀଙ୍କି ଦିଏ ଯେଉଁ ଜନ ॥
ସବୁତୀର୍ଥ ସବୁଯଜ୍ଞ କରିଛି ସେ ଜାଣ ।
ଆଉର ଯାହା କହୁଛୁଁ ମନ ଦେଇ ଶୁଣ ॥
ଆହେ ବୈଶ୍ୟବର ତୁମ୍ଭେ ଜାଣ ଏ ଜଗତେ ।
ଶାସ୍ତ୍ରରେ ଧର୍ମ ଅଧର୍ମ ଲେଖାଅଛି ଯେତେ ॥

ତାହାସବୁ ଦୃଷ୍ଟି ପାଇ କରନ୍ତି ପାଳନ ।
କଦାପି ସେ ନ ଦେଖନ୍ତି ଯମର ଭୁବନ ॥
କିବା ଯତି କିବା ଭିକ୍ଷୁ ଗୃହୀ ବ୍ରହ୍ମଚାରୀ ।
ଆପଣାର ଧର୍ମ କରୁ କରୁ ଯେବେ ମରି ॥
ସ୍ୱର୍ଗ ଭୁବନରେ ରହି ସୁଖ ଭୋଗ ପାନ୍ତି ।
ଇନ୍ଦ୍ରିୟ ଦମନକାରୀ ଯେ ବ୍ରହ୍ମଲୋକେ ଯାନ୍ତି ॥
ପୋଖରୀ ଖୋଳାଇ ଯେହୁ ଦେଉଳ ତୋଳାଇ
ଅନ୍ନଛତ୍ର ଜଳଛତ୍ର ଠାବେ ଠାବେ ଦେଇ ॥
ଯାଗ ଯଜ୍ଞ କରଇ ଯେ ବାଟେ ବୃକ୍ଷ ରୋଇ ।
ଆହେ ବୈଶ୍ୟ ସେ ଯମର ପୁର ନ ଦେଖଇ ॥
ଯେଉଁ ବୀର ଘୋର ଯୁଦ୍ଧ କରି ଦିଏ ପ୍ରାଣ ।
ବ୍ରହ୍ମ ଲୋକରେ ବସଇ ଆହେ ବୈଶ୍ୟ ଜାଣ ॥
ଯେ ପଶେ ଶରଣ ଆସି ତାକୁ ଯେ ରଖଇ ।
ଅନାଥ ସ୍ତ୍ରୀ ବିପ୍ରଙ୍କ ପାଇଁ ପ୍ରାଣ ଦେଇ ॥
ସ୍ୱର୍ଗରୁ ଆଉ ନ ଆସେ ସେହି ମର୍ତ୍ତ୍ୟପୁରେ ।
ପଙ୍ଗୁ ଅନ୍ଧ ବାଳକଙ୍କୁ ପୋଷନ୍ତି ଯେ ନରେ ॥
ଅନାଥ ଦରିଦ୍ର ରୋଗୀ ବୃଦ୍ଧଙ୍କୁ ଆବର ।
ଦେବ ଲୋକରେ ବସନ୍ତି ଯାଇଁ ସେହି ନର ॥
ପଙ୍କେ ଲଖିଥିବା ଗୋରୁଙ୍କୁ ଯେ ଉଦ୍ଧାରଇ ।
କି ଅବା ରୋଗି ବିପ୍ରକୁ ଉଦ୍ଧାର କରଇ ॥
ଅଶ୍ୱମେଧ ଯଜ୍ଞଫଳ ପାଆନ୍ତି ସେ ନର ।
ସେ ଯେଉଁ ଲୋକେ ବସନ୍ତି ସେ ଲୋକ ତାଙ୍କର
ଗୋରୁଙ୍କୁ ଯେ ଗ୍ରାସ ଦିଏ ଗୋରୁ ସେବାକରେ
ନ ଚଢନ୍ତି ଗୋରୁ ଯୋଗି ଥିବା ଶଗଡରେ ॥
ସ୍ୱର୍ଗ ଭୁବନରେ ରହି ଦିବ୍ୟ ସୁଖ ପାନ୍ତି ।
ଗୋରୁଙ୍କ ପାଇଁ ଯେ ଜନେ ପୋଖରୀ ଖୋଳାନ୍ତି
ତୃଷିତ ଗୋରୁ ଆସି ତହିଁ ପିଉଥାନ୍ତି ପାଣି ।
ଯମଲୋକ ନ ଦେଖଇ କେବେ ସେହି ପ୍ରାଣୀ ॥
ସ୍ୱର୍ଗ ଭୁବନ ତାହାର ହୁଅଇ ଯେ ଘର ।
ଅଗ୍ନି ଦେବ ଗୁରୁ ବିପ୍ର ପୂଜଇ ଯେ ନର ॥
ଆହେ ବୈଶ୍ୟ ନିଶ୍ଚୟ ସେ ସ୍ୱର୍ଗପୁର ପାଇ ।
ବାପୀ କୂପ ତଡାଗ ଯେ ପୋଖରୀ ଖୋଳଇ ॥
ଗୃହଗାମୀ ଜୀବ ଜନ୍ତୁ ତହିଁ ପାଣି ଖାନ୍ତି ।
କେହି ତା ଧର୍ମର ଅନ୍ତ କରି ନ ପାରନ୍ତି ॥
ଦେବଲୋକେ କହୁଥାନ୍ତି ଜଗତେ ଯେ ଜନ ।
ନିତ୍ୟଦିନ ବସି ଦେଉଥାଇ ଜଳ ଦାନ ॥

ଯେତେ ଅଧିକରେ ପ୍ରାଣୀ ପିଉଥାନ୍ତି ପାଣି ।
ସେତେ ଅଧିକରେ ପୁଣ୍ୟ ବଢୁଥାଇ ପୁଣି ॥
ଜଳ ଯେଣୁ ପ୍ରାଣୀଙ୍କର ଅଟଇ ଜୀବନ ।
ପବିତ୍ର ହୋଇବେ ପାପୀ କରି ନିତ୍ୟ ସ୍ନାନ ॥
ବାହାର ଅନ୍ତର ମଳ ପ୍ରାତଃ ସ୍ନାନ ହରେ ।
ପ୍ରାତଃ ସ୍ନାନରେ ପାତକ ଖଣ୍ଡନ୍ତି ଯେ ନରେ ॥
ପ୍ରାତଃ ସ୍ନାନକାରୀ ଜନ ନର୍କେ ନ ପଡଇ ।
ସ୍ନାନ ନ କରି ଯେ ଜନ ଭୋଜନ କରଇ ॥
ମଳ ଭୁଞ୍ଜଇ ସେ ନିତ୍ୟ ଜାଣିଥା ହେ ବୈଶ୍ୟ
ନ ମାଡନ୍ତି ତାର ପିତୃଗଣ ତାର ବାସ ॥
ସ୍ନାନ ଧ୍ୟାନ ନର ପାପୀ ଅଶୁଚି ନରତେ ।
ବେଦରେ କଥିତ ଅଛି ଜାଣିବ ସୁମତେ ॥
ଅଶୁଚି ପାପୀ ନରକ ଭୋଗ କରେ ଯାଇ ।
ତହୁଁ କୀଟ ପଶୁ ପକ୍ଷୀ ଆଦି ଜନ୍ମ ପାଇ ॥
ପର୍ବଦିନରେ ସକାଳେ ନଦୀକି ଯେ ଯାଇ ।
ଶୁଅ ପଡଥିବା ଜଳେ ବୁଡଣ ଗାଧୋଇ ॥
କୁଯୋନିରେ ନଭ୍ରମେ ସେ ନରକ ନ ଦେଖେ
ଆହେ ବୈଶ୍ୟ ପ୍ରାତଃ ସ୍ନାନ କରୁଥିବା ଲୋକେ
କୁ ସ୍ୱପନ ଯେତେ ତାର କୁଚେଷ୍ଟା ଆବର ।
କୁଫଳ ନୋହି ସୁଫଳ ହୁଅଇ ତାହାର ॥
ଯେ କରଇ ତିଳ ଦାନ ତିଳପ୍ରସ୍ଥ ଦାନ ।
ଆବର ଯେ ତିଳ ପାତ୍ର କରଇ ପ୍ରଦାନ ॥
ସେ ଜନ ପ୍ରେତପତିର ପୁର ନ ଦେଖଇ ।
ଆହୋ ବିକୁଣ୍ଡଳ ତୁମ୍ଭେ ଶୁଣ ମନଦେଇ ॥
ଭୂମି ଗୋରୁ ସୁନା ଆଦି ଷୋଡଶ ଯେ ଦାନ ।
ଦାନକଲେ ସ୍ୱର୍ଗେ ଯାଇ ପୁଣି ହୁଏ ଜନ୍ମ ॥
ଏଣୁ ବୁଦ୍ଧିମନ୍ତ ଜନ ଦେଖି ପୁଣ୍ୟ ତିଥି ।
ବ୍ୟତିପାତ ଆଦିଯୋଗ ତଥି ସଂକ୍ରାନ୍ତି ॥
ସ୍ନାନ ଦାନ କରି ନର୍କେ ନ ପଡ଼ି ଆବର ।
ସ୍ୱର୍ଗ ସୁଖ ପାଇଁ ପୁଣି ହୁଏ ଧନୀ ନର ॥
ସତକଥା କହୁଥାଇ ଯେ ଜନ ନିରତେ ।
କଳହ ନ କରଇ କାହାରି ସଙ୍ଗତେ ॥
କୋମଳ କରି କହଇ ମଉନେ ରହଇ ।
କ୍ରୋଧ ନ କରଇ ସଦାଶ୍ୱରେ ରହୁଥାଇ ॥
ଶତ୍ରୁ ବା ମିତ୍ରର ନିନ୍ଦା ନ କରେ ଆବର ।
ପ୍ରାଣୀର ହିଂସା ନ କରି ଥାଇ ନିରନ୍ତର ॥

କପଟ ଛାଡ଼ି ସରଳ ଭାବକୁ ବହଇ ।
ପ୍ରାଣୀଙ୍କ ଦୟା କରଇ ନିଜ ଧର୍ମେ ଥାଇ ॥
ପର ଧର୍ମ ନ କହଇ ରଖଇ ଗୋପନେ ।
ପରଗୁଣ କହୁଥାଇ ଆନନ୍ଦିତ ମନେ ॥
ପରଧନ ମନେ ମନେ ନ କରେ ହରଣ ।
ପରର ଯେ ତୃଣ ମାତ୍ର ନ ଛୁଅଇ ପୁଣ ॥
ଏମାନେ ହେ ବୈଶ୍ୟ ନର୍କକୁଣ୍ଡ ନ ଦେଖନ୍ତି ।
ଯେ ମୂର୍ଖ ପାଷାଣ୍ଡ ପର ନିନ୍ଦାକୁ କରନ୍ତି ॥
ମହାପାପୀ ତହୁଁ ପାପୀ ଅଧିକେ ବୋଲନ୍ତି ।
ସୃଷ୍ଟି ଥିବାଯାଏ ଘୋର ନର୍କେ ପଡୁଥାନ୍ତି ॥
କଟୁକଥା କହିବାରେ ବକତା ଯେ ଜନ ।
ନର୍କୁ ବାହାର ଆସିବା ପ୍ରାୟ ନୋହି ଜାଣ ॥
ପୃଥିବୀ ଆଦି ଦୁର୍ଗତି ଲଭନ୍ତି ନିଶ୍ଚୟ ।
କୃତଘ୍ନ ଲୋକର ପାପ ତପେ ନୋହେ କ୍ଷୟ ॥
ଯେତେ ଦାନ ଯେତେ ତୀର୍ଥ ଯେତେ କଲେ ବ୍ରତ
କୃତଘ୍ନ ଘୋର ନରକେ ପଡ଼ଇ ନିଶ୍ଚିତ ॥
ନିଦ୍ରା ମୈଥୁନ ଆହାର ତେଜି ଯେଉଁ ଜନ ।
ସବୁ ତୀର୍ଥ ଯାଇ ବୁଲି କରୁଥାଇ ସ୍ନାନ ॥
ଯମ ଭୁବନକୁ ସେହି କେବେ ନ ଦେଖଇ ।
ତୀର୍ଥକୁ ଯାଇ ଯେ ଜନ ପାପ ନ କରଇ ॥
ତୀର୍ଥକୁ ଜୀବିକା ପୁଣି ନ କରେ ଆବର ।
ତୀର୍ଥରେ ହାତ ପତେଇ ନ ନିଏ ଯେ ନର ॥
ପୁଣ୍ୟ ବିକର ନ କରେ ତୀର୍ଥକୁ ଯେ ଯାଇ ।
ନର୍କକୁଣ୍ଡେ ବୈଶ୍ୟ କେବେ ସେହି ନ ପଡ଼ଇ
ରାଶି ରାଶି ପାପକରି ଯାଇ ଯେଉଁ ଜନ ।
ବାରେକ ଗଙ୍ଗାଜଳରେ ବୁଡ଼ି କରେ ସ୍ନାନ ॥
ପାପ ତାର ଛାଡ଼ି ଯାଇ ନର୍କେ ନ ପଡ଼ଇ ।
ଯାଗ ବ୍ରତ ତପ ଦାନ ଆଦି ଯେ କରଇ ॥
ଗଙ୍ଗାଜଳ ବିନ୍ଦୁ ସଙ୍ଗେ ନୁହଇ ସମାନ ।
ଏ କଥା ଗୋଟିକ ଜନେ ଭଲକରି ଜାଣ ॥
ସବୁ ପୁଣ୍ୟଫଳ ନୋହେ ତାହା ସଙ୍ଗେ ସରି ।
ପାପ ବିନାଶନକାରୀ ଏକା ଗଙ୍ଗା ବାରି ॥
ଆମ୍ଭେମାନେ ଏହିରୂପେ ଶୁଣିଅଛୁ ପୁଣି ।
ଯେଉଁ ନରାଧମ ଗଙ୍ଗାଜଳ ସଙ୍ଗେ ଆଣି ॥
ଅନ୍ୟ ତୀର୍ଥଜଳ କରେ ତୁଳନା ସେ ମୂଢ଼ ।
ଘୋର ନର୍କକୁଣ୍ଡେ ପଡ଼େ ଏ କଥାହିଁ ଦୃଢ଼ ॥

ଅତି ନିର୍ମଳ ପବିତ୍ର ଯେଉଁ ଗଙ୍ଗାଜଳ ।
ସବୁ ତୀର୍ଥ ଜଳଙ୍କର ଅଟେ ପୁଣି ମୂଳ ॥
ଯେଣୁ ସେ ବିଷ୍ଣୁର ପାଦ ନଖକୋଣୁ ବହି ।
ମହାଦେବ ଶିରଂ ଜଟା ମଧ୍ୟେ ଅଛି ରହି ॥
ଧର୍ମ ନିଜେ ଦ୍ରବଯାଇ ହୋଇଅଛି ପାଣି ।
ପ୍ରକୃତି ପର ନିର୍ଗୁଣ ବ୍ରହ୍ମ ତାକୁ ଜାଣି ॥
ଚଉଦ ବ୍ରହ୍ମାଣ୍ଡେ କେହି ତା ତୁଳନା ନାହିଁ ।
ଶତଯୋଜନ ଦୂରରେ ଯେବେ କେହି ଥାଇ ॥
ଗଙ୍ଗା ୨ ତୁଣ୍ଡେ ବୋଲେ ନ ପଡ଼େ ସେ ନର୍କେ
ଏହି କେହି ଗଙ୍ଗା ତୁଲ୍ୟ ନାହିଁ ତିନିଲୋକେ ॥
ତେଣୁ ଗଙ୍ଗାଜଳେ ସ୍ନାନ କରିବା ଉଚିତ ।
ଗଙ୍ଗାଜଳ ଶରୀରକୁ କରଇ ପବିତ୍ର ॥
ଦାନ ଘେନିବା ଶକତି ଅଛଇ ଯାହାର ।
ଦାନ ଯେବେ ନ ଘେନଇ ସେହି ଦ୍ୱିଜବର ॥
ନକ୍ଷତ୍ର ରୂପରେ ଯାଇଁ ସ୍ୱର୍ଗରେ ବସଇ ।
ପଙ୍କେ ଲାଗିଥିବା ଗୋରୁକୁ ଯେ ଉଦ୍ଧାରଇ ॥
ରୋଗୀଙ୍କି ଯେ ରକ୍ଷାକରେ ଗୁହାଳରେ ମରେ ।
ତାରା ରୂପରେ ସେ ରହିଥାଇ ଗଗନରେ ॥
ପ୍ରାଣାୟାମ କାରୀ ଯମ ଲୋକ ନ ଦେଖଇ ।
ନିଶ୍ଚୟ ମୁକତ ହୋଇ ସ୍ୱର୍ଗରେ ବସଇ ॥
ପାପିର ଯେ ପ୍ରାଣାୟାମେ ଛାଡ଼ି ଯାଏ ପାପ ।
ପ୍ରାଣାୟାମ ହରଇ ଯେ ସକଳ ସନ୍ତାପ ॥
ଷୋଳଥର ପ୍ରାଣାୟାମ କରୁଥିବ ନିତ୍ୟ ।
ତହିଁରେ ଯେ ବ୍ରହ୍ମଘାତୀ ହୁଅଇ ପବିତ୍ର ॥
ତପ ବ୍ରତ ନିୟମାଦି ଯେ କିଛି ଅଛଇ ।
ସହସ୍ରେକ ଗୋରୁଦାନ ଯେ ପୁଣି କରଇ ॥
ନିତ୍ୟ ପ୍ରାଣାୟାମ ତୁଲ୍ୟ ଫଳ ଏହାଙ୍କର ।
ମନେ ରଖିଥିବ ଏହା ଅଟେ ନିରଧାର ॥
ବର୍ଷେ ବର୍ଷେ ମାସେ ମାସେ ଯେହୁ ନିତିଦିନ ।
କୁଶ ଅଗ୍ରରେ ବିନ୍ଦୁଏ ଜଳ କରି ପାନ ॥
ତହିଁରେ ହେ ବୈଶ୍ୟ ଯେଉଁ ଫଳ ହୁଏ ତାର
ସେହିଫଳ ପାଏ ପ୍ରାଣାୟାମ କଲେ ନର ॥
ଯେ ସବୁ ମହାପାତକ ଯେ ଉପପାତକ ।
ସବୁ ପୋଡ଼ିଯାଏ ପ୍ରାଣାୟାମ କଲେ ଝଲକ ॥
ପରସ୍ତ୍ରୀକି ଯେ ମାତା ପ୍ରାୟ ମଣୁଥାଇ ।
ଯମର ଯନ୍ତ୍ରଣା ସେହି କଦାପି ନ ପାଇ ॥

ମନେ ମନେ ନ ହରଇ ଯେହୁ ପରସ୍ତ୍ରୀ ।
ବେନି ଲୋକରେ ସେ ଜନ ହୁଏ ଦଣ୍ଡଧାରୀ ॥
ପରସ୍ତ୍ରୀ ନ ହରନ୍ତି ଧର୍ମଚିନ୍ତ ପ୍ରାଣୀ ।
ପରସ୍ତ୍ରୀଙ୍କି ହରିଲେ କାଳଦଣ୍ଡପାଣି ॥
ତାକୁ ଏକୋଇଶ ନର୍କେ ପକାଇ ଦଣ୍ଡଇ ।
ପରସ୍ତ୍ରୀ ନ ହରିଲେ ସ୍ୱର୍ଗରେ ବସଇ ॥
ଆହେ ବୈଶ୍ୟ କ୍ରୋଧଅଛି ସବୁର ଦେହରେ ।
କ୍ରୋଧକୁ ଯେ ରଖିପାରେ ଆପଣା ବଶରେ ॥
ଏମନ୍ତ ଜନ ପୃଥ୍ୱୀକ ସ୍ୱର୍ଗପ୍ରାପ୍ତ ମଣେ ।
ଅକ୍ରୋଧିର ତୁଲ୍ୟ ସୁଖ ବେନି ଯେ ଭୁବନେ ॥
ବୁଢ଼ା ନୋହିବା ପର୍ଯ୍ୟନ୍ତ ପ୍ରାଣପଣେ ଯେହି ।
ଦେବତୁଲ୍ୟ ପିତା ମାତା ଗୁରୁଙ୍କୁ ସେବଇ ॥
ସେହି ଯମ ଭୁବନକୁ ନ ଯାଇ ହେ ବୈଶ୍ୟ ।
ଗୁରୁ ଯଦ୍ୟପି ଗୃହରେ ହୁଅନ୍ତି ପ୍ରବେଶ ॥
ପିତା ମାତାଙ୍କୁ ଅଧିକ ଗୁରୁସେବା କଲେ ।
ବ୍ରହ୍ମା ଗୃହରେ ଅତିଥି ହୁଅଇ ସେ ଭଲେ ॥
ସ୍ତ୍ରୀ ରକ୍ଷାକାରୀ ଜନ ପୃଥ୍ୱୀରେ ଧନ୍ୟ ।
ସ୍ୱର୍ଗ ଭୁବନରେ ସେହି ପାଏ ମହାମାନ୍ୟ ॥
ସ୍ତ୍ରୀ ସ୍ୱଭାବ ଭଙ୍ଗରେ ହୁଏ ମହାଦୋଷ ।
ଦାରୁଣ ଯମଦଣ୍ଡରେ ହୁଅଇ ହତାଶ ॥
ଦୁର୍ଜନ ସଙ୍ଗ ଛାଡ଼ିବ ସ୍ତ୍ରୀଙ୍କି ପାଳିବ ।
ସେ ମହା ପୁଣ୍ୟରେ ସ୍ୱର୍ଗ ଭୁବନେ ବସିବ ॥
ଶୂଦ୍ର ଯେବେ ପର୍ଥଯଜ୍ଞ କରଇ ହେ ବୈଶ୍ୟ ।
ମଲ ଉତ୍ତାରେ ସେ ଯାଇଁ ନର୍କେ କରେ ବାସ ॥
ଯେ ନିତ୍ୟ କରଇ ବସି ଶାସ୍ତ୍ରର ବିଚାର ।
ବେଦ ଅଭ୍ୟାସ କରଇ ନିତ୍ୟ ଯେଉଁ ନର ॥
ପୁରାଣ ସଂହିତା ଆଦି ଶୁଣଇ ଶୁଣାଇ ।
କିବା ସେ ଆପେ ପଢ଼ଇ ତା ଅର୍ଥ ବୁଝଇ ॥
ସ୍ମୃତି ପଢ଼ି ବୁଝାଇ ଦିଅଇ ଯେ ଜନ ।
ବେଦାନ୍ତ କଥା ବିସ୍ତରେ କାଟଇ ଯେ ଦିନ ॥
ଗ୍ରାମେ ଗ୍ରାମେ ବୁଲି କରେ ଧର୍ମର ପ୍ରଚାର ।
ପୃଥ୍ୱୀପାଳିବା ଶକତ ହୁଅଇ ତାହାର ॥
ପାପ ତା ଦେହକୁ ଛାଡ଼ି ଦୂରକୁ ପଳାଇ ।
ମୋହ ନାହିଁ ଯହିଁ ସେହି ବ୍ରହ୍ମ ଲୋକ ପାଇ ॥
ବେଦର ଜ୍ଞାନ ବୁଝାଇ ଯେ ଅଜ୍ଞାନ ଜନେ ।
ଭବ ବନ୍ଧନେ ନ ପଡ଼ି ବସେ ସ୍ୱର୍ଗସ୍ଥାନେ ॥

ଆହୋ ବୈଶ୍ୟ ଶୁଣ ଏହି ଯମର ରହସ୍ୟ ।
ଅମୃତ ପ୍ରାପ୍ତ ସେ କଥା ମଣିବ ଅବଶ୍ୟ ॥
ସତ୍ୟକରି କହୁଅଛୁଁ ବଇଷ୍ଣବ ଗଣ ।
ନିଶ୍ଚେ ନ ଦେଖନ୍ତି ଯମ ରାଜାର ଭୁବନ ॥
ଘୋର ଦରଶନ ଦୂତ ମୁଖ ନ ଦେଖନ୍ତି ।
ଯମୁନା ନଈର ଭଇ ଯମ ଯେ ଅଛନ୍ତି ॥
ବାରମ୍ବାର କହୁଥାନ୍ତି ଦୂତଙ୍କୁ ସେ ବଦ ।
ବଇଷ୍ଣବ ଜନ ଯେତେ ସେ ତୁମ୍ଭ ବିରୋଧୀ ॥
ତାଙ୍କ ପାଖକୁ କଦାପି ନ ଯିବ ରେ ଦୂତ ।
ଯେମନ୍ତେ ତାଙ୍କରନୋହେମୋସଙ୍ଗେ ସାକ୍ଷାତ
କଥା ପ୍ରସଙ୍ଗେ ଯେ ଜନ କେଶବ ସୁମରେ ।
ସକଳ ପାପ ତା ଦେହ ଛାଡ଼ିଯାନ୍ତି ଦୂରେ ॥
ବିଷ୍ଣୁର ପରମପଦ ମରଣାନ୍ତେ ପାଇ ।
ଯେ ଜନ ଅନବରତ ବିଷ୍ଣୁଙ୍କୁ ଭଜଇ ॥
ପାପୀ ଦୁରାଚାରୀ ହୋଇଥିଲେହେଁ ସେ ଜନ ।
ତାଙ୍କ ପାଖକୁ ନ ଯିବ ତୁମ୍ଭେ କଦାଚନ ॥
ବୈଷ୍ଣବ ଜନ ଭୋଜନ କରନ୍ତି ଯା ଗୃହେ ।
ବଇଷ୍ଣବ ସଙ୍ଗେ ମିଳି ମିଶି ଯେହୁ ରହେ ॥
ବଇଷ୍ଣବ ଜନଙ୍କର ସଙ୍ଗ ବଶୁଁ ତାର ।
ସକଳ ପାପ ତା ଦେହୁ ହୋଇଯାଏ ଦୂର ॥
ଏଣୁ ତାହାଙ୍କ ପାଖକୁ ନ ଯିବ ରେ ଦୂତେ ।
ଯମରାଜା କହିଛନ୍ତି ଆମ୍ଭଙ୍କୁ ଏମନ୍ତେ ॥
ବଇଷ୍ଣବେ ଯମ ରାଜଧାନୀ ନ ମାଡ଼ନ୍ତି ।
ବିଷ୍ଣୁ ଭକତଙ୍କ ଛଡ଼ା ପାପୀ ଯେତେ ଛନ୍ତି ॥
ଘୋର ନରକ ସମୁଦ୍ରେ ମରନ୍ତି ସେ ବୁଡ଼ି ।
ପୁଣି ସେ ଉଠନ୍ତି ପୁଣି ସେହି ନର୍କେ ପଡ଼ି ॥
ବିଷ୍ଣୁର ଭକତ ଏକା ତହିଁରେ ବୋଇତ ।
ବଇଷ୍ଣବ ହୋଏ ଯେବେ ଚଣ୍ଡାଳର ପୁତ୍ର ॥
ହେ ବୈଶ୍ୟ ତାକୁ କଦାପି ଘୃଣା ନ କରିବ ।
ଘୃଣା କଲେ ଲୋକ ନିଶ୍ଚେ ନରକେ ପଡ଼ିବ ॥
ବଇଷ୍ଣବ ଯେବେ ନୀଚ ଜାତି ହୋଇ ଥାଇ ।
ତଥାପି ସେ ତିନିଲୋକ ପବିତ୍ର କରଇ ॥
ହରିଙ୍କ ପାଇଁ ସକଳ କର୍ମ ଯେ କରିବ ।
ହରିଙ୍କର ଗୁଣ ସବୁବେଳେ ଗାଉଥିବ ॥
ସଂକୀର୍ତ୍ତନ କରୁଥିବ ମୁଖେ ହରି ବୋଲି ।
ହରିର ଭକତ ନାହିଁ ଏ ତିନିପୁରୁ ବଳି ॥

ପୂର୍ବେ ଅଜାମିଳ ନାମେ ମହାପାପୀ ଥିଲା ।
ମଲାବେଳେ ପୁତ୍ର ନାରାୟଣକୁ ଡାକିଲା ॥
ତହିଁରେ ସେ ମହାପାପୀ ପାଇଲା ମୁକତି ।
ହରିଙ୍କ ପୂଜା କରଇ ଆନନ୍ଦେ ଯେ ନିତି ॥
ତାର ଦୁଇକୁଳ ପୂର୍ବ ପୁରୁଷ ଯେତେକ ।
ସ୍ୱର୍ଗେ ବସନ୍ତି ଛାଡ଼ି ଭୁଞ୍ଜୁଥିବେ ନର୍କ ॥
ବିଷ୍ଣୁ ଭକତଙ୍କ ଦାସ ଅଟଇ ଯେ ଜନ ।
ବଇଷ୍ଣବଙ୍କର ଅନ୍ନ କରଇ ଭୋଜନ ॥
ନିରାକୁଳେ ଯଜ୍ଞକାରୀ ଗତି ସେ ଲଭନ୍ତି ।
ବୁଦ୍ଧିମନ୍ତ ଜନ ପାଇଁ ପାଇବା ମୁକତି ॥
ଆଗ ସେ ମାଗିବ ତାଙ୍କୁ ବଇଷ୍ଣବ ଅନ୍ନ ।
ନ ମିଳିଲେ କରିବ ସେ ତାଙ୍କ ଜଳ ପାନ ॥
ଗୋବିନ୍ଦ ଗୋବିନ୍ଦ କହୁ କହୁ ଯେ ମରନ୍ତି ।
ଆମ୍ଭ ମୁଖ ଯମ ମୁଖ କେଭେ ନ ଦେଖନ୍ତି ॥
ଗୁରୁମନ୍ତ୍ର କର୍ଣ୍ଣେ ଘେନି ଯେବଣ ପୁରୁଷ ।
ଋଷି ଛନ୍ଦ ମୁଦ୍ରା ଧ୍ୟାନ କରି ଅଙ୍ଗନ୍ୟାସ ॥
ବାର ଅକ୍ଷର ଶ୍ରୀବିଷ୍ଣୁ ମନ୍ତ୍ରକୁ ଜପନ୍ତି ।
ତାର ଦରଶନେ ବ୍ରହ୍ମଘାତୀ ମୋକ୍ଷ ପାନ୍ତି ॥
ନାରାୟଣଙ୍କର ମନ୍ତ୍ର ଯେ ଆଠ ଅକ୍ଷର ।
ତାକୁ ଯେ ଜପଇ ସେହି ବିଷ୍ଣୁର ଶରୀର ॥
ବ୍ରହ୍ମାଣ୍ଡେ ସେ ଶଙ୍ଖଚକ୍ରଧାରୀ ବିଷ୍ଣୁ ହୋଇ ।
ବଇଷ୍ଣବ ଲୋକେ ଯାଇ ସେ ଜନ ବସଇ ॥
ସୂର୍ଯ୍ୟ ବିମ୍ବରେ ଅଥବା ହୃଦୟ କମଳେ ।
ପ୍ରତିମାରୂପରେ ଜଳେ ସ୍ଥଣ୍ଡିଳେ ଅନଳେ ॥
ପୂଜା କଲା ଜନ ବଇଷ୍ଣବ ପଦ ପାଇ ।
ଯେ ଜନ ମୋକ୍ଷ ପାଇବା ପାଇଁ ମନାସଇ ॥
ଶାଳଗ୍ରାମ ଶିଳା ପୂଜା କରିବ ନିରତେ ।
ବଜ୍ର କୀଟ ଗଢିଥାଇ ଯେ ଶିଳା ସରତେ ॥
ଶଙ୍ଖ ଚକ୍ର ଚିହ୍ନ ଆଦି ସେ ଶିଳାରେ ଥାଇ ।
ଗଣ୍ଡକୀ ନଦୀ ସମ୍ଭୂତ ସେ ପୁଣି ଅଟଇ ॥
ବାସୁଦେବଙ୍କ ତହିଁରେ ପୂଜୁଥିବା ଜନ ।
ସକଳ ପାପ ତାହାର ହୁଅଇ ମୋଚନ ॥
ବିଷ୍ଣୁର ପରମ ପୂଜ୍ୟ ଅଟଇ ସେ ବୈଶ୍ୟ ।
ତହିଁରେ ପୁଣ୍ୟ ତାହାର ହୁଅଇ ଅଶେଷ ॥
ଶାଳଗ୍ରାମ ଶିଳା ପୂଜା ମୁକତି ଦିଅଇ ।
ଶାଳଗ୍ରାମ ଶିଳା ନିତ୍ୟ ଯେ ଜନ ପୂଜଇ ॥

ଦିନ ଦିନକର ଫଳ ଜାଣ ଗୁରୁତର ।
ମହାସେକ ରାଜସୂୟ ଯଜ୍ଞ ହୁଏ ତାର ॥
ବେଦାନ୍ତ ଯାକ ଅଚ୍ୟୁତ ବ୍ରହ୍ମକୁ ପୂଜନ୍ତି ।
ଶୂନ୍ୟ ଶୂନ୍ୟ ମହାଶୂନ୍ୟ ବ୍ରହ୍ମକୁ ବୋଲନ୍ତି ॥
ଶାଳଗ୍ରାମ ଶିଳା ନିତ୍ୟ ପୂଜା କଲା ଜନ ।
ସେହି ବ୍ରହ୍ମ ପରସାଦେ ପାଏ ବ୍ରହ୍ମଜ୍ଞାନ ॥
କାଠେ ଥିବା ଅଗ୍ନି ଯେହ୍ନେ ମୁଖେ ବିକାଶଇ ।
ଶାଳଗ୍ରାମେ ସର୍ବବ୍ୟାପୀ ହରି ତେହ୍ନେ ଥାଇ ॥
ପାପାତ୍ମା ଯାର ନାହିଁ କର୍ମେ ଅଧିକାର ।
ଶାଳଗ୍ରାମ ଶିଳା ଯେବେ ପୂଜଇ ସେ ନର ॥
ଯମ ଭୁବନର ମୁଖ ସେହି ନ ଦେଖଇ ।
ଏକଥା ତଥ୍ୟ ଜାଣିବ ମିଥ୍ୟା ଯେ ନୁହଇ ॥
ହରିଙ୍କର ଶାଳଗ୍ରାମ ଚକ୍ରେ ଯେହ୍ନେ ପ୍ରୀତ ।
ତେସନ ପ୍ରୀତ ନ ଥାଏ ମହାଲକ୍ଷ୍ମୀପ୍ରତି ॥
ଶାଳଗ୍ରାମେ ହରି ପୂଜା ଅଗ୍ନିହୋତ୍ର ସରି ।
ସାଗର ସହିତ ମହୀ ଦାନ ଦେଲା ପରି ॥
ବାରକୋଟି ଶାଳଗ୍ରାମ ଶିଳା ପ୍ରତିଦିନ ।
ବିଧି ଅନୁସାରେ ପୂଜା କରଇ ଯେ ଜନ ॥
ତାର ଯେତେ ପୁଣ୍ୟ ତାହା କହୁଅଛୁ ଶୁଣ ।
ବାର ଘଡ଼ରେ ଯେ ସୁନା ପଦ୍ମ ଗଢାଇଣ ॥
ବାରକୋଟି ଲିଙ୍ଗ ପୂଜା କଲେ ଯେଉଁ ଫଳ ।
ସେ ଫଳ ଦିନକେ ହୁଏ ତାର ବିକୁଣ୍ଠଳ ॥
ବଇକୁଣ୍ଠ ପୁରେ ଯାଇ ମହାସୁଖ ପାଇ ।
ପୁଣି ସେ ଜନମ ହୁଏ ଚକ୍ରବର୍ତ୍ତୀ ହୋଇ ॥
କାମକ୍ରୋଧଲୋଭେ ପଡ଼ି ଯେ ଅଧମ ନର ।
ଶାଳଗ୍ରାମ ପୂଜି ଯାଏ ବଇକୁଣ୍ଠ ପୁର ॥
ଆନନ୍ଦେ ଗୋବିନ୍ଦ ପୂଜା କଲେ ଶାଳଗ୍ରାମେ ।
ମହାପ୍ରଳୟ ପର୍ଯ୍ୟନ୍ତ ଥାଏ ସ୍ୱର୍ଗଧାମେ ॥
ତୀର୍ଥବିନା ଦାନ ବିନା ଯଜ୍ଞ ବିନା ନରେ ।
ବ୍ରହ୍ମଜ୍ଞାନ ବିନା ଶାଳଗ୍ରାମ ରଖି ଘରେ ॥
ପୂଜା କରୁଥିଲେ ନିଶ୍ଚେ ପାଇବେ ମୁକତି ।
ଶାଳଗ୍ରାମ ବିଷ୍ଣୁ ପୂଜେ ଯେ କରି ଭକତି ॥
ପାପୀ ହୋଇଲେହେଁ ତାହାର ନର୍କ ଗତି ନାହିଁ ।
ଗର୍ଭବାସର ଯନ୍ତ୍ରଣା କେଭେ ନ ସହଇ ॥
ପଶୁ ପକ୍ଷୀ କୃମି କୀଟ ଯୋନି ସେ ନ ପାଏ ।
ଜାଣିଥା ତୁ ବିକୁଣ୍ଠଳ ସେହି ବିଷ୍ଣୁ ପ୍ରାୟେ ॥

ଗଙ୍ଗା ଗୋଦାବରୀ ରେବା ଆଦି ନଦୀ ଯେତେ
ମୁକତି ପଥ ଦିଅନ୍ତି ଯେ ତୀର୍ଥ ସମସ୍ତେ ॥
ଶାଳଗ୍ରାମ ଶିଳା ଜଳେ ରହିଥାନ୍ତି ଆସି ।
କାଳେ କାଳେ ଭକତରେ ଯେ ମାନବ ବର୍ଷି
ଶାଳଗ୍ରାମ ଶିଳା ପୂଜେ ଉପଚାର ଦେଇ ।
ସ୍ତବ ସ୍ତୋତ୍ରାଦି ପଢନ୍ତି ହରି ଗୁଣ ଗାଇ ॥
ଗନ୍ଧ ପୁଷ୍ପ ଧୂପ ଦୀପ ନାନା ନଇବେଦ୍ୟ ।
ଦେଇଣ ପୂଜା କରଇ ବଜାଇଣ ବାଦ୍ୟ ॥
ଏ ବିଧିରେ ଶାଳଗ୍ରାମ ପୂଜା କଲା ଜନେ ।
ସହସ୍ର କୋଟି କଳ୍ପ ହରି ସନ୍ନିଧାନେ ॥
ବିହରଇ ଆନନ୍ଦରେ ବଇକୁଣ୍ଠେ ଥାଇଁ ।
କୋଟି କୋଟି ଶିବଲିଙ୍ଗ ଦର୍ଶନ କରଇ ॥
ପୂଜା କଲେ ସ୍ତୁତି କଲେ ହୁଏ ଯେଉଁ ଫଳ ।
ଦିନେ ଶାଳଗ୍ରାମ ପୂଜା କଲେ ସେହି ଫଳ ॥
ଶାଳଗ୍ରାମ ଶିଳାଜାତ ଲିଙ୍ଗ ପୂଜା କଲେ ।
ମୁକତି ପାଇ ନ ହୋଇ ତତ୍ତ୍ୱ ଜ୍ଞାନୀ ଭଲେ ॥
ଯହିଁ ଥାନ୍ତି ଶାଳଗ୍ରାମ ଶିଳାରୂପୀ ହରି ।
ତହିଁ ଦେବତା ଅସୁର ଯକ୍ଷ ଆଦି କରି ॥
ଚଉଦ ଭୁବନ ଲୋକ ଯାକ ସବୁ ଜଣ ।
ଶାଳଗ୍ରାମ ଶିଳା ରଖି ଶ୍ରାଦ୍ଧ କଲା ଜନ ॥
ତାର ପିତୃଲୋକ ଦେବ ଲୋକରେ ବସନ୍ତି ।
ଶତ କଳପ ତହିଁ ସେ ତୃପ୍ତ ହୋଇ ଥାନ୍ତି ॥
ଶାଳଗ୍ରାମ ଶିଳା ଜଳ ଯେ ନିତି ପିଅଇ ।
ସସ୍ର ପଞ୍ଚଗବ୍ୟ ପାନ କଲା ଫଳ ପାଇ ॥
ଶାଳଗ୍ରାମ ପାଦୋଦକ ଅତି ପୁଣ୍ୟ ତୋୟ ।
ଯେ ତାହାକୁ ପାନ କରେ ସେହି ପୁଣ୍ୟମୟ ॥
ସହସ୍ର କୋଟି ତୀର୍ଥ ସେ କରିବ କିପାଇଁ ।
ବିନାଶ୍ରମେ ଶାଳଗ୍ରାମ ପୂଜିଲେ ତା ପାଇ ॥
ଶାଳଗ୍ରାମ ଶିଳା ରହିଥାଇ ଯାର ଘରେ ।
ତାର ଘର ଦିଗେ ତିନି ଯୁଗ ଆୟତରେ ॥
ତୀର୍ଥ ବୋଲାଇ ତହିଁରେ କଲେ ହୋମଦାନ ।
ତହିଁର ଯେ ଫଳ ସେହି ହୁଏ କୋଟିଗୁଣ ॥
ଶାଳଗ୍ରାମ ଶିଳା ଜଳ ବିନ୍ଦୁଏ ପିଇଲେ ।
ଆଉ ଜନମ ନ ହୋଇ ରହେ ବିଷ୍ଣୁ କୁଳେ ॥
ଶାଳଗ୍ରାମ ଶିଳା ଘର ପାଖ କୋଣ ସ୍ଥାନ ।
ତହିଁ କୀଟ ମଲେ ପାଏ ବୈକୁଣ୍ଠ ଭୁବନ ॥

ଶାଳଗ୍ରାମ ଶିଳା ଚକ୍ର ଦାନ ଯେ କରଇ ।
ସବନ ନଦ ନଦୀ ଆସମୁଦ୍ର ମହୀ ॥
ଦାନ କଲା ତୁଲ୍ୟ ଫଳ ଜାଣ ଦ୍ୱିକୁଳଜ ।
ଶାଳଗ୍ରାମ ଶିଳାର ଯେ ସ୍ଥିର କରେ ମୂଲ୍ୟ ॥
ବିକଣି କରନ୍ତି ଶାଳଗ୍ରାମ ଯେଉଁ ଜନ ।
ଖରିଦ କରି ନିଅଇ ଯେହୁ ଦେଇ ଧନ ॥
ତହିଁରେ ବା ଅନୁମତି ଯେ ଜନ ଦିଅଇ ।
ଶାଳଗ୍ରାମ ପରୀକ୍ଷାରେ ଯେ ଜନ ହସଇ ॥
ଏମାନେ ପ୍ରଳୟ ଯାଏ ନର୍କେ ପଡିଥାନ୍ତି ।
ଏଣୁ ଖରିଦ ବିକରି କେହି ନ କରନ୍ତି ॥
ବେଶି ପୂଜା କହିବାରେ ଅଛି କେଉଁ ଫଳ ।
ପାପକୁ ଭୟ କରନ୍ତି ଯେ ଜନ ସକଳ ॥
ତାଙ୍କ ସର୍ବ ପାପହାରୀ ବାସୁଦେବ ହରି ।
ତରନ୍ତି ତାଙ୍କୁ ନିରତେ ଚିତ୍ତରେ ସୁମରି ॥
ଗରୁଡଧ୍ୱଜଙ୍କୁ ନମସ୍କାରେ ଯେଉଁ ଫଳ ।
ସେହି ଫଳ ତପ କଲେ ଖାଇ ଫଳ ମୂଳ ॥
କ୍ରୋଧ ହିଂସା ଲୋଭ ମୋହେ ପଡି ସର୍ବ ପ୍ରାଣୀ
ପାପ ପୁଣ୍ୟ ବୋଲି କିଛି ମନରେ ନ ଗଣି ॥
ସେ ଯେବେ ହରିଙ୍କ ଦୃଢେ କରେ ନମସ୍କାର
ନରକେ ନ ପଡେ ପାପ ଛୁଟି ଯାଏ ତାର ॥
ହରିନାମ କୀର୍ତ୍ତନରେ ସବୁ ଫଳ ପାଇ ।
ତୀର୍ଥ ବ୍ରତ ଆଦି ପୁଣ୍ୟ କଲେ ଯାହା ହୋଇ ॥
ଶ୍ରୀବିଷ୍ଣୁ ପାଦେ ପଶଇ ଯେ ଜନ ଶରଣ ।
କଦାପି ସେ ନ ଦେଖଇ ଯମର ସଦନ ॥
ବଇଷ୍ଣବ ହୋଇ ଯେବେ ଶିବଙ୍କୁ ନିନ୍ଦଇ ।
କଦାପି ସେ ବଇକୁଣ୍ଠ ଭୁବନ ନ ପାଇ ॥
ମହା ନରକରେ ପଡି ପାଏ ନାନା ଦୁଃଖ ।
ଆହେ ବୈଶ୍ୟ ତିଥି ମଧ୍ୟେ ଏକାଦଶୀ ମୁଖ୍ୟ ॥
ଗୋଟିଏ ଏକାଦଶୀରେ ଯେବେ କେହି ଜନ
କାର୍ଯ୍ୟର ପ୍ରସଙ୍ଗେ ଉପବାସେ ରହେ ଦିନ ॥
ଯମର ଯନ୍ତ୍ରଣା ଭୋଗ ନ କରଇ ସେହି ।
ଲୋମଶ ମୁନି ଶ୍ରୀମୁଖ ବଚନ ଯେ ଏହି ॥
ଏ ତିଥି ଗୋଟି ବିଷ୍ଣୁର ଅତି ଶୁଭଦିନ ।
ପୁଣ୍ୟ ଫଳପ୍ରଦ ସର୍ବ ପାପ ବିମୋଚନ ॥
ଏକାଦଶୀ ଉପବାସ ନ କରିବା ଯାଏ ।
ସକଳ ପାପ ମାନବ ଦେହେ ରହିଥାଏ ॥

ଶତ ଶତ ଅଶ୍ୱମେଧ ଯାଗ କଲା ଫଳ ।
ସହସ୍ର ସହସ୍ର ରାଜସୂୟ ଏ ସକଳ ॥
ଯାଗର ଯେ ଫଳ ସବୁ ଏକାଠେ କରଣ ।
ହନକର ଏକାଦଶୀ ବ୍ରତକୁ ଯେ ଗୁଣ ॥
ଷୋଳ ଭଗରୁ ଭାଗେକ ଆଣି ତା ସହିତେ ।
କନକତରେ ତଉଲିବ ଯେବେ ବୁଧିମତେ ॥
ସମାନ ନୋହି ଅଧିକ ହୋବ ଏକାଦଶୀ ।
ଏଗାର ଗୋଟି ଇନ୍ଦ୍ରିୟ ପ୍ରାଣୀଙ୍କର ଅଛି ॥
ତହିଁରେ ସେ ଯେତେ ଯେତେ ପାପ କରିଥାନ୍ତି
ଏକାଦଶୀ ଉପବାସେ କ୍ଷୟ ହୋଇଯାନ୍ତି ॥
ଏକାଦଶୀ ତୁଲ୍ୟ ପୁଣ୍ୟ ବ୍ରହ୍ମାଣ୍ଡରେ ନାହିଁ ।
ଏକାଦଶୀ ଉପବାସ ଯମକୁ ଡରାଇ ॥
ସ୍ୱର୍ଗ ପୁଣି ମୋକ୍ଷ ଦିଏ ଏକାଦଶୀ ବ୍ରତ ।
ଦେହକୁ ଆରୋଗ୍ୟ ରଖେ କରେ ରୂପବନ୍ତ
ଜୀବବସ୍ତ୍ରା ଶତପୁତ୍ର ପ୍ରଦାନ କରଇ ।
ସେ ହରିବାସର ତୁଲ୍ୟ ଗଙ୍ଗା ଯେ ନୁହଇ ॥
ଗୟା ନୋହେ କାଶୀ ନୋହେ ନୁହଇ ପୁଷ୍କର
ଯେତେ ବଇଷ୍ଣବ କ୍ଷେତ୍ର ଅଛଇ ଆବର ॥
ଏକାଦଶୀ ତିଥି ତୁଲ୍ୟ କେହି ଏ ନୁହନ୍ତି ।
ଯମୁନା କି ଚନ୍ଦ୍ରଭାଗା କାଶୀ ସରସ୍ୱତୀ ॥
ଏକାଦଶୀ ତିଥି ସଙ୍ଗେ ନୋହିବେ ଏ ସରି ।
ଅଳପ ଶ୍ରମରେ ଯେଣୁ ମିଳେ ବିଷ୍ଣୁ ଶିରି ॥
ରାତ ଦିନ ଉଜାଗରେ ରହି କଲେ ବ୍ରତ ।
ପିତୃକୁଳରୁ ସେ ଦଶପୁରୁଷ ପର୍ଯ୍ୟନ୍ତ ॥
ମାତୃକୁଳରୁ ସେ ଦଶ ପୁରୁଷ ଆବର ।
ଦଶପୁରୁଷ ତାହାର ଶ୍ୱଶୁର କୁଳର ॥
ଉଦ୍ଧାର କରଇ ଏକାଦଶୀ ବ୍ରତ ଫଳେ ।
ସଂସାର ବନ୍ଧନ କଷ୍ଟ ନାଶି ଅବହେଳେ ॥
ପୀତବସ୍ତ୍ର ପିନ୍ଧି ହୋଇ ଶ୍ରୀବିଷ୍ଣୁ ମୂରତି ।
ଶ୍ରୀହରି ମନ୍ଦିରେ ସୁଖ ଭୋଗେ ଦିବା ରାତି ॥
ବାଳକାଳେ ଯୁବାକାଳେ କିବା ବୁଢାକାଳେ ।
ପାପୀ ଦୁର୍ଗତି ନ ପାଏ ଏକାଦଶୀ କଲେ ॥
ଭକ୍ତିଯୁତ ଯେ କରଇ ଏକାଦଶୀ ବ୍ରତ ।
ସତ୍ୟହିଁ ଜାଣ ତାହାର ଫଳ ଯେ ବହୁତ ॥
ତୀର୍ଥ ସ୍ନାନ ସୁନାଦାନ ତିଳ ଗୋରୁଦାନ ।
ଏ ପୁଣ୍ୟକଲେ ସ୍ୱର୍ଗକୁ କରଇ ଗମନ ॥

ଯେ ଜନ ତୀର୍ଥକୁ ଯାଇ ସ୍ନାନ ନ କରଇ ।
ତିଳ ସୁନା ଗୋରୁ କିଛି ଦାନ ନ ଦିଅଇ ॥
ଆବର ତପ ନ କଲେ ନାନାଦୁଃଖ ଭୋଗେ ।
ନରକ ନାଶନ ଧର୍ମ କହୁଁ ତୁମ୍ଭ ଆଗେ ॥
ପ୍ରାଣୀହିଂସା ଇନ୍ଦ୍ରିୟ ରୋଧ ହରିସେବା ଦାନ ।
ବର୍ଣ୍ଣ ଆଶ୍ରମର ଧର୍ମ କରିବ ପାଳନ ॥
ନର୍କ ନିବାରଣ ଧର୍ମ ମଧ୍ୟେ ଏହି ସାର ।
ତପ କରିବ ଯେ ସ୍ୱର୍ଗ ଭୋଗକାମୀ ନର ॥
ଆପଣାର ହିତ ଅର୍ଥେ କରିବ ଯେ ଦାନ ।
ନ ଦେଇଥିଲେ କଦାପି ନ ପାଇବ ଜନ ॥
ଯାହା ଦେଇଥିବ ତାହା ପାଇ ପରକାଳେ ।
ଇହି ଜନମରେ ଯାହା କିଛି ଦାନକଲେ ॥
ଦୀର୍ଘ ଆୟୁଷ ଧନାଢ୍ୟ ହୁଅଇ ସେ ନର ।
ବେଶି କହିଲେ କି ହୋଇବ ବୈଶ୍ୟ ସୌଦାଗର
ଅଧର୍ମ କଲେ ଦୁର୍ଗତି ଧର୍ମରେ ସୁଗତି ।
ଏଣୁ ବାଳକକୁ ଧର୍ମ କରୁଥିବ ନିତି ॥
ସବୁ କହିଲୁଁ ତୁମ୍ଭଙ୍କୁ ଆଉ କି ଶୁଣିବ ।
ବିକୁଣ୍ଡଳ ବୋଲେ ତୁମ୍ଭେ ଅଟ ଧର୍ମଦେବ ॥
ତୁମ୍ଭେ ପୁଣ୍ୟଦେହୀ ତୁମ୍ଭ କଥା ପୁଣ୍ୟମୟ ।
ଶୁଣିଲା ମାତ୍ରେ ପ୍ରଫୁଲ୍ଲ ମୋହର ହୃଦୟ ।
ଗଙ୍ଗାଜଳ ଯେସନେ ସାଙ୍ଗେସାଙ୍ଗେ ପାପ ହରେ
ତେସନ ସାଧୁଜନଙ୍କ କଥା ଏ ସଂସାରେ ॥
ଲୋକଙ୍କର ଉପକାର ବଚନ ମଧୁର ।
ସ୍ୱଭାବ ଜାଣ ଏ ଦୁଇଗୁଣ ତାହାଙ୍କର ॥
ଅମୃତ ମଣ୍ଡଳ ଚନ୍ଦ୍ର କିରଣ ଶୀତଳ ।
ସେ ତାର ସ୍ୱଭାବ କେହି ନ କରେ ଶୀତଳ ॥
ଏଣୁ ଦେବଦୂତେ କିଛି ପଚାରିବ ମୁହିଁ ।
କୃପା କରିଣ କହିବ ନ କରିବ ନାହିଁ ॥
କି କଲେ ମୋ ଭାଇ ସକୁଁ ପାଇବେ ଉଦ୍ଧାର
ଶୁଣିଣ ସେ ଯମଦୂତେ କରିଣ ବିଚାର ॥
ମଇତ୍ର ଦଉଡ଼ି ପାଶେ ଆମ୍ଭେ ବନ୍ଧାହୋଇ ।
ତେଣୁ ଏହା କହିବାର ଆମ୍ଭଙ୍କୁ ଯୋଗାଇ ॥
ବୋଇଲେ ହେ ବିକୁଣ୍ଡଳ ତୁମ୍ଭେ ବୁଦ୍ଧିମନ୍ତ ।
ମଧୁର ସାଧୁ କଥାରେ ହରିଲେନ୍ତି ଚିତ୍ତ ॥
ତୁମ୍ଭେ ଯେବେ ତୁମ୍ଭ ଭାଇ ମଙ୍ଗଳ ପାଞ୍ଚିଛ ।
ଅଷ୍ଟମ ଜନ୍ମରେ ଯେଉଁ ପୁଣ୍ୟ ସଞ୍ଚିଅଛ ॥

ତାହା ତାଙ୍କୁ ଦେଲେ ସ୍ୱର୍ଗେ ଯିବ ତୁମ୍ଭ ସଙ୍ଗେ
ବୈଶ୍ୟବୋଲେ କି ପୁଣ୍ୟ ସେ କୁହ ମୋହ ଆଗେ
ସେହି ମୁନିସୁତ ଜନ୍ମ ହୋଇଥିଲେ କାହିଁ ।
କିରୂପେ କାହାର ଘରେ ଜନ୍ମିଥିଲି ମୁହିଁ ॥
ଏ ସବୁ କଥା ବିସ୍ତାରେ କୁହ ଯମଦୂତେ ।
ସର୍ବଜ୍ଞ ପୁରୁଷ ଯେଣୁ ତୁମ୍ଭେ ତ୍ରିଜଗତେ ॥
ଜାଣିଲେ କଣ୍ଠସ୍ଥ ହେବ ସେ ପୁଣ୍ୟକୁ ମୋର
ଯମଦୂତେ କହିଲେ ହୋ ଶୁଣ ବିକୁଣ୍ଡଳ ॥
ଆଜହୁଁ ଅଷ୍ଟମ ଜନ୍ମେ ଯାହା ହୋଇଥିଲ ।
ସେ ପୁରୁଣା କଥା ଗୋଟା ଅତି ଚମତ୍କାର ॥
ଶକୁନି ନାମରେ ଥିଲେ ଏକ ଋଷିବର ।
ମହାତପା ତେଜସ୍ୱୀ ସେ ସର୍ବଜ୍ଞ ପ୍ରବର ॥
ଅତି ପବିତ୍ର ଦେଖିଣ ସ୍ଥାନ ମଧୁବନ ।
ତହିଁ ରହି କଲେ ତପ ବେଦ ଅଧ୍ୟୟନ ॥
ବ୍ରହ୍ମା ତୁଲ୍ୟ ତେଜୋବନ୍ତ ଦିଶିଲେ ସେ ମୁନି
ରେବତୀ ନାମେ ତାଙ୍କର ଅଟଇ ଘରଣୀ ॥
ନବଗୋଟି ପୁତ୍ର ସେହି ନାରୀ ଜନ୍ମକଲା ।
ତାହାଙ୍କର ଗୁଣ ମୁଖେ କେ କହିବ ଭଲା ॥
ଧ୍ରୁବଶାଳୀ ବୁଧ ତାର ପୁତ୍ର ଜ୍ୟୋତିଷ୍ମାନ ।
ଅଗ୍ନି ଋଷି ଗୃହୀ ହେଲେ ସେହି ପାଞ୍ଚଜଣ ॥
ନିର୍ମୋହ ଯେ ଜିତକାମ ଧ୍ୟାନନିଷ୍ଠ ତିନି ।
ଚାରିପୁତ୍ର ଜାଣ ଗୁଣାଧିକକୁ ଯେ ଘେନି ॥
ସେ ଚାରି ସନ୍ୟାସୀ ହେଲେ ଛାଡ଼ି ଗୃହ ଧର୍ମ ।
କାମନା ସଙ୍ଗ ଛାଡିଲେ ରହି ଗ୍ରାମ ଗ୍ରାମ ॥
ସର୍ବଜନ କରି ସମଦରଶୀ ହୋଇଲେ ।
ମଣି କାଞ୍ଚନକୁ ଟେକା ପଥର ମଣିଲେ ॥
ଯାହା ତାହା ପିନ୍ଧିଲେ ସେ ଯହିଁ ତହିଁ ରହି ।
ରାତିକ କଟାଇ ଦିଅନ୍ତି ସନ୍ଧ୍ୟା ହୁଏ ଯହିଁ ॥
କାଳ କଟାଇଲେ ଧ୍ୟାନେ ହୋଇ ନିମଗନ ।
ଜଣା ନ ହୋଇଲା ତାଙ୍କୁ ରାତି କିବା ଦିନ ॥
ଆହାର ନିଦ୍ରା ମୈଥୁନ ତେଜିଲେ ସକଳ ।
ଖରା ବରଷା ପବନ ଶୀତ ହେମ ଜଳ ॥
ଏ ଘୋର କଷଣ ସହି ଚରାଚର ପ୍ରାଣୀ ।
ବିଷ୍ଣୁ ସ୍ୱରୂପ ଦେଖିଣ କରନ୍ତି ଭ୍ରମଣି ॥
ମହାଯୋଗୀ ମହାଜ୍ଞାନୀ ହୋଇଲେ ସେ ଚାରି
ଆଜୁ ସେ ଜନ୍ମ ଅଷ୍ଟମ ହେଲାଣି ତୁମ୍ଭର ॥
ମଧ୍ୟ ପ୍ରଦେଶରେ ତୁମ୍ଭେ କରିଥିଲ ଘର ।
ପୁତ୍ର ଦାର କୁଟୁମ୍ବାଦି ବହୁତ ତୁମ୍ଭର ॥
ଦ୍ୱିଜକୁଳେ ଜନ୍ମ ହୋଇଥିଲ ବିକୁଣ୍ଡଳ ।
ସେ ଚାରିଯୋଗୀ କ୍ଷୁଧାରେ ହୋଇଣ ଆକୁଳ
ତୁମ୍ଭ ଦୁଆରେ ଅତିଥି ହୋଇଲେ ସେ ଆସି
ନିଦାଘ ଖରାବେଳରେ ହୋଇଣ ପିପାସୀ ॥
ବୈଶ୍ୱଦେବ ସାରି ତୁମ୍ଭେ ଗୃହର ବାହାରେ ।
ଦେଖିଲ ଚାରିଯୋଗୀଙ୍କ ଅତିଥି ଦୁଆରେ ॥
ଗଦ ଗଦ ସ୍ୱରେ ଅଶ୍ରୁପୂର୍ଣ୍ଣ ନୟନରେ ।
ଆନନ୍ଦେ ତୁରିତେ ଆସି ବହୁତ ଆଦରେ ॥
ପାଦତଳେ ପଡିଲେ ଯେ ଦଣ୍ଡବତ ହୋଇ ।
କରକୁ ଆଣ୍ଠୋଳି କରି ମିଠାକଥା କହି ॥
ବୋଇଲ ଆଜ ଜନମ ସଫଳ ମୋହର ।
ଜାଣିଲି ମୋଠାରେ ଦୟା ଅଛି ଶ୍ରୀବିଷ୍ଣୁର ॥
ଏ ଜୀବନ ଗୋଟା ଆଜ ହୋଇଲା ସଫଳ ।
ଧନ୍ୟ ମୁହିଁ ଧନ୍ୟ ମୋର କୁଟୁମ୍ବ ସକଳ ॥
ଧନ୍ୟ ମୋର ଘର ଦ୍ୱାର ଧନ୍ୟ ପିତୃକୁଳ ।
ଧନ୍ୟ ମୋର ଜ୍ଞାନ ଧନ୍ୟ ନୟନ ଯୁଗଳ ॥
ଧନ୍ୟ ମୋର ଧନ ଧାନ୍ୟ ଆଦି ଯେ ସମ୍ପତ୍ତି ।
ସନାଥ ଆଜ ହୋଇଲା ଜନମ ଏ କ୍ଷିତି ॥
ଯେଣୁ ପଡିଲା ମୋ ଘରେ ତୁମ୍ଭ ପାଦଧୂଳି ।
ମଣ୍ଡନ କଲା ସେ ପୁଣି ମୋହର ମଉଳି ॥
ଜାଣିଲି ମୋହର ତିନି ତାପ ଗଲା ଦୂରେ ।
ସାକ୍ଷାତରେ ବିଜେ କଲ ଶ୍ରୀ ବିଷ୍ଣୁ ଶରୀରେ ॥
ତୁମ୍ଭ ଦରଶନେ ଆଜ ପାଇବି ମୁକତି ।
ଭାଗ୍ୟ ଥିବରୁ ପାଇଲି ତୁମ୍ଭ ପ୍ରାୟ ଯତି ॥
ଏହିରୂପେ କହି ତାଙ୍କ ପାଦ ପୂଜା କରି ।
ଶିରେ ବହିଲ ତାହାଙ୍କ ପାଦଧୁଆ ବାରି ॥
ଗନ୍ଧ ପୁଷ୍ପ ଧୂପ ଦୀପ ଅକ୍ଷତ ଚନ୍ଦନେ ।
ଶ୍ରଦ୍ଧା ଭକତିରେଂ ପୂଜା କରି ଚାରିଜଣେ ॥
ଉତ୍ତମ ଭୋଜନେ ତାଙ୍କୁ କରାଇ ତୃପତି ।
ସେ ପରମ ହଂସ ବ୍ରହ୍ମଜ୍ଞାନୀ ମହାଯତି ॥
ଜ୍ୟୋତିରେ ଯେ ଜ୍ୟୋତିରୂପ ପରଂବ୍ରହ୍ମଧ୍ୟାନ
ସେ ମହା ଜ୍ଞାନୀ ଯୋଗୀନ୍ଦ୍ର ରତ ରାତି ଦିନ ॥
ରାତିଏ ରହିଲେ ତୋର ଘରେ ବିକୁଣ୍ଡଳ ।
ଅତିଥି ସେବାରେ ଯେତେକ ହେଲା ପୁଣ୍ୟ ଫଳ

ସହସ୍ରମୁଖେ କହିଲେ ନ ସରିବ ତାହା ।
କହି ନ ପାରିବେ ହର ବ୍ରହ୍ମା ଚତୁର୍ବାହା ॥
ଭୂତଙ୍କ ମଧ୍ୟରେ ଯେହ୍ନେ ଶ୍ରେଷ୍ଠ ପ୍ରାଣୀଗଣ ।
ପ୍ରାଣୀଙ୍କ ମଧ୍ୟରେ ଯେହ୍ନେ ବୁଦ୍ଧିମନ୍ତ ଜନ ॥
ବୁଦ୍ଧିମନ୍ତଙ୍କ ମଧ୍ୟରେ ଶ୍ରେଷ୍ଠ ଯେସନ୍ତେ ନର ।
ନରଙ୍କ ମଧ୍ୟେ ଯେସନେ ଶ୍ରେଷ୍ଠ ଦ୍ୱିଜବର ॥
ବ୍ରାହ୍ମଣଙ୍କ ମଧ୍ୟେ ଯେହ୍ନେ ବିଦ୍ୟାବନ୍ତ ଜନ ।
ବିଦ୍ୟାବନ୍ତ ମଧ୍ୟେ ଶ୍ରେଷ୍ଠ ଯେସନ୍ତେ ଜ୍ଞାନବାନ ॥
ଜ୍ଞାନୀଙ୍କ ମଧ୍ୟେ ଯେସନେ ଅନୁଷ୍ଠାନକାରୀ ।
ଅନୁଷ୍ଠାନୀ ମଧ୍ୟେ ବ୍ରହ୍ମଜ୍ଞାନୀଏ ଯେପରି ॥
ତେଣୁ ସେ ବ୍ରହ୍ମାଣ୍ଡେ ଶ୍ରେଷ୍ଠ ବ୍ରହ୍ମଜ୍ଞାନୀ ଯତି ।
ତିନି ଜଗତର ଲୋକେ ତାହାଙ୍କୁ ପୂଜନ୍ତି ॥
ତାଙ୍କ ସଙ୍ଗ କଲେ ମହା ପାତକ ନ ରହେ ।
ସେହି ବ୍ରହ୍ମଜ୍ଞାନୀ ଯେଣୁ ବୋଇଲେ ତୋ ଗୃହେ
ସେ ସାଧୁଙ୍କ ଦରଶନ ହେଲା ଯହୁଁ ତୋର ।
ଜନ୍ମ ଜନ୍ମାନ୍ତର ପାପ ହୋଇ ଗଲା ଦୂର ॥
ମୃତ୍ୟୁ ପର୍ଯ୍ୟନ୍ତ ଯେତେକ ପାପ ଗଲା ପୋଡ଼ି ।
ସେ ପୁଣ୍ୟ ଦେଲେ ଭାଇଙ୍କ ଯିବ ପାପ ଛାଡ଼ି ॥
ଦୂତଙ୍କ ମୁଖୁ ଏମନ୍ତ ଶୁଣି ସୌଦାଗର ।
ସେ ପୁଣ୍ୟ ଭାଇଙ୍କି ଦେଲା ପାଇଲା ଉଦ୍ଧାର ॥
ଦୂତଙ୍କୁ ମେଲାଣି ମାଗି ତହୁଁ ଦୁଇ ଭାଇ ।
ପ୍ରଣାମ କରି ତକ୍ଷଣେ ଗଲେ ସ୍ୱର୍ଗଭୂଇଁ ॥
ଦେବଗଣେ ପୂଜା କଲେ ତାହାଙ୍କୁ ଆଦରେ ।
ଏହି ଇତିହାସ ଯେହୁ ପଢ଼ଇ ଶ୍ରଦ୍ଧାରେ ॥
କିବା ଶୁଣଇ ଶୁଣାଇ ପଢ଼ାଇ ବୁଝାଇ ।
ସହସ୍ର ଗୋରୁ ଦାନର ଫଳ ସେହି ପାଇ ॥
ରୋଗ ଶୋକ ନ ବାଧଇ ତାକୁ ଯୁଧିଷ୍ଠିର ।
ଗୋପୀନାଥ ହରିହର ବୋଲେ ନିରନ୍ତର ॥
ଦୁଃଖ ଶୋକ ବାଧା ବିଘ୍ନ କିଛି ନ ମାନଇ ।
ସବୁବେଳେ ହରିହର ମୁଖେ ବୋଲୁଥାଇ ॥
ଜାଣଇ କେବଳ ହରି ନାମ ଗୋଟି ସାର ।
ଧନ ସୁତ ଦାରବିତ୍ତ ସକଳ ଅସାର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ବିକୁଣ୍ଡଳ ଚରିତ ବର୍ଣ୍ଣନଂ ନାମ ପଞ୍ଚଦଶୋଽଧ୍ୟାୟଃ ।

## ଷୋଡ଼ଶ ଅଧ୍ୟାୟ ।

### ସୁଗନ୍ଧାଦି ତୀର୍ଥ ବର୍ଣ୍ଣନ ।

ନାରଦ କହିଲେ ଶୁଣ ରାଜା ଯୁଧିଷ୍ଠିର ।
ତହୁଁ ଯେ ଯିବ ସୁଗନ୍ଧ ନାମେ ତୀର୍ଥବର ॥
ତହିଁ ପାପ ଛଡ଼ାଇଲେ ବ୍ରହ୍ମଲୋକେ ଯିବ ।
ତହୁଁ ରୁଦ୍ରାବର୍ତ୍ତ ତୀର୍ଥେ ଯାଇଣ ମିଳିବ ॥
ତହିଁ ସ୍ନାନ କଲେ ଲୋକ ସ୍ୱର୍ଗସୁଖ ପାଇ ।
ଗଙ୍ଗା ସରସ୍ୱତୀ ନଦୀ ସଙ୍ଗମକୁ ଯାଇ ॥
ସ୍ନାନେ ଅଶ୍ୱମେଧ ଫଳେ ସ୍ୱର୍ଗରେ ବସିବ ।
ତହୁଁ ଯାଇଁ କର୍ଣ୍ଣମୁଦ୍ରା ହ୍ରଦରେ ବୁଡ଼ିବ ॥
ଶଙ୍କର ସେବି ଦୁର୍ଗତି ନାଶି ସ୍ୱର୍ଗପାଇ ।
କୁବ୍ଜାମ୍ରକ ନାମେ ତୀର୍ଥବରେ ତହୁଁ ଯାଇ ॥
ଗୋ ସହସ୍ର ଦାନଫଳ ପାଇ ସ୍ୱର୍ଗେ ଯିବ ।
ତହୁଁ ଅରୁନ୍ଧତୀ ବଟ ତୀର୍ଥରେ ମିଳିବ ॥
ତହିଁ ସାମୁଦ୍ରକ ତୀର୍ଥ ଜଳେ କରି ସ୍ନାନ ।
ତିନି ରାତ୍ର ଉପବାସେ ରହିବ ଯେ ଜନ ॥
ଗୋ ସହସ୍ର ଦାନ ଫଳ ଲଭି ସ୍ୱର୍ଗପାଇ ।
ତହୁଁ ଯିବ ପୁଣି ଯତି ବ୍ରହ୍ମଚାରୀ ହୋଇ ॥
ବ୍ରହ୍ମାବର୍ତ୍ତ ତୀର୍ଥେ ଫଳ ଅଶ୍ୱମେଧ ପାଇ ।
ପରକାଳ ସ୍ୱର୍ଗ ସୁଖ ଅର୍ଜି ପୁଣି ତହିଁ ॥
ଯମୁନା ପ୍ରଭବ ତୀର୍ଥେ ତହୁଁ ପୁଣି ଯିବ ।
ଯମୁନା ଜଳ ଭିତରେ ପଶିଣ ବୁଡ଼ିବ ॥
ଅଶ୍ୱମେଧ ଯଜ୍ଞଫଳ ପାଇବ ଆବର ।
ପରକାଳେ ବ୍ରହ୍ମଲୋକେ ପାଇବ ଆଦର ॥
ଦର୍ବୀସଂକ୍ରମଣ ତୀର୍ଥେ ଯିବ ତହୁଁ ଜନ ।
ଅଶ୍ୱମେଧ ଯାଗଫଳ ପାଇ କଲେ ସ୍ନାନ ॥
ପରକାଳେ ସ୍ୱର୍ଗପୁରେ ଗମନ କରିବ ।
ସିନ୍ଧୁ ପ୍ରଭବ ତୀର୍ଥକୁ ତହୁଁ ରାଜା ଯିବ ॥
ସେ ତୀର୍ଥ କରନ୍ତି ସେବା ଗନ୍ଧର୍ବ ଯେ ରହି ।
ପାଞ୍ଚରାତ୍ରି କଟାଇବ ଉପବାସେ ତହିଁ ॥
ବହୁତ ସୁବର୍ଣ୍ଣ ଦାନ କରି ତହୁଁ ଯିବ ।
ପରମ ଦୁର୍ଗମା ଦେବୀ ତୀର୍ଥରେ ମିଳିବ ॥
ଅଶ୍ୱମେଧ ଫଳପାଇ ସର୍ଗେଣ ମୁକତି ।
ତହୁଁ ଋଷିକୁଲ୍ୟା ତୀର୍ଥେ କରି ନରପତି ॥

ବଶିଷ୍ଠ ତୀର୍ଥକୁ ଯାଇଁ ଦ୍ୱିଜାନ୍ତ ହୋଇବ ।
ଋଷିକୁଲ୍ୟା ତୀର୍ଥେ ରହି ଯେ ଶାଗ ଖାଇବ ॥
ଏକମାସ ସ୍ନାନକରି ଋଷି ଲୋକ ପାଇ ।
ଭୃଗୁତୁଙ୍ଗ ତୀର୍ଥକୁ ଯେ ତହୁଁ ପୁଣି ଯାଇ ॥
ଅଶ୍ୱମେଧ ଫଳପାଇ ଯିବ ତହୁଁ ଆର ।
ପ୍ରମୋକ୍ଷ ତୀର୍ଥେ ସକଳ ପାପ କରି ଦୂର ॥
ଦୁର୍ଲଭ କୃତ୍ତିକା ତୀର୍ଥେ ପୁଣ୍ୟ ଅର୍ଜି ସାରି ।
ମଘାତୀର୍ଥେ ଅତିରାତ୍ର ଯଜ୍ଞ ପାଇକରି ॥
ତହୁଁ ଯିବ ସନ୍ଧ୍ୟା ତୀର୍ଥେ ବିଦ୍ୟାତୀର୍ଥ ଯିବ ।
ସ୍ନାନକରଣ ବିଦ୍ୟାରେ ପାରଗ ହୋଇବ ॥
ସର୍ବପାପ ପ୍ରମୋଚନ ତୀର୍ଥ ତହୁଁ କରି ।
ବଖଟତ ଖାଇବ ତହିଁ ହୋଇ ନିରାହାରୀ ॥
ରାତ୍ରଏ ରହି ପରମ ଶୁଭ ଲୋକ ସହିଁ ।
ମହାବଳ ତୀର୍ଥବରେ ରାତ୍ରଏକ ବହିଁ ॥
ଷଷ୍ଠ କାଳରେ ଭୋଜନ କରି ଏକମାସେ ।
ରହିଲେ ତାର ତରିବେ ଉପର ପୁରୁଷେ ॥
ଦଶ ଦଶ ପୁରୁଷ ତା ତଳେ ଯେ ଉପର ।
ଏସବୁ ତାରି ତରିବ ଆପେ ସେହି ନର ॥
ମହେଶ୍ୱର ଦରଶନେ ପୁଣ୍ୟ ଲଭି କରି ।
କୃତାର୍ଥ ହେବ ମରଣ ଶୋକକୁ ନିବାରି ॥
ସକଳ ପାପ ଛଡ଼ାଇ ରୂପବନ୍ତ ହୋଇ ।
ପହୁଞ୍ଚିବ ବେତସିଖା ତୀର୍ଥବରେ ଯାଇଁ ॥
ସେ ତୀର୍ଥ ଶ୍ରେଷ୍ଠ ଅଟଇ ପିତାମହଙ୍କର ।
ସ୍ନାନକରି ଅଶ୍ୱମେଧ ଫଳପାଇ ନର ॥
ପରମ ଗତି ଅରଜି ଯିବ ତହୁଁ ଶୁଳି ।
ସିଦ୍ଧସେବୀ ସୁନ୍ଦରିକା ତୀର୍ଥେ ଯାଇଁ ମିଳି ॥
ପୁରୁଣା ଲୋକେ ଦେଖିଣ କହନ୍ତି ଏମନ୍ତ ।
ସ୍ନାନ କଲାମାତ୍ରେ ତହୁଁ ହେବ ରୂପବନ୍ତ ॥
ତହୁଁ ଯିବ ଯତ ବ୍ରତୀ ବ୍ରହ୍ମଚାରୀ ହୋଇ ।
ବ୍ରାହ୍ମଣିକା ତୀର୍ଥ ରହି ସ୍ନାନ କରି ତହିଁ ॥
ତାର ଫଳେ ଅନ୍ତକାଳେ ଯିବ ବ୍ରହ୍ମଲୋକେ
ପଦ୍ମବର୍ଣ୍ଣ ବିମାନରେ ଆରୋହି କୌତୁକେ ॥
ତହୁଁ ଯିବ ନଇମିଷ ପୁଣ୍ୟବନ୍ତ ତୀର୍ଥ ।
ସେ ତୀର୍ଥରେ ଥାନ୍ତି ବ୍ରହ୍ମା ଦେବଙ୍କ ସହିତ ॥
ଦ୍ୱିଜଗଣେ ରହିଥାନ୍ତି ସେ ତୀର୍ଥେ ନିରତେ ।
ଦେହୁ ପାପ ଛୁଟିଯାଏ ସେ ତୀର୍ଥ ମାତ୍ରକେ ॥

ପ୍ରାର୍ଥନା କଲେ ଅଧିକ ପାପ ଛୁଟିଯାଏ ।
ବୁଦ୍ଧିମନ୍ତ ଜନ ତହିଁ ଏକ ମାସ ରହେ ॥
ପୃଥିବୀର ତୀର୍ଥ ଯାକ ଅଛି ନଇମିଷେ ।
ରାଜସୂୟ ଯଜ୍ଞ ଫଳ ପାଇ ସ୍ନାନ ଶେଷେ ॥
ସପତ କୁଳ ପବିତ୍ର ହୋଇବ ତାହାର ।
ଉପବାସ କରି ଯେବେ ମରେ ତହିଁ ନର ॥
ଆନନ୍ଦରେ ସ୍ୱର୍ଗପୁରେ ବସଇ ସେ ଯାଇଁ ।
ନିତ୍ୟ ସ୍ନାନେ ନଇମିଷ ମହାପୁଣ୍ୟ ପାଇ ॥
ତହୁଁ ଯିବ ଗଙ୍ଗୋଦ୍ଭେଦ ତୀର୍ଥେ ନୃପବର ।
ତିନି ରାତ୍ର ଉପବାସ କରି ତହୁଁ ନର ॥
ବାଜପେୟ ଯଜ୍ଞ କଲା ଫଳ ତହୁଁ ପାଇ ।
ବ୍ରହ୍ମ ସ୍ୱରୂପ ସେଠାରେ ହୋଇ ନରସାଇଁ ॥
ସରସ୍ୱତୀ ମହା ତୀର୍ଥେ ତର୍ପଣ କରିବ ।
ଦେବତା ପିତୃଙ୍କୁ ତହିଁ ଜଳତଳ ଦେବ ॥
ସାରସ୍ୱତ ଲୋକେ ଅନ୍ତେ ବସିବ ସେ ଜନ ।
ତହୁଁ ବାହୁଦା ତୀର୍ଥକୁ କରିବ ଗମନ ॥
ରାତ୍ରରେ ସେଠାରେ ରହି ସ୍ୱର୍ଗ ଭୋଗ ପାଇ ।
ଦେବସତ୍ର ଯଜ୍ଞ ଫଳ ପାଇ ନରସାଇଁ ॥
ତହୁଁ ସେ ପୁଣ୍ୟରଜନୀ ତୀର୍ଥେ ଚଳିଯିବ ।
ଦେବତା ପିତୃଙ୍କୁ ସେହି ତୀର୍ଥରେ ପୂଜିବ ॥
ବାଜପେୟ ଯଜ୍ଞ ଫଳ ସେ ତୀର୍ଥେ ମିଳଇ ।
ବିମଳ ଲୋକ ତୀର୍ଥକୁ ତହୁଁ ପୁଣି ଯାଇ ॥
ସ୍ନାନ କଲାମାତ୍ରେ ଚନ୍ଦ୍ର ପ୍ରାୟେ ବିରାଜିବ ।
ଏକରାତ୍ରି ରହି ସ୍ୱର୍ଗପୁର ଅରଜିବ ॥
ତହୁଁ ଯିବ ଗୋପ୍ରତାର ନାମେ ତୀର୍ଥବରେ ।
ଉତ୍ତମ ତୀର୍ଥ ଶ୍ରେଷ୍ଠ ସେ ସରଯୂନଦୀରେ ॥
ସେହି ତୀର୍ଥେ ସୈନ୍ୟ ବଳ ଘେନି ରଘୁମଣି ।
ସ୍ୱର୍ଗପୁରେ ଯାଇଥିଲେ ତେଜିଣ ଧରଣୀ ॥
ସେ ତୀର୍ଥରେ ଦେହ ତେଜି ସକଳ ପରାଣୀ ।
ରାମ ପ୍ରସାଦେ ସ୍ୱର୍ଗକୁ ଗଲେ ଅଛୁଁ ଶୁଣି ॥
ସେ ତୀର୍ଥରେ ସ୍ନାନ କରି ପାପକୁ ଛଡ଼ାଇ ।
ହେ କୁରୁନନ୍ଦନ ସ୍ୱର୍ଗ ଲୋକେ ପୂଜାପାଇ ॥
ଗୋମତୀରେ ରାମତୀର୍ଥେ କଲେ ଯାଇଁ ସ୍ନାନ ।
ଅଶ୍ୱମେଧ ଯଜ୍ଞ ଫଳ ପାଇବ ରାଜନ ॥
ନିଜ କୁଳକୁ ପବିତ୍ର କରି ତହୁଁ ଯିବ ।
ଶତ ସହସ୍ରକ ନାମେ ତୀର୍ଥରେ ମିଳିବ ॥

ସ୍ନାନ କଲ୍ ଗୋ ସହସ୍ର ଦାନ ଫଳ ପାଇ ।
ଲକ୍ଷ୍ମୀ ସ୍ଥାନ ତୀର୍ଥେ ତହୁଁ ଯାଇଁ କରସାଇଁ ॥
କୋଟି ତୀର୍ଥ ସ୍ନାନ ତହିଁ କର ନୃପବର ।
ସ୍ନାନ ସାର କାର୍ତ୍ତିକେୟ ପୂଜାକର ନର ॥
ଗୋ ସହସ୍ର ଫଳପାଇ ହୋଇବ ତେଜୋବନ୍ତ ।
ବାରାଣସୀକି ସେଠାରୁ ଯିବ ନୃପନାଥ ॥
କପିଳା ହ୍ରଦରେ ବୃଡ ଶିବଙ୍କୁ ପୂଜିବ ।
ରାଜସୂୟ ଯଜ୍ଞ ଫଳ ପାଇ ତହୁଁ ଯିବ ॥
ଗୋମତୀଗଙ୍ଗା ସଙ୍ଗମ ମାର୍କଣ୍ଡ ତୀର୍ଥ ।
ତିନି ଭୁବନରେ ସେହି ତୀର୍ଥହିଁ ବିଖ୍ୟାତ ॥
ସ୍ନାନ କଲେ ଅଗ୍ନିଷ୍ଟୋମ ଯଜ୍ଞ ଫଳ ପାଇ ।
ସେ ତୀର୍ଥ ବ୍ରତେ ଆପଣା କୁଳ ଉଦ୍ଧାରଇ ॥
ଗୋପୀନାଥ ବୋଲେ ତୀର୍ଥ ବ୍ରତ କର ନରେ
ଆଠବ ତର କୁଳ ତାର ବସିବ ସ୍ୱର୍ଗରେ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ପୁଗନ୍ଧାଦି ତୀର୍ଥ ବର୍ଣ୍ଣନଂ ନାମ
ଷୋଡଶୋଽଧ୍ୟାୟଃ ।



## ସପ୍ତଦଶ ଅଧ୍ୟାୟ ।

ବାରାଣସୀ ମାହାତ୍ମ୍ୟ ।

ପଚାରିଲେ ଯୁଧିଷ୍ଠିର ଆହେ ମୁନିବର ।
ବାରାଣସୀର ମହିମା କରଣ ବିସ୍ତାର ॥
କହନ୍ତୁ ଶୁଣିବା ପାଇଁ ବଳଛି ମୋ ମନ ।
ନାରଦ କହିଲେ ଶୁଣ ହେ ଧର୍ମ ରାଜନ ॥
ଯା ଶୁଣନ୍ତେ ବ୍ରହ୍ମହତ୍ୟା ପାପଛାଡ଼ ଯାଏ ।
ଏକ ପୁରାତନ କଥା ଶୁଣ ମହାରାୟେ ॥
ଏକ ଦିନକରେ ମେରୁ ଶିଖରେ ପାର୍ବତୀ ।
ଦିବ୍ୟ ଆସନରେ ବସି ଥିଲେ ପଶୁପତି ॥
ବୋଇଲେ ହେ ଦେବଦେବ ମହାଦେବ ହର
ଦରଶନ ପାଏ କିନା ଭକତ ତୁମ୍ଭର ॥
ଆନ ଜନେ ଦରଶନ ପାଇବେ କେସର ।
ସାଂଖ୍ୟ ଯୋଗ କର୍ମ ଯୋଗ ଧ୍ୟାନ ଆଦିକର ॥
ଇତ୍ୟାଦିକ ଉପାସନା ଆଦି ଏ ଯେତେକ ।
କଠୋର ଏ ସବୁ ସାଧି ନ ପାରିବା ଲୋକ ॥
କି କଲେ ତୁମ୍ଭ ଦର୍ଶନ ପାଇବେ ଅଳପେ ।
ସକଳ ପ୍ରାଣୀ ପାଇବେ ତୁମ୍ଭଙ୍କୁ ଯେଉଁରୂପେ ॥
ତହିଁର ଉପାୟ କହ କାମାଙ୍ଗନାଶନ ।
ବ୍ରହ୍ମା ନ ଜାଣନ୍ତି ଅତି ଗୁପତ ଯେ ଜ୍ଞାନ ॥
ପାର୍ବତୀ ମୁଖୁଁ ଏମନ୍ତ ଶୁଣି ସେ ଈଶ୍ୱର ।
ବୋଇଲେ ପାର୍ବତି ଶୁଣ ଜ୍ଞାନ ତତ୍ତ୍ୱସାର ॥
ଦେବତା ମନ୍ତ୍ର ବିଜ୍ଞାନ ତହିଁ ଲୋଡ଼ା ନାହିଁ ।
ପରମ ଋଷି ଭକତ ଜନମାନେ ଥାଇ ॥
ମୋହର ଗୁପତ ସ୍ଥାନ ବାରାଣସୀ ପୁରୀ ।
ଜାଣିଥା ପାର୍ବତି ତହିଁ ହୋଇ ବ୍ରତାଗ୍ରହୀ ॥
ବାସ କରି ରହିଥିବା ଜନ ପାଏ ମୋତେ ।
ସେ ପରମ ସ୍ଥାନ ମୋର ଅଛଇ ଗୁପତେ ॥
ସବୁ ତୀର୍ଥରେ ଉତ୍ତମ ତୀର୍ଥ ସେ ମୋହର ।
ସେହି ମୋହର ଅଟଇ ଜ୍ଞାନ ତନ୍ତ୍ର ସାର ॥
ଅନେକ ଅଛି ଆହୁର ତୀର୍ଥ ଆୟତନ ।
ସବୁହୁଁ ଅତି ପବିତ୍ର ଏହି ତୀର୍ଥ ସ୍ଥାନ ॥
ଅମୁକତ ଜନେ ଏହା ଦେଖି ନ ପାରନ୍ତି ।
ଜ୍ଞାନ ଚକ୍ଷୁରେ ମୁକତ ଜନେ ଯେ ଦେଖନ୍ତି ॥
ସେ ଅବିମୁକ୍ତ କ୍ଷେତ୍ରକୁ କହନ୍ତି ଶ୍ମଶାନ ।
ଯେତେବେଳେ କାଳରୂପ କରଇ ଧାରଣ ॥
ତହିଁ ରହି କରେ ସବୁ ସୃଷ୍ଟିକି ସଂହାର ।
ସବୁ ଗୁପତ ସ୍ଥାନରୁ ଗୁପତ ଏ ମୋର ॥
ସେ ସ୍ଥାନ ଗୋଟି ଅତ୍ୟନ୍ତ ପ୍ରିୟ ଗୋ ମୋହର
ମୋର ଭକତ ହେ ସ୍ଥାନେ ଏକା ଯାଇ ପାର ॥
ଜପ ତପ ହୋମ ଯାଗ ଦାନ ଧ୍ୟାନ ଜ୍ଞାନ ।
ଅକ୍ଷୟ ହୁଏ ସକଳ ଯୋଗ ଯେ ସାଧନ ॥
ସେ ସ୍ଥାନ ମାଡିଲେ ପାପ ଦେହେ ନ ରହଇ
ସହସ୍ର ଜନ୍ମର ପାପ ସବୁ ଛାଡି ଯାଇ ॥
ବିପ୍ର କ୍ଷତ୍ରୀ ଶୂଦ୍ର ବୈଶ୍ୟ ଯେ ବର୍ଣ୍ଣସଙ୍କର ।
ସ୍ତ୍ରୀ ମ୍ଲେଚ୍ଛ ଆଦି ଯେ ପାପ ଯୋନିକର ॥
କର୍ମକୀଟ ଆଦି ଜନ୍ତୁ ପିମ୍ପୁଡ଼ୀ ପର୍ଯ୍ୟନ୍ତେ ।
ମୃଗପକ୍ଷୀ ଆଦି ପ୍ରାଣୀ ଅଛନ୍ତି ଯେତେ ॥
ମରନ୍ତି ଯେବେ ସେ ଅବିମୁକ୍ତ କ୍ଷେତ୍ରେ ପଡ ।
ତକ୍ଷଣେ ଧରନ୍ତି ମୋର ରୂପ ଦେହ ଛାଡ ॥

ଚନ୍ଦ୍ରକଳା ବିରାଜିତ ଲଲାଟେ ତାଙ୍କର ।
ତନ୍ତ୍ରମନ୍ତ୍ର ବହ୍ନିକୁ ଦେଖି କରନ୍ତି ବିହାର ॥
ମୋର ଶାନ୍ତିମୟ ପୁରେ ରହନ୍ତି ଯେ ଯାଇଁ ।
ପାପୀ ଯେବେ ମରେ ତହିଁ ନର୍କେ ନ ପଡ଼ଇ
ପରମ ଗତି ଲଭନ୍ତି ମୋର ପରସାଦେ ।
ଦୁର୍ଲ୍ଲଭ ମୋକ୍ଷ ଲଭନ୍ତି ପୁଣି ପରମାଦେ ॥
ଭୟଙ୍କର ଏ ସଂସାର ଏହା ଜାଣି ନର ।
ସବୁ ଛାଡ଼ି ବାରାଣସୀ ପୁରେ କରି ଘର ॥
ରହି ଯେବେ ଯହିଁ ତହିଁ ପଡ଼ଣ ମରଇ ।
ମୋର ପରସାଦେ ଘୋର ବିପଦୁ ତରଇ ॥
ସେ ଯେଉଁ ଗତି ପାଇବ ତପେ ନ ପାଇବ ।
ମୋହ ମାୟାରେ ପଡ଼ଣ ଅଜ୍ଞାନୀ ମାନବ ॥
ବିଷ୍ଠା ମୂତ୍ର ରେତ ମଧ୍ୟେ ପଡ଼ି କଷ୍ଟେ ଘର ।
ବହୁତ ବାଧା ବିଘ୍ନ ସେ ସହି ବାରମ୍ବାର ॥
ଅବିମୁକ୍ତେ ରହିଲେ ସେ ଦୋଷ ଯିବ ଛାଡ଼ି ।
ରୋଗ ଶୋକ ବାଧା ବିଘ୍ନେ ଆଉ ସେ ନ ପଡ଼ି
ସେ ପରମ ସ୍ଥାନେ ହୋଇ ଅଜର ଅମର ।
ଜନମ ନୋହିବ ପୁଣି ଯିବ ଶିବ ପୁର ॥
ମୋକ୍ଷକାମୀ ଜନଙ୍କର ଏ ପରମ ଗତି ।
ଅବିମୁକ୍ତ କ୍ଷେତ୍ରେ ଯେଉଁ ଗତି ସେ ଲଭନ୍ତି ॥
ତପେ ଦାନେ ଯଜ୍ଞେ ଜ୍ଞାନେ ନ ପାଇବେ ତାହା
ନୀଚ ଉଚ୍ଚ ଜାତି ମ୍ଲେଚ୍ଛ ଜନ୍ମିତ ହୋଇ ରହି ॥
ଯାହା ତାହା ହେଉ ପାପୀ ଅପାପୀ ବା କେହି
ଅବିମୁକ୍ତ କ୍ଷେତ୍ରେ ଯାଇଁ ଗୃହ କରି ରହି ॥
ତରିବ ତାରିବ ଉଦ୍ଧାରିବ ଉଦ୍ଧରିବ ।
ତାଙ୍କର ସେହି ପରମ ଔଷଧି ଜାଣିବ ॥
ସେହି ଜ୍ଞାନ ସେହି ଧ୍ୟାନ ସେ ପରମ ପଦ ।
ସେହି ଯେ ପରମ ତତ୍ତ୍ୱ ସର୍ବ ଶୁଭପ୍ରଦ ॥
ମରିବା ଯାଏ ରହିବଂ କରି ଏଥେ ଘର ।
ଏହା ସଂକଳପ କରି ରହେ ଯେଉଁ ନର ॥
ପରମ ପଦ ତାହାକୁ ଦିଏ ଅନ୍ତକାଳେ ।
ପରମ ଜ୍ଞାନ ଆଦର ପାଇ କାଳେ କାଳେ ॥
ପ୍ରୟାଗ ଯେ ନଇମିଷ ବନ ଶ୍ରୀଶଇଳ ।
ମହା ବନ ଭଦ୍ରକର୍ଣ୍ଣ କେଦାର ପୁଷ୍କର ॥
କୁରୁକ୍ଷେତ୍ର ରୁଦ୍ର କୋଟି ନର୍ମଦା ଗୋକର୍ଣ୍ଣ ।
ଆମ୍ରାତକେଶ୍ୱର ଶାଳଗ୍ରାମ ଭଦ୍ରକର୍ଣ୍ଣ ॥
ପ୍ରଭାସ ବିଜୟେଶାନ କୋକମୁଖ ତୀର୍ଥ ।
ଏ ସକଳ ପୁଣ୍ୟସ୍ଥାନ ତ୍ରିଲୋକ ବିଖ୍ୟାତ ॥
ବାରାଣସୀ କ୍ଷେତ୍ରେ ମଲ୍ଲ ଲୋକ ଯାହା ପାଏ ।
ତେମନ୍ତ ଫଳ ଏ ସବୁ ତୀର୍ଥରେ ନ ହୁଏ ॥
ବାରାଣସୀ କ୍ଷେତ୍ର ଗଙ୍ଗା ତ୍ରିପଥଗାମିନୀ ।
ଶତଜନ୍ମାନ୍ତର କୃତ ପାତକ ନାଶିନୀ ॥
ସବୁଠାରେ ଗଙ୍ଗାଜଳ ପବିତ୍ର ଏ ସତ ।
ବାରାଣସୀ ଗଙ୍ଗାଜଳ ସବୁହୁଁ ପବିତ୍ର ॥
ତହିଁ ଶ୍ରାଦ୍ଧ ଦାନ ତପ ଜପ ବ୍ରତ କଲେ ।
ଅନ୍ୟ ତୀର୍ଥେ କଲ୍ପଫଳ ନ ହୁଏ ତା ତୁଲେ ॥
ନାହିଁ ନାହିଁ ତ୍ରିଭୁବନେ ଏ ପବିତ୍ର ସ୍ଥାନ ।
ବାରାଣସୀ କ୍ଷେତ୍ରେ ନିତ୍ୟ ତପ କଲା ଜନ ॥
ହୋମ କଲା ଲୋକ କିବା ଦାନଦେଲା ଲୋକ ।
ପବନ ପିଇ ପୂଜଇ କିବା ଦେବଲୋକ ॥
ଏ ଲୋକ ସମାନ ଲୋକ ତିନିପୁରେ ନାହିଁ ।
ଏହା ତୁଲ୍ୟ ପୁଣ୍ୟକର୍ମ ନାହିଁ ନାହିଁ ନାହିଁ ॥
ନ ହୋଇଛି ନ ହୋଇବ ଜାଣିଥା ପାର୍ବତି ।
ପାପୀ ଶଠ ଅଧାର୍ମିକ ହେଲେ ନୀଚ ଜାତି ॥
ବାରାଣସୀ ଯାଇଁ କୁଳ ପବିତ୍ର କରଇ ।
ବାରାଣସୀ କ୍ଷେତ୍ରେ ଯେହୁ ଶିବଙ୍କୁ ପୂଜଇ ॥
କରଯୋଡ଼ି ଶିବସ୍ତୁତି ପଢ଼େ ଏକମନେ ।
ସର୍ବ ପାପରୁ ମୁକତ ହୁଅଇ ତକ୍ଷଣେ ॥
ଗଣେଶ୍ୱର ବୋଲି ସେହି ଜଗତେ ବୋଲଇ
ସହସ୍ର ଜନମ ଯାଏ ଯେ ଯୋଗ ସାଧଇ ॥
ଜ୍ଞାନୀ ସନ୍ନ୍ୟାସୀ ବା ଜପୀ ତପୀ କେହି ଜନ ।
କଠୋର କର୍ମେ ପାଆନ୍ତି ଯେ ପରମ ସ୍ଥାନ ॥
ବାରାଣସୀ କ୍ଷେତ୍ରେ ବାସ କଲା ମାତ୍ରେ ପାଇ ।
ଏକ ଜନମେ ସେ ଜନ ମୋକ୍ଷ ହୋଇ ଯାଇ
ଏକ ଜନ୍ମେ ଯୋଗ ଜ୍ଞାନ ମୋକ୍ଷ ଯହିଁ ମିଳେ ।
ସେହି ଅବିମୁକ୍ତ କ୍ଷେତ୍ରେ ଯାଇଁ ବାସ କଲେ ॥
ଆନ କ୍ଷେତ୍ରକୁ ସେ ବାଞ୍ଛା କରିବ କପାଇଁ ।
ସେ ସ୍ଥାନର ମହିମାରେ ମାୟା ଛାଡ଼ି ଯାଇ
ସବୁ ଗୁପତ ଜ୍ଞାନରୁ ଏ ଅତି ଗୁପତ ।
ଜ୍ଞାନୀ କର୍ମୀ ଏ ଯେ ଗତି ହୁଅନ୍ତି ପ୍ରାପତ ॥
ବାରାଣସୀ ମୃତ ପ୍ରାଣୀ ଯେ ଗତି ଲଭନ୍ତି ।
ଆଉ ଯେତେ ପୁଣ୍ୟ ସ୍ଥାନ ଅଛି ଗୋ ପାର୍ବତି

ସବୁହୁଁ ପବିତ୍ର କ୍ଷେତ୍ର ବାରାଣସୀ ମୋର ।
ଏ କ୍ଷେତ୍ରରେ ମରିଲେ ନିଶ୍ଚେ ମୋକ୍ଷ ହୋଇବ ନର ।
ଭ୍ରୂଲତା ମଧ୍ୟରେ ପୁଣି ନାଭିର ଭିତରେ ।
ଆଦିତ୍ୟଙ୍କ ମଣ୍ଡଳରେ ହୃଦପୁରେ ଶିରେ ॥
ଅବିମୁକ୍ତ କ୍ଷେତ୍ର ଯେତେହେଁ ବିରାଜୁ ଅଛଇ ।
ବାରାଣସୀ କ୍ଷେତ୍ରେ ତେତେହେଁ ଗୁପତେ ସେ ଥାଇ
ବରୁଣା ଅସୀ ଏ ଦୁଇ ମଧ୍ୟରେ ସେ ପୁର ।
ତେଣୁ ବାରାଣସୀ ନାମ ହୋଇଛି ତାହାର ॥
ଅବିମୁକ୍ତ କ୍ଷେତ୍ରେ ତହିଁ ଗୁପତେ ଅଛଇ ।
ଯୋଗୀ ବିନା ଯେ ତତ୍ତ୍ୱକୁ କେହି ନ ଜାଣଇ ॥
ଦେବାଶ୍ୱର ମହାଦେବ ଦେବ ନାରାୟଣ ।
ଦ୍ୱିଜ ମାନ ଯହିଁରେ ତେଣୁ ସେ ପ୍ରଧାନ ॥
ଦେବତା ଗନ୍ଧର୍ବ ଯକ୍ଷ ଉରଗ ରାକ୍ଷସ ।
ସଙ୍ଗେ ଘେନି ବ୍ରହ୍ମା ନିତ୍ୟ କରେ ସେମାନଙ୍କ ତୋଷ
ମହାପାତକୀ ଠାରୁ ଯେ ଅଧିକ ପାତକୀ ।
ଅବିମୁକ୍ତ କ୍ଷେତ୍ରେ ପାଇ ଉତ୍ତମ ଗତିକି ॥
ଏଣୁ ବାରାଣସୀ କ୍ଷେତ୍ରେ କରିବ ଯେ ଘର ।
ହେ ଦେବ ତହିଁ ମରଣ ପାଇବ ସେ ନର ॥
ମୋ ଠାରୁ ଜ୍ଞାନ ପାଇଣ ଲଭିବ ମୁକତି ।
ପାପୀ ଯାଇ ନ ପାରନ୍ତି ଜାଣିଥା ପାର୍ବତି ॥
ନାନାଦି ବିଘ୍ନ ଘଟଇ ଯିବାବେଳେ ତାକୁ ।
ଏଣୁ ଜ୍ଞାନୀଜନ ନିତ୍ୟ ଡରଇ ପାପକୁ ॥
କାୟମନ ବଚନରେ ପାପ ନ କରଇ ।
ବେଦ ପୁରାଣରେ ଏହି ରହସ୍ୟ ଅଛଇ ॥
ଅବିମୁକ୍ତ ତୀର୍ଥ କଥା ନ ଜାଣନ୍ତି କେହି ।
ଯୋଗୀ ଯୋଗ ସାଧୁଥାନ୍ତି ରହିବାକୁ ତହିଁ ॥
ଅତି କଠୋର ସେ ସ୍ଥାନ ଗୋଷ୍ଠ ତହିଁ ପାଇ
ଏଣୁ ବାରାଣସୀ କ୍ଷେତ୍ରେ ରହିବା ଯୋଗାଇ ॥
ନାରଦ କହିଲେ ଆହେ ଧର୍ମ୍ମ ଯୁଧିଷ୍ଠିର ।
ଦେବତା ଋଷିଙ୍କ ଆଗେ ପୂର୍ବେ ଦେବବର ॥
କହିଥିଲେ ସର୍ବପାପ ବିନାଶନ ଏହି ।
ଦେବଙ୍କ ମଧ୍ୟେ ଯେସନେ ଶ୍ରେଷ୍ଠ ଭବଗ୍ରାହୀ ॥
ଈଶ୍ୱରଙ୍କ ମଧ୍ୟେ ଯେତେହେଁ ଶ୍ରେଷ୍ଠ ମହେଶ୍ୱର ।
ପୁଣ୍ୟସ୍ଥାନ ମଧ୍ୟେ ଅବିମୁକ୍ତ କ୍ଷେତ୍ରବର ॥
କେବଣ ଜନମେ ଯେବେ କେବେ କେହି ଜନ
ରୁଦ୍ର ପୂଜିଥାଏ ପାଏ ଅବିମୁକ୍ତ ସ୍ଥାନ ॥
କଳି କଳୁଷରେ ମନ ଗୋଳିଆ ଯାହାର ।
ସେ କାହୁଁ ଜାଣିବ ସେହି ମହିମା ତାହାର ॥
ବାରାଣସୀ ବାରାଣସୀ ବୋଲେ ଯେହୁ ନିତ ।
ସୁମରଣା କରୁଥାଇ ଯେହୁ ଦିବା ରାତ ॥
ଇହ ପର କାଳ ପାପ ହୋଇ ତାର ଦୂର ।
ଏଥିରେ ସନ୍ଦେହ ନାହିଁ ଜାଣ ନିରାଧାର ॥
ବାରାଣସୀ କ୍ଷେତ୍ରବାସୀ ଜନଙ୍କ କଳୁଷ ।
କାଳ ଭଇରବ ରୂପି ଦେବ ଯେ ମହେଶ ॥
ବିନାଶନ୍ତି ଧର୍ମରାଜ୍ୟେ ଭଲକରି ଜାଣ ।
ମୋକ୍ଷକାମୀ ଜନଙ୍କର ସେବନ୍ତ ଏ ସ୍ଥାନ ॥
ମଲେ ପ୍ରାଣୀର ଜନମ ଆଉ ନାହିଁ ନାହିଁ ।
ଯୋଗୀ ବା ଅଯୋଗୀ ପାପୀ ପୁଣ୍ୟବନ୍ତ କେହି
ବାରାଣସୀ ପୁରେ ଘର କରିବା ଉଚିତ ।
ବାରଣ କଲେହେଁ ପିତା ମାତା ଗୁରୁ ମିତ୍ର ॥
କାହାର କଥା ନ ମାନି ଅବିମୁକ୍ତେ ଯିବ ।
ଗୋପୀନାଥ ବୋଲେ ପାପନାଶି ମୋକ୍ଷ ହେବ

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ବାରାଣସୀ ମାହାତ୍ମ୍ୟଂ ନାମ
ସପ୍ତଦଶୋଽଧ୍ୟାୟଃ ।



## ଅଷ୍ଟାଦଶ ଅଧ୍ୟାୟ ।

### ଶଙ୍କୁକର୍ଣ୍ଣୋପାଖ୍ୟାନ ।

ନାରଦ କହିଲେ ଆହେ ଧର୍ମ ଯୁଧିଷ୍ଠିର ।
ସେହି ବାରାଣସୀ କ୍ଷେତ୍ର କ୍ଷେତ୍ରମଧ୍ୟେ ସାର ॥
ଓଁକାରେଶ୍ୱର ନାମରେ ଶମ୍ଭୁ ବିରାଜନ୍ତି ।
ସେ ଶମ୍ଭୁ ଲିଙ୍ଗ ମହିମା ଶୁଣ ତୁ ନୃପତି ॥
ନିତ୍ୟ ପୂଜନ୍ତି ତାହାଙ୍କୁ ତହିଁ ମୁନିଜନ ।
ପରଂଜ୍ଞାନ ରୂପୀ ନେହି ପଥିଁ ଆୟତନ ॥
ପ୍ରାଣିଙ୍କି ସେ ଅପବର୍ଗ ଦେଉଥାନ୍ତି ନିତ ।
ସେହି ପଥିଁ ଆୟତନ ରୂପୀ ପଶୁପତି ॥
ଯାହାକୁ ବୋଲନ୍ତି ଯୋଗୀ ପାଶୁପତ ଜ୍ଞାନ ।
ସେହି ଜ୍ଞାନର ଯେ ନାମ ପଥିଁ ଆୟତନ ॥

ଓଁକାରେଶ୍ୱର ଲିଙ୍ଗରେ ବିରାଜଇ ସେହି ।
ପାଞ୍ଚ ଗୋଟି ଆୟତନ ଶୁଣ ଏବେ କହି ॥
ଶକ୍ତି ଶାନ୍ତି ପରା ବିଦ୍ୟା ପ୍ରତିଷ୍ଠା ନିବୃତ୍ତି ।
ପଞ୍ଚ ଆୟତନ ଏହା ଜ୍ଞାନୀଏ କହନ୍ତି ॥
ଓଁକାରେଶ୍ୱର ଲିଙ୍ଗରେ ଏ ପାଞ୍ଚେ ଅଛନ୍ତି ।
ତେଣୁ ପାଞ୍ଚାୟତନ ସେ ତ୍ରୈଲୋକ୍ୟେ ବୋଲନ୍ତି ॥
ପଣ୍ଡିତ ଜନେ କରନ୍ତି ସେ ଲିଙ୍ଗ ସ୍ମରଣ ।
ଦେହାନ୍ତେ ଜ୍ୟୋତି ଲିଙ୍ଗରେ ମିଶିବା କାରଣ ॥
ଦେବର୍ଷି ସିଦ୍ଧର୍ଷି ବ୍ରହ୍ମର୍ଷି ଯେତେ ।
ସେ ଓଁକାରେଶ୍ୱର ପୂଜା କରୁଥାନ୍ତି ନିତ୍ୟେ ॥
ମତ୍ସ୍ୟୋଦରୀ ପୁଣ୍ୟନଦୀ ତୀରେ ପୁଣ୍ୟଭୂଇଁ ।
ଗୋଚର୍ମ ମାତ୍ର ଗୁପତ ସ୍ଥାନ ଗୋଟି ସେହି ॥
ଓଁକାରେଶ୍ୱର ଅଛନ୍ତି ତହିଁ ଯୁଧିଷ୍ଠିର ।
ବାରାଣସୀ କ୍ଷେତ୍ର ସବୁ କ୍ଷେତ୍ରମଧ୍ୟେ ବର ॥
ପାଞ୍ଚ ଗୋଟି ଲିଙ୍ଗ ତହିଁ ଅଛନ୍ତି ଗୁପତେ ।
ତାହାଙ୍କ ନାମ କହୁଛି ଶୁଣ ଏକଚିତ୍ତେ ।
କନ୍ଦର୍ପେଶ୍ୱର ଓଁକାରେଶ୍ୱର ବିଶ୍ୱେଶ୍ୱର ।
ମଧ୍ୟମେଶ୍ୱର ଆଉର କୃତ୍ତିବାସେଶ୍ୱର ॥
ଏ ପାଞ୍ଚ ଗୋଟି ଗୁପତ ଲିଙ୍ଗ ଯେ ବୋଲନ୍ତି ।
ମହାଶମ୍ଭୁ ଅନୁଗ୍ରହ ଯାହାକୁ କରନ୍ତି ॥
ତାହାକୁ ସେ ପାଞ୍ଚଗୋଟି ଲିଙ୍ଗ ହୁଏ ଦୃଶ୍ୟ
କୃତ୍ତିବାସେଶ୍ୱରଙ୍କର ମହିମା ଅଶେଷ ॥
କହୁଅଛି ମନ ଦେଇ ଶୁଣ ମହୀପତି ।
ପୂର୍ବେ ସେ ସ୍ଥାନରେ ରହି ଏକ ଦୈତ୍ୟପତି ॥
ନିତ୍ୟ ଶିବଙ୍କୁ ପୂଜନ୍ତି ଯେତେ ଦ୍ୱିଜବର ।
ତାହାକୁ ମାରିବା ପାଇଁ ସେ ଦୁଷ୍ଟ ଅସୁର ॥
ଆସିବାରୁ ଜାଣିପାରି ପ୍ରଭୁ ଉମାସାଇଁ ।
ଭକତବତ୍ସଳ ଭକ୍ତଜନ ରକ୍ଷା ପାଇଁ ॥
ହସ୍ତୀରୂପେ ଆସୁଥିଲା ସେ ଦୁଷ୍ଟ ଅସୁର ।
ଶୂଳ ମାରି ପଠାଇଲେ ତାକୁ ଯମ ପୁର ॥
ତାର ଚର୍ମ ବସ୍ତ୍ରକରି କଟିରେ ଗୁଡ଼ାଇ ।
ଲିଙ୍ଗରୂପେ ବିରାଜିଲେ ପାର୍ବତୀର ସାଇଁ ॥
ସେ ଦିନୁ ସେ ଲିଙ୍ଗନାମ କୃତ୍ତିବାସେଶ୍ୱର ।
ସେ ସ୍ଥାନର ମହିମା ଯେ ଏମନ୍ତ ପ୍ରକାର ॥
ପାଇଲା ପରମ ଗତି ଗଜାସୁର ମରି ।
ଯେତେ ଲିଙ୍ଗଅଛନ୍ତି ସେ ବାରାଣସୀ ପୁରୀ ॥
ସେ ସବୁ ଲିଙ୍ଗ ତାହାଙ୍କ ସେବନ୍ତେ ବିରାଜନ୍ତି ।
କଳିଯୁଗେ ଯେତେ ପ୍ରାଣୀ ଉନ୍ମତ୍ତ ଅଛନ୍ତି ॥
ସେମାନେ ଘୋର ଅଧର୍ମୀ ପାପେ ଥାନ୍ତି ରତ
ବାରାଣସୀ ଯାଇଁ ଯେବେ ହୋଇଣ ଗର୍ବିତ ॥
କୃତ୍ତିବାସଙ୍କୁ ନ ପୂଜି ଫେରିଣ ଆସନ୍ତି ।
ବେଳକୁ ବେଳ ବଢ଼ଇ ତାହାଙ୍କ ଦୁର୍ଗତି ॥
କୃତ୍ତିବାସଙ୍କୁ ପୂଜିଲେ କୃତାର୍ଥ ହୋଇବ ।
ଏକ ଜନମରେ ଜନ ମୋକ୍ଷ ହୋଇ ଯିବ ॥
ସେହି କୃତ୍ତିବାସ ସିଦ୍ଧ ଗଣଙ୍କ ଆଳୟ ।
ଜ୍ଞାନୀଏ କହି ଅଛନ୍ତି ଏହା ମହାଶୟ ॥
ଶମ୍ଭୁ ଏ ଲିଙ୍ଗକୁ ରଖି ଅଛନ୍ତି ଗୁପତେ ।
ଯୁଗେ ଯୁଗେ ବଇଦିକ ବିପ୍ରେ ତହିଁ କେତେ ।
ଶତ ରୁଦ୍ର ଜପ କରି ଶିବଙ୍କୁ ପୂଜନ୍ତି ।
ସବୁବେଳେ କୃତ୍ତିବାସ ସ୍ତବ ପଢ଼ୁଥାନ୍ତି ॥
ଶିବଙ୍କୁ ହୃଦୟ ମଧ୍ୟେ କରୁଥାନ୍ତି ଧ୍ୟାନ ।
ପୂର୍ବରୁ ପ୍ରସିଦ୍ଧ ଅଛି ଏହି କଥା ଜାଣ ॥
ସିଦ୍ଧଗଣ ଏହି ଗୀତ ଗାଉଥାନ୍ତି ତହିଁ ।
ଯେ ସକଳ ବିପ୍ର ବାରାଣସୀ କ୍ଷେତ୍ରେ ରହି ॥
କୃତ୍ତିବାସଙ୍କ ଚରଣେ ପଶନ୍ତି ଶରଣ ।
ସେହି ଜନମରେ ମୋକ୍ଷ ତାହାଙ୍କର ଜାଣ ॥
ଦୁର୍ଲଭ ବିପ୍ର କୁଳରେ ଜନମ ହୋଇଣ ।
ରୁଦ୍ର ଦେବଙ୍କୁ ହୃଦୟ ମଧ୍ୟେ କରି ଧ୍ୟାନ ॥
କୃତ୍ତିବାସଙ୍କୁ ପୂଜନ୍ତି ମନ୍ତ୍ର ହିଁ ଜପନ୍ତି ।
ଘୋର ସଂସାରୁ ସେ ସେହି ଜନ୍ମ ମୋକ୍ଷପାନ୍ତି ॥
ନ ପୂଜିଲେ ବିପ୍ର ଜନ୍ମ ବୃଥା ତାହାଙ୍କର ।
ଯତିଗଣ ଧ୍ୟାନ କରୁଥାନ୍ତି ନିରନ୍ତର ॥
ମୁନିଗଣ ଆସି ନିତ୍ୟ ତାଙ୍କୁ ଆରାଧନ୍ତି ।
କର୍ମୀଗଣ ଯଜ୍ଞ କରି ତାହାଙ୍କୁ ପୂଜନ୍ତି ॥
କର ଯୋଡ଼ିଣ କରନ୍ତି ରୁଦ୍ରଙ୍କର ସ୍ତୁତି ।
ଶମ୍ଭୁଙ୍କୁ ଏରୂପେ ପୁଣି ପ୍ରଣାମ କରନ୍ତି ॥
ଗିରିଶ ଚରଣ ତଳେ ପଶନ୍ତି ଶରଣ ।
ହୃଦୟ ମଧ୍ୟେ କରନ୍ତି ରୁଦ୍ରଙ୍କୁ ସ୍ମରଣ ॥
ଆଉ ଏକ ଲିଙ୍ଗ ତହିଁ ଅଛି ନୃପବର ।
କପର୍ଦ୍ଦୀଶ୍ୱର ନାମରେ ସେହି ତୀର୍ଥବର ॥
ତହିଁ ସ୍ନାନ ସାରି କଲେ ପିତୃତର୍ପଣ ।
ସକଳ ପାପୁ ନିସ୍ତରି ମୋକ୍ଷ ପାନ୍ତି ଜାଣ ॥

ପିଶାଚ ମୋଚନ ନାମେ ତହିଁ ଏକ ତୀର୍ଥ ।
ଆଶ୍ଚର୍ଯ୍ୟମୟ ଦେବତା ତହିଁ ବିରାଜିତ ॥
ମୁକତିପ୍ରଦ ସେ ଦେବ ସର୍ବ ଦୋଷହାରୀ ।
ପୂର୍ବେ ଏକ ଦୈତ୍ୟ ଘୋର ବାଘରୂପ ଧରି ॥
ମୃଗୁଣୀକି ଖାଇବାକୁ ଅଇଲା ଗୋଡ଼ାଇ ।
ଭୟରେ ସେହି ମୃଗୁଣୀ ଆସଇ ପଳାଇ ॥
କପର୍ଦ୍ଦୀଶ୍ୱର ଲିଙ୍ଗକୁ କରି ପ୍ରଦକ୍ଷିଣ ।
ବ୍ୟାଘ୍ର ମୁଖରେ ପଡ଼ିଣ ଲଭିଲା ମରଣ ॥
ନଖରେ ବିଦାରି ବାଘ ସେ ମୃଗୀକି ନେଲା ।
ମୁନିଜନଙ୍କୁ ଦେଖିଣ ଡରରେ ପଳାଇଲା ॥
ନିର୍ଜନ ବନରେ ରଖି ତାହାକୁ ଖାଇଲା ।
କପର୍ଦ୍ଦୀଶ୍ୱର ଛାମୁରେ ମୃଗୀ ପ୍ରାଣ ଗଲା ॥
ତିନିଗୋଟି ନେତ୍ର ହେଲା ତକ୍ଷଣେ ତାହାର ।
କଣ୍ଠ ନୀଳ ବର୍ଣ୍ଣ ହେଲା ଧବଳ ଶରୀର ॥
ଲଲାଟରେ ବିରାଜିଲା ଚନ୍ଦ୍ରକଳା ଜ୍ୟୋତ ।
ସେ ବିମାନେ ଗୃର ବୃଷଯୋଗ୍ୟ ହୋଇଛନ୍ତି ॥
ନାରୀଗଣଙ୍କ ମେଳରେ ଗଲା ସେ ମୃଗୁଣୀ ।
ସବୁ ନାରୀ ଚନ୍ଦ୍ରକଳା ତ୍ରିନେତ୍ରଧାରିଣୀ ॥
ଗଣେଶ୍ୱରୀ ପ୍ରାୟେ ଦେଖାଗଲେ ସେ ସେକାଳେ
ଆକାଶରୁ ଦେବଗଣେ ଫୁଲ ବରଷିଲେ ॥
ଏ ଅତି ଅଦ୍ଭୁତ କଥା ଦେଖି ସୁରଗଣ ।
କପର୍ଦ୍ଦୀଶ୍ୱରଙ୍କୁ କଲେ ମନରେ ସ୍ମରଣ ॥
ଅଶେଷ ପାପ ମୋଚନ ହୋଇଲା ତାଙ୍କର ।
ବାରାଣସୀ କ୍ଷେତ୍ରବାସୀ ଯେତେ ତହିଁ ନର ॥
କପର୍ଦ୍ଦୀଶ୍ୱର ଦେବଙ୍କୁ ପୂଜନ୍ତି ନିରତେ ।
କାମ କ୍ରୋଧ ଲୋଭମୋହଆଦି ଦୋଷ ଯେତେ
ସବୁ ଦୂର ହୋଇଯାଏ ଆହେ ଧର୍ମରାୟେ ।
କପର୍ଦ୍ଦୀଶ୍ୱର ଦର୍ଶନ କରିବ ନିଶ୍ଚୟେ ॥
ପୂଜିବ ତାହାଙ୍କ ସ୍ତୁତି ପଢ଼ିବ ଶ୍ରଦ୍ଧାରେ ।
ଶାନ୍ତଚେତା ଯୋଗୀ ଯେବେ ତାଙ୍କୁ ଧ୍ୟାନକରେ
ଛଅମାସେ ଯୋଗସିଦ୍ଧି ହୁଅଇ ତାହାର ।
ପୂଜାକଲେ ବ୍ରହ୍ମହତ୍ୟା ପାପ ହୋଏ ଦୂର ॥
ପିଶାଚ ମୋଚନ କୁଣ୍ଡ ସ୍ନାନଫଳ ଶୁଣ ।
ପୂର୍ବେ ସେହି କ୍ଷେତ୍ରେ ଥିଲା ଏକଇ ବ୍ରାହ୍ମଣ ॥
ତାର ନାମ ଶଙ୍କୁକର୍ଣ୍ଣ ସେହି ତପୀବର ।
ବ୍ରତ ନିୟମରେ ମନ ଥାଏ ନିରନ୍ତର ॥
ଶଙ୍କରଙ୍କୁ ପୂଜାକରେ ସେ ବ୍ରାହ୍ମଣ ନିତ୍ୟେ ।
ଓଁକାରେଶ୍ୱରଙ୍କୁ ପୂଜା କରଇ ନିରତେ ॥
ପରମବ୍ରହ୍ମରୂପୀ ସେ ପରମେଶ୍ୱର ।
ତାହାଙ୍କ ପାଖରୁ ଦୀକ୍ଷା ପାଇ ନିରନ୍ତର ॥
ଯୋଗ ସାଧନା କରିଣ ନାନା ଉପଚାରେ ।
ପୁଷ୍ପ ଧୂପ ପ୍ରଦକ୍ଷିଣ ଆଦି ନମସ୍କାରେ ॥
ପୂଜା କରୁଥାଏ ସେହି ଦ୍ୱିଜ ଶଙ୍କୁକର୍ଣ୍ଣ ।
ଏକ ଦିନକର କଥା ମନଦେଇ ଶୁଣ ॥
ଏକ ସମୟରେ ଏକ ପିଶାଚ ଦେଖିଲା ।
ଦେଖି ସେ ବ୍ରାହ୍ମଣ ତାକୁ ଭୟରେ ପୁଚ୍ଛିଲା ॥
ଅସ୍ଥି ଚର୍ମ ବିନା ଦେହେ ନାହିଁ କିଛି ତୋର
ନିଶ୍ୱାସ ତୋ ବାରମ୍ବାର ସେ ଅତି ପ୍ରଖର ॥
କ୍ଷୁଧାରେ କାତର ହୋଇ ଭୟଙ୍କର ଦିଶୁ ।
ଏମନ୍ତ ହୋଇ କିପାଇଁ ମୋ ପାଶକୁ ଆସୁ ॥
କିଏ ତୁମ୍ଭେ କହ କାହୁଁ ଅଇଲ ମୋ ଆଗେ
କ୍ଷୁଧାରେ ଆତୁର ହୋଇ ସେ ପିଶାଚ ବେଗେ
ବୋଇଲା ବିପ୍ର କୁଳରେ ଜନମ ମୋହର ।
ଧନଧାନ୍ୟ ରତ୍ନାଦିରେ ପୂରିଥିଲା ଘର ॥
ପୁତ୍ର ନାତି ଆଦି ମୋର କୁଟୁମ୍ବ ବହୁତ ।
ସେମାନଙ୍କୁ ପୋଷିବାରେ ସବୁବେଳେ ବ୍ୟସ୍ତ
ଦେବତା ଗୋରୁ ଅତିଥି ପୂଜା ମୁଁ ନ କରେ
କି କହିବି ତୁମ୍ଭ ଆଗେ ତା ମନେ ନ ଧରେ ॥
ଅଳପେ ବହୁତେ କିଛି ପୁଣ୍ୟ କରି ନାହିଁ ।
ଏକ ସମୟରେ ବାରାଣସୀ କ୍ଷେତ୍ରେ ଯାଇଁ ॥
କରିଥିଲି ବିଶ୍ୱେଶ୍ୱର ଦେବ ଦରଶନ ।
ବୃଷଭ ଈଶ୍ୱର ଘୋଡା ଯାହାଙ୍କ ବାହନ ॥
ତାହାଙ୍କ ଛୁଇଁ ସାଷ୍ଟାଙ୍ଗେ କଲି ନମସ୍କାର ।
ତହୁଁ ଅଳପ କାଳେ ମୁଁ ଛାଡ଼ିଲି ଶରୀର ॥
ଯମ ଭୁବନେ ନ ଯାଇ ପିଶାଚ ହୋଇଲି ।
କ୍ଷୁଧା ତୃଷାରେ ଆକୁଳ ହୋଇଣ ବୁଲିଲି ॥
ହିତାହିତ ଜ୍ଞାନ କିଛି ନ ରହିଲା ମୋର ।
ତୁମ୍ଭ ପାଖକୁ ଆସିଛି ଆହେ ମୁନିବର ॥
ଏଥିରୁ ଉଦ୍ଧାର ମୁହିଁ ହୋଇବି କେମନ୍ତେ ।
ବିସ୍ତରି କହନ୍ତୁ ପ୍ରଭୁ କୃପା କରି ମୋତେ ॥
ହେ ପ୍ରଭୁ ତୁମ୍ଭ ଚରଣେ ପଶିଲି ଶରଣ ।
ପିଶାଚ ମୁଖୁ ଏମନ୍ତ ଶୁଣି ଶଙ୍କୁକର୍ଣ୍ଣ ॥

ବୋଇଲେ ତୋ'ତୁଲ୍ୟ ପୁଣ୍ୟଜନ ନାହିଁ ଜଣେ
ଯେଣୁ ତୁମ୍ଭେ ଦେଖି ଅଛ ଶିବଙ୍କୁ ନୟନେ ॥
ଆଚର'ବଶେଶ୍ୱରଙ୍କ କରନ୍ତ ଯେ ସ୍ତୁତ ।
ଛୁଇଁଛ ଯେଣୁ ତୁମ୍ଭର ପୁଣ୍ୟ ଅସରନ୍ତ ॥
ଏ ମହୀରେ ନାହିଁ ତୁମ୍ଭ ତୁଲ୍ୟ ଜଣେ କେହି
ସେ ପୁଣ୍ୟ ବଳରେ କ୍ଷେତ୍ର ମାଡ ଏଥେ ରହି
ଏବେ ଏହି କୁଣ୍ଡେ ପଶି କର ତୁମ୍ଭେ ସ୍ନାନ ।
ପିଶାଚ ଯୋନରୁ ତୁମ୍ଭେ ପାଇବ ମୋଚନ ॥
ଦୟା କରି ମୁନି ତାକୁ କହନ୍ତେ ଏମନ୍ତ ।
କୁଣ୍ଡେ ପଶି ସ୍ନାନ କଲା ପିଶାଚ ତୁରତ ॥
ତତକ୍ଷଣେ ପ୍ରାପତ ଆସେହ ବମାନ ।
ନାନାବିଧ ଆଭରଣେ ହୋଇଣ ଭୂଷଣ ॥
ଲଲାଟରେ ଚନ୍ଦ୍ରରେଖା ଅତି ଶୋଭୁପାଏ ।
ସୂର୍ଯ୍ୟ ତୁଲ୍ୟ ତେଜାବନ୍ତ ସେହି ଦେଖାଯାଏ
ବେଢି ଛନ୍ତି ବାଳଖିଲ୍ୟା ଆଦି ଋଷିଗଣ ।
ତତ୍ତ୍ୱଜ୍ଞାନୀ ରୁଦ୍ରଗଣ ସଙ୍ଗେ ଯୋଗିଗଣ ॥
ଦେବରୂପୀ ସେ ପିଶାଚ ଉଦେ ହେବା ବେଳେ
ଦେବତାଙ୍କ ମଧେ ଭାନୁ ପ୍ରାୟ ବିରାଜିଲେ ॥
ଆକାଶ ମଣ୍ଡଳେ ଥାଇ ଦେବ ସିଦ୍ଧ ଗଣ ।
ସ୍ତୁତି କଲେ ଅପସରା ନୃତ୍ୟ କଲେ ପୁଣ ॥
ଗନ୍ଧର୍ବ କିନ୍ନର ବିଦ୍ୟାଧର ଆଦି ଯେତେ ।
ଫୁଲ ପାଣି ବୃଷ୍ଟି କଲେ ରହି ଶୂନ୍ୟ ପଥେ ॥
ଶ୍ରୀ ରୁଦ୍ରଙ୍କ ପ୍ରସାଦରୁ ତତ୍ତ୍ୱଜ୍ଞାନ ପାଇ ।
ରୁଦ୍ର ମଣ୍ଡଳେ ପ୍ରବେଶ ହୋଇଲା ସେ ଯାଇ ॥
ସାକ୍ଷାତେ ମୁନି ତା ଦେଖି ଆନନ୍ଦିତ ମନେ ।
ସ୍ତୁତି କଲେ କପର୍ଦ୍ଦୀଙ୍କି ପ୍ରଣମି ଚରଣେ ॥
ଘରଠାରୁ ପର ତୁମ୍ଭେ ରକ୍ଷକ ଆବର ।
ପୁରାଣ ପୁରୁଷ ଯୋଗେଶ୍ୱର ଯୋଗୀଶ୍ୱର ॥
ଆଦିତ୍ୟ ଅଗ୍ନି ଈଶ୍ୱର ତୁମ୍ଭେ କପର୍ଦ୍ଦୀଶ ।
ବୃଷଭ ବାହନ ଦେବଦେବ ହେ ମହେଶ ॥
ଶରଣ ପଶିଲି ତୋର ଚରଣ କମଳେ ।
ପାରବ୍ରହ୍ମ ରହିଛ ତୋ ହୃଦୟ ମଣ୍ଡଳେ ॥
ହିରଣ୍ମୟ ଯୋଗୀ ତୁମ୍ଭେ ଆଦି ତୁମ୍ଭେ ଅନ୍ତ ।
ମହାମୁନି ବ୍ରହ୍ମମୟ ତୁମ୍ଭେ ଦିବ ସ୍ଥିତ ॥
ପବର୍ଗ ରୁଦ୍ର ତୋହର ଚରଣେ ଶରଣ ।
ସହସ୍ରେ ନୟନ ଶିର ସହସ୍ରେ ଚରଣ ॥

ନମୋ ନମୋ ତ୍ରିନୟନ ଶମ୍ଭୁ ବ୍ରହ୍ମ ପାର ।
ହିରଣ୍ୟ ଗର୍ଭର ପତି ତମ ତହୁଁ ପର ॥
ଜଗତର ଉତପତ୍ତି ପ୍ରଳୟ କାରଣ ।
ଶରଣ ଶରଣ ନାଥ ତୋହର ଶରଣ ॥
ସକଳ ଆଧାର ଅଛ ଜଗତ ଈଶ୍ୱର ।
ଶରଣ ଶରଣ ତୋର ଅଭୟ ପୟର ॥
ନେତ୍ର ନୋହୁ ଜ୍ୟୋତି ନୋହୁ ଜ୍ଞାନର ତୁ ପତି
ଆପେ ଆପେ ହେଉ ନାଥ ତୁହି ଉତପତ୍ତି ॥
ତୋ ତହୁଁ ଆନ ଯେ କିଛି ନାହିଁ ତ୍ରିଜଗତେ ।
ଶରଣ ଶରଣ ନାଥ ତୋର ପାଦଗତେ ॥
ଯୋଗିଙ୍କର ଯୋଗ ତୁହି ତ୍ୟାଗିଙ୍କର ତ୍ୟାଗ ।
ତୋତେ ଆଶ୍ରା କରି ଯୋଗୀ ତେଜି ଅନୁରାଗ
ନିର୍ବିକଳ୍ପ ସମାଧିକି ଲଭି ଯୋଗ ସାଧି ।
ପରମ ଆତ୍ମା ସ୍ୱରୂପ ହୋଇ ଅବରୋଧୀ ॥
ତୋତେ ଯେ ଦେଖି ପାରନ୍ତି ତୁହି ମହେଶ୍ୱର
ଶରଣ ଶରଣ ନାଥ ଅଭୟ ପୟର ॥
ଅକଳିତ ନାମ ତୋର ଅନାମ ବୋଲାଉ ।
ଆଦି ପୁରୁଷ ତୁ ପୁଣି ଅନାଦି ଯେ ହେଉ ॥
ଚକ୍ଷୁ ଅଗୋଚର ରୂପ ଅଟଇ ତୋହର ।
ଶରଣ ଶରଣ ନାଥ ଅଭୟ ପୟର ॥
ବ୍ରହ୍ମା ତୋ ପାଦେ ନମଇ ଶରଣ ପଶଇ ।
ସକଳ ବ୍ୟାପିରହିଛୁ ଦେହ ତୋର ନାହିଁ ॥
ଜାତ ଅଜାତ ତୋହର ନାହିଁ ତୁହି ଏକ ।
ବେଦମତରେ ହେ ନାଥ ସ୍ୱରୂପ ଅନେକ ॥
ଜ୍ଞାନମୟ ପ୍ରଭୁ ତୋର ଚରଣେ ଶରଣ ।
ତୁହି ବ୍ରହ୍ମପାର ତୁହି ପୁରୁଷ ପୁରାଣ ॥
ଜ୍ୟୋତିରେ ଜ୍ୟୋତି ମିଶାଇ ଦେବେ ପ୍ରଣମନ୍ତି
ଜ୍ୟୋତିରୂପ କାଳ ତୁହି ବୃହତ ପ୍ରକୃତି ॥
ତୁହି ବ୍ରହ୍ମପାର ଶମ୍ଭୁ ଶରଣ ତୋହର ।
ଶରଣ ମାଗୁଛି ମୁହିଁ ଈଶଙ୍କ ପୟର ॥
ସ୍ଥାଣୁ ପୁରାଣ ଗିରିଶ ପାଦ ଆଶ୍ରାକର ।
ଚନ୍ଦ୍ର ମଉଳି ତୋହର ଶିବ ତ୍ରିପୁରାରି ॥
ପିନାକୀ ଦେବ ଚରଣେ ପଶିଲି ଶରଣ ।
ଏମନ୍ତେ ସ୍ତୁତି କରିଣ ବିପ୍ର ଶଙ୍କୁକର୍ଣ୍ଣ ॥
ଦଣ୍ଡବତ କରି ଭୂମିଉପରେ ଗଡ଼ିଲା ।
ପ୍ରଣବ ମନ୍ତ୍ରକୁ ବାର ବାର ଉଚ୍ଚାରିଲା ॥

ତହିଁ ଏକ ଶିବ ଲିଙ୍ଗ ଦୃଶ୍ୟହୋଇଲା ତାଙ୍କୁ ।
ନିରେଖି ରହିଲେ ବିପ୍ର ଟେକି ବଦନକୁ ॥
କୋଟି ଜ୍ୱାଳା ଜ୍ୟୋତିର୍ମୟ ଅଗ୍ନି ପ୍ରାୟ ଜଳେ ।
ଆନନ୍ଦ ଚିନମୟଙ୍କୁ ଦେଖି ବିପ୍ର ହୋଇଲେ ॥
ତତକ୍ଷଣେ ମୋକ୍ଷ ପାଇଲା ଦ୍ୱିଜ ଶଙ୍କୁକର୍ଣ୍ଣ ।
ମିଳିଲା ଆତ୍ମା ବିମଳ ଲିଙ୍ଗେ ହୋଇଲା ଲୀନ ॥
କପର୍ଦ୍ଦୀର ମହିମା ଏ ଅତି ଆଚମ୍ବିତ ।
ତୁମ୍ଭ ଆଗରେ କହିଲି ଏ ଅତି ଗୁପତ ॥
ତମଗୁଣୀ ବହି ଜନେ ନ ଜାଣନ୍ତି ଏହା ।
ପଣ୍ଡିତଙ୍କୁ ବିଚଳିତ କରେ ମୋହ ମାୟା ॥
ଏ ପାପ ନାଶିନୀ କଥା ଯେ ନିତି ଶୁଣଇ ।
ପାପ ଛାଡ଼ି ଯାଇ ଆତ୍ମା ପବିତ୍ର ହୁଅଇ ॥
ଏହି ବ୍ରହ୍ମପାର ନାମେ ମହାସ୍ତବ ଗୋଟି ।
ପଢ଼ଇ ଶଉଚ ହୋଇ ପ୍ରଭାତୁ ଯେ ଉଠି ॥
କିବା ମଧ୍ୟାହ୍ନ କାଳରେ ସନ୍ଧ୍ୟା ସମୟରେ ।
ପରମ ଯୋଗ ପ୍ରାପତ ହୁଅନ୍ତି ସେ ନରେ ॥
ନାରଦ ମୁନି କହିଲେ ଆହେ ମହାରାୟେ ।
ମଧ୍ୟମେଶ ନାମେ ଲିଙ୍ଗ ଅଛି ତାହାପ୍ରାୟେ ॥
ରୁଦ୍ରଗଣ ସଙ୍ଗେ ଘେନି ଦେବ ମହେଶ୍ୱର ।
କ୍ରୀଡ଼ା କରନ୍ତି ଦେବୀଙ୍କ ସଙ୍ଗେ ନିରନ୍ତର ॥
ପୂର୍ବେ ଦେବକୀନନ୍ଦନ କୃଷ୍ଣ ତହିଁ ଯାଇଁ ।
ପାଶୁପତ ଜନଙ୍କର ସଙ୍ଗତରେ ଥାଇ ॥
ଭସ୍ମ ଅଙ୍ଗେ ବୋଳିହୋଇ ବରଷେ ରହିଲେ
ଶତରୁଦ୍ର ପଢ଼ି ପାଶୁପତ ବ୍ରତ କଲେ ॥
ମହାଶମ୍ଭୁ ପୂଜାକରି ବହୁତ କଠୋରେ ।
ବ୍ରହ୍ମଚାରୀ ଶିବଙ୍କର ଶିଷ୍ୟ ସହିତରେ ॥
ତାଙ୍କ ମୁଖୁଁ ଜ୍ଞାନ ପାଇ ବିଶ୍ୱଆତ୍ମା ହରି ।
ଶିବ ପୂଜନ୍ତେ ଦର୍ଶନ ଦେଲେ ତ୍ରିପୁରାରି ॥
ତହୁଁ ଶ୍ରୀକୃଷ୍ଣଙ୍କୁ ଦେଲେ ଏହିରୂପେ ବର ।
ମହୀରେ ଯେତେ ଭକତ ଅଛନ୍ତି ମୋହର ॥
ଗୋବିନ୍ଦଙ୍କୁ ପୂଜାକଲେ ପାଇଲେ ସୁଜ୍ଞାନ ।
ଏ କଥାରେ ସନ୍ଦେହ ତୁ ତିଳେହେଁ ନ ମଣ
ଏ ଚଉଦ ବ୍ରହ୍ମାଣ୍ଡରେ ଚରାଚର ପ୍ରାଣୀ ।
ଗୋବିନ୍ଦ ପୂଜା କରିବେ ପ୍ରଣମିବେ ପୁଣି ॥
ଗୋବିନ୍ଦ ଚିନ୍ତିବା ଜନେ ମୋର ପରସାଦେ
ଘୋର ଦୁସ୍ତରୁ ନିସ୍ତରି ଯିବେ ଅପ୍ରମାଦେ ॥

ସ୍ନାନ ସାରି ଯେ କରଇ ଶିବ ଦରଶନ ।
ତହିଁ ବ୍ରହ୍ମହତ୍ୟା ପାପୁ ହୁଅଇ ମୋଚନ ॥
ପାପୀ ଯେବେ ପଡ଼ି ତହିଁ ଜୀବନ ଛାଡ଼ଇ ।
ପରମ ପଦ ସେ ପାଇ ସୁଖରେ ରହଇ ॥
ମନ୍ଦାକିନୀ ଜଳେ ସ୍ନାନ ତରପଣ କରି ।
ମଧ୍ୟମେଶ୍ୱର ଲିଙ୍ଗକୁ ଯେହୁ ପୂଜା କରି ॥
ଏ ଚଉଦ ବ୍ରହ୍ମାଣ୍ଡରେ ଧନ୍ୟ ସେହି ଜନ ।
ତହିଁ ଯେ ଜନ କରଇ ନିତ୍ୟେ ସ୍ନାନ ଦାନ ॥
ତପ ଶ୍ରାଦ୍ଧ ପିଣ୍ଡ ଆଦି ଆବର କରଇ ।
ଆସପତ କୁଳ ସେହୁ ନିକୁ ଉଦ୍ଧାରଇ ॥
ସୂର୍ଯ୍ୟପରାଗ ଦିନ ଯେ କରେ ତହିଁ ସ୍ନାନ ।
ଗ୍ରହଣ ସ୍ନାନ ଫଳରୁ ପାଇ ଦଶଗୁଣ ॥
ମଧ୍ୟମେଶ୍ୱର ମହିମା କହିଲି ବୁଝାଇ ।
ଶ୍ରଦ୍ଧା ଭକତିରେ ଏହା ଯେ ଜନ ଶୁଣଇ ॥
ବାରାଣସୀ ତୀର୍ଥ ଛଡ଼ା ଆଉ ତୀର୍ଥ ଯେତେ ।
ତହିଁ ସ୍ନାନ କଲେ ଫଳ ହୁଅଇ ଯେମନ୍ତେ ॥
ସେ ସବୁ ଏକାଠି କଲେ ଯେତେ ଫଳ ହୋଇ
ଏହା ଶୁଣୁଥିବା ଜନ ସେ ଫଳକୁ ପାଇ ॥
ବାରାଣସୀ କ୍ଷେତ୍ରେ ଅଛି ଯେତେ ତୀର୍ଥବର ।
କହୁଅଛି ମନଦେଇ ଶୁଣ ଯୁଧିଷ୍ଠିର ॥
ପ୍ରୟାଗ ତୀର୍ଥେ ଆବର ବିଶ୍ୱରୂପ ତୀର୍ଥ ।
କାଳ ତୀର୍ଥ ଯେ ଆକାଶ ନାମେ ମହାତୀର୍ଥ ॥
ବୃଷଭ ତୀର୍ଥ ସୁନୀଳ ତୀର୍ଥ ଦ୍ରାଙ୍ଗାଦିତ୍ୟ ।
ଗଉରୀ ତୀର୍ଥ ଆବର ସ୍ୱର୍ଗଦ୍ୱାର ତୀର୍ଥ ॥
ଜମ୍ବୁକେଶ୍ୱର ଆବର ଗଙ୍ଗା ତୀର୍ଥ ସାର ।
ଧର୍ମତୀର୍ଥ ବାନୁତୀର୍ଥ କଳମ୍ବ ଈଶ୍ୱର ॥
ଗୁହ୍ୟଜ୍ଞାନ ତୀର୍ଥ ସୂର୍ଯ୍ୟ ନାଗ ଆଉ ବ୍ୟୋମ ।
ଶୁଭଫମୂର୍ତ୍ତିକ ତୀର୍ଥ ତୀର୍ଥ ଅଗ୍ନି ଯମ ॥
ସୂର୍ଯ୍ୟ ତୀର୍ଥ ଯେ ପର୍ବତ ତୀର୍ଥ ମଣିକର୍ଣ୍ଣି ।
ଘଟୋତ୍କଚ ତୀର୍ଥରାଜ ସବୁହିଁ ପରମ ॥
ପିତାମହ ତୀର୍ଥ ଗଙ୍ଗା ଶ୍ରୀତୀର୍ଥ ଆବର ।
ଯଯାତି ତୀର୍ଥ ଦେବେଶ ତୀର୍ଥ ସୋମେଶ୍ୱର ॥
ସବୁ ତୀର୍ଥ ମଧ୍ୟେ ସାର ଯେଉଁ ବ୍ରହ୍ମତୀର୍ଥ ।
ଏ ତୀର୍ଥର କଥା ତୁମ୍ଭେ ଶୁଣ ନରନାଥ ॥
ପୂର୍ବେ ବ୍ରହ୍ମା ଏକ ଶିବଲିଙ୍ଗ ଘେନି ଆସି ।
ସେହି ତୀର୍ଥବର ବ୍ରହ୍ମତୀର୍ଥରେ ପ୍ରବେଶି ॥

ଶିବଲିଙ୍ଗଙ୍କୁ ଥାପିବା ପାଇଁ ତହିଁ ଥୋଇ ।
ସ୍ନାନର ନିମନ୍ତେ ତହୁଁ ଗଲେ ବେଦସାଇଁ ॥
ଏ ସମୟେ ବିଷ୍ଣୁ ଆସି କଲେକ ସ୍ଥାପନ ।
ବ୍ରହ୍ମା ସେ ତୀର୍ଥରେ ପଶି କରି ସାରି ସ୍ନାନ ॥
ଦେଖିଲେ ବିଷ୍ଣୁ ସେ ଲିଙ୍ଗ ଥାପିଲେଣି ତହିଁ ।
ବ୍ରହ୍ମା ଏମନ୍ତ ବୋଇଲେ ବିଷ୍ଣୁ ମୁଖ ଚାହିଁ ॥
ମୁହିଁ ଆଣିଥିଲି ତୁମ୍ଭେ ଥାପିଲ କପାଇଁ ।
ବିଷ୍ଣୁ ବୋଇଲେ ହୋ ଶୁଣ ତୁମ୍ଭେ ବେଦସାଇଁ ॥
ତୁମ୍ଭଠାରୁ ଅଧିକତର ମୁଁ ରୁଦ୍ରଭକତ ।
ଏଣୁ ଏଠାରେ ଏ ଲିଙ୍ଗ କଲି ପ୍ରତିଷ୍ଠିତ ॥
ତୁମ୍ଭ ନାମରେ ଏ ତୀର୍ଥଗୋଟି ହୋଉ ଖ୍ୟାତ ।
ସେ ଦିନୁ ତାହାର ନାମ ହୋଇଲା ବ୍ରହ୍ମତୀର୍ଥ ॥
ଧର୍ମ ସମୁଦ୍ଭବ ତୀର୍ଥ ତୀର୍ଥ ଭୂତେଶ୍ୱର ।
ଗନ୍ଧର୍ବ ତୀର୍ଥ ବାହ୍ନେୟ ତୀର୍ଥ ଯେ ଆବର ॥
ଦୌର୍ବାସିକ ତୀର୍ଥ ବ୍ୟୋମ ତୀର୍ଥ ଚନ୍ଦ୍ର ତୀର୍ଥ ।
ଚିତ୍ରାଙ୍ଗଦେଶ୍ୱର ତୀର୍ଥ ପୁଣ୍ୟ ନରନାଥ ॥
ଉଗ୍ର ତୀର୍ଥ ସାରସ୍ୱତ ତୀର୍ଥ କାଳଞ୍ଜର ।
ପ୍ରହ୍ଲସ କେଦାର ତୀର୍ଥ ବିଦ୍ୟାଧରେଶ୍ୱର ॥
କୋକିଳାଖ୍ୟ ତୀର୍ଥ ମହାଳୟ ଭଦ୍ରକର୍ଣ୍ଣୀ ।
ହିରଣ୍ୟଗର୍ଭ ଯେ ମହାଳୟ ତ୍ରିଲୋଚନ ।
ଉପଶାନ୍ତ ଶିବ ତୀର୍ଥ ଗୋପ୍ରେକ୍ଷ ଆବର ।
ବ୍ୟାଘ୍ରେଶ୍ୱର ଲୋଲାର୍କ ଯେ ଦୁଇ ତୀର୍ଥବର ॥
ବ୍ରହ୍ମହତ୍ୟା ବିନାଶନ କପାଳ ମୋଚନ ।
ବାରାଣସୀରେ ଏ ସବୁ ତୀର୍ଥ ହେ ରାଜନ ॥
ଶୁକ୍ରେଶ୍ୱର ଆଦି ଆଉ ତୀର୍ଥ ଛନ୍ତି ଯେତେ ।
ନ ସରିବ ଶତକୋଟି କଳ୍ପ ପରଯନ୍ତେ ॥
ବିସ୍ତାରି କହି ନୁହଇ ଆହେ ଯୁଧିଷ୍ଠିର ।
ବୋଲେ ଗୋପୀନାଥ ଶିବ ଶିବ ନିରନ୍ତର ॥
ସେ ଶିବ ଚରଣତଳେ ରହୁ ମୋର ମତି ।
ଏହି କଥା ଭାବୁଥାଇ ମୁହିଁ ଦିବାରାତି ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଶଙ୍କୁକର୍ଣ୍ଣୋ-
ପାଖ୍ୟାନଂ ନାମ ଅଷ୍ଟାଦଶୋଽଧ୍ୟାୟଃ ॥

# ଊନବିଂଶ ଅଧ୍ୟାୟ ।

## ଗୟା ପ୍ରଭୃତି ତୀର୍ଥ ବର୍ଣ୍ଣନ ।

ନାରଦ କହନ୍ତି ଆହେ ଧର୍ମ ଯୁଧିଷ୍ଠିର ।
ବାରାଣସୀର ମହିମା ଅଟଇ ଅପାର ॥
ସଂକ୍ଷେପି କହିଲି ତୁମ୍ଭ ଆଗେ କହି ମୁହିଁ ।
ତହୁଁ ପୁଣି ଯିବ ଯତ୍ନ ବ୍ରହ୍ମଚାରୀ ହୋଇ ॥
ପ୍ରଶସ୍ତ ଗୟାତୀର୍ଥରେ ପ୍ରବେଶ ହୋଇବ ।
ଅଶ୍ୱମେଧ ଯଜ୍ଞଫଳ ତକ୍ଷଣେ ପାଇବ ॥
ଅକ୍ଷୟବଟ ନାମରେ ବଟେକ ଅଛଇ ।
ତହିଁ ଯେ ପିତୃଲୋକଙ୍କ ପିଣ୍ଡ ବାଢ଼ି ଦେଇ ॥
ତାହାର ସେ ପିତୃଲୋକେ ହୁଅନ୍ତି ଅକ୍ଷୟ ।
ମହାନଦୀ ଜଳେ ସ୍ନାନ କରି ମହାଶୟ ॥
ଦେବତା ପିତୃଦେବଙ୍କୁ କରିବ ତର୍ପଣ ।
ଅକ୍ଷୟ ଲୋକ ପାଇବେ ତାର ପିତୃଗଣ ॥
ଆପଣା କୁଳ ଉଦ୍ଧାରି ତହୁଁ ପୁଣି ଯିବ ।
ବ୍ରହ୍ମାରଣ୍ୟେ ବ୍ରହ୍ମସର ତୀର୍ଥେ ପହୁଞ୍ଚିବ ॥
ରାତ୍ରି ଅନ୍ତେ ପୁଣ୍ଡରୀକ ଯଜ୍ଞ ଫଳ ପାଇ ।
ଏହି ସରେ ବ୍ରହ୍ମା ଯୂପ କାଠ ପୋତି ଦେଇ ॥
ସେହି ଯୂପ ପ୍ରଦକ୍ଷିଣ କଲେ ମାତ୍ରେ ଜନ ।
ବାଜପେୟ ଯଜ୍ଞଫଳ ପାଇବ ତକ୍ଷଣ ॥
ଧେନୁକ ତୀର୍ଥକୁ ତହୁଁ ଯିବ ହେ ରାଜନ ।
ଏକରାତ୍ର ରହି ତହିଁ କରି ଧେନୁଦାନ ॥
ସକଳ ପାପ ଛଡ଼ାଇ ସୋମଲୋକ ପାଇ ।
ଆଜଯାଏ ତହିଁ ଏକ ଚିହ୍ନ ଯେ ଅଛଇ ॥
ବାଛୁରୀ ଘେନି କପିଳା ଚରିଲେ ପର୍ବତେ ।
ପାଦଚିହ୍ନ ପଡ଼ିଅଛି ଦେଖିବ ସାକ୍ଷାତେ ॥
ସେ ପାଦ ଚିହ୍ନ ଛୁଇଁବା ମାତ୍ରେ ନୃପବର ।
ସାଙ୍ଗେ ସାଙ୍ଗେ ସବୁ ପାପ ହୋଇଯିବ ଦୂର ॥
ତହୁଁ ଯିବ ଯହିଁ ଶୂଳଧାରୀ ଶିବସ୍ଥାନ ।
ଗୃଧ୍ରବଟ ନାମେ ତହିଁ ତୀର୍ଥେକ ପ୍ରଧାନ ॥
ବୃଷଭଧ୍ୱଜଙ୍କୁ ତହିଁ ଦରଶନ କରି ।
ଭସ୍ମ ସ୍ନାନ କଲାମାତ୍ରେ ଆହେ ଦଣ୍ଡଧାରୀ ॥
ବ୍ରାହ୍ମଣ ଯେ ବାରବର୍ଷ ବ୍ରତ ଫଳ ପାଇ ।
ଅନ୍ୟ ଜାତଙ୍କର ସବୁ ପାପ କ୍ଷୟ ଯାଇ ॥

ତହୁଁ ଯେ ଯାଇଁ ଉଦ୍ୟନ୍ତ ପର୍ବତେ ଉଠିବ ।
ସେ ପର୍ବତେ ଗୀତ ବାଦ୍ୟ ନାଦ ଯେ ଶୁଣିବ ॥
ସବିତାର ପାଦ ଚିହ୍ନ ପଡ଼ିଛି ଦେଖିବ ।
ତହିଁ ବ୍ରତୀ ହୋଇ ସନ୍ଧ୍ୟା ପୂଜା ଯେ ସାରିବ ॥
ବାର୍‌ବର୍ଷ ସନ୍ଧ୍ୟାଫଳ ପାଇବ ତକ୍ଷଣେ ।
ତହୁଁ ଯୋନି ଦ୍ୱାର ତୀର୍ଥ କରିବ ଯତନେ ॥
ସେ ତୀର୍ଥ ମାଡ଼ିଲେ ଯୋନିଜନମ ନ ହେବ ।
ଗୟାରେ ଯେ ଶୁକ୍ଳ କୃଷ୍ଣପକ୍ଷ କଟାଇବ ॥
ସପତ କୁଳ ପବିତ୍ର କରିବ ନିଶ୍ଚୟ ।
ବହୁତ ପୁତ୍ର କାମନା କରିବ ହେ ରାୟ ॥
ବହୁତ ପୁତ୍ର ହୋଇଲେ କେହି ଏକ ଯାଇ ।
ପିଣ୍ଡଦାନ କରିବ ଯେ ଗୟାତୀର୍ଥେ ରହି ॥
କିବା ନୀଳବୃଷ ଏକ ଉତ୍ସର୍ଗ କରିବ ।
ତହୁଁ ତୀର୍ଥବାସୀ ଜନ ଫଲ୍‌ଗୁ ତୀର୍ଥେ ଯିବ ॥
ତହିଁ ଅଶ୍ୱମେଧ ଯଜ୍ଞ କଲା ଫଳ ପାଇ ।
ପରମ ସିଦ୍ଧି ଲଭିବ ପୁଣି ନୃପସାଇଁ ॥
ତହୁଁ ଏକଧାତେନ ଯିବ ଧର୍ମପୃଷ୍ଠ ତୀର୍ଥେ ।
ଏ ତୀର୍ଥେ ଧର୍ମଦେବତା ଥାଆନ୍ତି ନିରତେ ॥
ବିଧି ଅନୁସାରେ ତହିଁ ଧର୍ମ ପୂଜାକରି ।
ଅଶ୍ୱମେଧ ଫଳ ପାଇ ତହୁଁ ଦଣ୍ଡଧାରୀ ॥
ବ୍ରହ୍ମାର ଉତ୍ତର ତୀର୍ଥେ କରିବ ଯେ ବ୍ରତ ।
ବ୍ରହ୍ମାଙ୍କୁ ପୂଜା କରିବ ତହିଁ ହେ ଭାରତ ॥
ରାଜସୂୟ ଅଶ୍ୱମେଧ ଯାଗ ଫଳ ପାଇ ।
ତହିଁ ତୀର୍ଥବାସୀ ରାଜଗୃହ ତୀର୍ଥେ ଯାଇ ॥
ସ୍ନାନକରି ଅଗ୍ନି ପ୍ରାୟ ଦିଶିବ ଉଜ୍ଜ୍ୱଳ ।
ଯକ୍ଷିଣୀର ଯେଉଁ ତୀର୍ଥ ନିତ୍ୟ ବାସସ୍ଥଳ ॥
ସେ ତୀର୍ଥେ ସ୍ନାନ କରିଣ ଶୁଚିମନ୍ତ ହୋଇ ।
ଯକ୍ଷିଣୀ ପ୍ରସାଦେ ବ୍ରହ୍ମହତ୍ୟା ପାପ ଯାଇ ॥
ତହୁଁ ମଣିନାଗ ତୀର୍ଥ କରିବ ରାଜନ ।
ଗୋ ସହସ୍ର ଦାନ ଫଳ ପାଇ କଲେ ସ୍ନାନ ॥
ମଣିନାଗଙ୍କ ନିର୍ମାଲ୍ୟ ପ୍ରସାଦ ପାଇଲେ ।
ବିଷ ଦେହେ ନ ଘାରିବ ସାପ କାମୁଡ଼ିଲେ ॥
ରାତଏ ରହି ସକଳ ପାତକ ଛଡ଼ାଇ ।
ବ୍ରହ୍ମର୍ଷି ଗଉତମ ତୀର୍ଥବଟର ଯାଇଁ ॥
ଅହଲ୍ୟା ହ୍ରଦରେ ପଶି କରିବ ଯେ ସ୍ନାନ ।
ପରମ ଗତିକ ପାଇ ସେଠାରୁ ରାଜନ ॥

ଶ୍ରୀତୀର୍ଥକୁ ଯାଇଣ ଯେ ଶ୍ରୀ ଲଭିକରି ।
ତହୁଁ ଯିବ ଉଦପାନ ତୀର୍ଥେ ଦଣ୍ଡଧାରି ॥
ତହିଁ ସ୍ନାନ କରି ଅଶ୍ୱମେଧ ଫଳ ପାଇ ।
ରାଜର୍ଷି ଜନକର କୂପେ ବୁଡ଼ଦେଇ ॥
ତ୍ରିଦଶ ଦେବେ ବୁଡ଼ନ୍ତି ସେ କୂପରେ ନିତ୍ୟ ।
ବଇକୁଣ୍ଠେ ଯିବ ହୋଇ ବିଷ୍ଣୁର ଭକତ ॥
ତହୁଁ ବିମୋଚନ ତୀର୍ଥେ ଯିବ ଦଣ୍ଡଧର ।
ସେ ସର୍ବ ପାପ ମୋଚନକାରୀ ତୀର୍ଥବର ॥
ଅଶ୍ୱମେଧ ଯାଗ ଫଳ ପାଇ ତୀର୍ଥ ସ୍ନାନେ ।
ସୋମ ଲୋକରେ ବସିବ ଦେହ ଅବସାନେ ॥
ସବୁ ତୀର୍ଥ ଜଳରୁ ଯେ ଉତ୍ପନ୍ନ ଅଛଇ ।
ତା ନାମ ଗଣ୍ଡକୀ ନଈ ସେ ତୀର୍ଥକୁ ଯାଇ ॥
ବାଜପେୟ ଯଜ୍ଞ ଫଳ ପାଇ ତୀର୍ଥ ସ୍ନାନେ ।
ସୂର୍ଯ୍ୟ ଲୋକରେ ବସିବ ଦେହ ଅବସାନେ ॥
ତହୁଁ ଧ୍ରୁବ ତପୋବନେ ଯିବ ହେ ରାଜନ ।
ଗୁହ୍ୟକ ମେଳେ ବସିବ ତହିଁ କଲେ ସ୍ନାନ ॥
ତହୁଁ ନର୍ମଦା ନଦୀର ସିଦ୍ଧ ତୀର୍ଥେ ଯାଇଁ ।
ସ୍ନାନ କରି ପୁଣ୍ଡରୀକ ଯଜ୍ଞ ଫଳ ପାଇ ॥
ଦେହ ଅନ୍ତେ ସୋମ ଲୋକ ଅରଜ ରାଜନ
ତହୁଁ ବିଶାଳା ନଦୀର ଜଳେ କରି ସ୍ନାନ ॥
ଅଗ୍ନିଷ୍ଟୋମ ଯଜ୍ଞ ଫଳ ସ୍ୱର୍ଗଭୋଗ ପାଇ ।
ତହୁଁ ମାହେଶ୍ୱର ନଦୀ ଧାରେ ଧରେ ଯାଇ ॥
ଅଶ୍ୱମେଧ ଯଜ୍ଞ ଫଳ ପାଇ ନଦୀସ୍ନାନେ ।
କୁଳ ଉଦ୍ଧାର କରିଣ ଯିବ ଶୁଦ୍ଧ ମନେ ॥
ଦେବ ପୁଷ୍କରିଣୀ ତୀର୍ଥେ ଦୁର୍ଗତି ନାଶିବ ।
ବାଜପେୟ ଫଳ ପାଇ ବ୍ରହ୍ମଚାରୀ ହେବ ॥
ମାହେଶ୍ୱର ପଦ ତୀର୍ଥେ ଯାଇ କରି ସ୍ନାନ ।
ଅଶ୍ୱମେଧ ଯଜ୍ଞ ଫଳ ପାଇ ହେ ରାଜନ ॥
ଶୁଣିଅଛୁଁ କୋଟି ତୀର୍ଥ ଅଛଇ ସେ ତୀର୍ଥେ ।
ପୂରାତନ କଥା ଶୁଣ କହୁଛୁଁ ଅଗ୍ରତେ ॥
ଦୁରାତ୍ମା ଅସୁର ଏକ କୂର୍ମରୂପ ଧରି ।
ସେ କୋଟି ତୀର୍ଥକୁ ନେଉଥିଲା ଚୋରିକରି ॥
ବିଷ୍ଣୁ ତାକୁ ମାରି ତାହା ଆଣିଲେ ଛଡ଼ାଇ ।
ବଇକୁଣ୍ଠ ପୁର ଗଲେ ଏ ସ୍ଥାନରେ ଥୋଇ ॥
ସେହି କୋଟି ତୀର୍ଥ ଜଳେ ସ୍ନାନ କଲା ଜନ ।
ପୁଣ୍ଡରୀକ ଯଜ୍ଞ ଫଳ ପାଇବ ରାଜନ ॥

ସେ ଫଳୁ ଦେହାନ୍ତେ ବିଷ୍ଣୁ ଲୋକ ସେ ପାଇବ
ତହୁଁ ପୁଣି ଶୁଚି ହୋଇ ଯିବ ନଲଦେବ ॥
ଯହିଁ ବାସ କରିଥାନ୍ତି ଶ୍ରୀହରି ନିରତେ ।
ବ୍ରହ୍ମା ଆଦି ଦେବଗଣ ତପୀ ଋଷି ଯେତେ ॥
ବସୁ ରୁଦ୍ର ଯେ ଆଦିତ୍ୟଗଣହିଁ ସମସ୍ତ ।
ହରିଙ୍କି ପୂଜନ୍ତି ସେହି ଶାଳଗ୍ରାମ ତୀର୍ଥ ॥
ସେ ତୀର୍ଥେ ଯାଇଁ ଅଚ୍ୟୁତ ବିଷ୍ଣୁଙ୍କୁ ପୂଜିବ ।
ଅଶ୍ୱମେଧ ଯଜ୍ଞ ଫଳେ ବିଷ୍ଣୁଙ୍କୁ ପାଇବ ॥
ସର୍ବ ପାପ ବିମୋଚନ ହୁଏ ଜଳପାନେ ।
ଚାରି ସମୁଦ୍ର ସେ କୂପେ ଥାନ୍ତି ସନ୍ନିଧାନେ ॥
ଆଚମନେ ବିନାଶିବ ସକଳ ଦୁର୍ଗତି ।
ବିଷ୍ଣୁଙ୍କୁ ପୂଜିଲେ ବିଷ୍ଣୁ ପାଇବ ମୁକତି ॥
ସୋମ ପ୍ରାପ୍ତି ବିରାଜନ୍ତି ଦେବ ଦେବରାୟ ।
ତହୁଁ ପୁଣି ଶୁଚିମନ୍ତ ହୋଇ ଯିବ ରାୟ ॥
ଜ୍ୟୋତିର୍ମୟ ତୀର୍ଥେ ସ୍ନାନ ତରପଣ କରି ।
ଜନ୍ମେ ଜନ୍ମେ ଜାତିସ୍ମର ହୋଇ ଦଣ୍ଡଧାରୀ ॥
ବଟେଶ୍ୱର ପୁରେ ଯାଇଁ କେଶବ ପୂଜିବ ।
ମନବାଞ୍ଛା ଫଳ ତହିଁ ସାକ୍ଷାତେ ପାଇବ ॥
ତହୁଁ ବାମନ ତୀର୍ଥରେ ଉପବାସୀ ହୋଇ ।
ହୃଷୀକେଶ ପାଦ ବନ୍ଦି ଦୁର୍ଗତି ଛୁଟାଇ ॥
ସକଳ ପାପ ଛଡ଼ାଇ ଯିବ ତହୁଁ ପୁଣି ।
ଭରତ ଆଶ୍ରମ ଯିବ ଧର୍ମ ନୃପମଣି ॥
ମହା ପାତକ ନାଶିନୀ କଉଶିକୀ ନଈ ।
ସ୍ନାନ କରି ରାଜସୂୟ ଯଜ୍ଞ ଫଳ ପାଇ ॥
ତହୁଁ ଉତ୍ତମ ଚମ୍ପକାରଣ୍ୟ ପହୁଞ୍ଚିବ ।
ଗୋ ସହସ୍ର ଦାନ ଫଳ ତତକେ ପାଇବ ॥
ପ୍ରଭାତୁ ଉଠିଣ ତହୁଁ ଯିବ ତୀର୍ଥ କରି ।
ଗୋବିନ୍ଦ ତୀର୍ଥେ ରାତିକ ଉପବାସେ ହରି ॥
ଅଗ୍ନିଷ୍ଟୋମ ଯଜ୍ଞ ଫଳ ପାଇ ତହୁଁ ଯିବ ।
ଦେବୀ ସଙ୍ଗେ ବଟେଶ୍ୱର ଦର୍ଶନ କରିବ ॥
ମିତ୍ରାବରୁଣଙ୍କ ଲୋକ ପାଇବ ଦେହାନ୍ତେ ।
ତିନି ରାତ୍ରି ଉପବାସ କରିଣ ରହନ୍ତେ ॥
ଅଗ୍ନିଷ୍ଟୋମ ଯାଗ କଲା ଫଳ ତହିଁ ପାଇ ।
ବିଶେଷେ ଅରୁଆ ଖାଇ ଯିବ ଯତି ହୋଇ ॥
କନ୍ୟା ସଂବେଦ୍ୟ ତୀର୍ଥରେ କରିବ ଯେ ସ୍ନାନ
ମନୁ ପ୍ରଜାପତି ଲୋକ ପାଇବ ରାଜନ ॥

ଅଣୁମାତ୍ର ଦାନ ଦେଲେ ସେ ତୀର୍ଥେ ଅକ୍ଷୟ ।
ଏମନ୍ତ କହିଥାନ୍ତି ଋଷିଗଣେ ମହାଶୟ ॥
ନନ୍ଦା ବାସ ତୀର୍ଥେ ଅଶ୍ୱମେଧ ଫଳ ପାଇ ।
ଦେହାନ୍ତେ ସେ ବଇକୁଣ୍ଠ ପୁରରେ ବସଇ ॥
ନନ୍ଦା ନଦୀର ସଙ୍ଗମେ ଯେ ଦିଅଇ ଦାନ ।
ଅନାମୟ ବ୍ରହ୍ମଲୋକେ କରଇ ଗମନ ॥
ତହୁଁ ବଶିଷ୍ଠ ଋଷିର ଆଶ୍ରମେ ମିଳିବ ।
ସ୍ନାନେ ବାଜପେୟ ଯଜ୍ଞ ଫଳକୁ ପାଇବ ॥
ଦେବକୂଟ ତୀର୍ଥ ତହୁଁ କରିବ ଗମନ ।
ଅଶ୍ୱମେଧ ଯଜ୍ଞଫଳ ପାଇବ ରାଜନ ॥
ଆପେ ନିଧିବ ଆପଣା କୁଳକୁ ଉଧାରି ।
କଉଶିକ ମୁନିହ୍ରଦେ ବ୍ରତ ଦଣ୍ଡଧାରି ॥
ମାସେ ରହି ଅଶ୍ୱମେଧ ଯଜ୍ଞଫଳ ପାଇ ।
ବିଶ୍ୱାମିତ୍ର ସିଦ୍ଧ ହେଲେ ସେ ତୀର୍ଥରେ ଥାଇ ॥
ତହୁଁ ଯିବ ମହାହ୍ରଦ ନାମେ ତୀର୍ଥବରେ ।
ଦୁର୍ଗତି ନାଶି ସୁବର୍ଣ୍ଣ ପାଇବ ସେଠାରେ ॥
ତହୁଁ ଯିବ ବୀରାଶ୍ରମେ କୁମାରଙ୍କ ତୀର୍ଥେ ।
ଅଶ୍ୱମେଧ ଯାଗ କଲା ଫଳ ପାଇ ଅନ୍ତେ ॥
ଇନ୍ଦ୍ର ଲୋକରେ ବସିବ ତୀର୍ଥ ବ୍ରତୀ ନର ।
ନନ୍ଦିନୀ ତୀର୍ଥକୁ ତହୁଁ ଯିବ ଯୁଧିଷ୍ଠିର ॥
କୂପେକ ଅଛି ତହିଁରେ କରିବ ଯେ ସ୍ନାନ ।
ସେ କୂପେ ଜାତ ହୁଅନ୍ତି ଆସି ଦେବଗଣ ॥
ନରମେଧ ଯଜ୍ଞ ଫଳ ପାଇ ତହୁଁ ଯିବ ।
କାଳିକା ସଙ୍ଗମ ନାମେ ତୀର୍ଥରେ ମିଳିବ ॥
କଉଶିକୀ ଅରୁଣା ଏ ଦୁହେଁ ତହିଁ ମିଳି ।
ସ୍ନାନ କରି ତିନି ରାତ ରହିଯିବ ଚଳି ॥
ଉପବାସ କରି ସବୁ ପାତକ ଛଡ଼ାଇ ।
ଉର୍ବଶୀ ତୀର୍ଥ ଆବର ସୋମତୀର୍ଥେ ଯାଇ ॥
କୁମ୍ଭକର୍ଣ୍ଣ ଆଶ୍ରମରେ କରିବ ଯେ ସ୍ନାନ ।
ମହୀରେ ବିଦିତ ପୂଜା ପାଇବ ରାଜନ ॥
ବ୍ରହ୍ମଚାରୀ ହୋଇ ତହୁଁ ଯିବ ଏକମନେ ।
ଜାତିସ୍ମର ହେବ କୋକାମୁଖ ତୀର୍ଥ ସ୍ନାନେ ॥
ପୂର୍ବରୁ ଲୋକେ ଏ କଥା ଦେଖିଛନ୍ତି ନେତ୍ରେ
ତହୁଁ କୃତାର୍ଥ ହୋଇବ ସକ୍ତଲଦା ତୀର୍ଥେ ॥
ସ୍ୱର୍ଗଭୋଗ ଅରଜିବ ପାପକୁ ଛଡ଼ାଇ ।
ଋଷଭ ଦ୍ୱୀପେ ପ୍ରବେଶ ହୋଇବ ତହୁଁ ଯାଇଁ ॥

କାର୍ତ୍ତିକେୟସ୍ୟ ସ୍କନ୍ଦ ବୁଡ ସରସ୍ୱତୀ ଜଳେ ।
ପରଲୋକ ସୁଖ ଅରଣ୍ୟବ ସ୍ନାନ ଫଳେ ॥
ତହୁଁ ଉଦ୍ୟାନକ ତୀର୍ଥେ କରିବ ଯେ ସ୍ନାନ ।
ତୀର୍ଥ ସ୍ନାନ କରୁଥିବେ ତହିଁ ମୁନିଜନ ॥
ସକଳ ପାପ ଛଡ଼ାଇ ତହୁଁ ଯିବ ନର ।
ଯେ ପୁଣ୍ୟ ତୀର୍ଥରେ ବ୍ରହ୍ମ ଋଷିଙ୍କର ଘର ॥
ସେ ବ୍ରହ୍ମତୀର୍ଥରେ ବାଜପେୟ ଫଳ ପାଇ ।
ତହୁଁ ଚମ୍ପାତୀର୍ଥେ ଯିବ ଭାଗୀରଥୀ ଯହିଁ ॥
ତହିଁ ସ୍ନାନ ସାରି ଯିବ ଦଣ୍ଡାର୍ପଣ ତୀର୍ଥେ ।
ଗୋ ସହସ୍ର ଦାନ ଫଳ ପାଇବ ଭୂରିତେ ॥
ତହୁଁ ଲୋବେଦ୍ଧକା ତୀର୍ଥେ କରିବ ଯେ ସ୍ନାନ ।
ବହୁତ ଦେଖିବ ତହିଁ ପୁଣ୍ୟବନ୍ତ ଜନ ॥
ବାଜପେୟ ଯଜ୍ଞ ଫଳ ପାଇବ ସେ ସ୍ଥାନେ ।
ଦେହାନ୍ତେ ସ୍ୱର୍ଗକୁ ଯିବ ଆରୋହି ବିମାନେ ॥
ତହୁଁ ସନ୍ଧ୍ୟାତୀର୍ଥ କରି ହୋଇବ ବିଦ୍ୟାବନ୍ତ ।
ସଦ୍ବିଦ୍ୟା ତୀର୍ଥକୁ ଯାଇ ହୋଇବ ରୂପବନ୍ତ ॥
ଏହି ତୀର୍ଥ ତୀର୍ଥରାଜ ରାମ ପରସାଦେ ।
ତହୁଁ ଲୌହିତ୍ୟ ତୀର୍ଥକୁ ଯିବ ନିର୍ବିବାଦେ ॥
ସୁବର୍ଣ୍ଣ ଲଭି ସେଠାରୁ କରତୋୟା ଯିବ ।
ଉପବାସ କରି ତିନି ରାତି କଟାଇବ ॥
ଅଶ୍ୱମେଧ ଯଜ୍ଞ କଲ ଫଳ ତହିଁ ପାଇ ।
ଦେହାନ୍ତେ ଇନ୍ଦ୍ର ଲୋକରେ ବସିବ ସେ ଯାଇଁ
ତହୁଁ ଯିବ ଯହିଁ ଗଙ୍ଗା ସାଗର ସଙ୍ଗମ ।
ଅଶ୍ୱମେଧ ତହୁଁ ଫଳ ପାଇ ଦଶଗୁଣ ॥
ପଣ୍ଡିତେ ଏ କଥା କହି ଅଛନ୍ତି ଭାରତ ।
ଗଙ୍ଗା ପାରି ହୋଇ ଯିବ ସାରି ତୀର୍ଥବ୍ରତ ॥
ଦୀପେକ ଅଛି ତହିଁରେ କରିବ ଯେ ସ୍ନାନ ।
ତ୍ରିରାତ୍ର ଉପବାସରେ ପାଇ ସର୍ବ କାମ ॥
ତହୁଁ ବିରଜା ତୀର୍ଥକୁ ଯିବ ଯୁଧିଷ୍ଠିର ।
ବଇତରଣୀର ନୀର ସର୍ବ ପାପହର ॥
ତହିଁ ସ୍ନାନ କରି ଚନ୍ଦ୍ରପ୍ରାୟ ବିରାଜିବ ।
କୁଳ ତୀର୍ଥେ ଯାଇ ସର୍ବ ପାପ ଛଡ଼ାଇବ ॥
ଗୋ ସହସ୍ର ଦାନ ଫଳ ପାଇ କୁଳ ତାରେ ।
ଯହିଁ ଜ୍ୟୋତିରଥ୍ୟା ନଦୀ ଶୋଣ ନଦୀବରେ ॥
ଏ ଦୁଇ ସଙ୍ଗମ ସ୍ଥାନେ ରହିବ ହୋ ଯାଇଁ ।
ପିତୃ ଦେବତା ତର୍ପଣ କରିବ ଯେ ତହିଁ ॥

ଅଗ୍ନିଷ୍ଟୋମ ଯଜ୍ଞ ଫଳ ପାଇ ତହୁଁ ଯିବ ।
ଶୋଣ ନର୍ମଦା ପ୍ରଭବେ ଯାଇଁ ପହୁଞ୍ଚିବ ॥
ବଂଶ ଗୁଳ୍ମତୀର୍ଥ ସେହି କରିବ ଯେ ସ୍ନାନ ।
ଅଶ୍ୱମେଧ ଯଜ୍ଞ ଫଳ ପାଇବ ରାଜନ ॥
ଋଷଭ ତୀର୍ଥେ ମିଳିବ କଉଶଳା ଯାଇ ।
ତ୍ରିରାତ୍ର ନିବାସେ ଅଶ୍ୱମେଧ ଫଳ ପାଇ ॥
ସେହି କୋଶଳାରେ ଅଛି କାଳତୀର୍ଥ ପୁଣି ।
ସ୍ନାନ କଲା ମାତ୍ରେ ତହିଁ ଆହେ ନୃପମଣି ॥
ଋଷଭ ତୀର୍ଥେ ସ୍ନାନରେ ଫଳ ପାଇ ଯେତେ
ତହିଁର ଏଗାର ଗୁଣ ଫଳ ଫଳ ବ୍ରତେ ॥
ପୁଷ୍ପବତୀ ତୀର୍ଥେ ଯାଇଁ ସ୍ନାନ କରି ନର ।
ତିନିରାତ୍ର ନିରାହାରେ ରହିବ ଆବର ॥
ଗୋ ସହସ୍ର ଦାନ ଫଳ ପାଇ କୁଳ ତାରେ ।
ତହୁଁ ପୁଣି ଶକ୍ତ ମନେ ଯିବ ଦଣ୍ଡଧାରୀ ॥
ବଦରିକା ତୀର୍ଥଜଳେ କରିବ ଯେ ସ୍ନାନ ।
ଦେହାନ୍ତେ କରିବ ସ୍ୱର୍ଗ ଲୋକକୁ ଗମନ ॥
ଦୀର୍ଘାୟୁ ହୋଇ ବଞ୍ଚିବ ବହୁତ ଯେ କାଳ ।
ଜମଦଗ୍ନିସୁତ ପରଶୁରାମ ମହାବଳ ॥
ସ୍ନାନ କରିଥାରେ ରାମ ତୀର୍ଥ ନାମ ଯାର ।
ମହେନ୍ଦ୍ର ପର୍ବତ ତଳେ ସେହି ତୀର୍ଥବର ॥
ଅଶ୍ୱମେଧ ଫଳ ପାଇ ରାମତୀର୍ଥ ସ୍ନାନେ ।
କେଦାର ତୀର୍ଥେ ମିଳିବେ ତହୁଁ ଯାଇଁ ଜନେ
ମତଙ୍ଗ ମୁନିର ସେହି ତୀର୍ଥ ଗୋଷ୍ଠି ଜାଣ ।
ଗୋ ସହସ୍ର ଦାନଫଳ ପାଇ କଲେ ସ୍ନାନ ॥
ଶ୍ରୀ ପର୍ବତ ନଦୀତୀରେ ସ୍ନାନ କଲେ ଯାଇ ।
ଅଶ୍ୱମେଧ ଯାଗ କଲ ଫଳ ତେତେ ପାଇ ॥
ସିଦ୍ଧି ଲଭି କରି ସେହି ପର୍ବତ ଉପରେ ।
ମହାଦେବ ରହିଛନ୍ତି ଦେବୀଙ୍କ ସଙ୍ଗରେ ॥
ବ୍ରହ୍ମାଆଦି ଦେବଗଣ ବେଢ଼ି ରହିଛନ୍ତି ।
ଦେବହ୍ରଦ ନାମେ ହ୍ରଦ ଅଛି ହେ ନୃପତି ॥
ଶୁଚିମନ୍ତ ହୋଇ କଲେ ସେ ହ୍ରଦରେ ସ୍ନାନ ।
ଅଶ୍ୱମେଧ ଯଜ୍ଞ ଫଳ ପାଇବ ରାଜନ ॥
ସିଦ୍ଧ ହୋଇ ତହୁଁ ଯିବ ଋଷଭ ପର୍ବତେ ।
ସ୍ନାନ ଯେ କରିବ ତହିଁ ଥିବା ପାଣ୍ଡ୍ୟତୀର୍ଥେ ॥
ଦେବଗଣେ କରନ୍ତି ସେ ତୀର୍ଥେ ନିତ୍ୟସ୍ନାନ ।
ବାଜପେୟ ଯଜ୍ଞ ଫଳ ପାଇବ ରାଜନ ॥

ମରଣ୍ଣାନ୍ତେ ସ୍ୱର୍ଗପୁରରେ ଆନନ୍ଦେ ରହିବ ।
ଅପସରାଙ୍କ ସଙ୍ଗରେ ସୁଖେ ବିହରିବ ॥
କାବେରୀ ତୀର୍ଥକୁ ତହୁଁ ଯିବ ହେ ନୃପତି ।
ଗୋ ସହସ୍ର ଦାନଫଳ ସ୍ନାନେ ପାଇ ବ୍ରତୀ ॥
ତହୁଁ ଯେ ଯିବ ସମୁଦ୍ର ତୀର୍ଥେ କନ୍ୟାତୀର୍ଥେ
ସକଳ ପାପ ଖଣ୍ଡିବ ସ୍ନାନ କଲ ମାତ୍ରେ ॥
ତହୁଁ ଯହିଁ ବ୍ରହ୍ମା ଆଦି ଦେବଗଣ ଯେତେ ।
ମୁନି ଭୂତ ଯକ୍ଷ ଗଣ ପିଶାଚ ସହିତେ ॥
କିନ୍ନର ଉରଗ ସିଦ୍ଧ ଚାରଣ ଗନ୍ଧର୍ବ ।
ସରିତ ସାଗର ଶୈଳ ପନ୍ନଗ ମାନବ ॥
ଏମାନେ ଉମାପତିଙ୍କି ପୂଜନ୍ତି ନିରନ୍ତେ ।
ଦାସଭୁଲ୍ୟ ହୋଇଥାନ୍ତି ତାଙ୍କ ପାଦଗତେ ॥
ତ୍ରିଲୋକ ବିଖ୍ୟାତ ସେହି ତୀର୍ଥ ଯେ ଗୋକର୍ଣ୍ଣ ।
ତ୍ରିରାତ୍ର ଉପାସେ ରହି ପୂଜିବ ଈଶାନ ॥
ଦଶଗୋଟି ଅଶ୍ୱମେଧ ଫଳ ତହିଁ ପାଇ ।
ଗଣପତି ଭୁବନରେ ରହିବ ସେ ଯାଇଁ ॥
ସମୁଦ୍ର ମଧ୍ୟରେ ଅଛି ଯେ ପରମ ତୀର୍ଥ ।
ବାରମାସ ଉପବାସେ ହୋଇବ କୃତାର୍ଥ ॥
ତହିଁ ଗାୟତ୍ରୀର ତୀର୍ଥ ଅଛି ହେ ରାଜନ ।
ତହିଁ ତିନିରାତ୍ର ଉପବାସ କଲେ ଜନ ॥
ଗୋ ସହସ୍ର ଦାନ ଫଳ ପାଇବ ନିଶ୍ଚୟେ ।
ତହିଁ ବ୍ରାହ୍ମଣଙ୍କ ଚିହ୍ନ ଏକ ଅଛି ରାୟେ ॥
ସଙ୍କର ଜାତି ଜନମା ଦ୍ୱିଜ ଯେବେ କେହି ।
ଗାୟତ୍ରୀ ପଢଇ ସେହି ତୀର୍ଥସ୍ଥାନେ ରହି ॥
ସେ ଗାଥା ତାର ହୁଅଇ ଛନ୍ଦ ବନ୍ଧା ଗୀତ ।
ଅବ୍ରାହ୍ମଣ ପଢିଲେ ତା ହୋଇବ ନିହତ ॥
ବ୍ରହ୍ମର୍ଷି ସମ୍ବର୍ତ୍ତର ଦୁର୍ଲଭ ବାପୀରେ ।
ସ୍ନାନ ମାତ୍ରେ ରୂପ ଭାଗ୍ୟବନ୍ତ ହୋନ୍ତି ନରେ ॥
ତହୁଁ ବେଣା ତୀର୍ଥରେ ପହଞ୍ଚିବ ଯାଇଁ ।
ଦେବ ପିତୃଙ୍କ ତର୍ପଣ କରି ଜଳଦେଇ ॥
ଦେହାନ୍ତେ ସ୍ୱର୍ଗ ପୁରେ ଯିବ ସେହି ଜନ ।
ଚଢିଣ ହଂସ ମୟୂର ଯୋଗ୍ୟ ଦିବ୍ୟ ଯାନ ॥
ତହୁଁ ଯିବ ଗୋଦାବରୀ ତୀର୍ଥେ ନୃପମଣି ।
ନିତ୍ୟ ରହିଥାନ୍ତି ସିଦ୍ଧଗଣ ତହିଁ ପୁଣି ॥
ସେ ତୀର୍ଥେ ଗୋମେଧ ଯଜ୍ଞଫଳ ପାଇ ଅନ୍ତେ
ବାସୁକି ଲୋକେ ସୁଖଭୋଗ ପାଇବ ନିଶ୍ଚିନ୍ତେ ॥

ବେଣା ନଦୀର ସଙ୍ଗମ ସ୍ଥାନେ କରି ସ୍ନାନ ।
ବାଜପେୟ ଯଜ୍ଞଫଳ ପାଇବ ରାଜନ ॥
ତହୁଁ ଯିବ ବ୍ରହ୍ମସ୍ଥୂଣା ତୀର୍ଥେ ନରପତି ।
ତ୍ରିପବାସେ କଟାଇବ ତହିଁ ତିନିରାତି ॥
ଗୋ ସହସ୍ର ଦାନ ଫଳ ସେ ତୀର୍ଥରେ ପାଇ ।
ସ୍ୱର୍ଗର ସୁଖ ଭୁଞ୍ଜିବ ଦେହାନ୍ତେ ସେ ଯାଇ ।
ବ୍ରହ୍ମଚର୍ଯ୍ୟ ହୋଇ ତହୁଁ ଯିବ କୁଞ୍ଜାବନେ ।
ତିନିରାତି କଟାଇବ ଉପବାସ ସ୍ଥାନେ ॥
ଗୋ ସହସ୍ର ଦାନ ଫଳ ପାଇ ନୃପବର ।
ଯହିଁ ଶତ ଯଜ୍ଞ କରି ଦେବ ପୁରନ୍ଦର ॥
ଦେବହ୍ରଦ ବୋଲାଇଲେ ସ୍ୱର୍ଗକୁ ପାଇଲେ ।
ତିନିଗୋଟି ଯାଗକୁଣ୍ଡ ସେ ଖୋଳାଇ ଥିଲେ ॥
ଦେବହ୍ରଦ ଜ୍ୟୋତିହ୍ରଦ କନ୍ୟାଶ୍ରମ ହ୍ରଦ ।
ଏତିନି ହ୍ରଦର ଜଳ ନିର୍ମଳ ସୁସ୍ୱାଦ ॥
ଦେବହ୍ରଦ ଜଳ କଳା ଦିଶେ ଦଣ୍ଡଧାରୀ ।
କଳା ପୋଖରୀ ବୋଲନ୍ତି ଲୋକେ ଦେଖିକରି
ତହିଁଆଗ ସ୍ନାନ କରି ତହୁଁ ପୁଣି ଯିବ ।
ଜ୍ୟୋତିହ୍ରଦେ ବୁଡି କନ୍ୟାଶ୍ରମରେ ବୁଡିବ ॥
କନ୍ୟାଶ୍ରମେ ଅଗ୍ନିଷ୍ଟୋମ ଯାଗଫଳ ପାଇ ।
ଦେବହ୍ରଦେ ସ୍ନାନ କଲମାତ୍ରେ ନରସାଇଁ ॥
ସହସ୍ରେ ଗୋରୁ ଦାନର ଫଳକୁ ପାଇବ ।
ଜ୍ୟୋତି ମାତ୍ର ହ୍ରଦେ ଜାତିସ୍ମର ବୋଲାଇବ
ତହୁଁ ମହାପୁଣ୍ୟା ବାଣୀ ନଦୀ ଜଳେ ବୁଡି ।
ସରସ୍ୱତୀ ପୟୋଷ୍ଣୀରେ ଯାଇଁ ବୁଡିପାରି ॥
ଦେବଙ୍କୁ ଆଦରି ପିତୃଗଣଙ୍କୁ ପୂଜିବ ।
ଗୋ ସହସ୍ର ଦାନଫଳ ସେଠାରେ ପାଇବ ॥
ଦଣ୍ଡକାରଣ୍ୟକୁ ତହୁଁ ଯିବ ମହାରାୟ ।
ସ୍ନାନକରି ମହାପୁଣ୍ୟ କରିବ ସଞ୍ଚୟ ॥
ଶରଭଙ୍ଗ ମୁନିଙ୍କର ଆଶ୍ରମକୁ ଯିବ ।
ତହୁଁ ଶୁକ ମୁନିଙ୍କର ଆଶ୍ରମ ଦେଖିବ ॥
ଦୁର୍ଗତି ହରି ଆପଣା କୁଳକୁ ଉଦ୍ଧାରି ।
ତହୁଁ ପାନ କରି ସୁପର୍ଯ୍ୟୋଦକ ତୀର୍ଥବାରି ॥
ଜମଦଗ୍ନି ମୁନିଙ୍କର ଅଛଇ ସେ ତୀର୍ଥ ।
ତହୁଁ ରାମତୀର୍ଥେ ଯିବ ଆହେ ନରନାଥ ॥
ସ୍ନାନ କରିଣ ବହୁତ ସୁବର୍ଣ୍ଣ ପାଇବ ।
ତହୁଁ ସପ୍ତଗୋଦାବରୀ ତୀର୍ଥେ ପହଞ୍ଚିବ ॥

ସ୍ନାନକଲେ ପୁଣ୍ୟବନ୍ତେ ଦେବ ଲୋକ ପାନ୍ତି ।
ସେଠାରୁ ହବିଷ୍ୟ କରି ଶୁଚିମନ୍ତ ହୋଇ ॥
ଦେବ ପଥ ତୀର୍ଥେ ଯିବ ପୁଣ୍ୟ ଅର୍ଜିବ ।
ଦେବ ସତ୍ର ଦେଖିଲେ ପୁଣ୍ୟ ସେତେକ ହୋଇବ
ଚେତନ ପୁଣ୍ୟ ପାଇବ ଆତ୍ମେ ଧର୍ମ ରାୟ ।
ତହୁଁ ବ୍ରହ୍ମସ୍ଥଳ ବେଗେ ହୋଇବ ଯତାନ୍ତ୍ରୟୁ ॥
ଭୃଗୁ କାର୍ଣ୍ୟ ତୀର୍ଥରେ ପହୁଞ୍ଚିବ ଯାଇଁ ।
ପୂର୍ବର କଥା ଗୋଟାଏ ଶୁଣ ନରସାଇଁ ॥
ପୂର୍ବେ ଅଙ୍ଗିରାର ସୁତ ମୁନି ସାରସ୍ୱତ ।
ତାଙ୍କତହୁଁ ବେଦ ପଢ଼ିଥିଲେ ମୁନି ସୁତ ॥
ଯେବେ ପଢାଇବାବେଳେ ସେ ମୁନି ଗୋସାଇଁ
ପଢ଼ିଥିଲେ ଶିଷ୍ୟେ ବସ୍ତ୍ର କାନ୍ଧେରେ ପକାଇ ॥
ସେ ଉତ୍ତରୀ ବସ୍ତ୍ର ଦେବେ ଲୁଚିଣ ରହିଲେ
ସାରସ୍ୱତ ମୁନି ତାହା ଯୋଗରେ ଜାଣିଲେ ॥
ଓଁକାର ଯୋଗ କରିଣ ପଢାଇଲେ ବେଦ ।
ପାଶୋରି ପକାଇ ଥିଲେ ଯାହା ମୁନିବୃନ୍ଦ ॥
ସେସବୁ ତାଙ୍କୁ ଆସିଲା ଏହି ତୀର୍ଥବରେ ।
ପୂର୍ବେ ଏଥେ ଇନ୍ଦ୍ର ଆଦି ସକଳ ଅମରେ ॥
ଋଷି ମୁନି ମହାଦେବ ବ୍ରହ୍ମା ନାରାୟଣ ।
ପୁରୋହିତ ରୂପେ କଲେ ଭୃଗୁଙ୍କ ବରଣ ॥
ଭୃଗୁମୁନି କଲେ ସେହି ଯଜ୍ଞ ସମାପତ ।
ଯଜ୍ଞଭାଗ ଭୁଞ୍ଜି ସର୍ବେ ହୋଇଲେ ତୃପତ ॥
ସେଥିନୁ ଭୃଗୁଙ୍କ ନାମ ଅଟଇ ଏହାର ।
ଏସ୍ଥାନ ମାତ୍ରେକେ ସ୍ତ୍ରୀ କିବା ପୁରୁଷର ॥
ସକଳ ପାପ ତକ୍ଷଣେ ଯାଏ ଦୂର ହୋଇ ।
ହବିଷ୍ୟ କରିଣ ଯେବେ ଏ ତୀର୍ଥେ ରହଇ ॥
ଏକ ମାସକରେ ନରେ କୁଳକୁ ପବିତ୍ର ।
ମରଣାନ୍ତେ ଦେବଲୋକ ହୁଅଇ ପ୍ରାପତ ॥
ମେଧାବନେ କଲେ ପିତୃ ଦେବତା ତର୍ପଣ ।
ଅଗ୍ନିଷ୍ଟୋମ ଯଜ୍ଞଫଳ ପାଇବେ ତକ୍ଷଣ ॥
ସ୍ମରଣ ଶକତି ବୁଦ୍ଧି ବଢ଼ିବ ଆବର ।
ତହୁଁ ହେ ରାଜନ ଯିବ ତୀର୍ଥ କାଳଞ୍ଜର ॥
ଗୋ ସହସ୍ର ଦାନ ଫଳ ସେ ତୀର୍ଥରେ ପାଇ ।
କାଳଞ୍ଜର ପର୍ବତେ ଯେ ଜନ ମରଇ ॥
ସ୍ୱର୍ଗପୁରେ ଗଉରବ ପାଏ ସେହି ନର ।
ଏଥିରେ ସଂଶୟ କିଛି ନାହିଁ ନୃପବର ॥

ତହୁଁ ଯିବ ଗିରିବର ଶ୍ରେଷ୍ଠ ଚିତ୍ରକୂଟେ ।
ପାପ ବିନାଶିନୀ ମନ୍ଦାକିନୀ ନଦୀ ତଟେ ॥
ସ୍ନାନ କରି ତହିଁ ପିତୃ ଦେବତା ପୂଜିବ ।
ଅଶ୍ୱମେଧ ଯଜ୍ଞ ଫଳ ତକ୍ଷଣେ ପାଇବ ॥
ପରମ ଗତି ଲଭିବ ମରଣାନ୍ତେ ଜନ ।
ତହୁଁ ଯିବ ଯହିଁ ତୀର୍ଥବରେ ଭର୍ତ୍ତୃ ସ୍ଥାନ ॥
କାର୍ତ୍ତିକେଶ୍ୱର ଅଛନ୍ତି ସେ ସ୍ଥାନରେ ରହି ।
ସେ ସ୍ଥାନ ମାଡ଼ିଲା ମାତ୍ରେ ସିଦ୍ଧି ଲଭି ହୋଇ ॥
ତହୁଁ କୋଟିତୀର୍ଥେ ସ୍ନାନ କରିବ ଯେ ନର ।
ଗୋ ସହସ୍ର ଦାନ ଫଳ ପାଇବ ସତ୍ୱର ॥
କ୍ରମେ ପ୍ରଦକ୍ଷିଣ କରି ଯିବ ଶିବ ସ୍ଥାନେ ।
ଚନ୍ଦ୍ରପ୍ରାୟ ବିରାଜିବ ଶିବ ଦରଶନେ ॥
ତହିଁ ଏକ କୂପ ଅଛି ଆହେ ଯୁଧିଷ୍ଠିର ।
ସେ କୂପରେ ଅଛି ଚାରି ସମୁଦ୍ରର ନୀର ॥
ସ୍ନାନସାରି ସେ କୂପକୁ କଲେ ପ୍ରଦକ୍ଷିଣ ।
ପରମ ଗତି ଲଭିବ ପବିତ୍ର ହୋଇଣ ॥
ହେ କୁରୁ ନନ୍ଦନ ପୂର୍ବେ ରାମ ଦାଶରଥି ।
ଯହିଁ ପାରି ହୋଇ ଯାଇ ଥିଲେ ସେ ବସତି ॥
ଶୃଙ୍ଗବେର ନିଷାଦର ସେ ଅତି ପବିତ୍ର ।
ପାପ ଛୁଟି ଯିବ ତହିଁ ସ୍ନାନ କଲା ମାତ୍ର ॥
ବାଜପେୟ ଯଜ୍ଞ ଫଳ ପାଇ ତହୁଁ ଯିବ ।
ମୁଞ୍ଜିବଟ ତୀର୍ଥେ ଯାଇଁ ପ୍ରବେଶ ହୋଇବ ॥
ମହା ଦେବଙ୍କୁ ପୂଜିବ କରି ପ୍ରଦକ୍ଷିଣ ।
ଗଣପତି ପଦ ତହିଁ ପାଇବ ତକ୍ଷଣ ॥
ତହୁଁ ପ୍ରୟାଗ ତୀର୍ଥକୁ ଯିବ ନରସାଇଁ ।
ବ୍ରହ୍ମା ଆଦି ଦେବଗଣ ରହିଛନ୍ତି ଯହିଁ ॥
ସିଦ୍ଧ ତପୀ ମୁନି ପିତୃ ସନତ କୁମାରେ ।
ମହାଋଷି ଊର୍ଦ୍ଧ୍ୱରେତା ନାଗ ଖଗବରେ ॥
ନଦୀ ସମୁଦ୍ର ଗନ୍ଧର୍ବ ଅପସରା ଗଣେ ।
ହରି ହର ବ୍ରହ୍ମା ସିଦ୍ଧ ସାଧକ ଗୁରୁଗଣେ ॥
ସେ ପ୍ରୟାଗ ତୀର୍ଥେ ନିତ୍ୟ କରୁଥାନ୍ତି ସ୍ନାନ ।
ତହିଁ ତିନି ଗୋଟି କୁଣ୍ଡ ଅଛି ହେ ରାଜନ ॥
ଦୁଇ କୁଣ୍ଡ ଦୁଇ ପାଖେ ମଝିରେ ଜାହ୍ନବୀ ।
ଜଗତ ଜନ ପାବନୀ ସେହି ଗଙ୍ଗାଦେବୀ ॥
ଯମୁନା ନଦୀ ମିଶିଛି ସେ ଗଙ୍ଗା ସଙ୍ଗତେ ।
ଯମର ଭଗିନୀ ତାକୁ ଜାଣନ୍ତି ସମସ୍ତେ ॥

ସୂର୍ଯ୍ୟ ଦେବଙ୍କ ଦୁହିତା ସେ ଯମୁନା ନଈ ।
ମେ ଦୁଇ ନଦୀ ମଧ୍ୟକୁ ପୃଥ୍ୱୀଜଂଘା କହି ॥
ପୃଥ୍ୱୀଦେବୀ ଦୁଇ ଜଂଘ ମଧ୍ୟରେ ପ୍ରୟାଗ ।
ଶୁଣ ଧର୍ମ ରାଜା ତୁମ୍ଭେ କରି ମନଯୋଗ ॥
ସୁପ୍ରତିଷ୍ଠାନ କମ୍ବଳ ଅଶ୍ୱତର ତୀର୍ଥ ।
ପ୍ରୟାଗ ସଙ୍ଗେ ଏ ଚାରି ତୀର୍ଥ ବୋଲି ଖ୍ୟାତ ॥
ବ୍ରହ୍ମାର ବେଦୀର ନାମ ଅଟଇ ଭୋଗବତୀ ।
ସେ ବେଦୀରେ ମହାଋଷି ବ୍ରହ୍ମଙ୍କୁ ପୂଜନ୍ତି ॥
ଚାରି ବେଦ ଅଛି ତହିଁ ଚାରି ମୂର୍ତ୍ତି ଧରି ।
ସକଳ ଯଜ୍ଞ ଅଛନ୍ତି ସେ ବେଦୀରେ ପୂରି ॥
ବିଷ୍ଣୁ ସହିତ ଦେବଙ୍କୁ କରନ୍ତି ସନ୍ତୋଷ ।
ପ୍ରୟାଗ ତୀର୍ଥ ମହିମା ଅଟଇ ଅଶେଷ ॥
ସବୁ ତୀର୍ଥରୁ ଅଧିକ ପ୍ରଭାବ ତାହାର ।
ତିନି ଭୁବନରେ ଏକା ସେହି ତୀର୍ଥବର ॥
ସେ ତୀର୍ଥର ମହିମା ଯେ କୀର୍ତ୍ତନ କରଇ ।
ଅଥବା ତାର ମହିମା ଶ୍ରଦ୍ଧାରେ ଶୁଣଇ ॥
କିବା ତାକୁ ପ୍ରଣମଇ ମସ୍ତକ ନୁଆଇଁ ।
ସକଳ ପାପରୁ ସେହି ମୁକତ ହୁଅଇ ॥
ବ୍ରତୀ ହୋଇ ସେ ସଙ୍ଗମେ କରଇ ଯେ ସ୍ନାନ
ରାଜସୂୟ ଅଶ୍ୱମେଧ ଯଜ୍ଞର ଯେ ପୁଣ୍ୟ ॥
ତାହା ତହିଁରେ ମିଳଇ ଆହେ ଯୁଧିଷ୍ଠିର ।
ଏହି ତୀର୍ଥ ଯଜ୍ଞଭୂମି ଦେବଗଣଙ୍କର ॥
ପ୍ରସିଦ୍ଧ କଥା ଆହୁରି ଅଛି ରାଜେ ଶୁଣ ।
ଅଳପ ଦେଲେ ବହୁତ ହୁଏ ଦଶ ଗୁଣ ॥
ଦେବଙ୍କ ବଚନେ କିବା ଲୋକଙ୍କ ବଚନେ ।
ପ୍ରୟାଗ ମରଣେ ମନ ନ ଟଳେ ଯେଜନେ ॥
ଦଶ ସହସ୍ର ଅଧିକ ଷାଠି କୋଟି ତୀର୍ଥ ।
ଯେ ପ୍ରୟାଗ ତୀର୍ଥେ ଅଛି ଆହେ ନରନାଥ ॥
ଚାରିବେଦ ଜାଣିଥିବା ଲୋକର ଯେ ପୁଣ୍ୟ ।
ସତ କହିଲେ ଯେ ପୁଣ୍ୟ ହୁଅଇ ରାଜନ ॥
ସେ ପୁଣ୍ୟ ଗଙ୍ଗା ଯମୁନା ସଙ୍ଗମ ସ୍ନାନରେ ।
ତହୁଁ ଜୀବ ବାସୁକିର ଉତ୍ତମ ତୀର୍ଥରେ ॥
ତାର ନାମ ଭୋଗବତୀ ତହିଁ କଲେ ସ୍ନାନ ।
ଅଶ୍ୱମେଧ ଯଜ୍ଞ ଫଳ ପାଇବ ରାଜନ ॥
ସେ ଗଙ୍ଗାରେ ଅଛି ହଂସ ପ୍ରପତନ ତୀର୍ଥ ।
ଦଶାଶ୍ୱମେଧିକ ତୀର୍ଥ ତ୍ରିଲୋକେ ବିଖ୍ୟାତ ॥

ସେ ଦୁଇ ତୀର୍ଥେ ବୁଡ଼ିବ ଯାଇଁ ନରସାଇଁ ।
ସବୁଠାରେ କୁରୁକ୍ଷେତ୍ର ତୁଲ୍ୟ ଗଙ୍ଗା ନଈ ॥
ସବୁହିଁ ଅଧିକ କହି ଅଛି କନଖଳେ ।
ଶତ ପାପ କରିଥାଇ ଯେ ଅଜ୍ଞାନ ମୂଢ଼ଳେ ॥
ସେ ଯେବେ ଗଙ୍ଗା ଜଳରେ ପଶି କରେ ସ୍ନାନ
କାଠଗଦା ପୋଡ଼ିଦିଏ ଯେସନେ ହୁତାଶନ ॥
ତେସନ ଗଙ୍ଗାଜଳ ତା ପାପକୁ ନାଶଇ ।
ସତ୍ୟେ ସବୁ ତୀର୍ଥ ପୁଣ୍ୟ ବିଶେଷେ ଦିଅଇ ॥
ତ୍ରେତା ଯୁଗରେ ପୁଷ୍କର ସବୁହିଁ ଅଧିକ ।
ଦ୍ୱାପର ଯୁଗରେ ଜାଣ କୁରୁକ୍ଷେତ୍ର ଏକ ॥
କଳି ଯୁଗରେ କେବଳ ଏକା ଗଙ୍ଗା ନଈ ।
ପୁଷ୍କର ତୀର୍ଥରେ ତପ କଲେ ଫଳ ପାଇ ॥
ମହାଳୟ ତୀର୍ଥେ ଫଳ ପାଇ ଦେଲେ ଦାନ
ମଳୟ ତୀର୍ଥରେ ଅଗ୍ନି ମଧ୍ୟରେ ଦହନ ॥
ଭୃଗୁତୁଙ୍ଗ ତୀର୍ଥେ ଅନାହାର ବ୍ରତ ଫଳ ।
ସ୍ନାନ ମାତ୍ରେ ଫଳ ଦିଏ ଏହି ଗଙ୍ଗାଜଳ ॥
ତଳ ଉପର ଚଉଦ ପୁରୁଷ ତାରଇ ।
ଗଙ୍ଗା ଗଙ୍ଗା ବୋଲି ଯେହୁ ମୁଖେ ଉଚ୍ଚାରଇ
ପାପୀ ଲୋକ ଦେହୁଁ ପାପ ଛାଡ଼ି ହୋଏ ଦୂର
ଗଙ୍ଗାର ପବିତ୍ର ଜଳ ପାନ କଲେ ନର ॥
ଆପଣାକୁ ସଙ୍ଗେ ସାତ ପୁରୁଷ ଉଦ୍ଧାରେ ।
ଯେତେଦିନ ମାନବର ଅସ୍ଥି ପଡ଼େ ଗଙ୍ଗାନୀରେ ॥
ଯେତେ ଦିନରେ ସେ ଅସ୍ଥି ଜଳରେ ମିଳଇ
ତେତେ ବରଷ ସେ ଯାଇଁ ସ୍ୱର୍ଗରେ ବସଇ ॥
ପୂର୍ବେ ବ୍ରହ୍ମା କହିଛନ୍ତି ଏମନ୍ତ ବଚନ ।
ପୁଣ୍ୟତୀର୍ଥ ପୁଣ୍ୟସ୍ଥାନ ମାତ୍ରେ ଯେ ପୁଣ୍ୟ ॥
ସେ ପୁଣ୍ୟ ଗଙ୍ଗା ସ୍ନାନରେ ଧର୍ମ ନରସାଇଁ ।
ଏ ତିନି ଭୁବନେ ଗଙ୍ଗା ତୁଲ୍ୟ ତୀର୍ଥ ନାହିଁ ॥
ଦେବତା ଜଣେ ନାହାନ୍ତି ବିଷ୍ଣୁର ସମାନେ ।
ବିପ୍ରଠାରୁ ଆଉ ଶ୍ରେଷ୍ଠ କେହି ନାହିଁ ଜଣେ ॥
ଶ୍ରେଷ୍ଠ ସେହି ଦେଶ ଗଙ୍ଗାଜଳ ବହେ ଯହିଁ ।
ଗଙ୍ଗା ତୀର ସ୍ଥିତ କ୍ଷେତ୍ର ସିଦ୍ଧ କ୍ଷେତ୍ର ସେହି ॥
ଗଙ୍ଗାତଟ ତପୋବନ ବନ ମଧ୍ୟେ ବର ।
ସାଧୁ ଦ୍ୱିଜାତିଙ୍କ ହୃଦେ ଥାଏ ନିରନ୍ତର ॥
ଏ ଗଙ୍ଗା ନିଶ୍ଚେ ମୁକତି ପ୍ରଦାନ କରଇ ।
ସାଧୁ ଭକତଙ୍କ କର୍ଣ୍ଣେ ମନ୍ତ୍ର ଜପ ଏହି ॥

ଏହାହୁଁ ଧର୍ମ ଅଧିକ କଲ୍ପ ନାହିଁ ଜାଣ ।
ଏକା ଏହି ସ୍ୱର୍ଗ ସୁଖ ଭୋଗର କାରଣ ॥
ଏହାହିଁ ମେଧା ବୁଦ୍ଧିର ପ୍ରଧାନ କାରଣୀ ।
ଏହି ପୁଣ୍ୟ ଏହି ସୁଖ ଏ ପାପ ନାଶିନୀ ॥
ଏହି ଗଙ୍ଗା ଧର୍ମ କର୍ମ କଲ୍ୟାଣ ଜନନୀ ।
ଗଙ୍ଗା ଗଙ୍ଗା କହୁଥିବ ମରତେ ଯେ ପ୍ରାଣୀ ॥
ଏ ତୀର୍ଥ ମହାତ୍ମ୍ୟ ଅତି ଗୁପତ ଅଟଇ ।
ବିପ୍ର କ୍ଷତ୍ରୀ ବୈଶ୍ୟ ଯେବେ ଏହାକୁ ପଢଇ ॥
ମନ ନିର୍ମଳ ତାହାର ସର୍ବାଙ୍ଗ ନିର୍ମଳ ।
ଅଧିକ ପଢେ ଯେବେ ବଢଇ ତା କୁଳ ॥
ମାତ ପାଳି ପୁଅ ଝିଅ ନାତି ଯେ ନାତୁଣୀ ।
ରାଜା ପଢିଲେ ମହୀରେ ହୁଏ ନୃପମଣି ॥
ବୈଶ୍ୟ ପଢିଲେ ବେପାରେ ମହାଧନୀ ହୋଇ
ଶୂଦ୍ର ପଢିଲେ ତା ମନବାଞ୍ଛା ପୂର୍ଣ୍ଣ ହୋଇ ॥
ବିପ୍ର ପଢିଲେ ବ୍ରାହ୍ମଣ ହୁଅଇ ନିଶ୍ଚୟ ।
ବ୍ରହ୍ମକୁ ଚିହ୍ନି ପାରଇ ପାପ ଯାଇ କ୍ଷୟ ॥
ଶ୍ରଦ୍ଧାରେ ପଢିବା ଜନ ହୁଏ ଜାତିସ୍ମର ।
ସ୍ୱର୍ଗ ମଣ୍ଡଳରେ ସୁଖ ପାଇ ସେ ଅପାର ॥
ଯେ ତୀର୍ଥ ଅତି ଅଗମ୍ୟ ନ ପାରିବ ଯାଇ ।
ଯେ ତୀର୍ଥେ ଯାଇ ପାରିବ ସେ ଗମ୍ୟ ଅଟଇ ॥
ସେ ସବୁ ତୀର୍ଥ ମହିମା କହିଲୁ ବୁଝାଇ ।
ଯେବଣ ତୀର୍ଥକୁ ନରେ ପାରିବେଟି ଯାଇ ॥
ଯେ ତୀର୍ଥ ବ୍ରତ କରିବ ବିଧି ଅନୁସାରେ ।
ନ ଯାଇ ପାରିବା ତୀର୍ଥ ସୁମର ମନରେ ॥
ସେ ତୀର୍ଥ ବ୍ରତ କରିବ ମନେ ମନେ ଜନ ।
ଯେଉଁ ତୀର୍ଥେ ରହିଥାନ୍ତି ଦେବ ଋଷିଗଣ ॥
ଆହେ ଯୁଧିଷ୍ଠିର ତୁମ୍ଭେ ତୀର୍ଥ ବ୍ରତ କର ।
ତୀର୍ଥ ମହିମା କହିଲି ଯେମନ୍ତ ପ୍ରକାର ॥
ପୁଣ୍ୟ କଲେ ସିନା ପୁଣ୍ୟ ଅଧିକ ହୋଇବ ।
ପାପ ଏହି ଶରୀରକୁ ଛୁଇଁ ନ ପାରିବ ॥
ପୂର୍ବ ପୁଣ୍ୟବଳ ଥିଲେ ସିନା ତୀର୍ଥ କରି ।
ଜଗତେ ସାଧୁ ବୋଲାଇ ତୀର୍ଥ ବ୍ରତକାରୀ ॥
ଏଣୁ ପୁଣ୍ୟବନ୍ତ ଜନେ ପୂର୍ବ ପୁଣ୍ୟବଳେ ।
ତୀର୍ଥ କରୁଥାନ୍ତି ଭ୍ରମି ଏ ମହୀମଣ୍ଡଳେ ॥
ପାପୀ ଅଧୂତ ତସ୍କର ନ ପାରନ୍ତି କରି ।
ଧର୍ମାତ୍ମା ପୁରୁଷ ତୁମ୍ଭେ ଅଟ ଦଣ୍ଡଧାରୀ ॥

ତୀର୍ଥ ସ୍ନାନେ କର ପିତୃ ଦେବତା ତର୍ପଣ ।
ମହୀରେ ଯଶ କୀରତି ରଖ ନୃପଗଣ ॥
ଦିଲୀପ ନୃପତି ଆଗେ ବଶିଷ୍ଠ ଯେମନ୍ତେ ।
କହିଥିଲେ କହିଲି ମୁଁ ତୁମ୍ଭର ଅଗ୍ରତେ ॥
ବଶିଷ୍ଠ ବାକ୍ୟେ ଦିଲୀପ କଲେ ତୀର୍ଥ ବ୍ରତ ।
ଦେହାନ୍ତେ ସ୍ୱର୍ଗ ପାଇଲେ ଆହେ ନରନାଥ ॥
ଏ ବିଧିରେ ପୃଥ୍ୱୀ ଭ୍ରମି କଲେ ତୀର୍ଥ ସ୍ନାନ ।
ଦେହାନ୍ତେ ସ୍ୱର୍ଗ ପାଇବ ନିଶ୍ଚୟ ସେ ଜନ ॥
ତୀର୍ଥ ସ୍ନାନେ ପାଇଥିଲେ ଦିଲୀପ ଯେ ଫଳ ।
ତହୁଁ ଆଠଗୁଣ ହେବ ତୁମ୍ଭ ସ୍ନାନ ଫଳ ॥
ଋଷିମାନଙ୍କୁ ସଙ୍ଗତେ ଯିବ ଯେଣୁ ଘେନି ।
ତେଣୁ ତୁମ୍ଭର ଅଧିକ ଫଳ ନୃପମଣି ॥
ଏ ସବୁ ତୀର୍ଥେ ବହୁତ ଅସୁରେ ଅଛନ୍ତି ।
ଏଣୁ ଜନେ ଏ ତୀର୍ଥକୁ ଯାଇ ନ ପାରନ୍ତି ॥
ତୁମ୍ଭ ବିନା ଆନ କେହି ନ ପାରିବେ ଯାଇ ।
ତୁମ୍ଭେ ପୁଣ୍ୟବନ୍ତ ପ୍ରାଣୀ ଅଟ ନରସାଇଁ ॥
ତୁମ୍ଭଯୋଗୁଁ ତୀର୍ଥ ବ୍ରତ ଋଷିଏ କରିବେ ।
ଏ ତୀର୍ଥ ମାହାତ୍ମ୍ୟ ଯେହୁ ପ୍ରଭାତେ ପଢିବେ ॥
ତାହାଙ୍କ ଦେଖିବାରୁ ସବୁ ପାପ ଯିବ ଛାଡି ।
ବଡ ବଡ ଋଷି ବସି ଅଛନ୍ତି ତ ବେଢି ॥
ଅଛନ୍ତି ପୁଣି ବାଲ୍ମୀକି କଶ୍ୟପ ଆତ୍ରେୟ ।
କଉଣ୍ଡିନ୍ୟ ବିଶ୍ୱାମିତ୍ର ମୁନି ମାର୍କଣ୍ଡେୟ ॥
ଶିଷ୍ୟ ସହିତ ଗାଲବ ଦେବଳ ଅସିତ ।
ଗଉତମ ଉଦ୍ଦାଳକ ପୁତ୍ରର ସହିତ ॥
ଭରଦ୍ୱାଜ ଶଉନକ ବ୍ୟାସ ମୁନିବର ।
ମହାତପା ଜାବାଲି ଯେ ଦୁର୍ବାସା ଆବର ॥
ତୁମ୍ଭଙ୍କୁ ଚାହିଁ ଅଛନ୍ତି ଦେଖ ମହାତ୍ମେୟ ।
ପୃଥିବୀର ପୁଣ୍ୟତୀର୍ଥ ସ୍ନାନ ଅଭିପ୍ରାୟେ ॥
ତୁମ୍ଭେ ଉଠିଲେ ସେ ତୁମ୍ଭ ସଙ୍ଗେ ୨ ଯିବେ ।
ମହାଭକ୍ତ ରାଜା ପ୍ରାୟେ ଯଶ ରଖି ଭବେ ॥
ଯଯାତି ରାଜା ଆବର ପୁରୁରବା ପ୍ରାୟେ ।
ଯଶ କୀରତି ମହୀରେ ଥୁଅ ଧର୍ମରାୟେ ॥
ପୂର୍ବେ ଯେମନ୍ତେ ଦେବରାଜ ଦାନବଙ୍କୁ ମାରି ।
ସନ୍ତାପ ଜ୍ୱର ବିନାଶି ଥିଲେ ସ୍ୱର୍ଗପୁରୀ ॥
ତେସନ ତୀର୍ଥ ବ୍ରତର ଫଳେ ତୁମ୍ଭେ ବୀର୍ୟ୍ୟ ।
ପୃଥିବୀ ପାଳ ନିଶ୍ଚିନ୍ତେ କରି ଶତ୍ରୁ କ୍ଷୟ ॥

ତୁମ୍ଭ ସ୍ୱଧର୍ମ ଅର୍ଜିତ ଧର୍ମବଳେ ମନ୍ତ୍ରୀ ।
ପୁଣ୍ଣ ହେବ କାର୍ତ୍ତବୀର୍ଯ୍ୟ ରାଜା ପ୍ରାୟ୍ ଏହି ॥
ମନ୍ତ୍ରୀଙ୍କର୍ କାଳାନ୍ତ ଥୋଇ ସ୍ୱର୍ଗକୁ ସ୍ୱଦେହେ ।
ଯିବ ଏଥିରେ ସନ୍ଦେହ କିଛି ନାହିଁ କହେ ॥
ସୂତ ମୁନି କହୁଛନ୍ତି ଶୁଣନ୍ତି ଶୌନକେ ।
ନାରଦ ମୁନି ଏମନ୍ତ କହି ଶୂନ୍ୟଲୋକେ ॥
ମେଲାଣି ଘେନି ଅନ୍ତର୍ ହୋଇ ଗଲେ ଚଳି ।
ଯୁଧିଷ୍ଠିରସ୍ତେ ଉଠିଲେ ହରି ହରି ବୋଲି ॥
ଏକମୁଖେ ହରି ହରି କହିଲେ ସକଳେ ।
ତୀର୍ଥ କରିବାକୁ ଗଲେ ସର୍ବେ ଏକାବେଳେ ॥
ଏ ତୀର୍ଥ ମହିମା ଶୁଣି ପାପ ତାପ ହରି ।
ହରି ହରି କହି ଜନେ ତୀର୍ଥ ଯାତ୍ରା କରି ॥
ତୀର୍ଥ ଯାତ୍ରା କଲେ ଭବସିନ୍ଧୁ ହେଲେ ତରି ।
ଦ୍ୱିଜ ଗୋପୀନାଥ ବୋଲେ ବୋଲ ହରି ୨ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଗୟା ପ୍ରଭୃତି ତୀର୍ଥ ବର୍ଣ୍ଣନଂ ନାମ ଊନବିଂଶୋଽଧ୍ୟାୟଃ ।



## ବିଂଶ ଅଧ୍ୟାୟ ।

ପ୍ରୟାଗ ମାହାତ୍ମ୍ୟ ।

ସୂତ କହନ୍ତି ହେ ମୁନି ଶଉନକ ଶୁଣ ।
ତୀର୍ଥ ସବୁ ସାକ୍ଷାତରେ ଦେବ ନାରାୟଣ ॥
ଶ୍ରୀ ବିଷ୍ଣୁର ଦେହ ନାହିଁ ଏଥିରେ ସଂଶୟ ।
ସାକ୍ଷାତରେ ତୀର୍ଥ ବ୍ରତୀ ନର ବିଷ୍ଣୁମୟ ॥
ତାଙ୍କ ସଙ୍ଗେ ସଙ୍ଗୀ ହେବା ଜନ ପାଏ ମୋକ୍ଷ
ଏଣୁ କଳିଯୁଗେ ତୀର୍ଥ ବ୍ରତ ଅଟେ ମୁଖ୍ୟ ॥
ତୀର୍ଥ ଯେ କରଇ ଧନ୍ୟ ସେ ଏହି ସଂସାରେ
ଧନ୍ୟ ସେ ତୀର୍ଥ ମହିମା ଶୁଣଇ କର୍ଣ୍ଣରେ ॥
କଳିଯୁଗ ପାପିଙ୍କର ତରିବା ଉପାୟ ।
ଏ ଜଗତେ ଆଉ କିଛି ନାହିଁ ଏହା ପ୍ରାୟ ॥
ମୁଁ ତୀର୍ଥ ସ୍ନାନ କରିବି ତୀର୍ଥବାସୀ ହେବି ।
ଏହା ଯେ ଘୋଷି ହୁଅଇ ତା ଫଳ କହିବି ॥
ଶୁଣ ତୁମ୍ଭେ ମନ ଦେଇ ପାପ ତାକୁ ଡରେ ।
ଧନ୍ୟ ବୋଲନ୍ତି ସଂସାରେ ତୀର୍ଥଲାଗି ନରେ ॥
ତୀର୍ଥ ଏ ସଂସାରେ ଧନ୍ୟ ତୀର୍ଥ ସେବି ଧନ୍ୟ ।
ତୀର୍ଥସେବୀ ଜନ ଯେଣୁ ଶ୍ରୀ ବିଷ୍ଣୁର ମାନ୍ୟ ॥
ତୀର୍ଥହିଁ ପରମ ପଦ ବ୍ରହ୍ମାଣ୍ଡ ମଧ୍ୟରେ ।
ଏ ପାଇଁ ସବୁରି ପୂଜ୍ୟ ଜାଣ ମୁନିବରେ ॥
ବିପ୍ର ତୁଳସୀ ଅଶ୍ୱତ୍ଥ ତୀର୍ଥ ନାରାୟଣ ।
ଏହି ପାଇଁ ସଦା ପୂଜ୍ୟ ଜାଣ ଋଷିଗଣ ॥
ଏହାଙ୍କୁ ଅଧିକ ପୂଜ୍ୟ ଏ ସଂସାରେ ନାହିଁ ।
ଏହାଙ୍କୁ ଯେ ପୂଜାକରେ ସେହି ପାଏ ତ୍ରାହି ॥
ତୀର୍ଥ ସ୍ନାନଠୁଁ ଅଧିକ ବିପ୍ର ସେବା ଜାଣ ।
ସକଳ ତୀର୍ଥମୟ ସେ ବିପ୍ରର ଚରଣ ॥
ଏଣୁ ବିପ୍ର ପାଦ ସେବା କରୁଥିବ ନିତ ।
ତୀର୍ଥର ଫଳ ତହିଁରୁ ପାଇବ ଝଟିତ ॥
ଅଶ୍ୱତ୍ଥ ତୁଳସୀ ଗୋରୁ କଲେ ପ୍ରଦକ୍ଷିଣ ।
ତହୁଁ ପାଇବ ସକଳ ତୀର୍ଥସ୍ନାନ ପୁଣ୍ୟ ॥
ଶ୍ରୀ ବିଷ୍ଣୁ ଲୋକରେ ପୂଜା ପାଇବ ଆଦର ।
ତୀର୍ଥ ସ୍ନାନ କରି ସବୁ ପାପ କର ଦୂର ॥
କର୍ମଫଳ ଭୋଗଅନ୍ତେ ପାଇବ ଯେ ଶାନ୍ତି ।
ପାପୀମାନେ ନର୍କରେ ଯାଇଣ ସନ୍ତାପନ୍ତି ॥
ସୁକୃତୀ ଜନ କରଇ ସ୍ୱର୍ଗ ସୁଖଭୋଗ ।
ପୁଣ୍ୟ ତୀର୍ଥେ ସ୍ନାନ କରେ ବୁଦ୍ଧିମନ୍ତ ଲୋକେ ॥
ସୂତଙ୍କ ମୁଖୁଁ ଏମନ୍ତ ଶୁଣି ଋଷିଗଣ ।
ବୋଇଲେ ପ୍ରୟାଗ କଥା କହିଲେ ଆନନ୍ଦ ॥
କହନ୍ତୁ ପୁଣି ତାହାର ମହିମା ବିସ୍ତାରି
ତାହା ଶୁଣିବାକୁ ମନ ବଳିଛି ଆମ୍ଭରି ॥
ଏମନ୍ତ ଶୁଣି ବୋଇଲେ ସୂତ ମୁନିବର ।
ପୂର୍ବେ ହୋଇଥିଲା ମହାଭାରତ ସମର ॥
ଅଠର ଦିନେ ସରିଲା ମଲେ କଉରବେ ।
ଯୁଦ୍ଧେ ଜିଣି ରାଜା ହେଲେ ମଧ୍ୟରେ ପାଣ୍ଡବେ
ସଭାକରି ବସିଥିଲେ ଦିନେ ଯୁଧିଷ୍ଠିର ।
ମନେ ମନେ ଚିନ୍ତାକଲେ ମୁହିଁ ପାପୀ ନର ॥
ମୋ ଜେଜେବାପା ପୁଅଭାଇ ରାଜା ଦୁର୍ଯ୍ୟୋଧନ ।
ପାରି ଅନେଶ୍ୱତ ଭାଇ ଅତି ବଳବାନ ॥
ପିତାମହ ଗଙ୍ଗାପୁତ୍ର ଭୀଷ୍ମ ମହାରଥୀ ।
ବଇଷ୍ଣବ ଚୂଡ଼ାମଣି ଅତି ବୃଦ୍ଧ ଯତି ॥

ବଦ୍ୟାଗୁରୁ ଦ୍ରୋଣ ବିପ୍ର ମାମୁ ଶଲ୍ୟରାଯ୍ଯ ।
ଏକାଦଶ ଅକ୍ଷୌହିଣୀ ସେନା ଗଲେ କ୍ଷୟ ॥
ପୃଥିବୀର ମହୀପତି ରଣେ ଦେଲେ ପ୍ରାଣ ।
ପୁତ୍ରନାତି ଭାଇବନ୍ଧୁ ଲଭିଲେ ମରଣ ॥
ଆମ୍ଭେ ପାଞ୍ଚଭାଇ ଏକା କୃଷ୍ଣ ଆଶ୍ରାଧର ।
ଜୀବନ ରକ୍ଷିଲୁ ସର୍ବେ ଗଲେ ଯମପୁର ॥
ସର୍ବର ମୃତ୍ୟୁ କାରଣ ହୋଇଲି ମୁଁ ଏକା ।
କି ରାଜ୍ୟ କରିବି ମୁହିଁ ହୋଇଣ ନିଶାଖା ॥
ଧିକ ମୋର ରାଜ୍ୟ ଭୋଗ ଧିକ ରାଜପଣ ।
ଧିକ ଧିକ ଏ ମୋହର ଜୀବନ ଧାରଣ ॥
ଏମନ୍ତେ ମନରେ ଭାଳି ଭାଳି ଯୁଧିଷ୍ଠିର ।
ବିହ୍ୱଳ ହୋଇ ପଡ଼ିଲେ ଭୂମିର ଉପର ॥
ଚେତ ଉଠି କପାଳରେ ବାମ କର ରଖି ।
ହା କି କଷ୍ଟ କହି ପୁଣି ହେଲେ ମହାଦୁଃଖୀ ॥
ମୁଖକୁ ତଳକୁ ପୋତି ବସିଲେ ମଉନେ ।
ମନେ ମନେ ଚିନ୍ତାକଲେ ଯିବି ତପୋବନେ ॥
ତୀର୍ଥବ୍ରତ ଯୋଗ ସାଧି ତେଜିବି ଜୀବନ ।
କେମନ୍ତେ ଏ ମହାପାପ ହୋଇବ ମୋଚନ ॥
କିବା କାହାକୁ ପଚାରି ଯିବି କେଉଁ ତୀର୍ଥ ।
ବିଷ୍ଣୁଲୋକ ପାନ୍ତି ଯହିଁ ସ୍ନାନ କଲା ମାତ୍ରେ ॥
ରାଜ୍ୟ ଧନେ ପ୍ରୟୋଜନ ନାହିଁ କିଛି ମୋର ।
କେମନ୍ତେ ଏହି ପାପରୁ ପାଇବି ଉଦ୍ଧାର ॥
କୃଷ୍ଣଙ୍କୁ ପୁଛନ୍ତି ସେ ତ କରିବେ ଅଶାନ୍ତି ।
ପଚାରିଲେ ମନେ କୋପ କରିବେ ଶ୍ରୀପତି ॥
ଧୃତରାଷ୍ଟ୍ରଙ୍କୁ ଯାଇ ମୁଁ ପୁଛିବି କେମନ୍ତେ ।
ପୁତ୍ର ଶୋକ ତାଙ୍କୁ ଦେଲି ରାଜ୍ୟର ନିମନ୍ତେ ॥
ବ୍ୟାସଙ୍କୁ ମୁଁ ପଚାରିବି କରୁଁପେ ବା ଯାଇ ।
ତାଙ୍କ କୁଳ କ୍ଷୟକାରୀ ଯେଣୁ ମୁଁ ଅଟଇ ॥
ଏମନ୍ତେ ଭାଳି ମନରେ କରନ୍ତି ରୋଦନ ।
ଏ ଦଶା ଦେଖି ତାଙ୍କର ପାଣ୍ଡବ ସଇନ୍ୟ ॥
କାନ୍ଦିଲେ ଭୀମ ନକୁଳ ଅର୍ଜୁନ ସହଦେ ।
କୁନ୍ତୀ ଦ୍ରୌପଦୀ ଆଦିରେ ମହାମୂର୍ଚ୍ଛି ଯେତେ ॥
ବାରାଣସୀ କ୍ଷେତ୍ରେ ଥିଲେ ମାର୍କଣ୍ଡ ମୁନି ।
ଧ୍ୟାନବଳେ ଯୋଗବଳେ ସବୁ କଥା ଜାଣି ॥
ଯୁଧିଷ୍ଠିରଙ୍କ କାନ୍ଦିବା ଜାଣିପାରି ବେଗେ ।
ହସ୍ତିନା ପୁରେ ମିଳିଲେ ପାଦୁକା ସଂଯୋଗେ
ପାଦୁକା ମନ୍ତ୍ରର ବଳେ ଶୂନ୍ୟେ ଶୂନ୍ୟେ ଆସି
କ୍ଷଣକ ମଧ୍ୟେ ହସ୍ତିନା ନଗରେ ପ୍ରବେଶି ॥
ରାଜାଙ୍କର ଦ୍ୱାରେ ରହି ଦ୍ୱାରୀକି କହିଲେ ।
ଦ୍ୱାରେ ଉଭା ମାର୍କଣ୍ଡ କହ ଯା ବୋଇଲେ
ଧାଇଁ ଯାଇଁ ଦ୍ୱାରୀ ରାଜା ଆଗେ ଜଣାଇଲା ।
ପାଦେ ପଡ଼ି କରଯୁଡ଼ି ଶିରେ ନିବେଶିଲା ॥
ଉଠି ଉଭା ହୋଇ ବୋଲେ ହେ ଧର୍ମ ରାଜନ
ଦ୍ୱାରେ ଉଭା ମାର୍କଣ୍ଡ ମୁନି ତପୋଧନ ॥
ମହା ପ୍ରଳୟରେ ମୃତ୍ୟୁ ନ ହୁଏ ଯାହାର ।
କଳପୀ ମୁନି ବୋଲାଇ ଜଗତ ଭିତର ॥
ମୁନିମାଙ୍କ ଦରଶନ ଲଳସେ ବଜାୟେ ।
ଶୁଣିବା ମାତ୍ରେ ଆସନ୍ତୁ ଉଠି ଧର୍ମ ରାୟେ ॥
ଅତି ବେଗେ ପାଦଗାମୀ ହୋଇ ଗଲେ ଧାଇଁ
ଚରଣେ ପ୍ରଣାମ କରି ଯୋଡ଼ି କର ଦୁଇ ॥
ବୋଇଲେ ହେ ମହା ଜ୍ଞାନୀ ସର୍ବତ କୁଶଳ ।
ବାଟରେ ତ ଘଟି ନାହିଁ କିଛି ଅମଙ୍ଗଳ ॥
ପୂର୍ବ ଭାଗ୍ୟ ବଳେ ହେଲା ତୁମ୍ଭ ଦରଶନ ।
ଆଜି ସଫଳ ହୋଇଲା ମୋହର ଜନମ ॥
କୁଳ ଗୋତ୍ର ଦେଶ ମୋର ପବିତ୍ର ହୋଇଲା
ଯେଣୁ ତୁମ୍ଭ ପାଦରେଣୁ ମୋ ପୁରେ ପଡ଼ିଲା ॥
ପିତୃ ପୁରୁଷେ ମୋହର ହୋଇଲେ ଭୂପତି ।
ଏମନ୍ତ କହିଣ ରାଜା ଅଣାଇ ଦ୍ରବ୍ୟତ ॥
ଗନ୍ଧ ମାଲ୍ୟ ଧୂପ ଦୀପ ଅର୍ଘ୍ୟ ଦାନକରି ।
ଆସନରେ ବସାଇଲେ ମୁନି କରଧରି ॥
ପୂଜା ପାଇ ମୁନି ତୋଷେ ବୋଇଲେ ଏମନ୍ତ
ଚିନ୍ତିଲ କିପାଇଁ ରାଜା ଏ ତୋହର ଚିତ୍ତ ॥
କି ଚିନ୍ତା ତୋହର କହ ଶୁଣିବା ନା ତାହା ।
ନିରତେ ଯାକୁ ଖଟଇ ଦେବ ଚଉବାହା ॥
ତାହାର ମୁଖ ମଳିନ ଏ ଅତି ବିଚିତ୍ର ।
ଯୁଧିଷ୍ଠିର ବୋଇଲେ ମୁନି ମୁହିଁ ଅପବିତ୍ର ॥
ଜ୍ଞାତି ବଧ ଗୁରୁବଧ ବିପ୍ରବଧ କଲି ।
ରାଜ୍ୟଧନ ଲୋଭେ ମହାପ୍ରାଣୀ ମରାଇଲି ॥
ତୁମ୍ଭେ ତ ସର୍ବଜ୍ଞ ମୁନି କି ନ ଜାଣ ତୁମ୍ଭେ ।
ମୋ ଭାଗ୍ୟକୁ କୃପା କରି ଆସିଅଛ ଏବେ ॥
ଏ ଘୋର ପାପରୁ ମୁହିଁ ତରିବି କେମନ୍ତେ ।
ରାଜ୍ୟଧନ ସବୁ ବିଷପ୍ରାୟ ଲାଗେ ମୋତେ ॥

ରାଜାର ମୁଖୁଁ ଏମନ୍ତ ଶୁଣି ମୁନିବର ।
ବୋଇଲେ ହେ ସଖା ବାହୁ ନୃପତି ଶିଖର ॥
ଧର୍ମ ଯଜ୍ଞ ଅଛି ତାହା ଶୁଣ ମନ ଦେଇ ।
କ୍ଷତ୍ରିଗଣଙ୍କର ରଣେ ପାପ ହୁଏଁ ନାହିଁ ॥
ସକଳ ଶାସ୍ତ୍ର ଦେଖିଛୁଁ ଆମ୍ଭେ ବିଲୋଡ଼ିଣ ।
ଏଥିରେ ପାପ ହେବାର ଲେଖା ନାହିଁ କାହିଁ
ବିଶେଷ ତ ରାଜଧର୍ମ ନୀତି ଅନୁସାରେ ।
ମରିବା ମାରିବା ନିତରେ ଘୋର ସଂଗ୍ରାମରେ ॥
ପାପ ପଙ୍କେ ନ ବୁଡ଼ନ୍ତି କହିଲୁ ଏ ସତ ।
ହୃଦେ ଧାରଣା କରିବା ଅଟଇ ଅନୁଚିତ ॥
ଅକାରଣ କଥାରେ ଯେ ଚିନ୍ତା କାହିଁପାଇଁ ।
ଚରଣେ ପଡ଼ି ବୋଇଲେ ଧର୍ମ ନରସାଇଁ ॥
ଆପଣ ତ ମୁନି ଜ୍ଞାନୀ ବୃଦ୍ଧ ତପୋଧନ ।
ଜାଣନ୍ତି ତ ଭୂତ ଭବିଷ୍ୟତ ବର୍ତ୍ତମାନ ॥
ଥାଉ ବା ନ ଥାଉ ପାପ ହେଉ ବା ନ ହେଉ ।
ଯେମନ୍ତେ ପାପ ମୋହର ମନକୁ ନ ଛୁଉ ॥
ସଂକ୍ଷେପିଣ କହ ମୋତେ ସେ ବିଧି ବିଧାନ ।
ଏମନ୍ତ ଶୁଣି ବୋଇଲେ ମୃକଣ୍ଡ ନନ୍ଦନ ॥
ତୁମ୍ଭେ ମୋତେ ପଚାରିଲ ଯାହା ହେ ନୃପତି
ଏଥିନି ତିନୋଟି ବାଟ ବେଦେ ଲେଖିଛନ୍ତି ॥
ଜ୍ଞାନ ଯୋଗ ତୀର୍ଥ ଏହି ତିନି ବାଟ ଜାଣ ।
ବଡ଼ କଷ୍ଟରେ ଏ ସାଧ୍ୟ ହୁଅଇ ରାଜନ ॥
ପୂର୍ବ ପୂର୍ବ କଲେ ପୁଣ୍ୟବନ୍ତ ବିପ୍ରଗଣେ ।
ସୂକ୍ଷ୍ମ ବାଟ କହିଛନ୍ତି ତାହା ମୁହିଁ ଜାଣେ ॥
ପ୍ରୟାଗ ସ୍ନାନ ସବୁହୁଁ ଶ୍ରେଷ୍ଠ ଯେ ଅଟଇ ।
ଅଳପକେ ସାଧ୍ୟ ଫଳ ଅଧିକେ ଦିଅଇ ॥
ଏମନ୍ତ ଶୁଣି ବୋଇଲେ ଧର୍ମ ଯୁଧିଷ୍ଠିର ।
କହିଲ ତ ପୂର୍ବ କଳ୍ପ କଥା ମୁନିବର ॥
ସେ କଳପେ ପ୍ରୟାଗ ଯେ ଥିଲା କେଉଁରୂପେ ।
ବିସ୍ତାରି କହିବ ତାହା ନ କରି ସଂକ୍ଷେପେ ॥
କେମନ୍ତେ ପ୍ରୟାଗ ଯାତ୍ରା କରୁଥିଲେ ନରେ ।
ମଲେ ପ୍ରାଣୀର କି ଗତି ହୁଏ ସେ ତୀର୍ଥରେ ॥
ପ୍ରୟାଗ ସ୍ନାନେ କି ଫଳ କହ ମୁନିବର ।
ଶୁଣିବାକୁ ମନ ପୁଣି ହେଉଛି ମୋହର ॥
ମୁନି ବୋଇଲେ ରେ ବାବୁ କହୁଅଛି ଶୁଣ ।
ପୂର୍ବକାଳେ ସର୍ଗ କରିଥିଲେ ଋଷିଗଣ ॥

ନୃପ ସଭା ମଧ୍ୟେ ମୁଁ ଥାଇଁ ଶୁଣିଅଛି ଯାହା ।
ବିଖ୍ୟାତ ଯେ ପ୍ରଜାପତି କ୍ଷେତ୍ର ନରନାହା ॥
ପ୍ରୟାଗ ତୀର୍ଥ ଆବର ତୀର୍ଥ ପ୍ରତିଷ୍ଠାନ ।
ଧର୍ମକା ହ୍ରଦ ବାସୁକୀ ହ୍ରଦ ଠାରୁ ଜାଣ ॥
ବହୁ ମୂଳକା ଯେ ନାଗ ତୀର୍ଥ ପରିଯନ୍ତେ ।
ଧ୍ୱାଘି ପ୍ରତିରେ ତା ମଧ୍ୟେ ଭୂମି ଅଛି ଯେତେ ॥
ସେସବୁ ଭୂମିକି ପ୍ରଜାପତି କ୍ଷେତ୍ର ବୋଲି ।
ତହିଁ ସ୍ନାନ କଲେ ଲୋକ ସ୍ୱର୍ଗ ଯାଏ ଚଳି ॥
ତହିଁ ମଲେ ଲୋକ ଜନ୍ମ ନ ହୁଏ ସଂସାରେ ।
ବ୍ରହ୍ମାଆଦି ଦେବଗଣ ମିଳି ସେ ତୀର୍ଥରେ ॥
ନିରତେ ରକ୍ଷା କରନ୍ତି ସେ ତୀର୍ଥକୁ ତହିଁ ।
ବହୁତ ତୀର୍ଥ ଯେ ମହୀ ମଣ୍ଡଳେ ଅଛଇ ॥
ପୁଣ୍ୟଫଳପ୍ରଦ ପୁଣି ସର୍ବ ପାପ ହର ।
ସେହି ତୀର୍ଥର ମହିମା ଅଟଇ ଅପାର ॥
ବହୁତ ଶତ ବରଷେ କହିଲେ ନ ସରେ ।
ପ୍ରୟାଗ ମହିମା ଏଣୁ କହେ ସଂକ୍ଷେପରେ ॥
ଜାହ୍ନବୀର ରକ୍ଷାକାରୀ ଷାଠିଏ ହଜାର ।
ନିରତେ ତାହାଙ୍କ ହସ୍ତେ ଥାଏ ଧନୁଶର ॥
ଯମୁନାର ରକ୍ଷାକାରୀ ଅଟଇ ସବିତା ।
ବାସବ ନିଜେ ପ୍ରୟାଗ ତୀର୍ଥ ରକ୍ଷାକର୍ତ୍ତା ॥
ସାଧୁ ମଣ୍ଡଳର ରକ୍ଷାକାରୀ ଦେବହରି ।
ଅକ୍ଷୟ ବଟର ରକ୍ଷାକାରୀ ଶୂଳଧାରୀ ॥
ସର୍ବପାପ ହରି ଏହି ସବୁ ପୁଣ୍ୟ ସ୍ଥାନ ।
ଏହାଙ୍କୁ ରକ୍ଷା କରନ୍ତି ଦେବେ ରାତିଦିନ ॥
ଅଳପ ବହୁତ ପାପ କରିଥିବା ପ୍ରାଣୀ ।
ପ୍ରୟାଗକୁ ସୁମରଣା କଲେ ପୁଣି ପୁଣି ॥
ତକ୍ଷଣେ ତା ଦେହୁ ସବୁ ପାପ ଛାଡ଼ି ଯାଇ ।
ପ୍ରୟାଗ ଦର୍ଶନେ ପାପ ଦେହେ ନ ରହଇ ॥
ପ୍ରୟାଗ ନାମ କୀର୍ତ୍ତନେ ପାପ ହୋଏ ଦୂର ।
ପ୍ରୟାଗ ମାଟି ଦେହରେ ବୋଳିହେଲେ ନର
ସବୁ ପାପରୁ ମୁକତ ନିଶ୍ଚୟ ହୁଅଇ ।
ପ୍ରୟାଗରେ ପାଞ୍ଚଗୋଟି କୁଣ୍ଡ ଯେ ଅଛଇ ॥
ଜାହ୍ନବୀ ନଦୀ ବିରାଜେ ତାହାଙ୍କ ମଝିରେ ।
ତାହାକୁ ମାଡିଲେ ପାପ ନ ରହେ ଶରୀରେ ॥
ସହସ୍ର ଯୋଜନେ ଥାଇ ଗଙ୍ଗା ସୁମରିଲେ ।
ସଦଗତି ପାଏ ଘୋର ପାପୀ ହୋଇଥିଲେ ॥

ଗଙ୍ଗା କୀର୍ତ୍ତନରେ ପାପୁଁ ମୁକତ ହୁଅଇ ।
ଗଙ୍ଗା ଦରଶନେ ମହା ପୁଣ୍ୟ ଅର୍ଜଇ ॥
ଗଙ୍ଗାସ୍ନାନେ ସାତକୁଳ ପବିତ୍ର କରଇ ।
ଗଙ୍ଗାଜଳ ପାନକଲେ ଆପେ ଯେ ତରଇ ॥
ଅକ୍ରୋଧୀ ଯେ ଅହିଂସକ ସତ୍ୟବନ୍ତ ପ୍ରାଣୀ ।
ଗୋ ବ୍ରାହ୍ମଣ ହିତକାରୀ ଧର୍ମତତ୍ତ୍ୱ ଜାଣି ॥
ଗଙ୍ଗା ଯମୁନା ସଙ୍ଗମ ସ୍ଥାନେ ନାଶି ପାପ ।
ମନବାଞ୍ଛା ପୂର୍ଣ୍ଣକରି ହରି ମନସ୍ତାପ ॥
ବ୍ରହ୍ମଚାରୀ ହୋଇ ତହିଁ ରହି ଏକମାସେ ।
ପିତୃ ଦେବତା ତର୍ପଣ କରଣ ହରଷେ ॥
ଯହିଁ ତହିଁ ଥିଲେ ମନ ବାଞ୍ଛା ହୋଏ ପୂର୍ଣ୍ଣ ।
ଯହିଁ ଯମୁନା ସେଠାରେ ଦେବ ତ୍ରିଲୋଚନ ॥
ତପନତନୟା ଦେବୀ ଯମୁନା ନଈକ ।
ତିନି ଭୁବନର ଲୋକେ ଜାଣନ୍ତି ଯାହାକ ॥
ପବିତ୍ର ପ୍ରୟାଗ ଧାମ ଆହେ ଯୁଧିଷ୍ଠିର ।
ପ୍ରାଣି ଗଣଙ୍କର ସେହି ତୀର୍ଥ ଅଗୋଚର ॥
ତହିଁ ସ୍ନାନକରି ସିଦ୍ଧ ଚାରଣ ଗନ୍ଧର୍ବ ।
ଋଷି ମୁନି ନାଗ ଯକ୍ଷ ଦେବତା ଦାନବ ॥
ସ୍ୱର୍ଗ ଭୋଗ କରୁଛନ୍ତି ସୁଖେ ହେ ରାଜନ ।
ପ୍ରୟାଗ ତୀର୍ଥ ମହିମା ଶୁଣ ଦେଇ ମନ ॥
ପ୍ରୟାଗେ ଯାଇ ସକଳ ପାପୁଁ ଯିବ ତରି ।
ଏଥିରେ କିଛି ସଂଶୟ ନାହିଁ ଦଣ୍ଡଧାରୀ ॥
ଆରତ ଦରିଦ୍ର ଯେତେ ଯେ ଅଧିବାସୀ ।
ତାଙ୍କର ପ୍ରୟାଗ ଭିନ୍ନ ସୁଖ କାହିଁ ନାହିଁ ॥
ଅକ୍ଷୟ ସୁଖ ପାଇବେ ସେ ପ୍ରୟାଗ ସ୍ନାନେ ।
ଗଙ୍ଗା ଯମୁନା ସଙ୍ଗମେ ମରନ୍ତି ଯେ ଜନେ ॥
ଉଜ୍ଜ୍ୱଳ କାଞ୍ଚନ ବର୍ଣ୍ଣ ସୂର୍ଯ୍ୟ ସମ ଜ୍ୟୋତି ।
ବିମାନ ଚଢି ବିହାର କରେ ଦିବାରାତି ॥
ଗନ୍ଧର୍ବ ଗଣ ସହିତ ଅପସରୀ ସଙ୍ଗେ ।
ସୁଖେ କାଳ କାଟୁଥାଇ ସେହିଁ ନାନାରଙ୍ଗେ ॥
ସ୍ୱର୍ଗସୁଖ ଭୋଗେ ମନ କାମନା ପୂରଇ ।
ଦେବ ବିମାନରେ ବସି ବିହାର କରଇ ॥
ସେ ବିମାନ ରତ୍ନମୟ ପରମ ସୁନ୍ଦର ।
ରତ୍ନମୟ ଧ୍ୱଜ ତହିଁ ଉଡେ ଫରହର ॥
ଶୋଭିଲେ ଗୀତ ବାଦ୍ୟରେ ତାହାକୁ ଉଠାନ୍ତି
ବହୁମୂଲ୍ୟ ବିଛଣାରେ ଶୁଆଇ ଦିଅନ୍ତି ॥

ଯେତେ କାଳପାଏ ମନେ ନ ପଡେ ଜନମ
ତେତେକାଳ ସ୍ୱର୍ଗପୁରେ ରହଇ ସେ ଜନ ॥
ପୁଣ୍ୟକ୍ଷୟ ହୁଅନ୍ତେ ସେ ମର୍ତ୍ତ୍ୟ ଜନମଇ ।
ଧନୀର ଗୃହରେ ମହାଧନବନ୍ତ ହୋଇ ॥
ଜାତିସ୍ମର ହୋଇ କରେ ପ୍ରୟାଗରେ ସ୍ନାନ ।
ଦେଶେ ଅବା ବିଦେଶରେ ଥାଇ ସେହିଜନ ॥
ଅରଣ୍ୟ ବା ଗୃହମଧ୍ୟେ ଯହିଁ ତହିଁ ଥାଇ ।
ପ୍ରୟାଗ ତୀର୍ଥର କଥା ମନେ ସୁମରଇ ॥
ପ୍ରାଣଛାଡି ବ୍ରହ୍ମଲୋକେ କରଇ ଗମନ ।
ଏ କଥା ଗୋଷ୍ଠି ଋଷିଙ୍କ ଶ୍ରୀମୁଖ ବଚନ ॥
ସର୍ବକାମ ଫଳପ୍ରଦ ବୃକ୍ଷ ଅଛି ଯହିଁ ।
ସିଦ୍ଧ ମୁନି ଋଷିଯାନ୍ତି ହିରଣ୍ମୟୀ ମହୀ ॥
ସହସ୍ର ଯୁବତି ଯହିଁ କରୁଥାନ୍ତି ସ୍ନାନ ।
ସେହି ମନ୍ଦାକିନୀ ତୀରେ ରହଇ ସେ ଜନ ॥
ସିଦ୍ଧ ଚାରଣ ଗନ୍ଧର୍ବ ତା ସେବାରେ ଥାନ୍ତି ।
ତହୁଁ ପୁଣି ଆସି ହୁଏ ଜମ୍ବୁଦ୍ୱୀପ ପତି ॥
ନାନାପୁଣ୍ୟ କର୍ମ ତୀର୍ଥ ବ୍ରତକରି ପୁଣି ।
ଗୁଣବନ୍ତ ଧନବନ୍ତ ହୁଅଇ ସେ ପ୍ରାଣୀ ॥
କାୟମନ ବଚନରେ ସତ୍ୟଧର୍ମ ଥାଇ ।
କାହାରିକି ଯେବେ କିଛି ଦାନ ନ ଦିଅଇ ॥
ତୀର୍ଥକୁ ଯାଇ ଲୋଭରେ ପଡ଼ି କେହି ଜନ ।
ସୁନା ରୁପା ମଣି ମୁକ୍ତା ଧାନ ଆଟଣ ଦାନ ॥
ଯେତେ ଦିନରେ ସେ ଧନ ତାହାର ସରଇ ।
ତେତିକି ଦିନରେ ତୀର୍ଥ ଫଳକ୍ଷୟ ଯାଇ ॥
ଏଣୁ ଦ୍ୱିଜ ପୁଣ୍ୟ କ୍ଷେତ୍ରେ ଅବା ତୀର୍ଥସ୍ଥାନେ ।
କେବେଭି ଦାନ ନ ଘେନିବେ ଗର୍ବ ବହି ମନେ
ସକଳ କର୍ମରେ ଦ୍ୱିଜ ଗର୍ବ କରି ପାରେ ।
ଗର୍ବ କେବେଭି ନ କରିବ ଏ ରୂପ କର୍ମରେ ॥
ପ୍ରୟାଗ ଗଙ୍ଗା ଯମୁନା ସଙ୍ଗମରେ କେହି ।
ବିପ୍ରକୁ ଦାନ ଦିଅଇ ଦୁହାଁଳିଆ ଗାଈ ॥
କପିଳା ପାଟଳ ବର୍ଣ୍ଣୀ ସେହି ହୋଇ ଥିବ ।
ଶିଙ୍ଗ ଦୁଇକି ତାହାର ସୁନାରେ ଛାଇବ ॥
ଗୋରଖୁରାକୁ ରୂପାରେ କରିବ ମଣ୍ଡନ ।
ଗଳାରେ ବାନ୍ଧିବ ବହୁମୂଲ୍ୟର ବସନ ॥
ବାଛିବ ଏମନ୍ତ ବିପ୍ର ମନ ଯୋଗକରି ।
ଶାନ୍ତଶୀଳ ଧର୍ମବନ୍ତ ଶୁକ୍ଳାମ୍ବରଧାରୀ ॥

ହୋଇଥିବ ସେହୁ ଦ୍ୱିଜ ଧାର୍ମିକ ପ୍ରବର ।
ଗ୍ରବେଦ ପଢ଼ିଥିବ ଶ୍ରୋତ୍ରିୟ ଆବର ॥
ଏମନ୍ତ ବିପ୍ରକୁ ବାଛି ଦେବଲ ଗୋରୁଦାନ ।
ଯେ କପିଳା ଗୋରୁଦେହେ ଥିବ ଯେତେରେମ
ତେତେ ସହସ୍ର ବରଷ ସ୍ୱର୍ଗରେ ବସଇ ।
ମୁଣି ସେ ମର୍ତ୍ତ୍ୟରେ ଯହିଁ ଜନମ ହୁଅଇ ॥
ସେ କପିଳା ଗାଇ ହୁଏ ଜନମ ତା ଘରେ ।
ନରକ ନ ଦେଖଇ ସେ ପୁଣ୍ୟର ବଳରେ ॥
ସେଉତ୍ତର କୁରୁକ୍ଷେତ୍ରେ ହୁଅଇ ଅକ୍ଷୟ ।
ଲକ୍ଷେ ଗୋରୁ ଦାନ ଦେବଲ ଆହେ ମହାଶୟ
ଯେ ଫଳ ହୁଅଇ ଏକ ଦୁହିଁାଳଆଦାନେ ।
ସେଫଳ ପାନ୍ତି ତା ପୁତ୍ର ଦ୍ୱାର ଭୃତ୍ୟଜନେ ॥
ଏଣୁ ସବୁଦାନ ମଧ୍ୟେ ଏ ଦାନ ପ୍ରଧାନ ।
ଦୁର୍ଗମେ ବିଷମେ ଘୋରେ ପଡ଼ିଥିବାଜନ ॥
ଆବର ମହା ପାତକୀ ଜନକୁ ରଖଇ ।
ଗୋପୀନାଥ କହେ ଦିଅ ଦୁହିଁାଳଆ ଗାଈ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗ-
ଖଣ୍ଡେ ପ୍ରୟାଗମାହାତ୍ମ୍ୟେ
ବିଂଶୋଽଧ୍ୟାୟଃ ।



## ଏକବିଂଶ ଅଧ୍ୟାୟ ।

### ତୀର୍ଥ କୃତ୍ୟ ।

ପଚାରିଲେ ଯୁଧିଷ୍ଠିର ଆହେ ମୁନିବର ।
ପ୍ରୟାଗ ତୀର୍ଥର କୃତ୍ୟ କହିବା ଆବର ॥
ଯହିଁରେକ ସର୍ବ ପାପୁଁ ହୋଇବି ମୁକତ ।
ପ୍ରୟାଗ ବିଧିବିଧାନ କହି କର ତଥ୍ୟ ॥
ପ୍ରୟାଗ ଯାତ୍ରାର ବିଧି ବିଧାନ ଯେତେକ ।
କୃପା କରଣ କହନ୍ତୁ ହେ ମୁନିତିଳକ ॥
ମାର୍କଣ୍ଡ କହିଲେ ଏରେ ବାବୁଧର୍ମରାୟ ।
କହୁଅଛି ମନକୁ ଭୁ ନକର ଅଥୟ ॥
ଗୋରୁ ଯୋଗୁଁଶଗଡରେ ବସି ତୀର୍ଥେ ଗଲେ ।
ତାହାର ଯେ ଫଳ ଶୁଣ ସେହି ଜନ ମଲେ ॥
ଗୋ କ୍ରୋଧ ନାମେ ଦାରୁଣ ନର୍କେ ପଡ଼ଇ
ସେଜଳ ଦେଲେ ତା ପିତୃ ଲୋକେ ତା ନ ପାଇ
ଅଇଶ୍ୱର୍ଯ୍ୟ ମଦେ ଅବା ଲୋଭେ ମୋହେ ପଡ଼
ପ୍ରୟାଗ ତୀର୍ଥକୁ ଯାଏ ରଥ ଯାନ ଚଢ଼ି ॥
ଆପେ ଯେତେ ହାତୀ ଘୋଡ଼ା ଚଢ଼ିକରି ଚଳେ
ତାର ମୂତ୍ର ଜାତ ପରଜନେ ଏ ସକଳେ ॥
ତାହାଙ୍କୁ ସେରୂପେ ଯାନ ବାହନ ଚଢ଼ାଇ ।
ତୀର୍ଥକଲେ ତହିଁରେ ଯେ କିଛି ଫଳନାହିଁ ॥
ତୀର୍ଥେଜଳ ସ୍ନାନ ପାନେ ନାହିଁ କିଛି ଫଳ ।
ବିପ୍ରକୁ ଯେ ଦାନ ଦେବ ସେ ସବୁ ବିଫଳ ॥
ଏଣୁ କେବଳ ତୀର୍ଥକୁ ବାଟେ ଯିବ ଚାଲି ।
କନ୍ୟା ଦାନ କଲେ ଯେହୁ ପ୍ରୟାଗରେ ମିଳି ॥
ବେଦବିଧିରେ ବିଭବ ଯେମ୍ନ କରେ ଦାନ ।
କେତେଭେ ସେ ନ କରେ ଘୋର ନରକ ଦର୍ଶନ ॥
ଉତ୍ତର କୁରୁକୁ ଯାଇ ଯେ କାଳ କାଟଇ ।
ଅକ୍ଷୟ କାଳ ଆନନ୍ଦେ ସେ ଜନ ରହଇ ॥
ନୀତିଜ୍ଞ ଧାର୍ମିକ ପୁତ୍ର ଦାର ମିଳେ ତାଙ୍କୁ ।
ଏଣୁ ଧନଥିଲେ ଦାନ ଦେବ ଯେ ବିପ୍ରଙ୍କୁ ॥
ତୀର୍ଥଫଳେ ଅଳ୍ପଦାନ ହୋଇବ ଅପାର ।
ଏଥିରେ ସଂଶୟ ନାହିଁ ଜାଣ ନୃପବର ॥
ମହାପ୍ରଳୟ ଯାଏ ସେ ସ୍ୱର୍ଗରେ ବସଇ ।
ଅକ୍ଷୟ ବଟମୂଳକୁ ଆଶ୍ରା ଯେ କରଇ ॥
ରୁଦ୍ରଲୋକରେ ବସଇ ହୋଇ ଧର୍ମ ରାଜନ ।
ପ୍ରଳୟ କାଳେ ଦ୍ୱାଦଶ ଆଦିତ୍ୟ କାରଣ ॥
ରୁଦ୍ରଙ୍କୁ ଆଶ୍ରାକରଣ ପୋଡ଼ଇ ସକଳ ।
ତହିଁରେ ପୋଡ଼ ନ ଯାଏ ସେହି ବଟମୂଳ ॥
ଚନ୍ଦ୍ର ସୂର୍ଯ୍ୟ ବାୟୁ ରୁଦ୍ର ମରନ୍ତି ପ୍ରଳୟେ ।
ବିଷ୍ଣୁ ରହନ୍ତି ସେ ବଟମୂଳର ଆଶ୍ରୟେ ॥
ଶୟନ କରି ଅଧିକ ପୂଜା ତହିଁ ପାନ୍ତି ।
ଦେବ ଦାନବ ଗନ୍ଧର୍ବ ଋଷିସିଦ୍ଧ ଜାତି ॥
ବ୍ରହ୍ମାଆଦି ଦିଗପାଳ ଦିଗୀଶ୍ୱର ଯେତେ ।
ସାଧ୍ୟ ସିଦ୍ଧ ବିଦ୍ୟାଧର ପିତୃଙ୍କ ସହିତେ ॥
ଅଙ୍ଗିରା ଆଦି ଯେତେକ ବ୍ରହ୍ମା ଋଷିମୁନି ।
ଖଗବର ଆଦି ଯେତେ ବିହଙ୍ଗମ ଶ୍ରେଣୀ ॥
ପର୍ବତ ସାଗର ଗିରିସର୍ପ ନାଗ ଯେତେ ।
ଭୂଚର ଯେ ଜଳଚର ଚାରଣ ସହିତେ ॥

ହରିହର ବ୍ରହ୍ମା ତିନିଦେବତା ରାଜନ ।
ଗଙ୍ଗା ଯମୁନା ମଝିରେ ପ୍ରୟାଗ ଯା ନାମ ॥
ପୃଥିବୀର ଜଂଘବୋଲି ବୋଲନ୍ତି ଏମାନେ ।
ଏହାଙ୍କ ସଦୃଶ ସ୍ଥାନ ନାହିଁ ତ୍ରିଭୁବନେ ॥
ପ୍ରୟାଗ ତୀର୍ଥ ମହିମା ଯେ ଜନ ଶୁଣଇ ।
ପ୍ରୟାଗ ପ୍ରୟାଗ ବୋଲି ମୁଖେ ଉଚ୍ଚାରଇ ॥
ପ୍ରୟାଗ ନାମ କରଇଁ ପ୍ରଭାତେ କୀର୍ତ୍ତନ ।
ପ୍ରୟାଗର ମାଟି କରେ ଅଙ୍ଗରେ ଲେପନ ॥
ସକଳ ପାପରୁ ସେହି ମୁକତ ହୁଅଇ ।
ବ୍ରତ ନିୟମରେ ରହି ଯେ ପ୍ରୟାଗେ ଯାଇ ॥
ସ୍ନାନକଲେ ମାତ୍ରେ ରାଜସୂୟ ଯାଗ ଫଳ ।
ଆଉର ସେ ପାଏ ଅଶ୍ୱମେଧ ଯଜ୍ଞଫଳ ॥
ଆଉରେ ବାୟୁ ଦେବତା ମାନବ ବା କେହି ।
ମନା କଲେ ନ ମାନନ୍ତି ତାଙ୍କ କଥା ତୁହି ॥
ପ୍ରୟାଗ ଯାତ୍ରା କରନ୍ତି ମୋର କଥା ମାନି ।
ଷାଠିଏ କୋଟି ଅଯୁତେ ତୀର୍ଥ ଏ ମେଦିନୀ ॥
ଏ ସବୁ ତୀର୍ଥ ପ୍ରୟାଗେ ଅଛଇ ଜାଣିବୁ ।
ଯୋଗିଙ୍କର ଯେଉଁ ଗତି ସେ ଗତି ପାଇବୁ ॥
ବ୍ରହ୍ମ ଜ୍ଞାନଙ୍କର ଗତି ପାଇବୁ ଆଉର ।
ଗଙ୍ଗା ଯମୁନା ସଙ୍ଗମେ ମରଇ ଯେ ନର ॥
ସେ ଗତି ପାଇବୁ ପୁଣି ପଣ୍ଡିତଙ୍କ ଗତି ।
ଯହିଁ ତହିଁ ଥାଇ ଯେବେ କେହି ହେ ନୃପତି ॥
ପ୍ରୟାଗ ଯାତ୍ରା ନ କରେ ତା ଜୀବନ ଧିକ ।
ମରିବା ଲୋକ ସମାନ ଜୀଇଥିବା ଲୋକ ॥
ରାହୁ ମୁଖରୁ ମୁକତ ଚନ୍ଦ୍ରମା ଯେସନ ।
ପ୍ରୟାଗ ଦର୍ଶନେ ପାପୁଁ ମୁକତ ସେ ଜନ ॥
ଯମୁନା ଦକ୍ଷିଣ ତୀରେ ଅଛି ତୀର୍ଥ ଦୁଇ ।
କମ୍ବଳ ଯେ ଅଶ୍ୱତର ନାମକୁ ବହଇ ॥
ସେ ତୀର୍ଥରେ ସ୍ନାନ କରି ପିଇଲେ ସେ ପାଣି ।
ସର୍ବ ପାପରୁ ମୁକତ ହୁଅଇ ଯେ ପ୍ରାଣୀ ॥
ତହିଁ ଥିବା ମହାଦେବ ଦରଶନ କରି ।
ଗଲଦଶ ପୁରୁଷକୁ ତାରି ଆପେ ତରି ॥
ଆସନ୍ତା ଦଶ ପୁରୁଷ ଉଦ୍ଧରିବ ପୁଣି ।
ଅଶ୍ୱମେଧ ଫଳ ପାଏ ସ୍ନାନକଲା ପ୍ରାଣୀ ॥
ମହାପ୍ରଳୟ ପର୍ଯ୍ୟନ୍ତେ ସ୍ୱର୍ଗ ଲୋକେ ବସେ ।
ବେଣୀ ଗୋଷ୍ଠ ତୀର୍ଥ ଅଛି ଗଙ୍ଗା ପୂର୍ବ ପାର୍ଶ୍ୱେ ॥

ସାଗର ସଙ୍ଗମ କୂପ ତୀର୍ଥ ପ୍ରତିଷ୍ଠାନ ।
ବ୍ରହ୍ମଚାରୀ ବ୍ରତୀ ହୋଇ ତହିଁ ଯେବେ ଜନ ॥
ତିନିରାତ୍ର ଉପବାସେ ରହେ ଅନାହାରେ ।
ସକଳ ପାପ ଖଣ୍ଡାଳି ବିଶୁଦ୍ଧ ଶରୀରେ ॥
ଅଶ୍ୱମେଧ ଯାଗକଲା ଫଳ ପୁଣି ପାଇ ।
ପ୍ରତିଷ୍ଠାନର ଉତ୍ତରେ ତୀର୍ଥେକ ଅଛଇ ॥
ଭାଗୀରଥୀ ପୂର୍ବଧାରେ ସେ ତୀର୍ଥ ପ୍ରଧାନ ।
ସେ ତୀର୍ଥର ନାମ ଅଟେ ହଂସ ପ୍ରପତନ ॥
ତହିଁ ସ୍ନାନ କଲେ ଅଶ୍ୱମେଧ ଫଳ ପାଇ ।
ଯାବତ ଚନ୍ଦ୍ରାର୍କେ ସ୍ୱର୍ଗପୁରେ ବସିଥାଇ ॥
ହଂସର ପ୍ରାୟ ତା ବର୍ଣ୍ଣ ହୁଅଇ ପାଣ୍ଡୁର ।
ରମ୍ୟ ଉର୍ବଶୀ ପୁଳିନେ ହୋଇ ବିମସ୍ତର ॥
ପିତୃଲୋକର ତର୍ପଣ କରେ ଯେ ରାଜନ ।
ଷାଠିଏ ଶତ ଷାଠିଏ ସହସ୍ରବର୍ଷ ଜାଣ ॥
ସ୍ୱର୍ଗ ସୁଖ ଭୋଗକରେ ସ୍ୱର୍ଗପୁରେ ଥାଇ ।
ଋଷି ଗନ୍ଧର୍ବ କିନ୍ନର ଗଣେ ପୂଜା ପାଇ ॥
ପୁଣ୍ୟକ୍ଷୟ ଯାନ୍ତେ ପୁଣି ସ୍ୱର୍ଗରୁ ଖସଇ ।
ଉର୍ବଶୀ ପ୍ରାୟ ସୁନ୍ଦରୀ ଯୁବତୀ ସେ ପାଇ ॥
ବହୁତ ସୁନ୍ଦରୀ ନାରୀ ଉପଭୋଗ କରେ ।
ଜଗାଇଲେ ତା ନିଦ୍ରାଭଙ୍ଗ ନୂପୁର ନାଦରେ ॥
ବିପୁଳ ଭୋଗ କରଇ ସେହି ତୀର୍ଥ ପାଇ ।
ସେ ତୀର୍ଥରେ ଯେବେ ନିତ୍ୟ କୁଶକୁ ବିଛାଇ ॥
ବଖତେ ଅଗୁଆ ଖାଇ ରହେ ଏକମାସ ।
ସକଳ ପଦାର୍ଥ ଭୋଗ କରଇ ସେ ପୁରୁଷ ॥
ସୁନା ଅଳଂକାର ପିନ୍ଧିଥିବା ଶଏ ନାରୀ ।
ଭୋଗ କରଇ ସମୁଦ୍ର ସହ ବସୁନ୍ଧରୀ ॥
ଦଶସହସ୍ର ଗ୍ରାମର ଭୂମି ପତି ହୋଇ ।
ଶୋଇଲେ କାଥୀ ନୂପୁର ଶବଦେ ଉଠଇ ॥
ନିତ ନିତ ଧନ ଧାନ୍ୟ ମିଳଇ ତାହାକୁ ।
ଦୁଃଖି ରଙ୍କିକି ଦିଅଇ ଆଉର ବିପ୍ରଙ୍କୁ ॥
ବିପୁଳ ଭୋଗ କରଇ ତୀର୍ଥ ସୁମରଇ ।
ଅକ୍ଷୟ ବଟ ମୂଳକୁ ପୁଣ୍ୟରୂପେ ଯାଇ ॥
ବ୍ରହ୍ମଚାରୀ ଯତି ହୋଇ ରହି ଉପବାସେ ।
ଯୋଗ ସାଧି ବ୍ରହ୍ମଜ୍ଞାନ ପାଇ ଅବଶେଷେ ॥
ଯେ ଜନ କୋଟିଏ ତୀଥ କରିଦିଏ ପ୍ରାଣ ।
ସହସ୍ର କୋଟି ବରଷ ସ୍ୱର୍ଗେ ପାଏ ମାନ୍ୟ ॥

କର୍ମ କ୍ଷୟ ଗଲୁ ସ୍ୱର୍ଗଭୂମିରୁ ଖସଇ ।
ଧନୀ ଘରେ ଜନମଇ ରୂପବନ୍ତ ହୋଇ ॥
ଭୋଗବତୀ ତୀର୍ଥେ ଯାଇ ବାସୁକି ତୀର୍ଥରେ ।
ଦଶାଶ୍ୱମେଧିକ ନାମେ ତୀର୍ଥ ତା ଉତ୍ତରେ ॥
ତହିଁ ସ୍ନାନ କଲେ ଅଶ୍ୱମେଧ ଫଳ ପାଇ ।
ଧନୀ ରୂପବନ୍ତ ଦାତା ଧାର୍ମିକ ହୁଅଇ ॥
ଋଗ୍‌ବେଦ ଅଧ୍ୟୟନ କଲେ ଯେଉଁ ପୁଣ୍ୟ ।
ସତ କହିଲେ ଅହିଂସା କଲେ ଯେଉଁ ଧର୍ମ ॥
ସେ ତୀର୍ଥକୁ ଗଲ୍‌ମାତ୍ରେ ସେ ଫଳ ସେ ପାଇ ।
ଏଥିରେ ଅଣୁଏ ମାତ୍ର ସନ୍ଦେହ ଯେ ନାହିଁ ॥
ଯହିଁ ତହିଁ ଗଙ୍ଗାଜଳ ସ୍ନାନେ ସମଫଳ ।
ସବୁଠାରେ କୁରୁକ୍ଷେତ୍ର ଅଟେ ଗଙ୍ଗାଜଳ ॥
ଯହିଁ ସିନ୍ଧୁସଙ୍ଗେ ଗଙ୍ଗା ମିଳିଅଛି ଯାଇଁ ।
କୁରୁକ୍ଷେତ୍ରହୁଁ ଅଧିକ ଦଶଗୁଣ ସେହି ॥
ବହୁତ ତୀର୍ଥ ବହୁତ ତପୀ ଋଷି ଯହିଁ ।
ସେ ସ୍ଥାନ ଗଙ୍ଗାର ସିଦ୍ଧକ୍ଷେତ୍ର ଯେ ଅଟଇ ॥
ମର୍ତ୍ତ୍ୟରେ କେବଳ ଗଙ୍ଗା ପ୍ରାଣିଙ୍କି ତାରଇ ।
ପାତାଳରେ ଗଙ୍ଗା ନାଗଲୋକ ଉଦ୍ଧାରଇ ॥
ସୁରେଶ୍ୱରୀ ଗଙ୍ଗା କରେ ଦେବଙ୍କୁ ଉଦ୍ଧାର ।
ଏଣୁ ତ୍ରିପଥଗା ନାମ ହୋଇଛି ତାହାର ॥
ଯାହାର ଅସ୍ଥି ଗଙ୍ଗାରେ ଥାଇ ଯେତେଦିନ
ତେତେ ସହସ୍ର ବରଷ ସ୍ୱର୍ଗ ପାଏ ମାନ୍ୟ ॥
ସବୁ ତୀର୍ଥଙ୍କ ମଧ୍ୟରେ ଗଙ୍ଗା ତୀର୍ଥ ସାର ।
ସବୁ ନଦୀଜଳ ମଧ୍ୟେ ଶ୍ରେଷ୍ଠ ଗଙ୍ଗାନୀର ॥
ସବୁ ପ୍ରାଣିଙ୍କର ମୋକ୍ଷ ପ୍ରଦାନ କରଇ ।
ମହାପାତକୀ ମାନଙ୍କ ପାତକ ହରଇ ॥
ସବୁଠାରେ ଗଙ୍ଗାଜଳ ଅଟଇ ସୁଲଭ ।
ତିନିଗୋଟି ସ୍ଥାନ ତାର ଅଟଇ ଦୁର୍ଲଭ ॥
ପ୍ରୟାଗ ଗଙ୍ଗା ସାଗର ସଙ୍ଗ ଗଙ୍ଗା ଦ୍ୱାର ।
ଏ ତିନିରେ ସ୍ନାନ କଲେ ପାଇ ସ୍ୱର୍ଗପୁର ॥
ଯେ ତହିଁ ମରଇ ତାର ଜନ୍ମ ଆଉ ନାହିଁ ।
ଏହି କଥା ଗୋଟି ବେଦେ ଉକତ ଅଛଇ ॥
ପାପୀର ନାନାହିଁ ଗତି ଥିଲେହେଁ କ ହେବ ।
ଗଙ୍ଗାର ସମାନ ଗତି ପାଇବା ଦୁର୍ଲଭ ॥
ଶିବଙ୍କ ଜଟାରୁ ଖସି ପଡ଼ିଛି ଯେ କ୍ଷିତି ।
ସର୍ବ ପାପହରା ତେଣୁ ତାର ନାମ ଖ୍ୟାତି ॥

ପବିତ୍ରଙ୍କ ପବିତ୍ର ଯେ ଗଙ୍ଗାହିଁ କେବଳ ।
ମଙ୍ଗଳର ମଙ୍ଗଳ ଯେ ସେହି ଗଙ୍ଗାଜଳ ॥
ପୁଣି ପ୍ରୟାଗ ମହିମା ଶୁଣ ହେ ରାଜନ ।
ଶୁଣିଲେ ସକଳ ପାପୁଁ ପାଇବ ମୋଚନ ॥
ମାନସ ନାମରେ ତୀର୍ଥ ଗଙ୍ଗାର ଉତ୍ତରେ ।
ତହିଁ ଯେହୁ ତିନିରାତ ଉପବାସ କରେ ॥
ସକଳ କାମନା ସିଦ୍ଧି ହୁଅଇ ତାହାର ।
ଗୋରୁ ଭୂମି ସୁନା ଦାନ ଫଳ ପାଇ ନର ॥
ଜନ୍ମାନ୍ତରେ ସେ ତୀର୍ଥକୁ ମନେ ସୁମରଇ ।
କାମନା ଥାଉ ନ ଥାଉ ଯେବେ କେହି ଯାଇ ॥
ଗଙ୍ଗାରେ ଝାସ ଦିଅଇ ବସେ ସ୍ୱର୍ଗପୁରେ ।
କଦାପି ଘୋର ନରକ ଦର୍ଶନ ନ କରେ ॥
ଶୋଇଥିଲେ ଅପସରୀ ଗଣେ ତାକୁ ଆସି ।
ଧୀରେ ଉଠାଇଣ ନୃତ୍ୟ ଗୀତ ବାଦ୍ୟେ ତୋଷି
ହଂସ ଯୋଗେ ବିମାନରେ କରଇ ବିହାର ।
ଷଷ୍ଠିସହସ୍ର ବରଷ ସୁଖ ଭୋଗି ନର ॥
ପୁଣ୍ୟର କ୍ଷୟ ହୁଅନ୍ତେ ସ୍ୱର୍ଗରୁ ଖସଇ ।
ସୁନା ରୂପା ମଣି ମୁକ୍ତା ଯାହା ଗୃହେ ଥାଇ ॥
ସେ ଉତ୍ତମ କୁଳବନ୍ତ କୋଳେ ହୁଏ ଜାତ ।
ମାଘମାସେ ଛଅଷଠି ହଜାର ଯେ ତୀର୍ଥ ।
ଗଙ୍ଗା ଯମୁନା ସଙ୍ଗମ ପ୍ରୟାଗେ ମିଳନ୍ତି ।
ଲକ୍ଷେ ଗୋରୁଦାନ କଲେ ଯେଉଁ ଫଳ ପାନ୍ତି
ପ୍ରୟାଗରେ ମାଘମାସେ ତିନିଦିନ ସ୍ନାନେ ।
ସେ ଫଳଯାକ ତକ୍ଷଣେ ପାଆନ୍ତି ସେ ଜନେ ॥
ଗଙ୍ଗାଯମୁନା ମଧ୍ୟରେ ଯେବେ କେହି ଜନ ।
ପଞ୍ଚ ଅଗ୍ନି ଥାପି ଯୋଗ କରଇ ସାଧନ ॥
ରୋଗୀ ବା ହୀନାଙ୍ଗ ହେଉ ନ ହେଉ ସେ ପୁଣି
ସର୍ବାଙ୍ଗ ସୁନ୍ଦର ହୋଇ ତକ୍ଷଣେ ସେ ପ୍ରାଣୀ ॥
ଦେହରେ ଯେତେ ଲୋମ ତେତେ ସହସ୍ର ବରଷ
ମହା ଗଉରବ ପାଇ କରେ ସ୍ୱର୍ଗ ବାସ ॥
ପୁଣ୍ୟ କ୍ଷୟଯାନ୍ତେ ପୁଣି ମର୍ତ୍ତ୍ୟରେ ସେ ଆସି ।
ଜମ୍ବୁଦ୍ୱୀପେ ରାଜା ହୋଇ ସୁଖରେ ବିଳସି ॥
ବିପୁଳ ଉପଭୋଗରେ କଟାଇ ସେ ଦିନ ।
ପୁଣି ସେହି ତୀର୍ଥକୁ ସେ କରେ ସୁମରଣ ॥
ପ୍ରୟାଗରେ ଝାସଦେବା ପ୍ରାଣୀ ମୋକ୍ଷ ପାଏ ।
ରାହୁମୁଖରୁ ଚନ୍ଦ୍ରମା ମୋକ୍ଷ ହେଲା ପ୍ରାୟେ ॥

ଚନ୍ଦ୍ରଲୋକେ ଚନ୍ଦ୍ରପ୍ରାୟ ଆହ୍ଲାଦ ପାଇ ।
ଛଅଷଠି ସହସ୍ର ବରଷ ତହିଁ ଥାଇ ॥
ଋଷି ଗନ୍ଧର୍ବେ ତାହାର ତୋଷୁଥାନ୍ତି ମନ ।
ପୁଣି ସେହ ଧର୍ମାତ୍ମକହେ ହୁଅଇ ଜନମ ॥
ଭୂମିରେ ମସ୍ତକ ରଖି ପାଦରଖି ଶୂନ୍ୟେ ।
ପଞ୍ଚଅଗ୍ନି ଥାପି ବସେଁ ଅଗ୍ନି ଶିଖା ପାନେ ॥
ଶତ ସହସ୍ର ବରଷ ସ୍ୱର୍ଗେ ପୂଜା ପାଇ ।
ପୁଣି ମର୍ତ୍ତ୍ୟରେ ଜନମି ଅଗ୍ନିହୋତ୍ରୀ ହୋଇ ॥
ସୁବିପୁଳ ଅଇଶ୍ୱର୍ଯ୍ୟ ଭୋଗେ କାଟେ କାଳ ।
ପୁଣି ସେ ତୀର୍ଥେ ସେପରି କରେ ମହୀପାଳ ॥
ତହିଁ ଦେହ କାଟି ଦିଏ ପକ୍ଷିଙ୍କି ଯେ ମାଂସ ।
ତହିଁର ଯେ ଫଳ ତାହା କହୁଛି ନରେଶ ॥
ଶତ ସହସ୍ର ବରଷ ସୋମ ଲୋକେ ରହି ।
ବହୁତର ଗଉରବ ପାଇ ତହିଁ ସେହି ॥
ମର୍ତ୍ତ୍ୟରେ ଜନମି ହୋଏ ଧର୍ମବନ୍ତ ପ୍ରାଣୀ ।
ଗୁଣବନ୍ତ ରୂପବନ୍ତ ପଣ୍ଡିତ ସେ ପୁଣି ॥
ପ୍ରିୟ ଦରଶନ ରାଜା ହୁଅଇ ଆବର ।
ମହା ଅଇଶ୍ୱର୍ଯ୍ୟ ଭୋଗେ ଯାଏ ଦିନ ତାର ॥
ତୀର୍ଥକୁ ଯାଇ ସେ ପୁଣି ସେରୂପେ କରଇ ।
ତାହାର ପୁଣ୍ୟ କେହୁ ବା ବଦନରେ କହି ॥
ପ୍ରୟାଗ ଦକ୍ଷିଣ ଆଡେ ଯମୁନା ଉତ୍ତରେ ।
ଋଣ ପ୍ରମୋଚନ ନାମେ ଅଛି ତୀର୍ଥବରେ ॥
ପରମ ତୀର୍ଥ ବୋଇ ଯେ ବୋଲନ୍ତି ତାହାକୁ ।
ହେ ଧର୍ମରାଜନ ଯେବେ ଯାଇ ସେ ତୀର୍ଥକୁ ॥
ରାତଗୋଟା ଉପବାସେ ରହି କଟାଇବ ।
ନିଶ୍ଚେ ସେ ସବୁ ଋଣରୁ ମୁକତ ହୋଇବ ॥
ଅରୃଣୀ ହୋଇ ଦେହାନ୍ତେ ସୂର୍ଯ୍ୟ ଲୋକପାଇ
ଗୋପୀନାଥ ବୋଲେ ଜନେ ତୀର୍ଥକର ଯାଇଁ

ଇତି ଶ୍ରୀ ପଦ୍ମ ପୁରାଣେ ସ୍ୱର୍ଗଖଣ୍ଡେ ପ୍ରୟାଗ ତୀର୍ଥ କୃତ୍ୟେ ନାମ ଏକତ୍ରିଂଶୋଽଧ୍ୟାୟଃ ।



## ଦ୍ୱାତ୍ରିଂଶ ଅଧ୍ୟାୟ ।

ପ୍ରୟାଗ ବ୍ରତଫଳ ମାହାତ୍ମ୍ୟ ।

ପଚ୍ଚରିଲେ ଯୁଧିଷ୍ଠିର ହେ ତପସୀ ମୁନି ।
ପ୍ରୟାଗ ତୀର୍ଥରେ କୃତ୍ୟ ତବ ମୁଖୁଁ ଶୁଣି ॥
ଦେହ ପବିତ୍ର ହୋଇଲା ଏବେ କୃପାକର ।
ତହିଁ ଅନାହାର ବ୍ରତଫଳ କେଉଁପରେ ॥
କହିବା ହେଉ ମୃକଣ୍ଡ ମୁନିର ନନ୍ଦନ ।
ବୋଇଲେ ଯେ ମାରକଣ୍ଡ ଶୁଣ ହୁ ରାଜନ ॥
ବୁଦ୍ଧିମନ୍ତ ଶ୍ରଦ୍ଧାବନ୍ତ ଜନ ଯେବେ ଯାଇ ।
ତହିଁ ଅନାହାର ବ୍ରତ ରହି କରିଥାଇ ॥
ତାହାର ଯେ ଫଳ ତାହା କହୁଅଛି ଶୁଣ ।
ନିରୋଗୀ ପୁଣି ସର୍ବାଙ୍ଗ ସୁନ୍ଦର ସେ ଜନ ॥
ହୋଇବ ନାହିଁ ଏଥିରେ କିଛି ଯେ ସଂଶୟ ।
ଯେତେ ପାଦେ ଯାଇ ତହିଁ ମିଳେ ମହାଶୟ
ପାଦେକେ ସେ ଏକ ଅଶ୍ୱମେଧ ଫଳ ପାଇ ।
ଏମନ୍ତେ ସେ ପ୍ରୟାଗକୁ ଯେତେ ପାଦେ ଯାଇ ॥
ତେତେ ଗୋଟା ଅଶ୍ୱମେଧ ଯାଗଫଳ ତାର ।
ତଳରୁ ଦଶ ପୁରୁଷ କରଇ ଉଦ୍ଧାର ॥
ଉପର ଦଶ ପୁରୁଷ ତାରଇ ସେ ପୁଣି ।
ଆପେ ପରମ ପଦବୀ ଲଭେ ନୃପମଣି ॥
ଯୁଧିଷ୍ଠିର କହିଲେ ହେ ମୁନି ମାର୍କଣ୍ଡେୟ ।
ଆପଣ ଜାଣନ୍ତି ସବୁ ଧର୍ମର ବିଷୟ ॥
ଅଳପ କଷ୍ଟେ ଅଳପ ଦାନେ ପୁଣି ଜନେ ।
ବହୁତ ପୁଣ୍ୟ ଅରଜି ପାରିବେ କେସନେ ॥
ସେ କଥା କହ ମୋ ମନୁ ଫେଡନ୍ତୁ ସଂଶୟ ।
ଆବର କଥାଏ ଶୁଣ ମୃକଣ୍ଡ ତନୟ ॥
ଅଶ୍ୱମେଧ ଯଜ୍ଞେ ପୁଣ୍ୟ ବହୁତ ହୁଅଇ ।
ସେ ଫଳ ଅନ୍ୟ କର୍ମରେ ମିଳଇ କି ନାହିଁ ॥
ଏଥିରେ ବଡ ସଂଶୟ ଉପୁଜେ ମୋ ମନେ ।
ଶୁଣିବାକୁ କୁତୂହଳ ମୋହର ଜନମେ ॥
କହିଲେ ଯେ ମାରକଣ୍ଡ ଶୁଣ ହେ ରାଜନ ।
ପୂର୍ବକାଳେ ପଦ୍ମଯୋନି ଘେନି ଋଷିଗଣ ॥
କହିଥିଲେ ତାଙ୍କୁ ଯାହା ଶୁଣିଛି ଯେମନ୍ତେ ।
ମନଦେଇ ଶୁଣ ତାହା କହୁଛି ମୁଁ ତୋତେ ॥
ପ୍ରୟାଗ ମଣ୍ଡଳ ପାଞ୍ଚ ଯୋଜନ ବିସ୍ତାର ।
ସେ ଭୂମିରେ ଯେତେ ପାଦ ଚାଲିଯାଇ ନର ॥
ତେତେ ଅଶ୍ୱମେଧ ଯଜ୍ଞ କଲଫଳ ପାଇ ।
ସେ ସ୍ଥାନରେ ଯେବେ କେହି ଜୀବନ ଦିଅଇ
ତାର ସପତ ପୁରୁଷେ ତଳକୁ ଆବର
ଉପରକୁ ଚଉଦ ଯେ ପୁରୁଷ ତାହାର ॥

ଉଦ୍ଧାର ପାଆନ୍ତି ଏହା ଜାଣି ମହାଶୟ ।
ଶ୍ରଦ୍ଧାରେ ପ୍ରୟାଗ ଯାଇ ପାପ କର କ୍ଷୟ ॥
ଶ୍ରଦ୍ଧା ଯାର ନାହିଁ ସେହି ନ ଯାଇ ପାରଇ ।
ପାପ ତାହାର ମନକୁ ତହୁଁ ନିବାରଇ ॥
ଏମନ୍ତ ଶୁଣି ବୋଇଲେ ରାଜା ଯୁଧିଷ୍ଠିର ।
ଧନ କାମ ଲୋଭ ଛଳରେ ଯେବେ କେହି ନର
ପ୍ରୟାଗେ ଗଲେ କି ଫଳ ହୋଇବ କି ପୁଣ୍ୟ
ଅବଶ୍ୟକ ଅଜ୍ଞାନୀ ଅଟଇ ସେ ଜନ ॥
ସର୍ବଦ୍ରବ୍ୟ ବେଦଙ୍କ କିଛି ବାରଣ ନ କରେ ।
ଗଲେ ତାଙ୍କର କି ଗତି ହୁଏ ପ୍ରୟାଗରେ ॥
ଏମନ୍ତ ଶୁଣି ବୋଇଲେ ମାର୍କଣ୍ଡ ମୁନି ।
ସାବଧାନେ ଶୁଣ ତୁହେ ଧର୍ମ ନୃପମଣି ॥
ଅତି ଗୁପତ ଏ କଥା କହୁଛି ତୁମ୍ଭଙ୍କୁ ।
ସର୍ବପାପ ବିନାଶିବ ଶୁଣି ଏ କଥାକୁ ॥
ପ୍ରୟାଗ ଧାମରେ ଯତି ବ୍ରତୀ ହୋଇ ନର ।
ମାସେ ରହିଲେ ପ୍ରୟାଗେ ପାପ ହୋଏ ଦୂର ॥
ସ୍ୱୟମ୍ଭୁ ବ୍ରହ୍ମା ଏରୂପେ ପୂର୍ବୁ କହିଛନ୍ତି ।
ଅହିଂସକ ଶ୍ରଦ୍ଧାବନ୍ତ ଶୁଚିମନ୍ତ ଯତି ॥
ପ୍ରୟାଗେ ମାସେ ରହିଣ ସବୁ ପାପ ହରେ ।
ପରମ ପଦ ଲଭଇ ପୁଣି ଦେହାନ୍ତରେ ॥
ବିଶ୍ୱାସ ଘାତକା ଲୋକେ ପ୍ରୟାଗେ ମିଳିଲେ ।
ଜଳେ ବୁଡ଼ି ରହି ତିନିକାଳ ସ୍ନାନ କଲେ ॥
ଭିକ୍ଷା ମାଗିଣ ଆହାର କରିବ ବଖତେ ।
ତିନିମାସ ରହେ ଯେବେ ସେହି ଏହିବ୍ରତେ ॥
ସକଳ ପାପେ ପଳାନ୍ତି ତା ଦେହକୁ ଛାଡ଼ି ।
ଅଜ୍ଞାନେ ଯେବେ କି କେହି ସେ ତୀର୍ଥକୁ ମାଡ଼ି
ତାର ସକଳ କାମନା ସିଦ୍ଧ ହୋଇ ଅନ୍ତେ ।
ସ୍ୱର୍ଗ ପୁରକୁ ଗମନ କରେ ପୁଣ୍ୟପଥେ ॥
ଧନଧାନ୍ୟ ପୂରିଥିବା ସ୍ଥାନେ ଗୋଷ୍ଠୀ ପାଇ ।
ମହାଜ୍ଞାନୀ ମହାଭୋଗୀ ପୁରୁଷ ବୋଲାଇ ॥
ପିତୃଗଣ ପିତାମହଗଣ ଯେ ତାହାର ।
ପ୍ରପିତାମହଗଣ ଯେ ତାଙ୍କ ସହୋଦର ॥
ଆବର ତାହାଙ୍କ ବଂଶ ନରକୁ ତରନ୍ତି ।
ଏ ଅତି ଗୁପତ କଥା କେହି ନ ଜାଣନ୍ତି ॥
ତୁମ୍ଭେ ପଚାରିବାରୁ ମୁଁ କହିଲି ତୁମ୍ଭଙ୍କୁ ।
ଯୁଧିଷ୍ଠିର ପଚାରିଲେ ପୁଣି ସେ ମୁନିଙ୍କୁ ॥
ସଫଳ ଜନମ କୁଳ ଗୋତ୍ରହିଁ ମୋହର ।
ପୂର୍ବ ଭାଗ୍ୟରୁ ଦର୍ଶନ ପାଇଲି ତୁମ୍ଭର ॥
ଧର୍ମାତ୍ମା ପୁରୁଷ ତୁମ୍ଭେ ତୁମ୍ଭ ଦରଶନେ ।
ସବୁ ପାପରୁ ମୁକତ ହେଲି ଏହିକ୍ଷଣେ ॥
ମାର୍କଣ୍ଡ ବୋଇଲେ ତୁ କହିଲୁ ଯା ସତ ।
ସଫଳ ତୋର ଜନମ ପବିତ୍ର ତୋ ଗୋତ୍ର ॥
ପ୍ରୟାଗ ବର୍ଣ୍ଣନେ ପୁଣ୍ୟ ବଢ଼ିବାରୁ ତୋର ।
ମହିମା ଶୁଣି ନିଷ୍ପାପ ହେଲା ତୋ ଶରୀର ॥
ଯୁଧିଷ୍ଠିର ବୋଇଲେ ହେ ମାର୍କଣ୍ଡ ଯତି ।
ଯମୁନାରେ ପୁଣ୍ୟ କେତେ କି ଫଳ କି ଗତି ॥
ଯାହା ଯାହା ଶୁଣିଛନ୍ତି ଦେଖିଛନ୍ତି ମୁନି ।
ବିସ୍ତାରି କହିବ ସବୁ ନ ରଖିବ ଗ୍ଲାନି ॥
ମାର୍କଣ୍ଡ ବୋଇଲେ ସେ ତପନ ତନୟା ।
ଯମର ଭଉଣୀ ପୁଣି ସେହି ପୁଣ୍ୟତୋୟା ॥
ସେ ଦେବୀ ଯମୁନା ନଦୀ ତହିଁ ଯାଏ ବହି ।
ଗଙ୍ଗାନଦୀ ପାଖେ୨ ଗଙ୍ଗାପଥ ଦେଇ ॥
ସହସ୍ର ଯୋଜନ ଦୂରେ ଥାଇ ଯେବେ କେହି
ଯମୁନା କୀର୍ତ୍ତନ କଲେ ପାପ ଛାଡ଼ି ଯାଇ ॥
ଯମୁନା ଜଳରେ ପଶି ସ୍ନାନ କଲା ନର ।
କି ଅବା ପାନ କରଇ ଯମୁନାର ନୀର ॥
ଯମୁନା ନାମ କୀର୍ତ୍ତନେ ଯମୁନା ଦର୍ଶନେ ।
ଶୁଣ କହୁଅଛି ଯେଉଁ ଫଳ ପାନ୍ତି ଜନେ ॥
ସ୍ନାନ ପାନେ ସାତ କୁଳ ପବିତ୍ର କରନ୍ତି ।
ଦରଶନେ ସେ ସବୁର ମଙ୍ଗଳ ଦେଖନ୍ତି ॥
ମଲେ ତହିଁରେ ପରମ ଗତି ହୁଏ ଲଭ୍ୟ ।
ଯମୁନା ଦକ୍ଷିଣେ ଅଛି ତୀର୍ଥେକ ଦୁର୍ଲଭ ॥
ତାର ନାମ ଅଗ୍ନି ତୀର୍ଥ ସେ ବିଖ୍ୟାତ ଅତି ।
ତାର ପଶ୍ଚିମେ ତୀର୍ଥେକ ଅଛଇ ନୃପତି ॥
ତାର ନାମ ହରବର ଧର୍ମରାଜ ତୀର୍ଥ ।
ତହିଁ ସ୍ନାନ କଲେ ସ୍ୱର୍ଗ ହୁଅଇ ପ୍ରାପତ ॥
ମଲେ ତହିଁ ପୁନରପି ଜନମ ନୁହଇ ।
ଏକଥା ଗୋଷ୍ଠା ଶାସ୍ତ୍ରରେ ଉକତ ଅଛଇ ॥
ସହସ୍ର ସହସ୍ର ତୀର୍ଥ ଯମୁନା ଦକ୍ଷିଣେ ।
ଯମୁନା ଉତ୍ତର ତୀରେ ତୀର୍ଥ ସ୍ଥାନେ ସ୍ଥାନେ ॥
ଯେ ସବୁ ଅଛି କହୁଛି ଶୁଣ ଯୁଧିଷ୍ଠିର ।
ବିରଜା ନାମରେ ତୀର୍ଥ ଅଛି ଆଦ୍ୟତର ॥

ବାସବ ସହିତ ଦେବେ ଆସୁଥାନ୍ତି ଜାଣ ।
ତକ୍ଷକନାଏ ନାରଦେ ସେ ତୀର୍ଥ ସେବନ୍ତି ॥
ପଣ୍ଡିତେ ଥାନ୍ତି ସେ ତୀର୍ଥେ ହୋଇ ତୀର୍ଥ ବ୍ରତୀ ।
ଶ୍ରଦ୍ଧାବନ୍ତ ଦାତା ହୋଇ ପଇ ତୁ ନୃପତି ॥
ତୀର୍ଥଜଳ ନୀରେ ମିଶି ସବୁ ପାପ ହର ।
ବହୁତ ତୀର୍ଥ ମହୀରେ ଅଛି ନୃପବର ॥
ତହିଁ ସ୍ନାନ କଲେ ଲୋକ ସ୍ୱର୍ଗପୁରେ ଯାନ୍ତି ।
ତହିଁ ମଲେ ଲୋକେ ପୁଣି ଜନମ ନହନ୍ତି ॥
ଗଙ୍ଗା ଯମୁନାର ଫଳ ଅଟଇ ସମାନ ।
ଗଙ୍ଗାକୁ ଶ୍ରେଷ୍ଠ କରଣ ଲୋକ ସାଧାରଣ ॥
ବିଶେଷ ପୂଜା କରନ୍ତି ଆହେ କୁନ୍ତୀସୁତ ।
ତୁମ୍ଭେ ସବୁ ତୀର୍ଥ ନୀରେ ହୁଅ ଅଭିଷେକ ॥
ଯାବତ ଜୀବନ ପାପ ଛୁଟିବ ତୋର ।
ଶଯ୍ୟାରୁ ଉଠି ପ୍ରଭାତ କାଳେ ଯେଉଁ ନର ॥
ତୀର୍ଥ ମହାତ୍ମ୍ୟ ପଢ଼ଇ ପାପ ନ ରହଇ ।
ଦେହାନ୍ତେ ସ୍ୱର୍ଗପୁରକୁ ସେ ଯାଇ ପାରଇ ॥
ଯୁଧିଷ୍ଠିର ବୋଇଲେ ଯା କହିଲ ପୁରାଣ ।
ତୁମ୍ଭ ଆଗେ ବ୍ରହ୍ମା ଯାହା କହିଥିଲେ ପୁଣ ॥
ଶତ ସହସ୍ର ନିଯୁତ ତୀର୍ଥହିଁ ଆବର ।
ତହିଁରେ ଅତି ପବିତ୍ର ହୁଅଇ ଶରୀର ॥
ଦେହାନ୍ତେ ପରମ ଗତି ପାଇ ତାର ଫଳେ ।
ସବୁ ଶୁଣିଲି ହେ ମୁନି ତବ କୃପାବଳେ ॥
ପୁଣି ପାରଣ କହିଲ ତହିଁରେ ଏ ସାର ।
ପୃଥିବୀରେ ନଇମିଷ ପୁଣ୍ୟ ତୀର୍ଥବର ॥
ପୁଷ୍କର ତୀର୍ଥ ଯେ ଶ୍ରେଷ୍ଠ ଅଟେ ଅନ୍ତରୀକ୍ଷେ ।
ପ୍ରୟାଗ ତେସନ ଶ୍ରେଷ୍ଠ ପୁଣ୍ୟ ଦାନ ପକ୍ଷେ ॥
ଶୁଣିଛୁଁ ସବୁହୁଁ ଶ୍ରେଷ୍ଠ ଅଟେ କୁରୁକ୍ଷେତ୍ର ।
ପୁଣ୍ୟ ଗତିକି ଦିଅଇ କରଇ ପବିତ୍ର ॥
ନ କଲ ତାକୁ ପ୍ରଶଂସା କାହିଁକି ହେ ମୁନି ।
ପ୍ରୟାଗକୁ ପ୍ରଶଂସା ଯେ କର ପୁଣି ପୁଣି ॥
ଏଣୁ ତୁମ୍ଭ କଥା ଗୋଟା ଅଟେ ଅପ୍ରମାଣ ।
ଶୁଣିବାକୁ ଶ୍ରଦ୍ଧା ମୋର ନ ବଳଇ ପୁଣ ॥
ବହୁତ ତୀର୍ଥ ଅଛଇ ଏ ମହୀ ମଣ୍ଡଳେ ।
ପରମ ଗତି ଲଭନ୍ତି ସେହି ତୀର୍ଥ ଫଳେ ॥
ମନର କାମନା ପୂର୍ଣ୍ଣ କରନ୍ତି ଆବର ।
ପାପ ଛଡ଼ାଇ ପବିତ୍ର କରନ୍ତି ଶରୀର ॥

ଯେଣୁ ପ୍ରୟାଗର ଗୁଣ ଅଳପ ଅଟଇ ।
ତୁମ୍ଭେ କହୁଛ ବହୁତ ପୁଣ୍ୟ ସେ ଦିଅଇ ॥
ଏଥିରେ ମୋର ମନରେ ଆହୁରି ସଂଶୟ ।
ଏମନ୍ତ ଶୁଣି ବୋଇଲେ ମୁନି ମାର୍କଣ୍ଡେୟ ॥
ଶରଧା ନ ବଳେ ମୋର ଶୁଣିବାକୁ ଯାହା ।
କହିଲ ଏହା ଉଚିତ ନୋହିଲ ନରନାହା ॥
ଏଥିରେ ଶ୍ରଦ୍ଧା ନ ବଳେ ଦୁରାଚାରଙ୍କର ।
ଦୁଷ୍ଟ ବୁଦ୍ଧି ଅପବିତ୍ର ଅଟନ୍ତି ଆବର ॥
ପୁଣ୍ୟ କଥାରେ ତାହାଙ୍କ ମନ କାହୁଁ ଯିବ ।
ତୁମ୍ଭର ଶ୍ରଦ୍ଧା କପାଇଁ ତହିଁରେ ନ ହେବ ॥
ଧାର୍ମିକେ ଶୁଣନ୍ତି ସିନା ପୁଣ୍ୟ କଥାମାନ ।
ପାପେ ବୁଡ଼ି ରହିଥାଏ ପାପୀଙ୍କର ମନ ॥
ଏଣୁ କହିଲ ତୁମ୍ଭର ନୋହେ ଏ ଉଚିତ ।
ଯେ ସଂଶୟ ତୁମ୍ଭ ମନେ ହୋଇଅଛି ଜାତ ॥
ଯେମନ୍ତେ ତାହା ତୁମ୍ଭର ମନୁ ହେବ ଦୂର ।
ତାହା ଆମ୍ଭେ କହୁଅଛୁଁ ଶୁଣ ନୃପବର ॥
ଦେଖିବା ଘଟନା ପୁଣି ଶୁଣିମା ଘଟନା ।
ଯାହା ଯାହା ଘଟିଅଛି ଶୁଣ ମହାମନା ॥
ଶାସ୍ତ୍ର କଥାର ପ୍ରମାଣ ଘେନି କେହି ଲୋକ ।
ଆତ୍ମ ଯୋଗର ପ୍ରଶଂସା କରନ୍ତି ଅନେକ ॥
କେହି କଷ୍ଟ ପାଇ ଯୋଗ ସାଧୁଥାନ୍ତି ବସି ।
ସେ କଷ୍ଟ ମନେ ନ ଧରି ଯୋଗକୁ ପ୍ରଶଂସି ॥
କଷ୍ଟ ସହି ସହି ଯୋଗ ସାଧି ନ ପାରନ୍ତି ।
କେହି ସହସ୍ର ଜନମେ ଯୋଗ ସିଦ୍ଧ ହୋନ୍ତି ॥
ସବୁରନ୍ନ ବ୍ରାହ୍ମଣକୁ ଦିଏ ଯେବେ କେହି ।
ଯୋଗ ସିଦ୍ଧ ହୁଅଇ ସେ ଦାନଫଳେ ସେହି
ପ୍ରୟାଗେ ଝାସିଲେ ସବୁ ଫଳ ତାକୁ ମିଳେ ।
ତୁମ୍ଭେ ଶ୍ରଦ୍ଧାବନ୍ତ ଜନ ଏ ମହୀ ମଣ୍ଡଳେ ॥
ତେଣୁ ତୁମ୍ଭ ଆଗେ ଏହା କହିଲୁଁ ରାଜନ ।
ପ୍ରୟାଗ ତୀର୍ଥ ମହିମା ସବୁହୁଁ ପ୍ରଧାନ ॥
ବ୍ରହ୍ମ ଏକାକେ ଯେ ଯହିଁ ତହିଁ ହୁଏ ଦୃଶ୍ୟ ।
ସବୁଠାରେ ପୂଜା ପାଏ ସେ ବ୍ରହ୍ମ ସଦୃଶ ॥
ପ୍ରୟାଗ ସବୁ ଲୋକରେ ସେମନ୍ତ ପୂଜିତ ।
ଜାତ ଅଜାତ ଦେବ ସ୍ତ୍ରୀ ପୁରୁଷ ସହିତ ॥
ସମସ୍ତେ ପ୍ରୟାଗ ଫଳେ ପାଇବେ ଉଦ୍ଧାର ।
ଅଦୃଶ୍ୟ ବ୍ରହ୍ମ ପ୍ରାପ୍ତ ତା ଫଳେ ଯୁଧିଷ୍ଠିର ॥

ମନ୍ତ୍ରର ପୂଜ୍ୟ କେବଳ ଏ କଥା କୁହଇ ।
ତୀର୍ଥ ରାଜ ବୋଲି ସେହୁ ଜଗତେ ବୋଲଇ ॥
ବାର୍ ବାର୍ ତା ମହିମା କହନ୍ତି ସେଣୁ ସତ୍ୟ ।
ପ୍ରୟାଗ ତୀର୍ଥ ସ୍ମରଣେ ବ୍ରହ୍ମ ମୁଣି କହ୍ୟ ॥
ଏ ତୀର୍ଥ ରାଜକୁ ଯେବେ ଯାଏ କେହି ଜନ ।
ଆଉ ମରନ ନ ଲଭିବ କହି ସେ ରାଜନ ॥
ଦେବତା ହୋଇ ମାନବ ହେବାକୁ ଯାଥିଲ ।
ମାନବ ଦେବତା ହେବା ପାଇଁ ମନାସଇ ॥
ଦେବତା ପୁଣି ମାନବ ହୁଏ ପାପଫଳେ ।
ମାନବ ଦେବତା ପୁଣି ହୁଏ ପୁଣ୍ୟବଳେ ॥
ଏ ପ୍ରୟାଗ ତୀର୍ଥେ ତାହା କହି ନ ବାରଇ ।
ଯେ ଯାହା ମନେ ବାଞ୍ଛିବ ତାହା ତହିଁ ପାଇଁ ॥
ଏଣୁ ମୁଁ ପ୍ରଶଂସା କରେ ଏହାର ବହୁତ ।
ମନରେ ବିଚାର ଘେନ ତୁମ୍ଭେ ବୁଦ୍ଧିମନ୍ତ ॥
ଯୁଧିଷ୍ଠିର କହିଲେ ଯା କହିଲ ଆପଣ ।
ଶୁଣିଣ ବୁଝିପାରିଲି ତାହାର ମରମ ॥
ଯୋଗ ସାଧିଲେ ଯା ମିଳେ ପ୍ରୟାଗେ ତା ମିଳେ
ଏଥିରେ ମୋର ସଂଶୟ ନ ତୁଟିଲା ଭଲେ ॥
ଅଧିକ ପୁଣି ବିସ୍ମୟ ଉପୁଜିଲା ଚିତ୍ତେ ।
କର୍ମ ବିନା ସ୍ୱର୍ଗଲାଭ ନୋହେ କଦାଚିତେ ॥
ସ୍ୱର୍ଗ ମିଳିଲେ ତହିଁରେ ସୁଖଭୋଗ ମିଳେ ।
ପୃଥିବୀ ପୁଣି ମିଳଇ ସେହି କର୍ମ ଫଳେ ॥
ଏଣୁ ମୁଁ ସେ ସବୁ କର୍ମ ପଚାରୁ ଅଛଇ ।
ଯେଉଁ କର୍ମ କଲେ ପୁଣି ଏ ପୃଥିବୀ ପାଇ ॥
ଏହା ଶୁଣି ବୋଇଲେ ସେ ମାର୍କଣ୍ଡ ମୁନି ।
ହେ ରାଜନ୍ୟ ମହାବାହୁ କ୍ଷତ୍ରଚୂଡ଼ାମଣି ॥
ଯାହା କଲେ ପୃଥ୍ୱୀ ଗୋରୁ ଅଗ୍ନି ବିପ୍ର ଶାସ୍ତ୍ର ।
କାଞ୍ଚନ ଜଳ ଯୁବତୀ ମିଳଇ ବହୁତ ॥
କହୁଅଛି ସାବଧାନେ ଶୁଣ ନୃପବର ।
ମାତା ପିତା ନିନ୍ଦାକାରୀ ଯେ ଅଧମ ନର ॥
ଉପରକୁ ନ ଉଠି ସେ ତଳେ ପଡ଼ିଥାଇ ।
ପ୍ରଜାପତିଙ୍କ ଶ୍ରୀମୁଖ ବଚନ ଯେ ଏହି ॥
ଯୋଗ ନ ସାଧିଲେ ସେହି ସ୍ଥାନ ନ ମିଳଇ ।
ସେ ସ୍ଥାନ ଗୋଷ୍ଠ ପରମ ଦୁର୍ଲଭ ଅଟଇ ॥
ଘୋର ନରକେ ପଡ଼ଇ ପାପକାରୀ ନର ।
ନ କହି ଯେ ନ ଦେଖାଇ ଧନ ରତ୍ନ ସାର ॥
ହାତୀ ଘୋଡ଼ା ନେଳ ଗୋରୁ ଅଣିଗ ବାହୁଟି
ମଣି ମୁକୁତା ବସନ ଆଦି ଚୋରିକର ॥
ପଛେ ପୁଣି ତାହା ସବୁ ନେଇ ରାଜ ଦିଅଇ ।
ସେହିଁ ସ୍ୱର୍ଗଭୁବନ ସେ ଲୋକକୁ ମିଳଇ ॥
ତାହା ଶୁଣି ଯୁଧିଷ୍ଠିର ମନର ସରାଗେ ।
ଦାତା ଆଉର ଭୋଗୀଏ ଥାନ୍ତି ଯହିଁ ଭୋଗେ ॥
ସେ ସ୍ଥାନ ତାହାକୁ ମିଳେ ସେ ଅଧମଜନ ।
ଏହି କର୍ମଯୋଗୁଁ ହୁଏ ନରକେ ପତନ ॥
ଆମ୍ଭେ ଯେ କହିଲୁ ତୁମ୍ଭ ଆଗେ ଯୁଧିଷ୍ଠିର ।
ଯୋଗ ପୁଣି ଧର୍ମ ସତ୍ୟ ଅସତ୍ୟ ଆଉର ॥
ନାସ୍ତିକ ଆସ୍ତିକ ଦାତା ଏମାନଙ୍କ ଫଳ ।
ବିଚାରିକୁ ଯାହା ଆସେ କର ମହୀପାଳ ॥
ଗୋପୀନାଥ କହେ ଭଜନେ ପ୍ରୟାଗ ସୁମର ।
ପ୍ରୟାଗ ପ୍ରୟାଗ କହି ପ୍ରୟାଗରେ ମର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ପ୍ରୟାଗ
ବ୍ରତ ଫଳ ମାହାତ୍ମ୍ୟଂ ନାମ
ଦ୍ୱାବିଂଶୋଽଧ୍ୟାୟଃ ।



## ତ୍ରୟୋବିଂଶ ଅଧ୍ୟାୟ ।

ପ୍ରୟାଗ ବିଶେଷହେତୁ ବର୍ଣ୍ଣିଯ଼ ।
ପୁଣି ମାର୍କଣ୍ଡ ମୁନି କହିଲେ ରାଜନ ।
ବିଶେଷ ମହିମା ଏବେ ପ୍ରୟାଗର ଶୁଣ ॥
ସିନ୍ଧୁସାଗର ନୈମିଷ ଗୋତୀର୍ଥ ପୁଷ୍କର ।
କୁରୁକ୍ଷେତ୍ର ଗୟା ଗଙ୍ଗା ସଙ୍ଗମ ସାଗର ॥
ଏ ସବୁ ଆଉର ତୀର୍ଥ ଅଛଇ ବହୁତ ।
ଯେତେକ ପୁଣ୍ୟସ୍ଥାନ ଯେତେ ପବିତ୍ର ପର୍ବତ ॥
ଏ ଆଦି ତିରିଶ କୋଟି ଦଶସହସ୍ର ତୀର୍ଥ ।
ଏ ସବୁ ଯେତେକ ଥାନ୍ତି ପ୍ରୟାଗରେ ନିତ୍ୟ ॥
ସକଳ ତୀର୍ଥେ ଜାହ୍ନବୀ ଦେବୀଙ୍କି ପୂଜନ୍ତି ।
ସର୍ବ ତୀର୍ଥ ମୁଖ୍ୟ ତା ଏଣୁ ସେ ବୋଲନ୍ତି ॥
ତିନିଗୋଟି କୁଣ୍ଡ ତିନି ସରୋବର ଦେଇ ।
ପ୍ରୟାଗ ବାଟରେ ବହିଗଲେ ଗଙ୍ଗାନଈ ॥
ସେ ସ୍ଥାନେ ଆସି ଯମୁନା ନଈ ମିଶିଗଲେ ।
ସେ ହେତୁ ପ୍ରୟାଗ ପୃଥ୍ୱୀ ଜଙ୍ଘ ବୋଲାଇଲେ ॥

ତାକୁ ଷୋଳଭାଗ କରି ତହୁଁ କେଲେ ଭାଗେ
ଆନ ତୀର୍ଥ ସବୁ ସମ ନୋହିବ ତା ସଙ୍ଗେ ॥
ବାୟୁ କହିଛନ୍ତି ସ୍ୱର୍ଗ ମର୍ତ୍ତ୍ୟ ଅନ୍ତରୀକ୍ଷେ ।
ଅଛନ୍ତି ଯେ ତିନିକୋଟି ତୀର୍ଥ ଶଏ ଲକ୍ଷେ ॥
ସେ ସବୁ ତୀର୍ଥ ଜାହ୍ନବୀ ଜଳେ ଅଛି ରହି ।
ସେ ପ୍ରୟାଗ ଭଗବତୀ ନାମେ ଅଛି କହି ॥
କମ୍ବଳ ଅଶ୍ୱତର ଏ ଦୁଇ ନାଗ ତୀର୍ଥ ।
ପ୍ରଜାପତିର ସେ ବେଦୀ ଆଦ୍ୟେ ନରନାଥ ॥
ଯଜ୍ଞର ଦେବତା ତହିଁ ମୂରତି ଧରନ୍ତି ।
ଋଷି ତପୀଏ ତାହାଙ୍କ ସେ ସ୍ଥାନେ ପୂଜନ୍ତି ॥
ଦେବ ମାନେ କରନ୍ତି ସେ ପ୍ରୟାଗେ ଯାଗ ।
ତ୍ରିଭୁବନୁ ଅଧିକ ତେଣୁ ଏ ପ୍ରୟାଗ ॥
ତିନିକୋଟି ଦଶସହସ୍ର ତୀର୍ଥ ଯେ ଅଛଇ ।
ସବୁହୁଁ ପ୍ରଭାବେ ସେହି ଅଧିକ ଅଟଇ ॥
ଯହିଁ ଗଙ୍ଗା ଅଛି ସେହି ଦେଶ ଗୋଟି ସାର ।
ସେ ଦେଶହିଁ ତପୋବନ ଜାଣ ଯୁଧିଷ୍ଠିର ॥
ସିଦ୍ଧକ୍ଷେତ୍ର ଏକା ଜାଣ ଗଙ୍ଗାନଦୀ କୂଳ ।
ଏ ସତ୍ୟ ସିଦ୍ଧାନ୍ତ କଥା ଗୋଟା ଜାଣ ମୂଳ ॥
ଦ୍ୱିଜ ସାଧୁଙ୍କର କର୍ଣ୍ଣେ ମନ୍ତ୍ର ଗଙ୍ଗାନନ୍ଦ ।
ସେଥିରେ ସ୍ନାହାନ କଲେ ସ୍ୱର୍ଗକୁ ଗମଇ ॥
ପୁତ୍ର ବନ୍ଧୁ ଶିଷ୍ୟ ଭୃତ୍ୟ ଜନହିଁ ଜପିବେ ।
ସବୁରି ଏ କର୍ଣ୍ଣେ ଜପ ମନ୍ତ୍ର ଏହି ଭବେ ॥
ଏହି ଗଙ୍ଗାନନ୍ଦ ତ୍ରିଭୁବନରେ ଧନ୍ୟ ।
ଏ ଗଙ୍ଗା ସ୍ୱର୍ଗର ସୁଖ କରଇ ପ୍ରଦାନ ॥
ଏହାକୁ ଏକା ସେବିବ ଏ ମହୀମଣ୍ଡଳେ ।
ସକଳ ସୁଖ ଅଛଇ ଏହି ଗଙ୍ଗାଜଳେ ॥
ଏହି ଯେ ପୁଣ୍ୟ ଦିଅଇ ରମଣୀୟ ଏହି ।
ଏହାହୁଁ ପରମ ଧର୍ମ ଆଉ କିଛି ନାହିଁ ॥
ଗୁପତ ସ୍ଥାନ ଏ ମହାଋଷିଗଣଙ୍କର ।
ସକଳ ପାପ ଖଣ୍ଡଇ ଜାଣ ନୃପବର ॥
ଶ୍ରାଦ୍ଧରେ ଯେବଣ ଦ୍ୱିଜ ଏହାକୁ ପଢଇ ।
ଶରୀର ତାର ନିର୍ମଳ ପବିତ୍ର ହୁଅଇ ॥
ନିତ ଶୁଚିମନ୍ତ ହୋଇ ଯେ ଏହା ଶୁଣଇ ।
ଜାତିସ୍ମର ହୋଇ ସ୍ୱର୍ଗଭୁବନେ ବସଇ ॥
ସାଧୁ ସନ୍ଥଙ୍କୁ କେବଳ ମିଳଇ ଏ ତୀର୍ଥ ।
ତୁମ୍ଭେ ଏହି ତୀର୍ଥେ ସ୍ନାନକର ନରନାଥ ॥
ଅନ୍ୟ କାହିଁ ନ ଦିଅ ଏହି ମନ୍ତ୍ର ତୁମ୍ଭର ।
ପଚାରିବାରୁ କହିଲି ମୁଁ ତୁମ୍ଭ ଆଗର ॥
ତୋର ଯେତେ ଥିଲେ ପିତୃ ପିତାମହଗଣ ।
ତାଙ୍କ ଉଦ୍ଧାରକୁ ଏହା କରିଣ ଶ୍ରବଣ ॥
ଜ୍ଞାନଯୋଗ ତୀର୍ଥ ଆଦି ପୁଣ୍ୟକର୍ମ ଯେତେ ।
ଏହାକୁ ସମ ନୋହିବେ ଜାଣ ଏ ଜଗତେ ॥
ଏହାର ଷୋଳଭାଗରୁ ଭାଗେକ ସମାନ ।
ନୋହିବେ ଏ ଆଦି ଯେତେ ପୁଣ୍ୟକର୍ମମାନ ॥
ଏ ସବୁ କର୍ମରେ କ୍ଲେଶ ପାଇବ ବହୁତ ।
ବହୁତ କଷ୍ଟେ ପରମଗତି ପଶୁପତ ॥
ପ୍ରୟାଗ କଥା ମନରେ ସୁମରିବା କ୍ଷଣି ।
ସ୍ୱର୍ଗଲୋକକୁ ଗମନ କରିବ ସେ ପ୍ରାଣୀ ॥
ଏମନ୍ତ ମୁନିର ମୁଖୁଁ ଶୁଣି ଯୁଧିଷ୍ଠିର ।
ବୋଇଲେ ପ୍ରୟାଗ କଥା କହିଲ ଆଦର ॥
ବିଶେଷ ମହିମା ତାର ଶୁଣିଲି ଜାଣିଲି ।
ତୁମ୍ଭ ଶ୍ରୀମୁଖ ବାକ୍ୟକୁ ସତ୍ୟ ମୁଁ ମଣିଲି ॥
ପ୍ରୟାଗ ସବୁହୁଁ ଶ୍ରେଷ୍ଠ ଏ କଥା ପ୍ରମାଣ ।
କି କଲେ ପାଇବି ମୁହିଁ ଏଥୁଁ ପରିତ୍ରାଣ ॥
ତାହା ମୋତେ କହ କୃପା କରି ମୁନିବର ।
ମାର୍କଣ୍ଡ ବୋଇଲେ ହେ ଶୁଣ ଯୁଧିଷ୍ଠିର ॥
ସବୁ ଜଗତେ ସକଳ କହନ୍ତି ଏମନ୍ତ ।
ହରିହର ବ୍ରହ୍ମା ପ୍ରଭୁ ଅକ୍ଷୟ ଅନନ୍ତ ॥
ବ୍ରହ୍ମା ଯେ ସୃଷ୍ଟି କରଇ ବିଷ୍ଣୁ ତା ପାଳଇ ।
ରୁଦ୍ର କାଳପାନ୍ତେ ତାହା ସଂହାର କରଇ ॥
ନ ଦିଏ ନ ନିଏ କିଛି ନମାରେ ଈଶ୍ୱର ।
ଏହା ଯେ ଜାଣି ପାରଇ ସେହି ଜ୍ଞାନବର ॥
ତାକୁ ବ୍ରହ୍ମଜ୍ଞାନୀ କହି ତାକୁ ଯୋଗୀ କହି ।
ତାର ଏକା ଆଖି ଅଛି ସେ ସବୁ ଦେଖଇ ॥
ଯେ ଈଶ୍ୱର ସେହି ବ୍ରହ୍ମ ଜାଣ ଯୁଧିଷ୍ଠିର ।
ତାଙ୍କୁ ଦେଖିବା ନିମନ୍ତେ କର୍ମ ପ୍ରାଣୀଙ୍କର ॥
ଯାଗ ଯଜ୍ଞ ଯୋଗ ତପ ଜପ ଦାନ ଧ୍ୟାନ ।
ସେ ବ୍ରହ୍ମ ଗୋଟା ପ୍ରୟାଗେ ଅଛଇ ସୁଜନ ॥
ପ୍ରତିଷ୍ଠାନ ନାମେ ଯେଉଁ ତୀର୍ଥ ତା ଉତ୍ତରେ ।
ବିରାଜନ୍ତି ବ୍ରହ୍ମ ସେଠା ବଟ ତରୁବରେ ॥
ଦେବତା ଗନ୍ଧର୍ବ ସିଦ୍ଧ ଋଷି ମୁନି ବସି ।
ପାପିମାନଙ୍କୁ ଉଦ୍ଧାର କରନ୍ତି ଆଶ୍ୱାସି ॥

ଏହାଙ୍କ ଭଳି ଆବର ରହିଛନ୍ତି ଯେତେ ।
ପରମ ଗତି ଲଭନ୍ତି ଜାଣ ସେ ସମସ୍ତେ ॥
ଏମନ୍ତ ଶୁଣି ବୋଇଲେ ରାଜା ଯୁଧିଷ୍ଠିର ।
ଯାହା ତୁମ୍ଭେ ଶୁଣିଥିଲ ଆହେ ମୁନିବର ॥
ସେ କଥା ଯାକ କହିଲ ମୋ ଆଗେ ବୁଝାଇ
ସେମାନେ ସେହି ସ୍ଥାନରେ ଥାଆନ୍ତି କପାଇଁ
ଏହାର ଯେ ତତ୍ତ୍ୱକଥା କହନ୍ତୁ ଆପଣ ।
ମାରକଣ୍ଡ ବୋଇଲେ ହୋ ଯୁଧିଷ୍ଠିର ଶୁଣ ॥
ଏକା ଏମାନେ ନୁହନ୍ତି ବ୍ରହ୍ମା ବିଷ୍ଣୁ ହର ।
ପ୍ରୟାଗରେ ଥାଆନ୍ତି ଶୁଣ କାରଣ ତାହାର ॥
ପାଞ୍ଚ ଯୋଜନ ବିସ୍ତାର ପ୍ରୟାଗ ମଣ୍ଡଳ ।
ଏମାନେ ଅଛନ୍ତି ସେହି ତୀର୍ଥ ରଖୁଆଳ ॥
ପାପକୁ ତା ଭିତରକୁ ଛାଡ଼ ନ ଦିଅନ୍ତି ।
ଅଳ୍ପ ପାପ ତହିଁ କଲେ ନରକେ ପକାନ୍ତି ॥
ଏକା ହରିହର ବ୍ରହ୍ମା ନୁହନ୍ତି ଆବର ।
ସପତ ଦ୍ୱୀପ ପର୍ବତ ସହିତ ସାଗର ॥
ସେ ପ୍ରୟାଗେ ରହିଥାନ୍ତି ପ୍ରଳୟ ପର୍ଯ୍ୟନ୍ତେ ।
ଏହା ଭଳି ଜୀବଜନ୍ତୁ ଅଛନ୍ତି ତ ଯେତେ ॥
ପ୍ରଜାପତିର ସେ କ୍ଷେତ୍ର ତା ନାମ ପ୍ରୟାଗ ।
ଏଣୁ ପୁଣ୍ୟ ପବିତ୍ର ଏ ସ୍ଥାନ ମହାଭାଗ ॥
ଭାଇଙ୍କି ଘେନି ସୁଖରେ ରାଜ୍ୟ ପାଳ ତୁମ୍ଭେ ।
ଏମନ୍ତ ମୁନିଙ୍କ ମୁଖୁଁ ଶୁଣି ସେ ପାଣ୍ଡବେ ॥
ଉଠି ବିପ୍ର ମାନଙ୍କର ବନ୍ଦିଲେ ଚରଣ ।
ସୂତ କହନ୍ତି ଶୁଣନ୍ତି ସର୍ବ ଋଷିଗଣ ॥
ଗୁରୁ ଦେବତା ବିପ୍ରଙ୍କୁ କରନ୍ତେ ଭକତି ।
ଏ ସମୟେ ବାସୁଦେବ ତହିଁ ଉପଗତି ॥
ତାହାଙ୍କୁ ଦେଖି ସମସ୍ତେ ଆସନୁ ଉଠିଲେ ।
ଧୂପ ଦୀପ ଗନ୍ଧପୁଷ୍ପ ଦେଇ ପୂଜା କଲେ ॥
ଯୁଧିଷ୍ଠିର କରଧରି ବସାଇ ଆସନେ ।
ଚାରି ପାଣ୍ଡବେ ପଡିଲେ ଅଚ୍ୟୁତ ଚରଣେ ॥
ସକଳେ ମିଳି ଧର୍ମଙ୍କୁ କଲେ ଅଭିଷେକ ।
ଜୟଜୟ ଶବଦରେ ପୂରିଲା ତ୍ରିଲୋକ ॥
ମାର୍କଣ୍ଡେୟ ମୁନି ସ୍ୱସ୍ତି ସ୍ୱସ୍ତି ଉଚ୍ଚାରିଲେ ।
କଲ୍ୟାଣ କରି ଆପଣ ଆଶ୍ରମକୁ ଗଲେ ॥
ଭାଇଙ୍କି ଘେନି ସେ ଧର୍ମ ପୁତ୍ର ଯୁଧିଷ୍ଠିର ।
ଭକ୍ତି ସହକାରେ ହୋଇ ଅତି ତତପର ॥

ମହାମହା ଦାନ ଯେତେ ସବୁ କଲେ ଦାନ ।
ପ୍ରଭାତରୁ ଉଠି ଶଯ୍ୟା ତେଜି ଯେଉଁ ଜନ ॥
ପଢଇ ଅବା ଶୁଣେ ଏ ପୁଣ୍ୟ ଆଖ୍ୟାନ ।
ସକଳ ପାପରୁ କ୍ଷଣେ ପାଇ ସେ ମୋଚନ ॥
ଅନ୍ତକାଳେ ବଇକୁଣ୍ଠ ପୁରେ ସେ ବସଇ ।
ବାସୁଦେବ କହିଲେ ହେ ଧର୍ମ ନରସାଇଁ ॥
ମୋର କଥା କରିବାର ଉଚିତ ତୁମ୍ଭର ।
ସ୍ନେହ ବଶେ କହୁଅଛି ତା ତୁମ୍ଭ ଆଗର ॥
ଶୋକ ତେଜି ନିତ କର ପ୍ରୟାଗ ସ୍ମରଣ ।
ତା ସଙ୍ଗେ ମୋ ନାମ କରୁଥିବ ଉଚ୍ଚାରଣ ॥
ଶାଶ୍ୱତ ସ୍ୱର୍ଗଭୁବନ ପାଇବ ନିଶ୍ଚୟ ।
ଏଥିରେ ମନରେ କିଛି ନ କର ସଂଶୟ ॥
ଯାହା ଯାହା କହିଗଲେ ମାରକଣ୍ଡ ଯତି ।
ତାହା ସବେ ସତେ ସତ୍ୟ ଜାଣ ମହୀପତି ॥
ଯେ ପ୍ରୟାଗତୀର୍ଥେ ଯାଇଁ ଘର କରି ରହେ ।
ଭଲେହେଁ ପାପ କରନ୍ତେ ତାହାଙ୍କର ଦେହେ
ଆତ୍ମାକୁ ପବିତ୍ର କରି ସ୍ୱର୍ଗଲୋକ ପାଏ ।
ଯେ କିଛି ଦାନ ନ ଘେନି ସନ୍ତୋଷରେ ଥାଏ
ଶୁଚିମନ୍ତ ବ୍ରତୀ ହୋଇ ତେଜି ଅହଂକାର ।
ସେହି ତୀର୍ଥ ଫଳ ଭୋଗ କରେ ନୃପବର ॥
ଯେ ଅକ୍ରୋଧୀ ସତ୍ୟବାଦୀ ଦୃଢବ୍ରତାଶ୍ରୟୀ ।
ପ୍ରାଣୀଠାରେ ଆତ୍ମତୁଲ୍ୟ ବ୍ୟବହାରକାରୀ ।
ତୀର୍ଥର ଫଳକୁ ଭୋଗ କରଇ ସେ ଜନ ।
ସବୁ ଯଜ୍ଞ କରିଛନ୍ତି ଦେବ ଋଷିଗଣ ॥
ସେ ଯଜ୍ଞ ଦରିଦ୍ର ଜନେ ନ ପାରିବେ କରି ।
କାହୁଁ ସେ ପାଇବେ ଉପକରଣ ତାହାରି ॥
ମହାଧନୀ ରାଜାମାନେ କରି ଧନବ୍ୟୟ ।
ସେ ଯଜ୍ଞମାନ କରିବେ ଆହେ ଧର୍ମରାୟ ॥
ଦରିଦ୍ରେ କରି ପାରିବେ ଅଳପକେ ଯାହା ।
ଯଜ୍ଞର ଫଳ ପାଇବେ ଆହେ ନରନାହା ॥
କହୁଅଛି ତାହା ଏବେ ମନ ଦେଇ ଶୁଣ ।
ଋଷି ମାନଙ୍କର ଅତି ଗୁପତ ଏ ସ୍ଥାନ ॥
ଏହି ପୁଣ୍ୟ ତୀର୍ଥ ଯାତ୍ରା ଯଜ୍ଞହୁଁ ଅଧିକ ।
ଏ ପ୍ରୟାଗ ତୀର୍ଥେ ଅଛି ସବୁ ତୀର୍ଥ ଯାକ ॥
ଦଶକୋଟି ସହସ୍ର ତରିଶ କୋଟି ତୀର୍ଥ ।
ମାଘ ମାସରେ ଗଙ୍ଗାରେ ହୁଅନ୍ତି ମିଳିତ ॥

ସୁସ୍ଥ ହୋଇ ଅକଣ୍ଟକ ରାଜ୍ୟ ଭୋଗ କର ।
ଯଜ୍ଞ କରି ପାରିଲେ ତା ପଛେ ତୁମ୍ଭେ କର ॥
ଶ୍ରୀ ବିଷ୍ଣୁ ପ୍ରୟାଗ ବୋଲି ବୋଲୁଥାଅ ନିତ ।
ପାପ ଛୁଇଁ ନ ପାରିବ ତୁମ୍ଭଙ୍କୁ ନୃପତି ॥
ଏହା ଶ୍ରୀ ବାସୁଦେବଙ୍କ ଶ୍ରୀ ମୁଖ ବଚନ ।
ଶ୍ରୀବିଷ୍ଣୁ ପ୍ରୟାଗ ବୋଲି ବୋଲ ପ୍ରତର୍ଦ୍ଦନ ॥
ଶ୍ରୀ ବିଷ୍ଣୁ ପ୍ରୟାଗ ଭକ୍ତ ଦୁରିତୁ ନିସ୍ତରି ।
ଶ୍ରୀ ବିଷ୍ଣୁ ପ୍ରୟାଗ ଭକ୍ତ ପାପତାପ ହରି ॥
ଶ୍ରୀ ବିଷ୍ଣୁ ପ୍ରୟାଗ ନାମ ନାମ ମଧ୍ୟେ ସାର ।
ସାଧୁ ସଜ୍ଜନଙ୍କର ଗଳା ରତ୍ନହାର ॥
ପାପୀ ଗୋପୀନାଥ କହେ ଶ୍ରୀ ବିଷ୍ଣୁ ପ୍ରୟାଗ ।
ଏ ପାପ ଜୀବନ ମୋହ କରୁ ପରିତ୍ୟାଗ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ପ୍ରୟାଗ
ବିଶେଷତ୍ୱ ହେତୁ ନିର୍ଣ୍ଣୟୋ ନାମ
ତ୍ରୟୋବିଂଶୋଽଧ୍ୟାୟଃ ।



## ଚତୁର୍ବିଂଶ ଅଧ୍ୟାୟ ।

### ହରିଭଜନ ମାହାତ୍ମ୍ୟ ।

ପଚାରିଲେ ଋଷିଗଣେ ଆହେ ସୂତମୁନି ।
ଆମ୍ଭେ ଯାହା ପଚାରିଲୁଁ କହିଲ ତା ପୁଣି ॥
ପଚାରିବୁଁ ଆଉ ଏକ କଥା ତାହା କହ ।
ଆମ୍ଭ ମନରୁ ନିବାରି ଦିଅ ସେ ସନ୍ଦେହ ॥
ସର୍ବତୀର୍ଥ କଲେ ଯେଉଁ ଫଳ ପାଏ ଜନ ।
ଏମନ୍ତ କି କର୍ମ ଅଛି କହ ତପୋଧନ ॥
ସେ କର୍ମରେ ଧନ ଲୋଡ଼ା ନୁହଇ ଯେ ପୁଣି ।
ପରିଶ୍ରମ ନ ପଡ଼ଇ କହ ଥିଲେ ଜାଣି ॥
ଏତେ କଷ୍ଟ ପାଇ ତୀର୍ଥ କରି ନ ପାରିବା ।
ଗୃହରେ ଥାଇ ତୀର୍ଥର ଫଳକୁ ପାଇବା ॥
ଏମନ୍ତ ଶୁଣି କହିଲେ ମହାମୁନି ସୂତ ।
ବିପ୍ର କ୍ଷତ୍ରୀ ବୈଶ୍ୟ ଶୂଦ୍ର ଚାରି ଜାତି ଖ୍ୟାତ ॥
ଧର୍ମ ଯୋଗ କର୍ମ ଯୋଗ ସେମାନଙ୍କ ପାଇଁ ।
ନାନାପ୍ରକାର ମାର୍ଗରେ ବେଦେ ଲେଖା ହୋଇ
ଏ ବିଷୟେ ଋଷିମୁନିଙ୍କର ନାନାମତ ।
କେହି କହନ୍ତି ଯଜ୍ଞ ମହିମା ବହୁତ ॥
କେହି ବା ଦାନ ମହିମା କେ ତୀର୍ଥ ମହିମା ।
କେହି ଜପତପ ବିଧି ବିଧାନ ଗରିମା ॥
କହନ୍ତି ଏହିରୂପେ ନାନା ଋଷିମାନେ ।
ତହିଁରେ ଗୋଟିଏ ସାର ଜାଣ ତ୍ରିଭୁବନେ ॥
କାୟମନ ବଚନରେ ଯେ ବୋଲଇ ହରି ।
ହରି ଭକତକୁ ପୁଣି ହୃଦମଧ୍ୟେ ଧରି ॥
ଜିତିଲା ଜଗତକୁ ସେହି ଜିତିଲା ସକଳ ।
ଏଥିରେ ସଂଶୟ କିଛି ମନରେ ନ ଭାଳ ॥
ସର୍ବଦେବଙ୍କ ଈଶ୍ୱର ଉପରେ ଈଶ୍ୱର ।
ପୂଜିବ ଏକା ଶ୍ରୀହରି ଅଭୟ ପୟର ॥
ହରିନାମ ମହାମନ୍ତ୍ର ସଂସାରରେ ସାର ।
ଜପିଲେ ପାପ ପିଶାଚ ଛାଡ଼ିଯିବ ଦୂର ॥
ପାପୀ କଲେ ଶ୍ରୀହରିଙ୍କି ଥରେ ପ୍ରଦକ୍ଷିଣ ।
ସର୍ବତୀର୍ଥ ସ୍ନାନ ଫଳେ ପାଇବ କାରଣ ॥
ଏଥିରେ କିଛି ସଂଶୟ ମନରେ ନ କର ।
ହରି ଦରଶନ ନିତ୍ୟ କରେ ଯେଉଁ ନର ॥
ସର୍ବତୀର୍ଥ ସ୍ନାନ କଲା ଫଳ ସେହୁ ପାଇ ।
ହରି ନାମ ମହାମନ୍ତ୍ର ନିତ୍ୟ ଯେ ଜପଇ ॥
ସର୍ବମନ୍ତ୍ର ଜପକଲା ଫଳ ତାକୁ ମିଳେ ।
କି କହିବି ତୁମ୍ଭ ଆଗେ ହେ ଋଷି ମଣ୍ଡଳେ ॥
ହରିପ୍ରସାଦତୁଳସୀ ବାସନା ଯାହାର ।
ନାସାବାଟେ ଦେଇ ପଶେ ଶରୀର ଭିତର ॥
କାଳ ଯମର ପ୍ରଚଣ୍ଡ କରାଳ ବଦନ ।
ଦରଶନ ନ କରିବ ଏ ସତ୍ୟ ବଚନ ॥
ହରିଙ୍କି ଯେ ଥରେମାତ୍ର ପ୍ରଣାମ କରଇ ।
ଆଉ ସେ ମାତାର ସ୍ତନକ୍ଷୀର ନ ପିଅଇ ॥
ହରି ଚରଣେ ନିରତେ ଥାଇ ଯାର ମନ ।
ତାର ପାଦେ ନମସ୍କାର ମୋର ପୁନଃ ପୁନ ॥
ମ୍ଲେଚ୍ଛ ନୀଚ ଜାତି ବା ଶ୍ୱପଚ ଚଣ୍ଡାଳ ।
ହରିଭକତରେ ଯେବେ କାଟନ୍ତି ଥାନ୍ତି କାଳ ॥
ଯେଣୁ ସେଜନ ଶ୍ରୀହରି ଚରଣ ସେବକ ।
ଉତ୍ତମ ଜାତିରେ ଗଣ୍ୟ ହୁଅନ୍ତି କାଳକ ॥
ଯହିଁ ତହିଁ ଗଲେ ସେହି ପାଇବ ଆଦର ।
କି କହିବା ବିପ୍ର ରାଜର୍ଷି ମୁନିଙ୍କର ॥
ବୈଶ୍ୟ ଶୂଦ୍ର ଏ ଆଦିଙ୍କ କଥା ତୁମ୍ଭ ଆଗେ ।
ଶ୍ରୀହରି ପାଦେ ଭକତି ରଖେ ଯେ ସବେଗେ ॥

ଗର୍ଭବାସ ଦର୍ଶନ ନ କରେ ସେ ଜନ ।
ଜାଣିହବା ଶ୍ରୀହରିଙ୍କ ମହିମାର ଗୁଣ ॥
ବନ୍ଦନ ଶ୍ରୀହରିଙ୍କ ଆଗରେ ଯେ ଜନ ।
ନାଚି ନାଚି ହରି ନାମ କରଇ କୀର୍ତ୍ତନ ॥
ଗଙ୍ଗା ଆଦି ତୀର୍ଥ ଜଳପ୍ରାୟ ସେହି ନର ।
ପବିତ୍ରକାରୀ ହୁଅଇ ତିନି ଭୁବନର ॥
ଶ୍ରଦ୍ଧାଭକତିରେ କଲେ ତାଙ୍କୁ ଦରଶନ ।
ତାହାର ଅଙ୍ଗ ସ୍ପରଶ ସଙ୍ଗ ଆଳାପନ ॥
ବ୍ରହ୍ମହତ୍ୟା ଆଦି ପାପୁ ମୁକତ ହୁଅଇ ।
ଏଥିରେ କିଛି ସଂଶୟ ନାହିଁ ନାହିଁ ନାହିଁ ॥
ଶ୍ରୀହରିଙ୍କି ପ୍ରଦକ୍ଷିଣ କରି ଯେଉଁ ନରେ ।
ସୁନ୍ଦର ଅତି ମଧୁର ମନୋହର ସ୍ୱରେ ॥
ହରିନାମ ସଂକୀର୍ତ୍ତନ କରି ତାଳିଦେଇ ।
ନାଚି ଯାନ୍ତି ଶ୍ରୀହରିରେ ପ୍ରେମେ ମତ୍ତହୋଇ ॥
ସେ କରତାଳ ପ୍ରଭବେ ପାଇ ଉପହାସ ।
ବ୍ରହ୍ମହତ୍ୟା ଆଦି ପାପ ତତକ୍ଷଣେ ବିନାଶ ॥
ଶ୍ରୀହରି ଭକତି କଥା ଯେ ଆଖ୍ୟାନେ ଥାଇ ।
ଶ୍ରଦ୍ଧାରେ ବା ଅଶ୍ରଦ୍ଧାରେ ଯେ ଜନ ଶୁଣଇ ॥
ପାପୀ ପବିତ୍ର ହୁଅଇ ତାର ଦରଶନେ ।
ପାପକୁ ନ ଭୟ ତାର ମୁକତିର ଗଣେ ॥
କୃଷ୍ଣନାମ ତୀର୍ଥ ସବୁ ତୀର୍ଥମଧ୍ୟେ ସାର ।
କୃଷ୍ଣନାମ ପ୍ରବେଶଇ କର୍ଣ୍ଣବିଳେ ଯାର ॥
ତାଙ୍କ ଯୋଗୁଁ ତୀର୍ଥରୂପ ହୁଅଇ ଜଗତ ।
କୃଷ୍ଣ ନାମହୁଁ ଅଧିକ ନାହି ଆଉ ତୀର୍ଥ ॥
ଜପନାହିଁ ତପ ନାହିଁ ନାହିଁ କିଛି ଆନ ।
ବିଷ୍ଣୁ ପ୍ରସାଦ ନିର୍ମାଲ୍ୟ ପାଇ ନିତିଦିନ ॥
ଶିରେ ଧାରଣ କରଇ ଯେ ଜନ ସଂସାରେ ।
ଆପେ ବିଷ୍ଣୁ ହୋଇ ଯମ ଶୋକ ନାଶ କରେ ।
ଏଣୁ ବିଷ୍ଣୁଙ୍କୁ ପୂଜିବ ନିତି ପ୍ରଣମିବ ।
ଏକଚକ୍ଷୁରେ ଯେ ହରିହରଙ୍କୁ ଦେଖିବ ॥
ଯେ ହରି ସେ ହର କିଛି ଭିନ୍ନାଭିନ୍ନ ନାହିଁ ।
ଏମନ୍ତ ଯେ ବିଚାରଇ ନ ଦେଖେ ସେ ମହୀ ॥
ପୁଣି ସେ ଜନମ ଆଉ ଥରେ ନ ହୁଅଇ ।
ଏଣୁ ତୁମ୍ଭେ ଏକ ଆତ୍ମା ହରିହର ଦୁଇ ॥
ଆତ୍ମାରୂପେ ବିରାଜନ୍ତି ପ୍ରାଣିର ଶରୀରେ ।
ଅନାଦି ନିଧନ ବୋଲି ବୋଲନ୍ତି ସଂସାରେ ॥

ହରିଙ୍କୁ ପୂଜିଲେ ପୂଜା ପାଆନ୍ତି ଯେ ହର ।
ହରଙ୍କୁ ପୂଜିଲେ ପୂଜା ହେଲା ହରିଙ୍କର ॥
ସର୍ବ ଦେବମୟ ହରି ନାହିଁ ଭିନ୍ନାଭିନ୍ନ ।
ହରିଙ୍କି ପୂଜିଲେ ପୂଜା ପାନ୍ତି ଦେବଗଣ ॥
ଭିନ୍ନମନେ କଲେ ଘୋର ନରକେ ପଡ଼ିବ ।
ପ୍ରାଣୀ ମଧ୍ୟେ ନ ଗଣନ୍ତି ତାଙ୍କୁ ବାସୁଦେବ ॥
ହରି ପ୍ରିୟ ଜନମୂର୍ଖ ପଣ୍ଡିତ ବା ହେଉ ।
ଜ୍ଞାନୀ ବା ଅଜ୍ଞାନୀ ବିପ୍ର ଚଣ୍ଡାଳହିଁ ହେଉ ॥
ତାହାଙ୍କୁ ତାରନ୍ତି ସ୍ୱୟଂ ପ୍ରଭୁ ନାରାୟଣ ।
ପାପବନ ଦାବାନଳ ଏକା ହରି ନାମ ॥
କୃଷ୍ଣନାମେ ଘୋର ପାପୁଁ ହୋଇବ ମୁକତ ।
ଜଗତର ଗୁରୁ ଏକା ହରି ହିଁ ସୁବ୍ରତ ॥
ନାମର ଶକତି ଯେତେ ହରି ତହିଁ ନାହିଁ ।
ହରିଙ୍କ ଶକତି ଯାକ ନାମେ ଅଛି ରହି ॥
ଏଥିରେ ଯେ ପରିଶ୍ରମ ଅଳପ ଆଦର ।
ଫଳର ବହୁତ ଦେଖି ନକରି ବିଚାର ॥
କଳିତରିକ କରନ୍ତି ସେ ପଡ଼େ ନରକେ ।
ଏଣୁକରି ଭକତିରେ ମନଦେବେ ଲୋକେ ॥
ହରିନାମ ସୁମରିବେ ଜପିବେ ନିରତେ ।
ହରିପୂଜାକାରୀ ପିଠି ରଖୁଥିବ ନିତ୍ୟ ॥
ନାମ କୀର୍ତ୍ତନ କାରିରେ ରଖୁଥିବ ଚିତ୍ତ ।
ଯମଦଣ୍ଡକୁ ତାହାର ନ ଥିବ ଯେ ଭୀତ ॥
ହରିନାମ ବଜ୍ର ପାପ ପର୍ବତ ଭଙ୍ଗନ ।
ହରିକ୍ଷେତ୍ରତୀର୍ଥ ମାଡ଼େ ଯାର ପାଦଦୁଇ ॥
ସେପାଦ ବେନି ସଫଳ ଧନ୍ୟହିଁ ଆବର ।
ହରିଙ୍କି ପୂଜା କରଇ ଯାର ବେନି କର ॥
ସେଦୁଇ ହସ୍ତ ଉତ୍ତମ ଅଙ୍ଗମଧ୍ୟେ ଧନ୍ୟ ।
ଯେ ଶିର ନିତ୍ୟ ନମଇ ଶ୍ରୀବିଷ୍ଣୁ ଚରଣ ॥
ଶିରଙ୍କମଧ୍ୟେ ସେ ଶିର ଧନ୍ୟ ଏ ଜଗତେ ।
ଯେଉଁ ଜିହ୍ୱା ବିଷ୍ଣୁ ସ୍ତବ ପଢୁଥାଇ ନିତ୍ୟେ ॥
ସବୁଜିହ୍ୱାଙ୍କ ମଧ୍ୟରେ ସେ ଜିହ୍ୱାହି ସାର ।
ହରିପାଦେ ଯେଉଁ ମନ ଥାଇ ନିରନ୍ତର ॥
ସେମନ ଧନ୍ୟ ବୋଲଇ ଏ ମହୀ ମଣ୍ଡଳେ ।
ଶ୍ରୀହରି ନାମ ପଶିବା ମାତ୍ରେ କର୍ଣ୍ଣବିଳେ ॥
ଯେ ଲୋମ ପୁଲକିତଇ ସେହି ଲୋମ ଲୋମଂ ।
ଶ୍ରୀକୃଷ୍ଣ କଥା ପ୍ରସଙ୍ଗ କରିଣ ଶ୍ରବଣ ॥

ଝରି ଝରି ହୋଇ ନେତ୍ରୁ ଝରେ ପ୍ରେମନୀର
ସେହି ନେତ୍ର ନୀରସବୁ ନୀରମଧ୍ୟେ ସାର ॥
ଯେ ନାମ କହିବା ମାତ୍ରେ ଦିଅଇ ମୁକତି ।
ଏ ଅତି ବିଚିତ୍ର ଜନେ ତାହା ନ ଧରନ୍ତି ॥
ଜଣା ଯାଏ ସେ ଦଇବ ଦୋଷେ ଠକେ ପଡ଼େ
କୃଷ୍ଣରୂପ ଦରଶନେ ଯା ଲୋମ ନ ବଢ଼େ ॥
ଯୁବତି ସଙ୍ଗ ପ୍ରସଙ୍ଗେ କଳୁଷ ତା ମତି ।
ଜଗତେ ସେ ଜନ ଜାଣ ଠକରେ ପଡ଼ନ୍ତି ॥
କୃଷ୍ଣ ଏ ଦୁଇ ଅକ୍ଷର କୀର୍ତ୍ତନ ସମୟେ ।
ତ୍ରାହି କର ତ୍ରାହି କର ମୁଖରେ ନ କହେ ॥
ଭାବଭୋଳେ ନୟନରୁ ନ ଗଡ଼ଇ ନୀର ।
ଭାବଭରେ ନ କାନ୍ଦଇ ସେହି ମୂଢ଼ ନର ॥
ପୁତ୍ର ଦାରାଦି ବନ୍ଧୁଙ୍କ ଅକୃତାତ୍ମା ପୁଣି ।
ଜିହ୍ୱା ଥାଇଁ କୃଷ୍ଣନାମ ନ ଜପେ ଯେ ପ୍ରାଣୀ ॥
ମୁକତି ପାଶେ ଲଭିନ୍ତି ଯେ ନାମ ଜାଣୁଣୀ ।
ହେଳାରେ ଛାଡ଼ନ୍ତି ଜନେ ତାକୁ ପାଇ ପୁଣି ॥
କର୍ମ ଯୋଗେ ପୂଜା କଲେ ଶ୍ରୀହରି ପ୍ରସନ୍ନ ।
ତୀର୍ଥଙ୍କ ମଧ୍ୟରେ ସାର ଶ୍ରୀହରି ଭଜନ ॥
ସବୁ ତୀର୍ଥ ସ୍ନାନ କଲେ ହୁଅଇ ଯେ ଫଳ ।
ତୀର୍ଥେ ବୁଡ଼ିଲେ ପିଇଲେ ସବୁ ତୀର୍ଥଜଳ ॥
କୃଷ୍ଣ ସେବାରେ ସେ ଫଳ ସକଳ ମିଳିବ ।
କର୍ମ ଯୋଗେ ଶ୍ରୀ ବିଷ୍ଣୁଙ୍କୁ ଯେ ଜନ ପୂଜିବ ॥
ଏ ମହୀମଣ୍ଡଳେ ଧନ୍ୟ ଅଟଇ ସେ ନର ।
ଏଣୁ ଆହେ ମୁନିଗଣେ ବିଷ୍ଣୁ ପୂଜା କର ॥
ହରି ହରି ବୋଲି ଭାଇ କହେ ଗୋପୀନାଥ ।
ହରି ଅଟନ୍ତି ଅନାଥ ଜନଙ୍କର ନାଥ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ହରି-
ଭଜନ ମାହାତ୍ମ୍ୟଂ ନାମ
ଚତୁର୍ବିଂଶୋଽଧ୍ୟାୟଃ ।



## ପଞ୍ଚବିଂଶ ଅଧ୍ୟାୟ ।

### କର୍ମ ଯୋଗ ।

ପଚାରିଲେ ମୁନିବର ଆହେ ମୁନି ସୂତ ।
ଯେଉଁ କର୍ମ ଯୋଗ କଥା କହିଲ ଆମ୍ଭନ୍ତ ॥
ଯହିଁରେ ପୂଜିଲେ ହରି ହୁଅନ୍ତି ପ୍ରସନ୍ନ ।
ସେ କର୍ମ ଯୋଗ ବିସ୍ତାରି କୁହ ତପୋଧନ ॥
ମୁକତି କାମୀ ପୂଜିବେ ହରିଙ୍କି କେମନ୍ତେ ।
କେବଣ ଉପାୟ କଲେ ଏ ଜନ ଜଗତେ ॥
ପାଇବେ ଜଗତ ଜନ ଈଶ୍ୱର ଭକତି ।
ଶୁଣିବାକୁ ତୁମ୍ଭ ମୁଖୁଁ ବଳିଅଛି ମତି ॥
ଏମନ୍ତ ଶୁଣି ବୋଇଲେ ସୂତ ପୌରାଣିକ ।
ସାବଧାନ ହୋଇ ଶୁଣ ମୁନି ଶୌନକ ॥
ପୂର୍ବେ ଦିନେ ଋଷିଗଣ ସଭା କରି ବସି ।
ଏକାଳେ ତହିଁ ମିଳିଲେ ବ୍ୟାସ ମହାଋଷି ॥
ପଚାରିଥିଲେ ଏ କଥା କହିଥିଲେ ବ୍ୟାସ ।
ବେଦରେ ମଧ୍ୟ ହୋଇଛି ସେ ବିଧି ପ୍ରକାଶ ॥
ବିପ୍ରଙ୍କୁ ଫଳ ଅଧିକେ କରିବ ପ୍ରଦାନ ।
ମନୁ କହିଥିଲେ ଶୁଣିଥିଲେ ଋଷିଗଣ ॥
ସାତବର୍ଷ ଦୁଇମାସେ କିବା ଆଠବର୍ଷେ ।
ଉପନୟନ କରାଇ ପୁତ୍ରେ ଅବା ଶିଷ୍ୟେ ॥
ଦଣ୍ଡ ମେଖଳା ପଇତା ଅଜିନ ଉତ୍ତରୀ ।
ପକାଇ ପୂଜା କରିବ ଗୁରୁପାଦ ଧରି ॥
କପା ସୂତାରେ ପଇତା କରି ନବଗୁଣ ।
ପିନ୍ଧିବ ବାମ କନ୍ଧରେ ମନ୍ତ୍ରରେ ମନ୍ତ୍ରିଣ ॥
ବ୍ରହ୍ମା କହିଛନ୍ତି ତହିଁ ବ୍ରହ୍ମଗଣ୍ଠି ଦେବ ।
କଟିତଟେ କଉଷେୟ ବସନ ପିନ୍ଧିବ ॥
ସବୁବେଳେ ସେ ପଇତା ଥିବ କନ୍ଧଦେଶେ ।
ମୁକୁଳା ନ କରି ଗଣ୍ଠି ଦେବ ଶିଖାକେଶେ ॥
ଏଥି ଆନ କଲେ ସବୁ କର୍ମ ବୃଥା ତାର ।
ନ ମିଳିଲେ ସୂତା କଟା ଲୁଗା ପିନ୍ଧି ପାର ॥
ତା ଅଭାବେ ପିନ୍ଧିପାର କଷାୟି ବସନ ।
ସେ ସକଳ ହୋଇଥିବ ଶୁଭ୍ର ଶୁକ୍ଳବର୍ଣ୍ଣ ॥
କୃଷ୍ଣବର୍ଣ୍ଣ ମୃଗ ଚର୍ମ ଉତ୍ତରୀ ପିନ୍ଧିବ ।
ନ ମିଳିଲେ ବଣଗୋରୁ ଚମରେ କରିବ ॥
କିବା ଗୁରୁ ନାଭିଧାରୀ ମୃଗ ଚର୍ମେ କର ।
ପଇତା ଗଳାଇ ଟେକି ଦକ୍ଷିଣ ଯେ କର ॥
ଶିର ବାଟେ ବାମକନ୍ଧେ ଦେବ ତା ଝୁଲାଇ ।
ଏହା କଲେ ଉପବୀତ ପଇତା ବୋଲାଇ ।
ଗଳାରେ ବାନ୍ଧି ଝୁଲାଇ ଦେଲେ ଉରସରେ ।
ନୀବୀତ ପଇତା ସେହି ବୋଲାଇ ସଂହାରେ ॥

ଦକ୍ଷିଣ କନ୍ଧରେ ରଖି ବାମକୁ ଲମ୍ୱାଇ ।
ପ୍ରାଚୀନାବୀତ ସନ୍ତା ଏମନ୍ତେ ବୋଲାଇ ॥
ପିତୃକାର୍ଯ୍ୟରେ ଏରୂପେ ପଇତା ଧାରଣ ।
ଘୃତରେ ଆହୁତ କଲେ ଅଗ୍ନି ମୁଖେ ଦାନ ॥
ଗୋଗ୍ରାସେ ଗୋଗୋଷ୍ଠରେ ଦେବ ତର୍ପଣେ
ବେଦପାଠ ଦ୍ୱିଜଭୋଜନରେ ବିପ୍ର ସନ୍ନିଧାନେ ॥
ଗୁରୁପୂଜା ଋଷିଶୋଧେ ସନ୍ଧ୍ୟାରେ ପ୍ରଭୃତେ ।
ସାଧୁସଙ୍ଗମ ଦେବତା ପୂଜା ଆଦି ଯେତେ ॥
ଏ ସବୁ କର୍ମ କରିବ ବାମକନ୍ଧେ ରଖି ।
ମେଖଳା ବଳିବ ମୁଞ୍ଜତୃଣ ଯୋଖି ଯୋଖି ॥
ତିନିଗୁଣ କରି ତହି ଗଣ୍ଠିଏକ ଦେବ ।
ମନ୍ତ୍ର ପଢ଼ି କଟିରେ ସେ ମେଖଳା ବାନ୍ଧିବ ॥
ମୁଞ୍ଜ ନ ମିଳିଲେ କୁଶ କରିବ ମେଖଳା ।
ବାଉଁଶ ପଳାଶ ଦଣ୍ଡଧାରୀ ବିପ୍ର ବଳା ॥
ପାଦୁଁ କେଶ ଶେଷ ଯାଏ ଦଣ୍ଡର ପ୍ରମାଣ ।
ଅଛିଦ୍ର ଦୋଷ ରହିତ ଦ୍ୱିଜ ଧରିଥିବ ପୁଣ ॥
ସକାଳେ ସନ୍ଧ୍ୟାରେ ସନ୍ଧ୍ୟା କରିବ ଆବର ।
କାମ କ୍ରୋଧ ଲୋଭ ମୋହ ପର ଯେବେ ନର ॥
ସନ୍ଧ୍ୟା ନ କଲେ ନିଶ୍ଚୟ ପତିତ ହୁଅଇ ।
ଅଗ୍ନିକାର୍ଯ୍ୟ କରିବ ଯେ ଅଗ୍ନି ଗୃହେ ଯାଇ ॥
ସ୍ନାନ ଦେବ ପିତୃ ଋଷି ତର୍ପଣ କରିବ ।
ପତ୍ର ପୁଷ୍ପ ଯବ ଜଳେ ଦେବତା ପୂଜିବ ॥
ଆୟୁଷ ପୁଣି ଆରୋଗ୍ୟ ପାଇବା ନିମନ୍ତେ ।
ବୃଦ୍ଧ ଜନଙ୍କର ପାଦ ବନ୍ଦୁଥିବ ନିତ୍ୟେ ॥
ଆପଣା ନାମ କହିଣ କରିବ ପ୍ରଣତ ।
ଏହି କଲ୍ୟାଣ କରିବେ ବିପ୍ରେ ଶିଷ୍ୟ ପ୍ରତ ॥
ଆୟୁଷ୍ମାନ ହୁଅ କହି କରିବେ କଲ୍ୟାଣ ।
ବିପ୍ରଙ୍କୁ ଦେଖିଲେ ବିପ୍ର କରିବ ପ୍ରଣାମ ॥
ପ୍ରତି ନମସ୍କାର ଯେଉଁ ବିପ୍ର ନ କରଇ ।
ଶୂଦ୍ରଙ୍କ ମଧ୍ୟେ ସେ ବିପ୍ର ଗଣନା ହୁଅଇ ॥
ଗୁରୁଜନେ ନ କରିବେ ପ୍ରତି ନମସ୍କାର ।
ଏ ବିଧିରେ ନମସ୍କାର ଜାଣି ଶିଷ୍ୟଙ୍କର ॥
ବାମହସ୍ତ ଗୁରୁ ବାମ ପାଦରେ ରଖିବ ।
ଦକ୍ଷିଣ ହସ୍ତ ଦକ୍ଷିଣ ପାଦରେ ସ୍ଥାପିବ ॥
ଶିଷ୍ୟ କର୍ଣ୍ଣେ ଗୁରୁମନ୍ତ୍ର ଦେବେ ତୁନି ତୁନି ।
ବିପ୍ର ଯେବେ ଜଳଘଟ କରରେ ଥିବ ଘେନି ॥

କିବା ଭକ୍ଷ୍ୟଦ୍ରବ୍ୟ ପୁଷ୍ପ ସମିଧ ଆବର ।
ଦେବପୂଜା ଯୋଗ୍ୟ ଦ୍ରବ୍ୟ ଥିବ ଯେବେ କର ॥
ନମସ୍କାରେ ତାର ସେହି ଦ୍ରବ୍ୟ ନିଷ୍ଫଳ ସର୍ବ ।
ସେ ଦ୍ରବ୍ୟ ପୂଜା ନ କରି ପକାଇବ ଧର ॥
ଏଣୁ ତାଙ୍କୁ ନମସ୍କାର କେବେ ନ କରିବ ।
ପିତା ବଡ଼ଭାଇ ରାଜା ମାମୁ ଗୁରୁଦେବ ॥
ମାତାମହ ପିତାମହ ଖୁଡ଼ୁତା ଶ୍ୱଶୁର ।
ଏମାନେ ଗୁରୁ ଅଟନ୍ତି ସଂସାର ଭିତର ॥
ନମସ୍କାରେ ବଡ଼ ସାନ କିଛି ନ ବାରିବ ।
ଏହାଙ୍କର ଭାରିଯାଙ୍କୁ ଏରୂପେ ମାନିବ ॥
ମାତା ତାର ଶାଶୁ ଆଈ ଆବର ପିଉଷୀ ।
ଶାଶୁ ତା ଭଉଣୀ ବଡ଼ ଭଉଣୀ ମାଉଷୀ ॥
ଧାଇ ଆଦି ମାତୃ ସର୍ବ ପିତୃପକ୍ଷ ଯେତେ ।
ଗୁରୁ ମଧ୍ୟରେ ଗଣନା ହୁଅନ୍ତି ସମସ୍ତେ ॥
କାୟମନ ବଚନରେ ଏହାଙ୍କୁ ପୂଜିବ ।
ପାଦବନ୍ଦି ହାତ ଯୋଡ଼ି କରି ଛିଡ଼ା ହେବ ॥
ଏକାସନେ ନ ବସିବ ଏହାଙ୍କ ସହିତେ ।
କଳି ତର୍କ ନ କରିବ ଏହାଙ୍କ ସାକ୍ଷାତେ ॥
ନ ରଖିବ କେତେବେଳେ ଆପଣା ବଡ଼ାଇ ।
କଟୁକଥା ନ କହିବ ଜୀବିକାର ପାଇଁ ॥
କ୍ରୋଧରେ ଯେ ଗାଳିମନ୍ଦ କିଛି ନ ବୋଲିବ
ଗୁରୁ ଦ୍ରୋହୀ ହେଲେ ପୁଣି ନରକେ ପଡ଼ିବ ॥
ଜନ୍ମଦାତା ବିଦ୍ୟାଦାତା ପୁଣି ମନ୍ତ୍ରଦାତା ।
କନ୍ୟା ଦାତା ଆବର ଯେ ପତି ଜ୍ୟେଷ୍ଠଭ୍ରାତା ॥
ଏମାନେ ପ୍ରଧାନ ଗୁରୁ ଅଟନ୍ତି ଜାଣିବ ।
ମଙ୍ଗଳକାମୀ ଏହାଙ୍କୁ ଅଧିକେ ପୂଜିବ ॥
ପିତା ମାତା ବଞ୍ଚିଥିବା ଯାଏ ତାର ପୁତ୍ର ।
ସବୁ ଛାଡ଼ି ତାଙ୍କ ପାଦ ସେବୁଥିବ ନିତ୍ୟ ॥
ପିତା ମାତା ତୋଷ ଯେବେ ଥାନ୍ତି ପୁତ୍ରଗୁଣେ
ତେବେ ପୁତ୍ର ସବୁଧର୍ମ ପାଇ ଦୁଇ ଗୁଣେ ॥
ପିତା ମାତା ତୁଲ୍ୟ ଗୁରୁ ଦେବତାହି ନାହିଁ ।
ତାଙ୍କ ପ୍ରତି ଉପକାର ଅସାଧ୍ୟ ଅଟଇ ॥
ଏଣୁ ପୁତ୍ର କାୟମନ ବଚନରେ ନିତ ।
ଉପୁଜାଉ ଥିବ ପିତା ମାତା ମନେ ପ୍ରୀତ ॥
ମୁକତ ନିମନ୍ତେ କର୍ମ ଛଡ଼ା ଆଦି ଯେତେ ।
ତାଙ୍କୁ ନ ପଚାରି ନ କରିବ କଦାଚିତେ ॥

ଏହି ଧର୍ମ ଧର୍ମ ମଧ୍ୟେ ଅଟଇ ଯେ ସାର ।
ସର୍ବ ଲୋକେ ଫଳ ଏହୁ ଧରଇ ଅପାର ॥
ଗୁରୁ ସେବା ବିଦ୍ୟାଲାଭ କରିବ ଯେ ଶିଷ୍ୟ ।
ସେ ଶିଷ୍ୟ ଦେହାନ୍ତେ କରେ ସ୍ୱର୍ଗପୁରେ ବାସ
ପିତୃ ତୁଲ୍ୟ ବଡ଼ ଭାଇକି ଯେ ନ ମାନଇ ।
ସେ ଦୋଷେ ଘୋର ନରକେ ସେ ମୂଢ ପଡ଼ଇ
କେହୁ ଯେବେ ପଚାରିବ ସାଧୁମାର୍ଗ କାଏ ।
ବଡ଼ ଭାଇ ପିତୃତୁଲ୍ୟ ଗଉରବ ପାଏ ॥
ମାମୁ ଖୁଡ଼ୁତା ଶ୍ୱଶୁର ଗୁରୁ ପୁରୋହିତ ।
ବୟସେ ସାନ ହେଲେହେଁ ପୂଜିବ ଏହାନ୍ତ ॥
ଏହାଙ୍କୁ ଯେ କହୁଥିବ ଆପଣ ଆପଣ ।
କ୍ଷତ୍ରୀ ବୈଶ୍ୟ ଶୂଦ୍ରଙ୍କର ପୂଜ୍ୟ ଯେ ବ୍ରାହ୍ମଣ ॥
ଏମାନେ ହେଲେହେଁ ବୃଦ୍ଧ ଜ୍ଞାନୀ ଗୁଣିଜନ ।
କେତେବେଳେ ନୁହନ୍ତି ଏ ବିପ୍ରଙ୍କର ମାନ୍ୟ ॥
ସବୁ ଜାତିଙ୍କୁ ବ୍ରାହ୍ମଣ କଲ୍ୟାଣ କରିବେ ।
ସକଳ ଜାତି ବିପ୍ରଙ୍କ ଚରଣେ ବନ୍ଦିବେ ॥
ବିପ୍ର କ୍ଷତ୍ରୀ ବୈଶ୍ୟଙ୍କର ଅଗ୍ନି ଜାଣ ଗୁରୁ ।
ଅଗ୍ନି ନରଖି ପୂଜିଲେ ହୀନ ଶୂଦ୍ରଠାରୁ ॥
କ୍ଷତ୍ରିୟ ବୈଶ୍ୟ ଶୂଦ୍ରଙ୍କ ଗୁରୁ ଯେ ବ୍ରାହ୍ମଣ ।
ନାରୀ ମାନଙ୍କର ଏକା ପତି ଗୁରୁ ଜାଣ ॥
ଅଭ୍ୟାଗତ ଜନଗୁରୁ ସବୁର ଅଟଇ ।
ଏହି କଥା ଗୋଟି ଶାସ୍ତ୍ରେ କଥିତ ଅଛଇ ॥
ବିଦ୍ୟାବିତ୍ତ ବନ୍ଧୁ କର୍ମ ବୟସ ଆବର ।
ଏ ପାଞ୍ଚି ମାନ୍ୟର ମୂଳ ଥାଏ ଯାହାଙ୍କର ॥
ଯହିଁ ତହିଁ ଗଉରବ ତାହାଙ୍କୁ ମିଳଇ ।
ବୁଢ଼ା ହେଲେ ଶୂଦ୍ର ଜାଣ ଗଉରବ ପାଇ ॥
ବାହ୍ମଣଙ୍କୁ ଆଡ଼ ହୋଇ ବାଟ ଛାଡ଼ିଦେବ ।
ସ୍ତ୍ରୀଙ୍କୁ ଦେଖିଲେ ଅଧବାଟୁ ଭାଙ୍ଗିଯିବ ॥
ଏମନ୍ତେ ରାଜାଙ୍କୁ ପୁଣି ଅନ୍ଧଙ୍କୁ ବୃଦ୍ଧଙ୍କୁ ।
ରୋଗୀଙ୍କୁ ଯେ ଦୁର୍ବଳଙ୍କୁ ଭାରୁକି ଜନଙ୍କୁ ॥
ବାଟ ଛାଡ଼ି ଆଡ଼ ହୋଇ ଯିବ ଖଟେ ଦୂରେ ।
ଏମାନେ ଗଲୁ ଉତ୍ତାରୁ ଯିବ ପୁଣି ପଛେ ॥
ଭିକ୍ଷା କଲେ ଶିଷ୍ଟ ଲୋକ ଗୃହରୁ ଆଣିବ ।
ଗୁରୁଙ୍କୁ ଦେଖାଇ ପଛେ ଆହାର କରିବ ॥
ଗୁରୁ ନାହିଁ କଲେ ତାହା ଅପବିତ୍ର ହେଲା ।
ଅଧିକ ଭିକ୍ଷାରେ ଜାଣ ଧର୍ମ ନାଶ ଗଲା ॥

ଆହାର ବେଳେ କାହାଙ୍କୁ କିଛି ନ କହିବ ।
ଭିକ୍ଷା ମାଗିବାର ବେଳେ ଆପଣ ବୋଲିବ ॥
ମାତା ଆବର ଭଉଣୀ ମାଉସୀ ପିଉଷୀ ।
ଏହାଙ୍କ ଭିକ୍ଷା ଦ୍ରବ୍ୟରେ ଗୁରୁ ମନ ତୋଷି ॥
ସ୍ୱଜାତିଙ୍କ ଘରୁ ଭିକ୍ଷା ମାଗିଣ ଆଣିବ ।
ପତିତ ନୀଚ ଗୃହୀଙ୍କ ଘରକୁ ନ ଯିବ ॥
ଗୁରୁକୁଳରୁ ଯେ ଭିକ୍ଷା ନ ଆଣିବ କେଭେ ।
ଭିକ୍ଷାପାଇଁ ଜ୍ଞାତି ବନ୍ଧୁ ଗୃହକୁ ନ ଯିବେ ॥
ମାଗିବା ପାଇଁ କହିଲୁ ଯାହା ଯାହା ଘରେ ।
ଭିକ ନ ମିଳିଲେ ବୁଲି ଗ୍ରାମର ମଧ୍ୟରେ ॥
ଦଗ ବିଦଗ ଅନାଇ ଭିକ୍ଷା ପାତ୍ର ଧରି ।
ଯାହା ମିଳିବ ତହିଁରେ ଆତ୍ମା ତୋଷ କରି ॥
ଏହିରୂପେ ଉପାର୍ଜନ କରୁଥିବ ବୃତ୍ତି ।
ଜଣେକର ଅନ୍ନ କେଭେ ନ ଖାଇବ ଯତି ॥
ଉପବାସ ସଙ୍ଗେ ଏହି ବ୍ରତହିଁ ସମାନ ।
ମଦମତ୍ତେ କେଭେ ନିନ୍ଦା ନ କରିବ ଜନ ॥
ଏମନ୍ତ ଭିକ୍ଷୁକୁ ଦେଖି କରିବ ଆଦର ।
ଦେଖିଲା ମାତ୍ରେ ଆନନ୍ଦ ବଢ଼ିବ ଅପାର ॥
ଅତି ଭୋଜନରେ ବ୍ୟାଧି ଅଧିକେ ବଢ଼ଇ ।
ଆୟୁଷ ତୁଟଇ ସ୍ୱର୍ଗ ପୁର ନ ମିଳଇ ॥
ପାପ ଅରଜଇ ପ୍ରାଣିହିଂସା କରେ ପୁଣି ।
ଏଣୁ ବେଶି ନ ଖାଇବ କେତେବେଳେ ପ୍ରାଣୀ
ପୂର୍ବମୁଖ ହୋଇ ଅନ୍ନ କରିବ ଭୋଜନ ।
ଉତ୍ତର ମୁଖେ ଭୁଞ୍ଜିଲେ ପାକ ନୋହେ ଅନ୍ନ
ଭୋଜନେ ବସିବେ ଆଗ ହାତ ପାଦ ଧୋଇ ।
ଶୁଦ୍ଧ ଭୂମିରେ ଭୁଞ୍ଜିବ ବସି ତୂନି ହୋଇ ॥
ଦୁଇ ଥର ଆଚମନ କରିବ ଶେଷରେ ।
ଗୋପୀନାଥ କହେ କର୍ମ ଯୋଗେ ରହି ନରେ
ଏ ଭବ ସାଗରୁ ନିଶ୍ଚେ ପାଇବ ମୁକତି ।
ଶେଷେ ବଇକୁଣ୍ଠପୁରେ କରିବ ବସତି ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
କର୍ମଯୋଗ କଥନଂ ନାମ
ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ୪୫



# ଷଡ଼୍‌ବିଂଶ ଅଧ୍ୟାୟ ।

## ସଦାଗ୍ରର ଧର୍ମ ।

କହନ୍ତି ସେ ବ୍ୟାସ ଦେବ ଶୁଣନ୍ତି ମୁନିଏ
ବ୍ରାହ୍ମଣ ପାନ ଭୋଜନ କରିବା ସମୟେ ॥
ଆଗ ଆଚମନ କଲେ ପୁଣିହିଁ ଭୁଞ୍ଜିବ ।
ଭୋଜନାନ୍ତେ ଆଚମନ ପୁଣିହିଁ କରିବ ॥
ସ୍ନାନର ଆଦ୍ୟ ପ୍ରାନ୍ତରେ ନିଦ୍ରା ଆଦ୍ୟ ପ୍ରାନ୍ତେ
ତଳେ ଅଶ୍ରୁ ବିନ୍ଦୁ ପାତେ କିବା ରକ୍ତପାତେ ॥
ଆଚମନ କରି ଦେହ ପବିତ୍ର ରଖିବ ।
ପଥଗ୍ଲାନି ଆଚମନେ ଶ୍ରମ ନିବାରିବ ॥
କୁକ୍କୁର ଦର୍ଶନେ ବସ୍ତ୍ରପାଲଟିବା ବେଳେ ।
ମଳ ମୂତ୍ର ରେତ ତ୍ୟାଗ ବଚନ ଅଶ୍ଳୀଳେ ॥
ଛେପ ପକାଇବ ଯେବେ ତଳେ ଥୁଥୁକରି ।
ପାଠପଢ଼ା ଆରମ୍ଭିବ ଯେବେ ପୋଥିଧରି ॥
କାସିଲା ସମୟେ ହାଇ ବାରିଲା ସମୟେ ।
ଅକସ୍ମାତେ ଶମଶାନେ ପଶି ଯେବେ ଯାଏ ॥
ଏ ସବୁରେ ଶୁଦ୍ଧ ହେବ ଆଚମନ କରି ।
ଚଣ୍ଡାଳ ମେଳଛ ନୀଚଜନ ଶୂଦ୍ରସ୍ତ୍ରୀ ॥
ଉଚ୍ଛିଷ୍ଟ ହସ୍ତେ ଉଚ୍ଛିଷ୍ଟ ପୁରୁଷ ସଙ୍ଗରେ ।
ଏହାଙ୍କ ସହିତ କଥା ବାର୍ତ୍ତା ହେଲା ପରେ ॥
ଆଚମନ କରି ଦେହ ପବିତ୍ର ରଖିବ ।
ଉଚ୍ଛିଷ୍ଟ ଭୋଜନ ଦ୍ରବ୍ୟ ଯେବେ କି ଦେଖିବ ॥
ପବିତ୍ର ହେଲେହେଁ ପୁଣି ଆଚମନ ବାରେ ।
ସ୍ନାନ ପାନ ଭୋଜନରେ ଆଚମନ ଥରେ ॥
ମଳ ମୂତ୍ର ତେଜି ଶୁଚମନ୍ତ ହୋଇଆସି ।
ଥରେମାତ୍ର ଆଚମନ କରିବ ଯେ ବସି ॥
ନିଦ୍ରାକାଳେ ସାୟଂକାଳେ ସକାଳରେ ଥରେ ।
କିବାଅଗ୍ନି ଲୁଣ ଗୋତ୍ର ଭୂମି ଛୁଇଁ କରେ ॥
ସ୍ତ୍ରୀ ସଂସର୍ଗରେ ନୀଳବସ୍ତ୍ର ପରିଧାନେ ।
ଫିଟି ଯାଇଥିବା ନିଜ କେଶର ବନ୍ଧନେ ॥
ପାଲଟି ପକାଇ ଦେବା ବସନ ଛୁଇଁଲେ ।
ଜଳ ଲୁଣ ଛୁଇଁ ଛୁଇଁ ଶୁଦ୍ଧ ହେବ ଭଲେ ॥
ପୂର୍ବମୁଖ ବା ଉତ୍ତର ମୁଖ ହୋଇ ବସି ।
ନ ପଡ଼ଥିବ ହସ୍ତରୁ ଯେଉଁ ଜଳ ଖସି ॥
ଫେନହିଁ ନଥିବ ତହିଁ ଉଷ୍ମ ନୋହି ଥିବ ।
ସେ ଜଳରେ ଆଚମନ ବିଧାନେ କରିବ ॥
ଶିର କଣ୍ଠକୁ ଆବୃତ ରଖିବ ବସନେ ।
କଛା ମାରିବ କେଶକୁ ବାନ୍ଧିବ ଯତନେ ॥
ପାଦ ଦୁଇକ ଉତ୍ତମ ରୂପେ ଧୋଇ ସାରି ।
ପବିତ୍ର ହେବ ଏରୂପେ ଆଚମନ କରି ॥
ପାଗବାନ୍ଧି ଆଚମନ ନ କରିବ ଜଳେ ।
ଆଚମନ ନ କରିବ ବୃଷ୍ଟି ଧାରା ଜଳେ ॥
ଛିଡ଼ା ଛିଡ଼ା ଆଚମନ କେବେହେଁ ନ କରିବ ।
ଏକହସ୍ତେ ଦେଇଥିବା ଜଳ ବରଜିବ ॥
ଉଚ୍ଛିଷ୍ଟ ଜଳେ ନିଷେଧ ଜାଣ ଆଚମନ ।
କନ୍ଧେ ଯେବେ ଯଜ୍ଞସୂତ୍ର ନ ଥିବ ହେ ଜାଣ ॥
ପାଦୁକା ଆସନେ ଥାଇ ବହିର୍ଜାନୁ ହୋଇ ।
ହସୁଥିବ ଅବା ଆନ ସଙ୍ଗେ କଥା କହି ॥
ପ୍ରୟୋଜନେ ନ ଆସିବା ଦ୍ରବ୍ୟକୁ ଦେଖିଣ ।
ଖଟ ଉପରେ କି ଶଯ୍ୟା ଆସନେ ଶୋଇଣ ॥
ଏ ସବୁରେ ଆଚମନ ନିଷେଧ ଜାଣିବ ।
ଆଚମନରେ ଅଙ୍ଗୁଳି ଯେତେହେଁ ନ ଫୁଟିବ ॥
ଫୁଟିଲେ ସେ ଆଚମନ ଫଳ କିଛି ନାହିଁ ।
ଫେନଥିବା ଜଳ ଜାଣ ଅଶୁଦ୍ଧ ଅଟଇ ॥
ହାତେ ଜଳ ତୋଳି ଦେବା ଜଳ ଅପବିତ୍ର ।
ମଅଳ ଜଳ ଆବର ଜଳ ମିଶା ମୂତ୍ର ॥
ଶୂଦ୍ର ପୁଣି ଯେ ଅଶୁଚି ପତିତ ଆବର ।
ଏମାନେ ଛୁଇଁଲେ ଅପବିତ୍ର ହୋଏ ନୀର ॥
ସେ ଜଳରେ ଆଚମନ କଲେ ଫଳ ନାହିଁ ।
ଖାରଜଳେ ଆଚମନ କେବେହେଁ ନ ଯୋଗାଇ ॥
ଗୋଳିଆ ଜଳରେ ଆଚମନ ନ କରିବ ।
ଅସ୍ୱାଦୁ ଜଳ ସେ କାର୍ଯ୍ୟେ ଅଯୋଗ୍ୟ ଜାଣିବ ॥
ହୃଦଗତ ଜଳେ ବିପ୍ର ହୁଅଇ ପବିତ୍ର ।
କ୍ଷତ୍ରିୟ ପବିତ୍ର ହେଲେ ଜଳ ହୃଦଗତ ॥
ବୈଶ୍ୟ ପବିତ୍ର ହୁଅଇ ମୁଖଗତ ଜଳେ ।
ଶୂଦ୍ର ଶୁଦ୍ଧ ହୁଏ ଜଳ ଓଠରେ ଲାଗିଲେ ॥
ଏବିଧିରେ ଆଚମନ ଗୁଣବର୍ଣ୍ଣଙ୍କର ।
ଯେ ରେଖା ଅଛଇ ବୁଢ଼ା ଆଙ୍ଗୁଳି ମୂଳର ॥
ତାହାକୁ ବୋଲନ୍ତି ବ୍ରହ୍ମତୀର୍ଥ ମୁନିବରେ ।
ବୁଢ଼ା ଆଙ୍ଗୁଳି ଯେ ବଷି ଆଙ୍ଗୁଳି ମଧ୍ୟରେ ॥

ଯେତେକ ସ୍ଥାନ ତାହାକୁ ପିତୃତୀର୍ଥ କହ୍ନ ।
କାଣି ଆଙ୍ଗୁଳି ମୂଳରୁ ପଛକୁ ଯେ ରହ୍ନ ॥
ପ୍ରଜାପତି ତୀର୍ଥ ବୋଲି ବୋଲନ୍ତି ତାହାକୁ ।
ଦେବତୀର୍ଥ ବୋଲି ସବୁ ଅଙ୍ଗୁଳି ଅଗ୍ରକୁ ॥
ଅଙ୍ଗୁଳି ମୂଳକୁ ଋଷି ତୀର୍ଥବୋଲି କହ୍ନ ।
ଦେବ ତୀର୍ଥ ଋଷି ତୀର୍ଥ ଏହ୍ନ ତୀର୍ଥ ଦୁଇ ॥
ମଧ୍ୟଭାଗଟି ଆଗ୍ନେୟ ତୀର୍ଥ ଯେ ବୋଲାଇ ।
ସଉମିକ ତୀର୍ଥ ବୋଲି କେହ୍ନ କେହ୍ନ କହି ॥
ଏହା ଜାଣିଣ ମୋହରେ ନ ପଡ଼ ଋଷିଏ ।
ବ୍ରହ୍ମତୀର୍ଥେ ଆଚମନ କରିବ ସର୍ବଏ ॥
ଦେବ ତୀର୍ଥେ ହୁଏ ପିତୃ ତୀର୍ଥେ ହୁଏ ନାହିଁ
ତିନିଥର ଜଳପାନେ ଆଚମନ ହୋଇ ॥
ବୁଢା ଆଙ୍ଗୁଳି ମୂଳରେ ମୁଖ ଘଷି ଦେଇ ।
ତାକୁ ଯେ ଶୁଦ୍ଧ କରିବ ପୁଣି ଜଳଛୁଇଁ ॥
କାଣି ଆଙ୍ଗୁଠିରୁ ପାଖ ଆଙ୍ଗୁଠି ଆବର ।
ବୁଢା ଆଙ୍ଗୁଠି ଏ ଦୁଇଗୋଟି ଆଙ୍ଗୁଳିର ॥
ଅଗ୍ରଭାଗ ଯୋଡ଼ି ନେତ୍ର ଦୁଇକି ଛୁଇଁବ ।
ଋଷି ବୁଢା ଆଙ୍ଗୁଠିର ମୂଳକୁ ଯୋଡ଼ିବ ॥
ତହିଁରେ ପୁଣି ଛୁଇଁବ ନାକ ପୁଡାଦୁଇ ।
କାଣି ଆଙ୍ଗୁଳି ଯେ ବୁଢା ଆଙ୍ଗୁଳି ଏ ଦୁଇ ॥
ଅଗ୍ର ସଂଯୋଗେ ଛୁଇଁବ କର୍ଣ୍ଣ ଯୁଗଳକୁ ।
ତହୁଁ ଏକ କରି ସବୁ ଅଙ୍ଗୁଳି ଅଗ୍ରକୁ ॥
ଜଳେ ବୁଡାଇ ହୃଦୟ ଶିରକୁ ଯେ ଛୁଇଁ ।
ତହିଁରେ ପୁଣି ଛୁଇଁବ ଜାନୁ ଜଙ୍ଘ ଦୁଇ ॥
ତିନିବାର ଆଚମନ ଜଳପାନେ ତୋଷ ।
ଦେବଙ୍କ ସହିତ ବ୍ରହ୍ମା ବିଷ୍ଣୁ ଯେ ମହେଶ ॥
ଗଙ୍ଗା ଯମୁନା ସନ୍ତୋଷ ମୁଖ ଶୁଦ୍ଧ କଲେ ।
ଚନ୍ଦ୍ର ସୂର୍ଯ୍ୟ ତୋଷ ହୋନ୍ତି ନୟନ ଛୁଇଁଲେ ॥
ଅଶ୍ୱିନୀ କୁମାର ଦୁଇ ନାସାପୁଟେ ତୋଷ ।
କର୍ଣ୍ଣଦୁଇରେ ସନ୍ତୋଷ ପବନ ହୁତାଶ ॥
ସକଳ ଦେବତା ତୋଷ ହୃଦୟ ସ୍ପର୍ଶେ ।
ଶିର ସ୍ପରଶେ ସନ୍ତୋଷ ପରମ ପୁରୁଷେ ॥
ମୁଖକୁ ଧୋଇବା ବେଳେ କଥା ବାର୍ତ୍ତା ବେଳେ
ସେ ଛେପ ଉଚ୍ଛିଷ୍ଟ ନୋହେ ଅଙ୍ଗରେ ପଡଲେ ।
ଦାନ୍ତେ ଲଗିଥିବା ଦ୍ରବ୍ୟ ଜାଣ ଦାନ୍ତପରି ।
ଅଶୁଚି ନୁହଇ ଯେହ୍ନ ଜିଭ ଲଗି କରି ॥

ଆନକୁ ଶିଖାଇ ଦେବା ବେଳେ ଆଚମନ ।
ପାଦରେ ପଡ଼ଇ ଯେଉଁ ଜଳବିନ୍ଦୁ ମାନ ॥
ଭୂମିର ଧୂଳି ସଦୃଶ ଜାଣିବ ତାହାକୁ ।
ଏଥିରେ ଯେ ଛୁଆଁ ଦୋଷ ନ ଲାଗେ କାହାକୁ
ମଧୁପର୍କ ସୋମରସ ତାମ୍ବୁଳ ଯେ ଫଳ ।
ଆଖୁ ଆମ୍ବ କଦଳୀ ଏ ଆଦି ଯେତେ ଫଳ ॥
ଖାଇଲେ ତହିଁରେ ଛୁଆଁ ଦୋଷ କିଛି ନାହିଁ ।
ଉଚ୍ଛିଷ୍ଟ ଦୋଷ ଆବର ନାହିଁ କିଛି ତହିଁ ॥
ପରଷିବା ବେଳେ ଯହିଁ ଛଡା ଅନ୍ନ ପାନ ।
ଅନ୍ନ ଆଦି ଘେନି ମାତ୍ର କରନ୍ତି ଗମନ ॥
ଜାଣିଲେ ସେ ଦ୍ରବ୍ୟ ତହିଁ ରଖି ଦେଇ ବେଗେ
ଝଟିକେ ଆଚମନ କରି ସେ ଦ୍ରବ୍ୟ ସର୍ବଗେ ॥
ଭୁଞ୍ଜିଲେ ସେ ଦ୍ରବ୍ୟେ ଆଉ ନାହିଁ କିଛି ଦୋଷ
କଂସା ତମ୍ବା ରୂପା ଆଦି ପାତ୍ର ତଇଜସ ॥
ସେ ପାତ୍ରରେ ଦ୍ରବ୍ୟଘେନି ଯାଉ ଯାଉ ଯେବେ
ଉଚ୍ଛିଷ୍ଟ ଛୁଇଁବ ତହିଁ ରଖି ଦେଇ ତେବେ ॥
ଆଚମନ କରି ପୁଣି ଭୁଞ୍ଜିଲେ ତାହାକୁ ।
ଦୋଷ ନ ଲାଗଇ ଏହା କହିଲି ତୁମ୍ଭଙ୍କୁ ॥
ଉଚ୍ଛିଷ୍ଟ ବସ୍ତୁ ନ ଜାଣି ଯେବେ କି ଛୁଇଁବ ।
ଆଚମନ କରି ଆପେ ପବିତ୍ର ହୋଇବ ॥
ରାତିରେ ବା ବନେ ବନେ ଯାଉ ଯାଉ ଯେବେ
ଚୋର ବା ବ୍ୟାଘ୍ର ଭୟରୁ କି ପଥ ଉଗାଳିବେ ॥
ଭୋଜନ ପାଇଁ ଯେ ଦ୍ରବ୍ୟ ଧରିଥିବ କରେ ।
ମଳ ମୂତ୍ର ତ୍ୟାଗକରି ଯେବେ କି ଭୟରେ ॥
ମାତ୍ର ନୋହିବ ସେ ଦ୍ରବ୍ୟ ଆହେ ଋଷିଗଣ ।
ଯଜ୍ଞ ସୂତ୍ରତା ଦକ୍ଷିଣ କର୍ଣ୍ଣରେ ଦେଇଣ ॥
ଉତ୍ତରକୁ ମୁଖ କରି ଦିବସେ ବସିବ ।
ମଳମୂତ୍ର ତ୍ୟାଗ ବେଳେ ମଉନେ ରହିବ ॥
ଦକ୍ଷିଣକୁ ମୁଖକରି ବସିବ ରାତିରେ ।
କାଠଭୂଣି ଢେଲା ଘାସ ଆଛାଦ ଭୂମିରେ ॥
ବସିବା ବେଳେ ବସନେ ଶିରକୁ ଆଛାଦ ।
ନିଷେଧ ସ୍ଥାନ ଅଟଇ ଗମ୍ୟ କୂପନଦୀ ॥
ଗୋଷ୍ଠ ଦେବତା ଆଳୟ ଗାଈ ବିପ୍ର ଅନଳ ।
ଶାଦ୍ୱଳ ଭୂମି ଆବର ଶମଶାନ ସ୍ଥଳ ॥
ବାଟରେ ପାଣିକୂଳରେ କାଠରୁ ଉପରେ ।
ହୁଙ୍କା ପାଖରେ ବାଡ଼ର ମୂଳରେ ଗାଡରେ ॥

ଏତେ ସ୍ଥାନେ ମଳ ମୂତ୍ର ତ୍ୟାଗ ନ କରିବ ।
ତ୍ୟାଗବେଳେ ଥୁଥୁକର ଛେପ ନ ପେଡିବ ॥
ଦଉଡ଼ ଦଉଡ଼ ଯାଇ ନ ବସିବ କେବେ ।
ପର୍ବତ ଉପରେ ମଳ ମୂତ୍ର ନ ତେଜିବେ ॥
ଭଙ୍ଗାଦେଉଳରେ ମଳମୂତ୍ର ନ କରିବ ।
ତୁଷ ଅଙ୍ଗାର ଉପରେ କେବେ ନ ବସିବ ॥
ହାଡ଼ ଖପର ଉପରେ ତୀର୍ଥରେ ଆବର ।
ଚଉପଥା ବାଟ ଦାଣ୍ଡ ଚକର ଉପର ॥
ଗୋଖରରେ ବଗିଚାରେ ଉଷର ଭୂମିରେ ।
ସ୍ତ୍ରୀ ଗୁରୁ ବିପ୍ର ଗୋରୁ ଦେବ ସମ୍ମୁଖରେ ॥
ଚନ୍ଦ୍ର ସୂର୍ଯ୍ୟ ତାରା ଚନ୍ଦ୍ର ନକ୍ଷତ୍ର ଆବର ।
ଅନଳ ଆଦି ଜ୍ୟୋତିଷ୍କ ପଦାର୍ଥ ନିକର ॥
ଏହାଙ୍କୁ ଚାହିଁବ ନାହିଁ ତ୍ୟାଗ କଲବେଳେ ।
ଶଉଚ ହେବ ମୃତ୍ତିକା ଦେଇ ଶୁଦ୍ଧଜଳେ ॥
କୂପ ଭିତର ମୃତ୍ତିକା ପବିତ୍ର ଅଟଇ ।
ସେ ମାଟି ମଳ ମୂତ୍ରର ଦୁର୍ଗନ୍ଧ ହରଇ ॥
ମାଉଁଶମାଟି କାଦୁଅମାଟି ଅପବିତ୍ର ।
ଉଷର ଭୂମି ମୃତ୍ତିକା ଆବର ଯେ ପଥ ॥
ମାଟିହାତ କରି ଛାଡ଼ି ଯାଇଥିବା ମାଟି ।
ଦେବ ଆୟତନ ମାଟି କୂଅପାଖ ମାଟି ।
ଜଳର ଭିତର ମାଟି ବାଡିର ଭିତର ।
ଏଥିରେ ଯେ ମାଟି ହାତ ନ କରିବ ନର ॥
ନିଷେଧ ମାଟି ଏ ସବୁ ମାଟିକି ଯେ କହି ।
ବ୍ୟାସ ଯାହା କହିଛନ୍ତି ଶୁଣ ମନଦେଇ ॥
ଏରୂପେ ଶଉଚୀ ଦଣ୍ଡଧାରୀ ବ୍ରହ୍ମଚାରୀ ।
ଗୁରୁ ଡାକିଲେ ପଢିବ ବସି ପୋଥି ଧରି ॥
ପଢ଼ିବା ବେଳେ ଗୁରୁଙ୍କ ମୁଖକୁ ଚାହିଁବ ।
ମନଦେଇ ଶୁଣୁଥିବ ମନେ ରଖୁଥିବ ॥
ନିତ୍ୟ ହେବ ସଦାଚାରୀ ଯତ ବ୍ରହ୍ମଚାରୀ ।
ଗୁରୁଆଜ୍ଞା ପାଳୁଥିବ ଅତି ଯତ୍ନକରି ॥
ବସିବାକୁ ଗୁରୁ ଯେବେ କହିବେ ବସିବ ।
ଗୁରୁ କି କହିବେ ବୋଲି ଚାହିଁ ରହିଥିବ ॥
ଶୋଇ ପୁଣି ଗୁରୁଙ୍କୁ ସେ ନ ଦେବ ଉତ୍ତର ।
ଖାଉଥିବ ଯେବେ ଉଠି ଆସିବ ସତ୍ୱର ॥
ବସିଥିଲେ ଛିଡ଼ା ହୋଇ କହିବ ଗୁରୁଙ୍କୁ ।
ପଛକୁ ମୁଖ କରିଣ ନ କହିବ ତାଙ୍କୁ ॥

ଶିଷ୍ୟ କିମ୍ବା ଶିଷ୍ୟା ହେଉ ଗୁରୁ ସନ୍ନିଧାନେ ।
ନମ୍ର ହୋଇ କହୁଥିବ ବିନୟ ବଚନେ ॥
ଗୁରୁ ନାମ ନ ଧରିବ ଶ୍ରୀଯୁକ୍ତ ନ କରି ।
ନ ଚାଲିବ କେବେ ଗୁରୁ ଚାଲୁଥିଲା ପରି ॥
ଗୁରୁଙ୍କ ଖତେଇ ହୋଇ ନ କହିବ କେବେ ।
ଉପହାସ ନ କରିବେ ଥଟ୍ଟା ନ କରିବେ ॥
ଗୁରୁ ନିନ୍ଦା ଶୁଣି ହାତ ଦେଉଥିବ କାନେ ।
ଗୁରୁଙ୍କୁ ନିନ୍ଦା ନ କରି କହିବ ବଚନେ ॥
କ୍ରୋଧେ କେବେ ଗୁରୁସେବା ନ କରିବ ଶିଷ୍ୟ
ବିତଣ୍ଡା ଯୁକ୍ତି ନ କରି ହୋଇଥିବ ଦାସ ॥
ଜଳ କଳଶୀ ସମିଧ କୁଶ ଫୁଲ ଫଳ ।
ଗୁରୁଙ୍କୁ ଯୋଗାଇ ଦେଉଥିବ ଏ ସକଳ ॥
ଗୁରୁଙ୍କ ଅଙ୍ଗେ ତଇଳ ମର୍ଦ୍ଦନ କରିବ ।
ସ୍ନାନ ଅନ୍ତେ ତାଙ୍କ ଅଙ୍ଗ ବସ୍ତ୍ରେ ପୋଛିଦେବ
ଗୁରୁଶୋଇବା ଶେଯରେ ନ ଶୋଇବ କେବେ
ଜୋତା କଠାଉ ଗୁରୁର କେବେ ନ ମାଡ଼ିବେ
ଗୁରୁର ଛାଇକି ମାଡ ନ ଚାଲିବ ପୁଣି ।
ନିତ୍ୟ ଦେଉଥିବ ତାଙ୍କୁ ଦାନ୍ତକାଠି ପାଣି ॥
ଭିକମାଗି ଆଣି ଖାଇ ଯାହା କି ବଳିବ ।
ଗୁରୁଙ୍କୁ ତା ଦେଉଥିବ କୁଣ୍ଠ ନ କରିବ ॥
ଗୁରୁଙ୍କୁ ନ କହି ଆଜ୍ଞା ନ ନେଇ ତାଙ୍କର ।
ଇଚ୍ଛା ଅନୁସାରେ କାହିଁ ନ ଯିବ ସେ ନର ॥
ଗୁରୁଙ୍କର ପ୍ରିୟ କାର୍ଯ୍ୟ କରିବାକୁ ଗଲେ ।
ବେଗେ ନ ଚାଲିବ ତାଙ୍କ ଆଗେ ଭୂମିତଳେ
ହାଇ ନ ମାରିବ ପୁଣି ଗର୍ବେ ନ ହସିବ ।
ନ ଗର୍ଜି ବାହାସ୍ଫୋଟକ ତାଳି ନ ମାରିବ ॥
ଗୁରୁ ବିମନା ହୋଇଲେ ସଦା ଦେବ ଛାଡ଼
ପାଖରେ ବସିବ ତଳେ ଆସନ ନ ମାଡ଼ି ॥
ଗୁରୁଙ୍କ ଆସନ ଶେଯେ ଯାନେ ନ ବସିବ ।
ଗୁରୁ ଧାଇଁଲେ ତାହାଙ୍କ ପଛରେ ଧାଇଁବ ॥
ଶଗଡ ଘୋଡ଼ା ଉପରେ ଓଟର ପିଠିରେ ।
କୁଶ ବିଷ୍ଟର ଆସନେ ଶିଳାର ଉପରେ ॥
କୋଠାଘରେ ନଉକାରେ ଏକାଠି ବସିବ ।
ଏଥିରେ ଶିଷ୍ୟର କିଛି ଦୋଷ ନ ଲାଗିବ ॥
ବ୍ରହ୍ମଚାରୀ ସବୁବେଳେ ହୋଇଥିବ ଯତ ।
ଅକ୍ରୋଧୀ ଯେ ଶୁଦ୍ଧମନ ହୋଇଥିବ ବ୍ରତୀ ॥

ହିତକଥା କହୁଥିବ ବଚନ କୋମଳ ।
ସୁଗନ୍ଧ ଦ୍ରବ୍ୟ ସୁଗନ୍ଧ ମାଲ୍ୟ ଏ ସକଳ ॥
ବର୍ଜ୍ଜନ କରିବ ପ୍ରାଣିହିଂସା ନ କରିବ ।
ତୈଳ ମର୍ଦ୍ଦନ ନେତ୍ରେ କଳା ନ ଦେଇବ ॥
ଛତା ଧରି ନ ବୁଲିବ ନ ଖାଇବ ପାନ ।
କାମ ଲୋଭ ଭୟ ନିଦ୍ରା ଏ ସବୁ ବର୍ଜ୍ଜନ ॥
ପରନିନ୍ଦା କଟୁକଥା ତର୍ଜ୍ଜନ ଗର୍ଜ୍ଜନ ।
ସ୍ତ୍ରୀସଙ୍ଗ ନ କରିବ ସ୍ତ୍ରୀ ଦରଶନ ॥
ଏ ସବୁ ବ୍ରହ୍ମଚାରୀର ନିଷେଧ ଜାଣିବ ।
ଜଳ କଳଶୀ ଗୋମୟ ଏହାକୁ ଆଣିବ ॥
ଫୁଲ କୁଶ କାଠ ଭିକ୍ଷା ଅନ୍ନ ଘୃତ ଲୁଣ ।
ଏଥିରେ ଯେ ଦୋଷ ନାହିଁ ଜାଣ ମୁନିଗଣ ॥
ବାସି ଦ୍ରବ୍ୟ ନ ଛୁଇଁବ ନୃତ୍ୟ ନ ଦେଖିବ ।
ଗୀତ ନ ଶୁଣିବ ନୀଚ ସଙ୍ଗ ନ କରିବ ॥
ଗୁରୁ ଉଚ୍ଛିଷ୍ଟ ଔଷଧ ଅନ୍ନ ନ ଖାଇବ ।
ସ୍ନାନବେଳେ ଜଳେ ପଶି ଘଷି ମାଜି ହେବ ॥
ଦେହ ମଳ ଭଲରୂପେ ପୋଛି ପାଛି ଦେଇ ।
ଅଧିକ ବେଳ ଜଳରେ ପଶି ନ ଯୋଗାଇ ॥
ଅଳପକ୍ଷଣେ ସ୍ନାନାଦି କର୍ମ ଶେଷ କରି ।
ତରତର ହୋଇ ଜଳୁ ଆସିବ ବାହାରି ॥
ଲୋଭେ ମୋହେ ଗୁରୁସେବା ନ କଲେକ ଶିଷ୍ୟ
ପତିତ ହେବ ଦେହାନ୍ତେ ନର୍କକୁଣ୍ଡେ ବାସ ॥
ଗୁରୁଦ୍ରୋହୀ ନର୍କେ ଯାନ୍ତି ଏ କଥା ନିଶ୍ଚୟ ।
ପୁରାତନ କଥା ଏହି ଜାଣ ସୁପଣ୍ଡିତ ॥
ଲୌକିକ ବୈଦିକ ଆଧ୍ୟାତ୍ମିକ ଜ୍ଞାନ ।
ଯେଉଁ ଗୁରୁଠାରେ ଥାଇ ତା ପାଦ ସେବନ ॥
ତେମନ୍ତ ଗୁରୁକୁ କେଭେ ନ ଛାଡ଼ିବ ଶିଷ୍ୟ ।
ଛାଡ଼ିଲେ ସେ ମୂର୍ଖଜନ ହୋଇବ ଅବଶ୍ୟ ॥
ହିତାହିତ କାର୍ଯ୍ୟାକାର୍ଯ୍ୟ ଜ୍ଞାନ ନାହିଁ ଯାର ।
ଅତି ଗର୍ବିତ ଯେ ପୁଣି ନାହିଁ ତ ବିଚାର ॥
ଏମନ୍ତ ଗୁରୁକୁ ଶିଷ୍ୟ ତେଜିବ ତକ୍ଷଣେ ।
ଗୁରୁଙ୍କର ଗୁରୁଙ୍କୁ ଯେ ଦେଖିବ ନୟନେ ॥
ଗୁରୁ ପ୍ରାୟ ତାଙ୍କ ସେବା କରି ତାଙ୍କୁ କହି ।
ଗୁରୁଙ୍କ ପାଖକୁ ଯିବ ତାଙ୍କ ଆଜ୍ଞା ନେଇ ॥
ଯିବା ଆସିବା କରନ୍ତି ଯେବେ ନିତ ଦିନ ।
ହିତଉପଦେଶ ଦାତା ଗୁରୁ ଯୋଗିଜନ ॥

ଏରୂପେ ସେବା ତାହାଙ୍କୁ ନ କରିବ ଶିଷ୍ୟ ।
ମାନ୍ୟ ନ କଲେ ଅଧର୍ମ ହୋଇବ ଅବଶ୍ୟ ॥
ନମସ୍କାର ଆସନାଦି ଦେଉଥିବ ତାଙ୍କୁ ।
ଗୁରୁପୁତ୍ର ଗୁରୁପତ୍ନୀ ଗୁରୁଙ୍କ ବନ୍ଧୁଙ୍କୁ ॥
ଗୁରୁପ୍ରାୟ ପୂଜୁଥିବ ନ କରିବ ହେଳା ।
ସାନ ଅବା ବଡ଼ ହେଉ ଗୁରୁଙ୍କର ବଳା ॥
ଗୁରୁତୁଲ୍ୟ ମାନ୍ୟ ତାଙ୍କୁ ଶିଷ୍ୟହିଁ କରିବ ।
ଭାଇ ଗୁରୁବୋଲି ତାଙ୍କୁ ପୁଣି ଡାକୁଥିବ ॥
ଘଷି ମୋଡ଼ି ନ ଦେବ ସେ ଗୁରୁଙ୍କ ପୁତ୍ରଙ୍କୁ ।
ସ୍ନାନପାଇଁ ଜଳ ଆଣି ନ ଦେବ ଯେ ତାଙ୍କୁ ॥
ପାଦକୁ ନ ଧୋଇ ଦେବ ଉଚ୍ଛିଷ୍ଟ ତେଜିବ ।
ସବର୍ଣ୍ଣା ଗୁରୁପତ୍ନୀଙ୍କୁ ମାନ୍ୟ କରୁଥିବ ॥
ଅସବର୍ଣ୍ଣା ଗୁରୁପତ୍ନୀ ପାଦେ ପ୍ରଣମିବ ।
ତୈଳ ମର୍ଦ୍ଦନ ଆଦି ବର୍ଜ୍ଜନ କରିବ ॥
ଗୁରୁପତ୍ନୀ ହୋଇଥିବେ ଯେବେ ସେ ଯୁବତୀ ।
ତାଙ୍କପାଦେ ଦୃଷ୍ଟି ରଖି କରିବ ପ୍ରଣତି ॥
ବଦନକୁ ନ ଚାହିଁବ ଅଙ୍ଗ ନ ଛୁଇଁବ ।
ପ୍ରଣାମ କରି ସାଧୁଙ୍କ ଧର୍ମ ଆଚରିବ ॥
ପ୍ରବାସରୁ ଶିଷ୍ୟ ଯେବେ ଘରକୁ ଆସଇ ।
ମାଉସୀ ପିଉସୀ ଶାଶୁ ଗୁରୁପତ୍ନୀ ମାନଙ୍କୁ ॥
ଦେଖିଲା ମାତ୍ରେ ଏହାଙ୍କ ପାଦରେ ପଡ଼ିବ ।
ଜ୍ଞାତି ସମ୍ବନ୍ଧୀ ଯେ ମାନ୍ୟ ସ୍ତ୍ରୀଙ୍କି ବନ୍ଦିବ ॥
ପିଉସୀ ମାଉସୀ ବଡ଼ଭଉଣୀ ଏ ତିନି ।
ଏହାଙ୍କୁ ପୂଜା କରିବ ଯେସନେ ଜନନୀ ॥
ଏମନ୍ତ ଶିଷ୍ୟକୁ ଗୁରୁ ବେଦ ପଢ଼ାଇବେ ।
ଶୁଦ୍ଧ ହୋଇବ ଶରୀର ଜାଣିବନ୍ତି ତେବେ ॥
ଶିଷ୍ୟ ଯେବେ ଗୁରୁ ଘରେ ବରଷେକ ରହି ।
ଗୁରୁ ଯେବେ ସେ ଶିଷ୍ୟକୁ ପାଠ ନ ପଢ଼ାଇ ॥
ଶିଷ୍ୟର ଯେତେକ ପାପ ସବୁ ଗୁରୁଦେହେ ।
ନିଷ୍ପାପ ହୋଇଣ ଶିଷ୍ୟ ଫେରି ଆସେ ଗୃହେ
ଗୁରୁ-ସେବାକାରୀ ପୁଣି ଆଚାର୍ଯ୍ୟ କୁମର ।
ଜ୍ଞାନଦାତା ଅନ୍ନଦାତା ଧାର୍ମିକ ଆବର ॥
ଶୁଚିମନ୍ତ ଶକ୍ତିମନ୍ତ ଜଳଦାତା ଜାଣ ।
ସାଧୁ ଆଉ ଶିଷ୍ୟ ଛଅଜଣ ଏହି ଦଶଜଣ ॥
ଏହାଙ୍କୁ ଯେ ବିଦ୍ୟା ଦାନ କଲେ ମହାପୁଣ୍ୟ ।
ସତ୍ୟବାଦୀ ଅକ୍ରୋଧୀ ଯେ ଅହିଂସକ ପୁଣ ॥

ଗୁରୁ ଆଜ୍ଞାକାରୀ ପ୍ରିୟ ବଶ୍ୟାଂଶୀ ଅଟଇ ।
ଏ ଷଡ଼ ଜଣଙ୍କୁ ଗୁରୁ ପାଠ ଦେବେ କହି ॥
ପଢ଼ା କରିବ ଉତ୍ତର ବଦନେ ମୁଖ କରି ।
ଗୁରୁ ମୁଖକୁ ଚାହିଁବ ଗୁରୁ ପାଦ ଧରି ॥
ପଢ଼ ବୋଇଲେ ପଢ଼ିବ ଶିଷ୍ୟ ତତକ୍ଷଣେ ।
ରହ କହନ୍ତେ ରହିବ ଗୁରୁ ସନ୍ନିଧାନେ ॥
ନମସ୍କାର ପ୍ରାଣାୟାମ ଆଚମନ କରି ।
ବେଦ ପଢ଼ିବ ଆଦ୍ୟରେ ଓଁକାର ଉଚ୍ଚାରି ॥
ବ୍ରହ୍ମାଞ୍ଜଳି ହୋଇ ବେଦ ପଢ଼ୁଥିବ ନିତ ।
ସବୁ ପ୍ରାଣିଙ୍କର ଚକ୍ଷୁ ବେଦ ବ୍ରହ୍ମଜ୍ୟୋତ ॥
ବେଦ ନ ପଢ଼ିଲେ ବିପ୍ର ନୁହଇ ବ୍ରାହ୍ମଣ ।
ଋକବେଦ ପଢ଼ା ଯେବେ କରି ନିତଦିନ ॥
ହୋମ କରି ସୋମରସେ ଦେବଙ୍କୁ ତୋଷିବ ।
ସକଳ କାମନା ପୂର୍ଣ୍ଣ ତହିଁରେ ହୋଇବ ॥
ଯଜୁର୍ବେଦ ନିତ୍ୟପାଠେ ଦେବେ ଦେବ ଋଦ୍ଧି ।
ସାମ ବେଦପାଠେ ଘୃତ ଦେବ ଅଛି ବିଧି ॥
ଅଥର୍ବ ବେଦ ପଢ଼ିଲେ ତୋଷିବ ମଧୁ ଦେବ ।
ଧର୍ମର ଅଙ୍ଗ ପୁରାଣ ଯେବେକ ପଢ଼ିବ ॥
ମାଂସ ଦେବ ତାଙ୍କୁ ଆଗ କରାଇ ଭୁଞ୍ଜତ ।
ଗାୟତ୍ରୀ ମନ୍ତ୍ରକୁ ଜପ କରୁଥିବ ନିତ ॥
ଦେବତାଙ୍କ ଆଗେ ବସି ଏକାନ୍ତେ ବା ବନେ ।
ଗାୟତ୍ରୀ ଜପ କରିବ ଯେ ବିଧି ବିଧାନେ ॥
ସହସ୍ରବାର ଗାୟତ୍ରୀ ଜପିଲେ ଉତ୍ତମ ।
ଶତବାର ଜପ କଲେ ସେ ହୋଏ ମଧ୍ୟମ ॥
ଅଧମ ଗାୟତ୍ରୀ ଜପ ହୁଏ ଦଶବାରେ ।
ଏହାକୁ ଯେ ଜପଯଜ୍ଞ ବୋଲନ୍ତି ସଂସାରେ ॥
ବ୍ରହ୍ମା ଦିନେ ତୁଳାଦଣ୍ଡ ନିକିତିକ ଆଣି ।
ଚାରିବେଦ ଗାୟତ୍ରୀକି ତୁଳାଥିଲେ ପୁଣି ॥
ଦୁହେଁ ସମ ନ ହୋଇଲେ ଜାଣ ଋଷିଗଣେ ।
ଏଣୁ ଗାୟତ୍ରୀ ଜପିବ ଶ୍ରଦ୍ଧାଭକ୍ତିମନେ ॥
ଆଦ୍ୟେ ଓଁକାର ତା ପରେ ପଢ଼ିବ ବ୍ୟାହୃତି ।
ତହୁଁ ସାବିତ୍ରୀ ପଢ଼ନ୍ତେ ହୋଇବ ଗାୟତ୍ରୀ ॥
ଭୂର୍ଭୁବ ସ୍ୱ ଏ ତିନି ଅକ୍ଷର ବ୍ୟାହୃତି ।
ଭୁବ ଯେ ପୃଥ୍ୱୀ ଜାଣ ଭୂ ଅଟେ ପ୍ରକୃତି ॥
ସ୍ୱ ଅକ୍ଷର କାଳ ବୋଲି ଜାଣ ଋଷିଗଣ ।
ଭୂ ଅକ୍ଷର ବିଷ୍ଣୁ ହେଲେ ଭୁବ ବ୍ରହ୍ମ ଜାଣ ॥
ସ୍ୱ ଅକ୍ଷର ଅଟଇ ଯେ ଦେବ ମହେଶ୍ୱର ।
ଭୁବ ରଜୋଗୁଣ ହେଲେ ସତ୍ତ୍ୱ ଭୂ ଅକ୍ଷର ॥
ସ୍ୱ ଅକ୍ଷର ତମଗୁଣ ଜାଣ ଋଷିଜନେ ।
ଓଁକାରକୁ ପରଂବ୍ରହ୍ମ ବୋଲି ଘେନ ମନେ ॥
ସାବିତ୍ରୀ ମନ୍ତ୍ର ତାହାର ଅଟଇ ଶକତି ।
ଏ ମନ୍ତ୍ରକୁ ମହାଯୋଗ ବୋଲି ଯେ ବୋଲନ୍ତି ॥
ସାରରୁ ସାର ଏ ମନ୍ତ୍ର ଜାଣ ଋଷିବରେ ।
ଯେଉଁ ବ୍ରହ୍ମଚାରୀ ନିତ୍ୟ ମନ୍ତ୍ର ଜପ କରେ ॥
ବେଦର ମାତା ଅଟଇ ଏ ଦେବୀ ଗାୟତ୍ରୀ ।
ଅର୍ଥ ବୁଦ୍ଧି ପ୍ରଦାନ ଯେ ବିପ୍ରେ ଜପନ୍ତି ॥
ଦେହାନ୍ତେ ପରମ ଗତି ପାଇବେ ଏ ତଥ୍ୟ ।
ଗାୟତ୍ରୀ ଗର୍ଭରୁ ସବୁ ବେଦ ହୋଏ ଜାତ ॥
ଏଣୁ ଗାୟତ୍ରୀକି ବେଦଜନନୀ କହନ୍ତି ।
ଲୋକ ପାବନୀ ଅଟଇ ଏକା ଏ ଗାୟତ୍ରୀ ॥
ଗାୟତ୍ରୀ ମନ୍ତ୍ରରୁ ଜପ ମନ୍ତ୍ର ଆଉ ନାହିଁ ।
ଏହା ଜାଣି ଯେ ଜପଇ ସେ ମୁକତି ପାଇ ॥
ଆଷାଢ଼ ଶ୍ରାବଣ ଭାଦ୍ର ଏହି ତିନିମାସେ ।
ବେଦ ପାଠର ଆରମ୍ଭ କରିବ ବିଶେଷେ ॥
ସୂର୍ଯ୍ୟର ଦକ୍ଷିଣ ଗତି ସାଢ଼େ ପାଞ୍ଚମାସ ।
ବ୍ରହ୍ମଚାରୀ କରିବ ଯେ ବେଦକୁ ଅଭ୍ୟାସ ॥
ପୁଷ୍ୟାନକ୍ଷତ୍ର ପ୍ରଭାତେ ଦ୍ୱିଜ ଆରମ୍ଭିବ ।
ଶୁକ୍ଳପକ୍ଷରେ ସନ୍ଧ୍ୟାରେ ବେଦକୁ ପଢ଼ିବ ॥
କୃଷ୍ଣପକ୍ଷେ ପୂର୍ବାହ୍ନ ଅଟଇ ପ୍ରଶସ୍ତ ।
ଶୁକ୍ଳପକ୍ଷେ ଦ୍ୱିଜେ ହେବେ ବେଦପାଠେ ରତ ॥
କୃଷ୍ଣପକ୍ଷରେ ବେଦାଙ୍ଗ ସକଳ ପୁରାଣ ।
ନିଷେଧ ଦିବସ ଏବେ କହୁଅଛି ଶୁଣ ॥
ଗ୍ରୀଷ୍ମେ ଯେବେ ଧୂଳି ହୋଇ ବହଇ ପବନ ।
ଦିବସରେ ଧୂଳି ଉଠି ଆଚ୍ଛାଦେ ଗଗନ ॥
ବିଜୁଳି ମାରଇ ମେଘଗର୍ଜନ କରେ ।
ମହାଉଲ୍କାପାତ ଯେବେ ହୁଏ ଗଗନରେ ॥
ମୂଷଳଧାର ପ୍ରମାଣେ ବରଷଇ ଘନ ।
ଏହାକୁ ବୋଲନ୍ତି ଲୋକେ ଅକାଳ ଦୁର୍ଦ୍ଦିନ ॥
ଏ ଦିନମାନ ନିଷେଧ ବେଦ ନ ପଢ଼ିବ ।
ଆଉର ଅକାଳେ ଯେବେ ମେଘ ବରଷିବ ॥
ଦେଖିଲେ ନ ପଢ଼ି ବାନ୍ଧି ରଖିଦେବ ପୋଥି ।
ନିର୍ଘାତ ଭୂମି କମ୍ପରେ ଦିବସ ରାତି ॥

ଚନ୍ଦ୍ର ସୂର୍ଯ୍ୟ ଗ୍ରହଣରେ ଗ୍ରହର ସନ୍ଧିରେ ।
କିବା ନକ୍ଷତ୍ର ପାତରେ ଏ ସବୁ ଦିନରେ ॥
ବେଦ କେଭେ ନ ପଢ଼ିବ ବ୍ରହ୍ମା କହିଛନ୍ତି ।
ଝଡ଼ ଅତ୍ର ନ ଫିଟିବ କେବେ ବେଦପୋଥି ॥
ବିଜୁଳି ମେଘ ଗର୍ଜନ ହୋଇଲେ ସେକାଳେ ।
ନ ପଢ଼ିଣ ଅହୋରାତ୍ର ବସିବ କଷ୍ଟଲେ ॥
ମୂତ୍ରାଦି ଦୁର୍ଗନ୍ଧ ସ୍ଥାନେ ଗ୍ରାମେ ବା ନଗରେ ।
ଶବପୋଡ଼ା ହୋଇଥିବ ଗ୍ରାମରେ ଭୂମିରେ ॥
ଶୂଦ୍ର ଆଗରେ ରୋଦନ ଶବ୍ଦ ଶୁଭେ ଯହିଁ ।
ବେଦ ନ ପଢ଼ିବ ଏଥେ ପ୍ରଜାପତି କହି ॥
ବୃଷ୍ଟି କାଳେ ଜଳମଧ୍ୟେ ରାତି ଅଧେ ପୁଣି ।
ବେଦ ନ ପଢ଼ିବ କେଭେ ମନେ ମନେ ଗୁଣି ॥
ମଳ ମୂତ୍ର ତ୍ୟାଗ କାଳେ ଭୋଜନର ବେଳେ ।
ଉଚ୍ଛିଷ୍ଟ ବେଳେ ଆଉର ଅପବିତ୍ର କାଳେ ॥
ବେଦ ନ ପଢ଼ିବ କିବା ମନେ ନ ଧରିବ ।
ରାଜାର ମୃତ୍ୟୁ ସମ ଯେ ବେଦ ନ ପଢ଼ିବ ॥
ଗ୍ରହଣ କାଳେ ଦକ୍ଷିଣା ସଙ୍ଗେ ଦାନ ଘେନି ।
ବେଦ ନ ପଢ଼ିବ କହିଛନ୍ତି ପଦ୍ମଯୋନି ॥
ଶ୍ରାଦ୍ଧର ଦକ୍ଷିଣା ଧରି ନ ପଢ଼ିବ ବେଦ ।
ତିନିଦିନ ପର୍ଯ୍ୟନ୍ତ ଏଥିରେ ନିଷେଧ ॥
ଯେ ପର୍ଯ୍ୟନ୍ତ ଅନ୍ନଜୀର୍ଣ୍ଣ ନ ହୁଏ ଉଦରେ ।
ସେ ପର୍ଯ୍ୟନ୍ତ ବେଦ ପାଠ ନିଷେଧ ଶାସ୍ତ୍ରରେ ॥
ତଇଳ ଦେହରେ ଲଗାଇ ବେଦ ନ ପଢ଼ିବ ।
ସ୍ନେହ ଦ୍ରବ୍ୟରେ ସର୍ବାଙ୍ଗ ଜରଜର ଥିବ ॥
ଏମନ୍ତ ସମୟେ ବେଦ ପଢ଼ିବା ନିଷେଧ ।
ଆଉର ଯା କହୁଅଛୁଁ ଶୁଣ ଋଷିବୃନ୍ଦ ॥
ଶୋଇ ନ ପଢ଼ିବ ପୁଣି ଆଣ୍ଠୁଭିଡ଼ି ଦେଇ ।
ଆମିଷ ଖାଇ ଶୂଦ୍ରର ଶ୍ରାଦ୍ଧ ଅନ୍ନ ଖାଇ ॥
ନ ପଢ଼ିବ ବେଦ କେଭେ ବିଧିର ନିଷେଧ ।
ସନ୍ଧ୍ୟାରେ ଶୁଭଇ ଯେବେ ବାଣର ଶବଦ ॥
ଅଧିକ ହିମ ବୃଷ୍ଟିରେ କେବେ ନ ପଢ଼ିବ ।
ପୂର୍ଣ୍ଣମୀ ଯେ ଅମାବାସ୍ୟା ତିଥି ବରଜିବ ॥
ଚତୁର୍ଦ୍ଦଶୀ ଅଷ୍ଟମୀ ଏ ଦୁଇ ତିଥି ଛାଡ଼ ।
ପ୍ରତିପଦା ତିଥି ମନେ କରିଥିବ ଦୃଢ଼ ॥
ଅପଢ଼ା ଦିବସ ବୋଲି ସମସ୍ତେ କହନ୍ତି ।
ପଢ଼ିଲେ ପାଠ ସକଳ ପାସୋରି ଯାଆନ୍ତି ॥

ଉପାକର୍ମେ ଯେ ଉତ୍ସର୍ଗ କର୍ମେ ତିନିରାତି ।
ଅଷ୍ଟକା ଶ୍ରାଦ୍ଧରେ ଋଷୁ ଶ୍ରେଷ୍ଠେ ଦିବାରାତି ॥
ମର୍ଗଶିର ପୂଷ ମାଘ ଏ ତିନି ମାସରେ ।
କୃଷ୍ଣ ପକ୍ଷର ଯେ ତିନି ଅଷ୍ଟମୀ ତିଥିରେ ॥
ଅଷ୍ଟକା ତିଥି ପଡ଼ଇ କହିଛନ୍ତି ଜ୍ଞାନୀ ।
ଦେହେ ଶ୍ଳେଷ୍ମ ଘୋଟି ଥିଲେ ନ ପଢ଼ିବ ପୁଣି ॥
ଶିମୁଳୀ ବୃକ୍ଷର ମୂଳେ କେଭେ ନ ପଢ଼ିବ ।
ମଧୂକ ତରୁ ମୂଳର ଛାୟା ବରଜିବ ॥
କୋବିଦାର ତରୁମୂଳେ କଇଥର ମୂଳେ ।
ବେଦ ନ ପଢ଼ିବ ଏହା କହନ୍ତି ସକଳେ ॥
ଗୁରୁ ମଲେ ସମପାଠୀ ଯେତେ ବ୍ରହ୍ମଚାରୀ ।
ବେଦ ନ ପଢ଼ିବେ ତିନି ଦିନ ହେତୁ କରି ॥
ରାକ୍ଷସଙ୍କ ହିଂସା ଦିନ ଏ ସବୁ ଅଟଇ ।
ପଢ଼ିଲେ ନାନାଦି ବିଘ୍ନ ତହିଁ ଉପୁଜଇ ॥
ନାଣ୍ଡିଏ ମନ୍ତ୍ର ପଢ଼ିବ ହୋଇଲେ ଆବଶ୍ୟକ ।
ବେଦ ଅଙ୍ଗ ଇତିହାସ ପୁରାଣ ଯେତେକ ॥
ଧର୍ମ ଶାସ୍ତ୍ର ଆଦି ପାଠ କଲେ ଦୋଷ ନାହିଁ ।
ଯାହା ଶୁଣିଥିଲି ବ୍ରହ୍ମା ମୁଖୁ ତାହା କହି ॥
ଆଗ ବେଦ ନ ପଢ଼ି ଯେ ଆନ ପାଠ ପଢ଼େ
କଥା ବାର୍ତ୍ତାର ଅଯୋଗ୍ୟ ଜନ ସେହି ମୂଢ଼େ
ଯେ କେବଳ ବେଦ ପଢ଼ି ଅର୍ଥ ନ ପଢ଼ଇ ।
ଅଧମ ଅଜ୍ଞାନ ମୂର୍ଖ ସେ ଜନ ଅଟଇ ॥
ନ ବୁଝଇ ଆଲୋଚନା ନ କରଇ ଯେ ଜନ ।
ପଙ୍କେ ଲଖିଥିବା ଗୋରୁପ୍ରାୟ ଅବସନ୍ନ ॥
ବେଦ ପଢ଼ି ତାକୁ ଯେବେ ବୁଝି ନ ପାରଇ ।
ବୁଝି ପାରିଲେ କି ହେବ ନ ପାରେ ବୁଝାଇ ॥
ବୁଝାଇ କି ହେବ ଯେବେ ନ ପାଳଇ ତାହା ।
ଶୂଦ୍ର ସମାନ ସେ ଜନ ଜାଣିଥାଅ ଏହା ॥
ଗାୟତ୍ରୀ ସାବିତ୍ରୀ ଶତଛନ୍ଦ ବେଦ ପାଠ ।
ବେଦାନ୍ତ ଶାସ୍ତ୍ର ଆଉର ପୁରାଣ ଯେ ପାଠ ॥
ନିତି ପଢ଼ୁଥିବ ଏହା ବିଧିର ବିଧାନ ।
ଗୋପୀନାଥ କହେ ଜନେ ପାଇବ ସୁଜ୍ଞାନ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ କର୍ମ-
ଯୋଗ କଥନଂ ନାମ
ଷଡ଼୍ବିଂଶୋଽଧ୍ୟାୟଃ ।

# ସପ୍ତବିଂଶ ଅଧ୍ୟାୟ ।

## ସଦାଚାର ଧର୍ମ ।

ବ୍ୟାସ ମୁନି କହିଲେ ହେ ଶୁଣ ଋଷିଗଣ ।
ଏମନ୍ତେ ଗୁରୁ ଗୃହରେ ପଢି ସାରି ପୁଣ ॥
ଫେରି ଆସି ସ୍ନାନ କରି ଦଣ୍ଡ ଆଦି ତେଜି ।
ଉତ୍ତମ ଶୁଦ୍ଧ ବସନ ପିନ୍ଧି ଅଙ୍ଗ ମାଜି ॥
ଗୁରୁଙ୍କୁ ଦକ୍ଷିଣା ଦେଇ ଘେନି ଅନୁମତ ।
ଯାହାର ଇଚ୍ଛା ବଳିବ ସେ ହୋଇବ ଯତ ॥
ଗୃହୀ ହେବା ପାଇଁ ମନ ବଳିବ ଯାହାର ।
ନଖକୁ କାଟିବ ପୁଣି ହୋଇବ କ୍ଷଉର ॥
ବାଉଁଶ ଦଣ୍ଡ ଧାରଣି କଉପୀନ ବାସ ।
ଯଜ୍ଞ ପଇତା ଆବର ଉତ୍ତରୀୟ ବାସ ॥
ଜଳ ପୂର୍ଣ୍ଣ କମଣ୍ଡଳୁ କଠାଉ ଯେ ଯୋଡା ।
ସୁବର୍ଣ୍ଣ କୁଣ୍ଡଳ ଦୁଇ ଶୁଭ୍ର ପାଗ ଛତା ॥
କାଞ୍ଚନ ବିନା ରତ୍ନାଦି କେବେହେଁ ନ ପିନ୍ଧିବ ।
ରକ୍ତବର୍ଣ୍ଣ ମାଳା ଗଳେ ଧାରଣ କରିବ ॥
ପିନ୍ଧିଥିବ ଶୁଦ୍ଧ ଶୁକ୍ଳ ବସନ ନିରତ ।
ସୁଗନ୍ଧ ଦ୍ରବ୍ୟ ସୁନ୍ଦର କରୁଥିବ ଗାତ୍ର ॥
ଯେମନ୍ତେ ହୋଇବ ସେହି ଜନ ମନୋହର ।
ନ ପିନ୍ଧିବ ଚିରାଲୁଗା ମଳିନ ଆବର ॥
ରଙ୍ଗ ବସ୍ତ୍ର ଉତ୍ତେଜକ ବସ୍ତ୍ର ନ ପିନ୍ଧିବ ।
ଅନ୍ୟ ପିନ୍ଧିଥିବା ବସ୍ତ୍ର ବର୍ଜନ କରିବ ॥
ପିନ୍ଧି ହୋଇଥିବା ଯେତେ କଠାଉ କୁଣ୍ଡଳ ।
ମାଲ୍ୟ ପୁଷ୍ପ ମାଳ ହାର ସୁଗନ୍ଧ ତଇଳ ॥
ଏ ସବୁ ଦ୍ରବ୍ୟ ବର୍ଜନ କରିବ ଆବର ।
ଦକ୍ଷିଣ ଅଙ୍ଗେ ପିନ୍ଧିବ ରୂପ ଅଳଂକାର ॥
କୃଷ୍ଣାଜିନ ଉପବୀତ ଦକ୍ଷିଣେ ଲମ୍ବାଇ ।
ବକ୍ଷକେ ଛଡ଼ିବ ବସନ ପିନ୍ଧା ନ ଯୋଗାଇ ॥
ସମାନ ଋଷି ପ୍ରବର ଗୋତ୍ରଜାତ କନ୍ୟା ।
ଆବର ମାତୃ ଗୋତ୍ରରେ ଜନ୍ମିଥିବ କନ୍ୟା ॥
ଏମାନଙ୍କୁ ଛାଡ଼ିଣ ଅନ୍ୟ ଗୋତ୍ରୁ ବଧୂ ହେବ ।
ଉତ୍ତମ ରୂପ ଲକ୍ଷଣ ଯା ଅଙ୍ଗରେ ଥିବ ॥
ଆପଣା ସମାନ ବାଛି କନ୍ୟା ରୂପ ଗୁଣ ।
କୌଣସି ଦୋଷ ତାହାର ନ ଥିବ ଯେ ପୁଣ ॥

ଋତୁକାଳ ଭିନ୍ନ ସ୍ତ୍ରୀ ସଙ୍ଗ ନ କରିବ ।
ପୁତ୍ର ହେବା ଯାଏ ଋତୁକାଳ ନ ଛାଡ଼ିବ ॥
ସ୍ତ୍ରୀ ସଙ୍ଗ ନ କରିବ ନିଷେଧ ଦିବସେ ।
ପୂର୍ଣ୍ଣିମା ତିଥି ବର୍ଜନ ସ୍ତ୍ରୀ ସହବାସେ ॥
ଷଷ୍ଠୀ ଅଷ୍ଟମୀ ଦ୍ୱାଦଶୀ ଜନ୍ମ ତିଥି ବାର ।
ଜନ୍ମ ନକ୍ଷତ୍ର ପଡ଼ିବ ଯେ ସବୁରେ ଆବର ॥
ଏଥିରେ ଯେ ସ୍ତ୍ରୀ ସଙ୍ଗ କେବେହେଁ ନ କରିବ
ଯାହା କି କର୍ତ୍ତବ୍ୟ କର୍ମ ତାହା କରୁଥିବ ॥
ନ କଲେ ଘୋର ନରକ କୁଣ୍ଡରେ ପଡ଼ିବ ।
ବେଦ ପଢା ନ ଛାଡ଼ିବ ଯଜ୍ଞ ନ ଛାଡ଼ିବ ॥
ଗୃହର କାର୍ଯ୍ୟ ସକଳ କରୁଥିବ ନିତ ।
ସନ୍ଧ୍ୟା ଉପାସନା ଦେବ ପୂଜା ଆଦି ନିତ ॥
ରୂପ ଗୁଣ ବୟସରେ ତୁଲ୍ୟ ଜନସଙ୍ଗେ ।
ମିତ୍ର ଭାବ ରଖିଥିବ ମନ ଅନୁରାଗେ ॥
ଆପଣାଠାରୁ ଅଧିକ ଜନେ କରି ମାନ୍ୟ ।
ଦେବତାଙ୍କୁ କରୁଥିବ ନିତ୍ୟ ଦରଶନ ॥
ଯାହାର ପ୍ରଭାବ ଥାଇ ତା ପାଖକୁ ନିତ ।
ଯତନରେ ଆପଣାର ଭରଷା ପୋଷିବ ॥
ଯାହାକି କରିବ ତାହା ନ କହିବ କାହିଁ ।
ପାପ ଗୋପନ ନ କରି ଯହିଁ ଥିବ କହି ॥
ସବୁ ପ୍ରାଣୀଠାରେ ତୁଲ୍ୟ ଦୟା ରଖିଥିବ ।
ଧନ କର୍ମ ବିଦ୍ୟା ବୁଦ୍ଧି ବୟସ ଭାବିବ ॥
ଦେଶ କାଳପାତ୍ର ଆଦି ବିଚାର କରିବ ।
ସାଧୁଜନଙ୍କର ବାଟେ ବାଟେ ଯାଉଥିବ ॥
ଶ୍ରୁତିରେ ସ୍ମୃତିରେ ଅଛି ଯେ ଧର୍ମ ଆଚାର ।
ସଦାଚାର ନୁହେ ସେହି ଜାଣ ସଦାଚାର ॥
ଯେଉଁ ବାଟେ ଯାଇଛନ୍ତି ପିତା ପିତାମହ ।
ସେହି ସାଧୁ ବାଟ କାହିଁ ତହିଁରେ ସନ୍ଦେହ ॥
ସେ ବାଟରେ ଗଲେ କିଛି ଦୋଷ ନ ଲାଗିବ
ଯେଉଁ ଗୃହୀ ଲୋଭ ମୋହ କ୍ରୋଧ ନ କରିବ
ବେଦ ପଢୁଥିବ ନିତ୍ୟ କହୁଥିବ ସତ୍ୟ ।
ଶୁଦ୍ଧ କରୁଥିବ କଣ୍ଠେ ଥିବ ଉପବୀତ ॥
ଦେହାନ୍ତେ ସେ ଗୃହୀ ନିଶ୍ଚେ ପାଇବ ମୁକତ
ମାତା ପିତାଙ୍କର ହିତ ବାଞ୍ଛୁଥାଇ ନିତ ॥
ବିପ୍ରଙ୍କର ହିତବାଞ୍ଛି ଦାନ ଯଜ୍ଞ କରେ ।
ବ୍ରହ୍ମଲୋକେ ପୂଜାପାଏ ନିଶ୍ଚେ ଦେହାନ୍ତରେ ॥

ଧର୍ମ ଅର୍ଥ କାମ ତାକୁ ହୋଇବ ପ୍ରାପତ ।
ନିରନ୍ତର ହେବ ଦେବଗଣ ପୂଜାରତ ॥
କ୍ଷମା ଦୟା ପୂର୍ବରୁ ଥାଇଁ ଯାର ସେହି ।
ଇହ ସଂସାରେ ବୋଲଇ ସ୍ୱଧର୍ମସ୍ଥିତ ସ୍ୱଧର୍ମୀ ॥
ସ୍ୱଧର୍ମ କେବଳ କଲେ ତ ସ୍ୱଧର୍ମୀ ନ ବୋଲନ୍ତି ।
ଶମ ଦମ ସତ୍ୟ ବ୍ରହ୍ମଜ୍ଞାନେ ବେଦେ ମତ ॥
ସ୍ୱଧର୍ମୀ ବୋଲାଇବ ସେହି ପ୍ରକୃତ ବ୍ରାହ୍ମଣ ।
ଏଣୁ ବିପ୍ର କରୁଥିବ ଧର୍ମ ଆଚରଣ ॥
ନିନ୍ଦିତ କର୍ମ ସକଳ ବର୍ଜନ କରିବ ।
ଅନୁକ୍ରମ ଯୋଗ ଏହି ସ୍ୱଧର୍ମର ଜାଣିବ ॥
ଗହନ ମୋହ ବିନାଶି ପାପରାଶି ଧୋଇ ।
ଘୋର ସଂସାର ବନ୍ଧନୁ ମୁକ୍ତ ହୋଇ ଯାଇ ॥
ଏଥିରେ ମୁକ୍ତ ବିସ୍ମୟ କିଛିହିଁ ନ କର ।
ଋଷିଏ ବୋଇଲେ ଆହେ ବ୍ୟାସ ମୁନିବର ॥
କ୍ଷମା କେଉଁ କହିଲ ଯା ନ ବୁଝିଲୁ ଆମ୍ଭେ ।
ବୁଝାଇ ଦିଅ ଆମ୍ଭଙ୍କୁ ବିସ୍ତାରିତ ଭାବେ ॥
ଏମନ୍ତ ଶୁଣି ବୋଇଲେ ବ୍ୟାସ ମୁନିବର ।
ଧର୍ମର ବିରୁଦ୍ଧ କର୍ମ କରେ ଯେଉଁ ନର ॥
କିବା କରାଇ ଲୋକଙ୍କୁ ଶିଖାଇ ଦିଅଇ ।
କିବା ଯେ ଧର୍ମକୁ ଅବମାନନା କରଇ ॥
ପରର ମନରେ ଜାତ କରାଇ ଯେ କ୍ରୋଧ ।
କଷ୍ଟ ଉପୁଜାଇ ପୁଣି ଲଗାଇ ବିବାଦ ॥
ତର୍ଜନ ଗର୍ଜନ କରେ ପ୍ରାଣିହିଂସା କରେ ।
ବଧ ବନ୍ଧନାଦି କରୁଥାଇ ନିରନ୍ତରେ ॥
ଏ ସବୁ ଦୋଷ ସହିବା ନାମ କ୍ଷମା ଜାଣ ।
ଏମନ୍ତ ଶୁଣି ବୋଇଲେ ପୁଣି ଋଷିଗଣ ॥
ଦୟା କାହାକୁ କହନ୍ତି କହି ତା ବୁଝାଇ ।
ବ୍ୟାସେ ବୋଇଲେ ଯେ ପରଦୁଃଖେ ଦୁଃଖୀ ହୋଇ
ତା ନାମ ଦୟା ଅଟଇ ଜାଣ ମୁନିଗଣ ।
ଏମନ୍ତ ଶୁଣି ମୁନିଏ ପଚାରିଲେ ପୁଣ ॥
ବିଜ୍ଞାନ କାହାକୁ କହି କହିବା ବୁଝାଇ ।
ବ୍ୟାସମୁନି ବୋଇଲେ ହୋ ଶୁଣ ମନଦେଇ ॥
ଧର୍ମ ଯହିଁରେ ଅଧିକ ହୁଅଇ ବର୍ଦ୍ଧିତ ।
ସେହି ଯେ ଚଉଦ ବିଦ୍ୟା ତାର ଅର୍ଥ ତତ୍ତ୍ୱ ॥
ତାହା ଜାଣିବା ଧାରଣା ନାମ ଯେ ବିଜ୍ଞାନ ।
ପଢି ମର୍ମ ବୁଝି ଧର୍ମ କର୍ମ କଲେ ଜନ ॥
ତାକୁହିଁ ବିଜ୍ଞାନ କହି ଜାଣ ମୁନିଗଣ ।
ପୁନରପି ପଚାରିଲେ ସର୍ବ ତପୋଧନ ॥
ସତ୍ୟ କାହାକୁ କହନ୍ତି କହ ବ୍ୟାସମୁନି ।
ଏମନ୍ତ ଶୁଣି ବୋଇଲେ ବ୍ୟାସ ମହାଜ୍ଞାନୀ ॥
ଯହିଁରେ ପ୍ରମାଦ ନାହିଁ ସେହି ଅଟେ ସତ୍ୟ ।
ଯେଉଁ ସତ୍ୟେ ଲୋକ ସବୁ ହୁଏ ପରାଜିତ ॥
ସେ ସତ୍ୟ ପରମ ପଦ ବୋଲନ୍ତି ପଣ୍ଡିତେ ।
ଏମନ୍ତ ଶୁଣି ପୁଚ୍ଛନ୍ତି ମୁନିଜନ ଯେତେ ॥
ଶମ କାହାକୁ କହନ୍ତି କହ ବେଦବ୍ୟାସ ।
ବ୍ୟାସେ ବୋଇଲେ ପ୍ରଜ୍ଞାରୁ ଯେ ହୁଏ ପ୍ରକାଶ
ଯେହି ପ୍ରଜ୍ଞା ସେହି ବୁଦ୍ଧି ଜ୍ଞାନ ବୋଲି ଜାଣ ।
ତହିଁରୁ ଶମ ଉପୁଜେ ଆହେ ଋଷିଗଣ ॥
ଶମ ଶାନ୍ତି ଦୁହେଁ ଏକା ଭିନ୍ନ କିଛି ନାହିଁ ।
ଋଷିଏ ବୋଇଲେ ଦମ କାହାକୁ ଯେ କହି ॥
ବ୍ୟାସେ ବୋଇଲେ ଶରୀର ଅବୟବ ଯେତେ
ନାସା ଚକ୍ଷୁ ହସ୍ତ ପଦ ଆଦି ଏ ସହିତେ ॥
ଏମାନେ କିମ୍ବା କର୍ମରୁ ହୁଅନ୍ତେ ରହିତ ।
ତହିଁରୁ ଯାହା ଉପୁଜେ ଦମ ନାମେ ଖ୍ୟାତ ॥
ଏମନ୍ତ ଶୁଣି ମୁନିଏ ବୋଇଲେକ ପୁଣି ।
ଅଧ୍ୟାତ୍ମ କାହାକୁ କହି କହ ବ୍ୟାସମୁନି ॥
ବ୍ୟାସେ ବୋଇଲେ ଅଧ୍ୟାତ୍ମ ନାମ ବ୍ରହ୍ମଜ୍ଞାନ ।
ବ୍ରହ୍ମକୁ ଅକ୍ଷୟ ବୋଲି ଜାଣ ମୁନିଜନ ॥
ଯେଉଁ ବ୍ରହ୍ମଜ୍ଞାନେ ରୋଗ ଶୋକ ନ ଲଗଇ ।
ଅଧ୍ୟାତ୍ମ ଜ୍ଞାନ ବଳେ ସେ ବ୍ରହ୍ମଲୋକ ପାଇ ॥
ଏମନ୍ତ ଶୁଣି ବୋଇଲେ ପୁଣି ଋଷିଗଣ ।
କାହାକୁ କହାଇ ଜ୍ଞାନ କହ ତପୋଧନ ॥
ଯେଉଁ ବିଦ୍ୟାଜ୍ଞାନ ବଳେ ଦେବଦେବ ହର ।
ଜଣାଯାନ୍ତି ତାକୁ ଜ୍ଞାନ କହି ତପସ୍ୱୀ ॥
ଋଷିଏ ବୋଇଲେ ବୁଝି ପାରିଲୁ ସକଳ ।
ଏଥିରେ ମନ ସନ୍ତୋଷ ହୋଇଲା କେବଳ ॥
ବ୍ୟାସେ ବୋଇଲେ ଅକ୍ରୋଧୀ ଶୁଚିମନ୍ତ ହୋଇ
ଯାହା କହିଗଲି ତେତେ ମନ ପ୍ରାଣ ଦେଇ ॥
ନିତ୍ୟ ଜପ କଲେ ଦ୍ୱିଜ ବ୍ରହ୍ମଲୋକ ପାଇବ ।
ଧର୍ମର ମୂଳ ଧର୍ମକୁ ଯତନେ ପାଳିବ ॥
ଦେହ ଥିଲେ ସିନା ପରଂବ୍ରହ୍ମ ଦେଖିପାରି ।
ନିତ୍ୟ ଧର୍ମ ଅର୍ଥ କାମ ଚିତ୍ତେ ଥିବ ଧରି ॥

ଧର୍ମ ଛଡ଼ା ଅର୍ଥ କାମ ମନେ ନ ଧରିବ ।
ଧର୍ମ କରି କରି ଯେବେ କାର୍ଜୀର୍ଣ୍ଣ ହୋଇବ ॥
ତଥାପି ଅଧର୍ମେ କେଭେ ମନ ନ ବଳାଇ ।
ଜୀବ ଜନ୍ତୁଙ୍କର ଗତି କେବଳ ଧର୍ମହିଁ ॥
ଏଣୁ ସେ ସବୁରି ପ୍ରିୟ ହେଉଥିବ ନିତ୍ୟେ ।
ପରର ଅନିଷ୍ଟ ଚିନ୍ତା ନ କରିବ ଚିତ୍ତେ ॥
ବେଦନିନ୍ଦା ଦେବନିନ୍ଦା କେଭେ ନ କରିବ ।
ନିନ୍ଦା କରୁଥିବା ଜନ ସଙ୍ଗେ ନ ରହିବ ॥
ଯେ ଦ୍ୱିଜ ନିତ୍ୟ ଏ ଧର୍ମ ଅଧାକୁ ପଢ଼ଇ ।
କି ଅବା ଲୋକମାନଙ୍କୁ ବର୍ଣ୍ଣିଣ ଶୁଣାଇ ॥
ବ୍ରହ୍ମଲୋକେ ଗଉରବ ପାଇ ସେହି ଦ୍ୱିଜ ।
ପୂଜିଣ ରହିବ ତହିଁରେ ହୋଇ ମୁନି ସମାଜ ॥
ପ୍ରାଣିହିଂସା ନ କରିବ ମିଛ ନ କହିବ ।
ଅହିତ ଅପ୍ରିୟ କଥା କିଛି ନ ବୋଲିବ ॥
କାହାର ମନରେ କଷ୍ଟ ନ ହୁଏ ଯେମନ୍ତେ ।
ନ କରିବ ନ କହିବ ତାହା କଦାଚିତେ ॥
କାହାର କିଛି ଦ୍ରବ୍ୟହିଁ ନ କରିବ ଚୋରି ।
ଘାସ ଶାଗ ଗୋଡ ମାଟି ଜଳ ଆଦିକରି ॥
କଲେ ସେ ନର ଦେହାନ୍ତେ ନରକେ ପଡ଼ିବ
ରାଜା ହସ୍ତରୁ ଯେ କିଛି ଦାନ ନ ଘେନିବ ॥
ଆବର ଶୂଦ୍ର ହସ୍ତରୁ ନ ଘେନିବ ଦାନ ।
ନ କରିବ ପତିତର ଦ୍ରବ୍ୟକୁ ଗ୍ରହଣ ॥
ଯେବେ କି କେହି ଦାନକୁ ଜୀବିକା କରଇ ।
ଆଉ କିଛିହିଁ ଉପାୟ ତାହାର ଯେ ନାହିଁ ॥
ତଥାପି ନିନ୍ଦିତ ଲୋକ ଦାନ ନ ଘେନିବ ।
ପ୍ରତିଦିନ କଦାପି ସେ ମାଗି ନ ବୁଲିବ ॥
ଥରେ ମାଗିଥିଲେ ଆଉ ନ ମାଗିବ ତାକୁ ।
ଦେବଦ୍ରବ୍ୟ ନ ହରିବ କହିଲି ତୁମ୍ଭଙ୍କୁ ॥
ଯେତେ ଆପଦ ପଡ଼ିଲେ ବ୍ରହ୍ମସ୍ୱ ତେଜିବ ।
ଦେବସ୍ୱ ବ୍ରହ୍ମସ୍ୱ ଲୋଭେ ପଡ଼ି ନ ହରିବ ॥
ବିଷକୁ ଯେ ବିଷ ବୋଲି ନ ବୋଲନ୍ତି କେହି ।
ଦେବସ୍ୱ ବ୍ରହ୍ମସ୍ୱ ଏକା ଜାଣ ବିଷ ସେହି ॥
ପ୍ରଜାପତି ମନୁ କହିଅଛନ୍ତି ଏମନ୍ତେ ।
ପୁଷ୍ପଜଳ କାଠଫଳ ଶାଗ ମୂଳ ଯେତେ ॥
ଆବର ତୃଣ ଏମାନ ଗ୍ରହଣ କରିବ ।
ଏହା ନେଲେ ଚୋରମଧେ ଗଣା ନ ହୋଇବ
ଏମାନ ଲୁଗାଇ ନେଲେ ବୋଲାଇବ ଚୋର ।
ଏଣୁ ଦେଖାଇ ମାଗିଣ ନେବ ସୁଜ୍ଞନର ॥
ଧର୍ମ ନିମନ୍ତେ ଏମାନ ନେଲେ ଦୋଷ ନାହିଁ ।
ଲୋଭମୋହାଦି କ୍ରୋଧରେ ପଡ଼ିଯେବେ ନେଇ
ଏମାନ ହରଣ କରେ ହୁଅଇ ପତିତ ।
ଆବେହି ଦ୍ୱିଜ କ୍ଷୁଧାରେ ଯେ ଅତ୍ୟନ୍ତ ପୀଡ଼ିତ ॥
ବାଟ ପାଖେ ଥିବା ଖସା ମୁଗ ଯବଧାନ ।
ଏ ଆଦି ଶସ୍ୟ ମୁଠାଏ ନେଲେ ସେହି ଜନ ॥
ସଂକଳପ କରି ଏହା କେଭେ ନ କରିବ ।
ଏହା କଲେ ତାର ପାପ ତାକୁ ନ ଛାଡ଼ିବ ॥
ଏମନ୍ତ ମନରେ କରି ପାପ କରି ପୁଣି ।
ସେ ପାପ ଛାଡ଼ିବାପାଇଁ ବ୍ରତ କରେ ପ୍ରାଣୀ ॥
ଦମ୍ଭ କରି କହି ମ୍ଲେଚ୍ଛ ଶୂଦ୍ର ସନ୍ନିଧାନେ ।
ଇହ ପରଲୋକେ ନିନ୍ଦା ପାଇ ଜନ୍ମେ ଜନ୍ମେ ॥
କପଟେ ଯେ ବ୍ରହ୍ମବ୍ରତ କରେ ତାର ଫଳ ।
ସେ ବ୍ରତ ଫଳ ହରନ୍ତି ରାକ୍ଷସ ସକଳ ॥
ପ୍ରକୃତ ସାଧୁ ସନ୍ନ୍ୟାସୀ ନୋହି ଯେଉଁ ନରେ ।
ସାଧୁ ସନ୍ନ୍ୟାସିର ଚିହ୍ନ ବହିଣ ଶରୀରେ ॥
ସାଧୁ ପରିଚୟ ଦେଇ ଲୋକଙ୍କୁ ଭଣ୍ଡାନ୍ତି ।
ତେଣେ ସେ ସାଧୁ ସନ୍ନ୍ୟାସି ପାପେ ପାପୀ ହୁନ୍ତି
ପକ୍ଷୀ ଯୋନିରେ ଜନମ ହୁଅନ୍ତି ସେ ଯାଇ ।
ଏହାର ଦ୍ରବ୍ୟ ଯେବେ କେ ଗ୍ରହଣ କରଇ ॥
ଯୋନି ସମ୍ବନ୍ଧ ଆଳାପ ସହବାସ କଲେ ।
ପତିତ ହୋଇବ ଏଣୁ ନ କରିବ ଭଲେ ॥
ଦେବଦ୍ରୋହୀ ଜନଠାରେ ଗୁରୁଦ୍ରୋହୀ ଜନ ।
ଅଧିକ ଅଟଇ କୋଟି କୋଟି ଗୁଣେ ଜାଣ ॥
ଏ ଲୋକ ନାସ୍ତିକ ଏହି ଜନ ଅପବାଦ ।
ତହୁଁ କୋଟିଗୁଣେ ବେଶି ଜାଣ ଋଷିବୃନ୍ଦ ॥
ଦେବ ଦ୍ୱିଜ ଗୋରୁ କୃଷି ରାଜାଙ୍କ ସେବାରେ ।
ରହିଥାନ୍ତି ଯେଉଁ ଯେଉଁ ଉଚ୍ଚ ବଂଶଧରେ ॥
ଧର୍ମ ଅନୁସାରେ ସେବା ନ ପାରିଲେ କରି ।
ଅକୁଳୀ ହୋଇ ବୁଲନ୍ତି ଜାଣ ତପସ୍ୱର ॥
ବେଦ ନ ପଢ଼ିବା ଜନ ଅକୁଳୀ ଅଟଇ ।
କୁଳସ୍ତ୍ରୀ ଜନ କୁଳ ଧର୍ମକୁ ବୁଡ଼ାଇ ॥
କିମ୍ବା ଲେପକାର ଜନ ଅକୁଳକୁ ଯାଏ ।
ବିପ୍ର ଅମାନ୍ୟକାରୀ ଯେ ଅକୁଳତା ପାଏ ॥

ମିଥ୍ୟା ଯେ କହଇ ପରସ୍ତ୍ରୀ ଯେ ହରଇ ।
ଅଭକ୍ଷ ନ ବାଛଇ ତା ଭକ୍ଷଣ କରଇ ॥
କୁଳ ଧର୍ମ ନ ରଖଇ ଯେ ଜନ ଆବର ।
କୁଳବୁଡ଼ା ହୁଅନ୍ତି ଯେ ଏ ସକଳ ନର ॥
ବେଦ ନ ଜାଣିବା ବିପ୍ର ହସ୍ତେ ଦେଲେ ଦାନ ।
ତାହାର କୁଳ ନ ରହେ ଜାଣ ଋଷିଗଣ ॥
ବେଦରହିତ ଆଉର ଧର୍ମଛଡ଼ା ଲୋକ ।
ତାକୁ ଦାନ ଦେଲେ କୁଳ ବୁଡ଼େ ଶୁଣ ମୁହିଁ ॥
ଶୂଦ୍ରକୁ ଯେ ଦାନ ଦଏ ସେ ଜନ ଅକୁଳା ।
ଯେ କରଇ ଅଧାର୍ମିକ ଲୋକ ସଙ୍ଗ ମେଳା ॥
ବ୍ୟାଧି ବହୁତ ସେ ଗ୍ରାମେ ତହିଁ ଯେ ରହଇ ।
ଶୂଦ୍ରରାଜା ରାଜ୍ୟେ ଘର କରି ଯେହୁ ଥାଇ ॥
ପାଷାଣ୍ଡ ଜନଙ୍କ ଗ୍ରାମେ ଘର ପୁଣି ଯାର ।
ଏ ସବୁ ଲୋକେ ଜାଣିବ କୁଳର ଅଙ୍ଗାର ॥
ପୂର୍ବ ସମୁଦ୍ର ପଶ୍ଚିମ ସମୁଦ୍ର ମଧ୍ୟରେ ।
ହିମାଳୟ ବିନ୍ଧ୍ୟ ଗିରି ଦୁହିଙ୍କ ମଝିରେ ॥
ପବିତ୍ର ଜାଣିବ ଦେଶ ଗ୍ରାମ ଅଛି ଯେତେ ।
ପୁଣ୍ୟବନ୍ତ ଦ୍ୱିଜେ ଘର କରିଥାନ୍ତି ଏଥେ ॥
ଏ ଦେଶ ଛାଡ଼ି ଅନ୍ୟତ୍ର ନ କରିବ ଘର ।
ଦେଖିବ ଯେ ଦେଶେ ଥିବ ମୃଗ କୃଷ୍ଣସାର ॥
କି ଅବା ବିଖ୍ୟାତ ପୁଣ୍ୟ ନଈ ଥିବ ଯହିଁ ।
ଋଷିଗଣେ ଜାଣ ତହିଁ ଘର କରି ରହି ॥
ଘର କରିବ କୂଳରୁ ଅଧକୋଶେ ଛାଡ଼ି ।
କୂଳେ ରହିଲେ ବହୁତ ବିପଦରେ ପଡ଼ି ॥
ଅର୍ଦ୍ଧକୋଶ ମଧ୍ୟସ୍ଥଳୀ ଅପବିତ୍ର ଜାଣ ।
ତହିଁ ଘର କଲେ ତାର ନାହିଁ କିଛି ପୁଣ୍ୟ ॥
ଚଣ୍ଡାଳ ମୂରୁଖ ଗର୍ବୀ ମ୍ଳେଚ୍ଛ ଆବର ।
ମ୍ଳେଚ୍ଛଙ୍କ ବଶରେ ରହିଥାନ୍ତି ଯେତେ ନର ॥
ଏହାଙ୍କ ପାଖରେ ଘର କରି ନ ରହିବ ।
ଏହାଙ୍କ ସଙ୍ଗେ ଶେଯରେ କେଭେ ନ ଶୋଇବ ।
ଏକଧାଡ଼ିରେ କଦାପି ନ ବସିବ ଖାଇ ।
ଏହାଙ୍କ ସଙ୍ଗେ ଆସନେ ବସି ନ ଯୋଗାଇ ॥
ନ କରିବ ଏମାନଙ୍କ ଦ୍ରବ୍ୟ ବ୍ୟବହାର ।
ଏକପାତ୍ରେ ନ କରିବ କଦାପି ଆହାର ॥
ଯେଉଁ ପାତ୍ରରେ ଏହାଙ୍କୁ ପରଷିବ ଅନ୍ନ ।
ନ କରିବ ସେ ପାତ୍ରର ଅନ୍ନକୁ ଭୋଜନ ॥

ଯଜମାନ କ କରିବ ଏମାନଙ୍କୁ କେଭେ ।
ପାଠହିଁ ନ ପଢ଼ାଇବ ପଢ଼ୁଥାନ୍ତି ଯେବେ ॥
ବିବାହ ଆଦି ସମ୍ବନ୍ଧ କେଭେ ନ କରିବ ।
ଏକାଠି ବସି ତାହାଙ୍କ ସଙ୍ଗେ ନ ପଢ଼ିବ ॥
ଏହାଙ୍କ ସହିତେ ମିଳି ନ କରିବ ଯାଗ ।
ଏହି ଯେ ଏଗାର ଗୋଟି ଅଟଇ ସଂସର୍ଗ ॥
ଏହାଙ୍କ ନାମ ସାଙ୍କର୍ଯ୍ୟ ଦୋଷ ଯେ ଅଟଇ ।
ଏହାଙ୍କ ପାଖେ ବସିଲେ ପାପ ସଞ୍ଚରଇ ॥
ଏଣୁ ଏ ଦୋଷମାନଙ୍କୁ ତେଜିବ ଯତନେ ।
ଏକଧାଡ଼ିରେ ଯେବେକି ବସିବ ଭୋଜନେ ॥
ଲଗାଲଗି ଛୁଆଁ ଛୁଇଁ ନୋହିବ ଯେପରି ।
ମଝିରେ ପାଉଁଶ ଗାରେ ଦେଇଥିବ ପାରି ॥
ତେବେ ଏ ସଙ୍କର ଦୋଷ ତାକୁ ନ ଲାଗଇ ।
ପଙ୍ଗତ ଭେଦ ଯହିଁରେ ହୁଏ ତା କହଇ ॥
ଅଗ୍ନି ଭସ୍ମ ଜଳ ଦ୍ୱାର ସ୍ତମ୍ଭ ବାଟ ପୁଣ ।
ଏ ଦ୍ରବ୍ୟ ଥିଲେ ପଙ୍ଗତ ଭିନ୍ନ ହେଲା ଜାଣ ॥
ଅଧିକ ସ୍ୱାର୍ଥ ରହିତ କେଭେ ନ ହୋଇବ ।
ବଇରୀ ନ ହେବ କଳି ଗୋଳ ନ କରିବ ॥
କଳି ଲଗାଇ ନ ଦେବ ଖଳ ମତେ ଧରି ।
ପର କ୍ଷେତ କିଆରିରେ ଗୋରୁ ଯେବେ ଚରି
ଶସ୍ୟ ରକ୍ଷାର୍ଥେ କହିଲେ କିଛି ନ କହିବ ।
ଖଳଲୋକ ସଙ୍ଗେ ଘର କରି ନ ରହିବ ॥
କିଛି କହି ମନେ କଷ୍ଟ ନ ଦେବ କାହାର ।
ନ କହିବ ମର୍ମ କଥା କେଭେ ଲୋକଙ୍କର ॥
ଜାଣିଥିଲେ ଇନ୍ଦ୍ରଧନୁ ପରିଧି ସୂର୍ଯ୍ୟର ।
ଧୂମକେତୁ ଚନ୍ଦ୍ର ପୁଣି କାହିଁକ ଆବର ॥
କାହାର ଆଗେ ନ କହି ରଖିବ ଗୁପତେ ।
କଳି ନ କରିବ ବନ୍ଧୁଜନଙ୍କ ସହିତେ ॥
ବହୁତ ଲୋକଙ୍କ ସଙ୍ଗେ ବିବାଦୀ ନୋହିବ ।
ନିଜର ଦୋଷ ଯେତେକ ପରକୁ ନ ଦେବ ॥
ପଥର ତଥି ନ କହି ନକ୍ଷତ୍ର କହିବ ।
ରଜୋବତୀ ସଙ୍ଗେ କଥାବାର୍ତ୍ତା ନ କରିବ ॥
ଆଳାପହିଁ ନ କରିବ ଅଶୁଚି ସହିତେ ।
ଦେବତାଙ୍କୁ ଗୁରୁଙ୍କୁ ବା ବିପ୍ରଙ୍କୁ ଯେ ହସ୍ତେ ॥
ଦାନ ଦେଉଥିଲେ ତାକୁ ନ କରିବ ବାରଣ ।
ଆପଣା ପ୍ରଶଂସା ମାନ ନ କହିବ ପୁଣ ॥

ପରକୁ ନିନ୍ଦା ଶ କରି ନ କହିବ କାହିଁ ।
ଦେବ ନିନ୍ଦା ଗୁରୁ ନିନ୍ଦା କଲେ ନର୍କେ ରହି
ଦେବଦ୍ୱିଜ ଋଷି ବେଦନିନ୍ଦା ଯେ କରଇ ।
ଶାସ୍ତ୍ରରେ ତାର ନିଷ୍କୃତି କିଛି ଲେଖା ନାହିଁ ॥
ଗୁରୁଦେବ ବେଦନିନ୍ଦା ପ୍ରବନ୍ଧ ଯେ ଲେଖେ
ପଡ଼େ ଶତ କୋଟି କଳ୍ପ ରଉରବ ନର୍କେ ॥
ଯେବେ କେହି ନିନ୍ଦା କରୁଥିବ ଏହାଙ୍କର ।
ମଉନେ ରହିବ କିଛି ନ ଦେବ ଉତ୍ତର ॥
କର୍ଣ୍ଣମୁଦି ବୁଜି ଛଡ଼ି ଯିବ ଅନ୍ୟ ସ୍ଥାନେ ।
ନ ଶୁଣିଣ ଆଡ଼ହୋଇ ଯିବ ତତକ୍ଷଣେ ॥
ପରଘର ଛିଦ୍ର କଥା ନ କହିବ କାହିଁ ।
କଳି ନ କରିବ ସାଧୁ ସଙ୍ଗେ ଯହିଁ ତହିଁ ॥
ପାପୀର କି ଅପାପୀର ପାପ ନ କହିବ ।
କହିଲେ ତାହାଙ୍କ ତୁଲ୍ୟ ପାପୀ ଯେ ହୋଇବ
ପାପ ନଥିଲେ ଯେ ମିଥ୍ୟାବାଦୀ ପାପ ନେବ ।
ମିଥ୍ୟା ଅପବାଦ ଗ୍ରସ୍ତ ଯେତେକ ମାନବ ॥
କାନ୍ଦିଲା ବେଳେ ପଡ଼େ ଯେ ନୟନର ଜଳ ।
ତାଙ୍କ ପୁତ୍ର ପଶୁବତ୍ କରଇ କବଳ ॥
ବ୍ରହ୍ମହତ୍ୟା ସୁରାପାନ କିବା ସୁନା ଚୋରି ।
ଗୁରୁପତ୍ନୀ ହରଣ ଏ ପାପକୁ ବିଚାରି ॥
ଶାସ୍ତ୍ରରେ ଲେଖି ଅଛନ୍ତି ଖଣ୍ଡନ ଉପାୟ ।
ମିଥ୍ୟା ଅପବାଦୀର ଯେ ପାପ ନୋହେ କ୍ଷୟ ॥
ଉଦେ ଅସ୍ତ ଗତ ସୂର୍ଯ୍ୟ ଜଳମଧ୍ୟ ଗତ ।
ଗଗନ ମଧ୍ୟରେ ସ୍ଥିତ ମେଘରେ ଆବୃତ ॥
ବୃକ୍ଷାଦିରେ ତିରୋହିତ ଦର୍ପଣ ଭିତରେ ।
ଚନ୍ଦ୍ର ସୂର୍ଯ୍ୟ ନ ଦେଖିବ ବିନା କାରଣରେ ॥
ଅଶୁଚି ହୋଇ ଗ୍ରହଣ ଦେଖିବା ନିଷେଧ ।
ଉଚ୍ଛିଷ୍ଟ ହସ୍ତେ ନିଷେଧ ଆବର ସମ୍ବାଦ ॥
ଅବଗୁଣ୍ଠେ କାହାକୁ କଥା ନ କହିବ ।
ଗୁରୁଜନଙ୍କର କ୍ରୋଧ ମୁଖ ନ ଚାହିଁବ ॥
ନ ଦେଖିବ ପୁଣି ପ୍ରେତ ସଂସ୍କାର ତଇଳ ।
ଛୁଇଁଲେ ତାକୁ ଘଟଇ ବହୁ ଅମଙ୍ଗଳ ॥
ଆପଣାର ପ୍ରତିବିମ୍ବ ଜଳେ ନ ଦେଖିବ ।
ଖାଇସାରି ଉଠି ପୁଣି ଯନ୍ତ୍ର ନ ଚାହିଁବ ॥
ମୁକତ ବନ୍ଧନ ଗଜ ପାଗଳ ଆବର ।
ଚାହିଁ ନ ଦେଖିବ କେଭେ ଜାଣ ଦ୍ୱିଜବର ॥
ଭାର୍ଯ୍ୟା ସଙ୍ଗେ ଏକାଠି ବସି ନ ଭୁଞ୍ଜିବ ।
ଖାଉଥିବା ବେଳେ ଭାର୍ଯ୍ୟାକୁ ନ ଦେଖିବ ॥
ହାଇ ମାରିବା ଛିଙ୍କିବା ନ ଦେଖିବ ତାର ।
ନ ଦେଖିବ ଯଥାସୁଖେ ଆସନେ ଥିବାର ॥
ନ ଦେଖିବ ଜଳେଥିବା ଆପଣାର ଛାଇ ।
ଶୁଭ ବା ଅଶୁଭ ଦ୍ରବ୍ୟ ଲଙ୍ଘଣ ନ ଯାଇ ॥
ସେ ଦ୍ରବ୍ୟ ଉପରେ ପୁଣି କେଭେ ନ ବସିବ ।
ଶୂଦ୍ର କର୍ଣ୍ଣେ ଜ୍ଞାନମନ୍ତ୍ର କଦାପି ନ ଦେବ ॥
କ୍ଷିରି ଖେଚଡ଼ୀ ଆବର ଦଧି ମଧୁ ଘୃତ ।
ଦେବ ପ୍ରସାଦ ଉଚ୍ଛିଷ୍ଟ ନ ଦେବ କଦାଚିତ ॥
ନ ଦେବ ପୁଣି ତାହାକୁ କୃଷ୍ଣ ମୃଗ ଛାଲ ।
ବ୍ରତ ଉପଦେଶ କିଛି ତାହାଙ୍କୁ ନ ବୋଲ ॥
ରାଗ ଦମ୍ଭ ଉଦବେଗ ସ୍ନେହ ଅନୁରାଗ ।
ଲୋଭ ମୋହ ଈର୍ଷା କାମ ନିନ୍ଦା ମଦ ଶୋଗ ॥
ଏସବୁ ତେଜିବ ପୀଡ଼ା ନ ଦେବ କାହାକୁ ।
ତାଡ଼ନା କରିବ ଏକା ପୁତ୍ରକୁ ଶିଷ୍ୟକୁ ॥
ହୀନ ଜନଙ୍କର ସେବା କେଭେ ନ କରିବ ।
ଲୋଭରେ ପଡ଼ି ଚାଳ ମତ ନ ହୋଇବ ॥
ଆପଣା ମାନ୍ୟ ରଖିବ ନୋହିବ ଦଇନ୍ୟ ।
ବିଶିଷ୍ଟ ଲୋକ ଦେଖିଲେ କରିବ ଯେ ମାନ୍ୟ ॥
ଅକାରଣେ ଆପଣାକୁ ହୀନ ନ ମଣିବ ।
ମୁହିଁ ହୀନ ବୋଲି ପରିଚୟ ଯେ ନ ଦେବ ॥
କାଷ୍ଠ ନ ଲେଖିବ ନଖେ ନ ଚିରିବ ମହୀ ।
ଗୋରୁଙ୍କୁ ବଳେ ଶୟନ କରାଇବ ନାହିଁ ॥
ବହୁତ ନଦୀ ପର୍ବତ ଏକ ନ କହିବ ।
ପୁରୋହିତ ପୁରୋହିତ ସଙ୍ଗ ନ ଛାଡ଼ିବ ॥
ଭୋଜନ କରିବ ଏକା ଥାଳିରେ ବସିଣ ।
ଜଳମଧ୍ୟେ ନ ବୁଡ଼ିବ ହୋଇ ଉଲଗନ ॥
ଅନଳକୁ ନ ଡେଇଁବ ବିନା କାରଣରେ ।
ଯେଉଁ ତଇଳ ଘଷିବ ନେଇଣ ମଥାରେ ॥
ତା ଶେଷ ତଇଳ ପୁଣି ଅଙ୍ଗେ ନ ମାଖିବ ।
ଶାସ୍ତ୍ରେ ଯାହା ନାହିଁ ସେହି କ୍ରୀଡ଼ା ନ କରିବ ॥
ବିନା କାରଣେ ଆପଣା ଇନ୍ଦ୍ରି ନ ଛୁଇଁବ ।
ଗୋପନୀୟ ରୋମ ସବୁ ହସ୍ତେ ନ ଧରିବ ॥
ଅଶିଷ୍ଟ ଜନଙ୍କ ସଙ୍ଗେ ନ କରିବ ସଙ୍ଗ ।
ଚଇଁଳ କରି କାହାକୁ ନ କହିବ ବ୍ୟଙ୍ଗ ॥

ହାତ ପାଦ ନେତ୍ର କର୍ଣ୍ଣ ଶିଶ୍ନ ଯେ ଉଦର ।
ଚପଳତା ନ କରିବ କେବେହେଁ ଏହାଙ୍କର ॥
ଅଙ୍ଗବାଦ୍ୟ ନଖବାଦ୍ୟ କେବେହେଁ ନ କରିବ ।
ଅଞ୍ଜଳିରେ ପାଣି ଆଣି କେବେହେଁ ନ ପିଇବ ॥
ଜଳକୁ ଯେ ନ ମାରିବ ଗ୍ରନ୍ଥା ଗୋଇଠା ।
ଶଙ୍କା ନ କରିବ କେବେ ମ୍ଲେଚ୍ଛ ଭାଷା ଗୋଷ୍ଠା ॥
ଢେଲା ମାରି ଫଳ ମାରି ଫଳ ନ ତୋଳିବ ।
ଆପଣାର ଆସନକୁ ପାଦେ ନ ଠାଳିବ ॥
ଅକାରଣେ ନ କରିବ ନଖରେ ଛେଦନ ।
ନଖ ଭେଦ ନଖ ବାଦ୍ୟ ନଖ ବିଲେଖନ ॥
ବିମର୍ଦ୍ଦନ ନ କରିବ ନଖେ କଚ୍ଛ ପୁଣି ।
କୋଳରେ ରଖି କରିହେଁ ନ ଖାଇବ ପ୍ରାଣୀ ॥
ବୃଥା ଚେଷ୍ଟା ନ କରିବ ନୃତ୍ୟ ନ କରିବ ।
ବାଜା ନ ବଜାଇବ ଯେ ଗୀତ ନ ଗାଇବ ॥
ଦୁଇହସ୍ତରେ ଆପଣା ମୁଣ୍ଡ ନ କୁଣ୍ଡାଇ ।
କରିଲେ ନଷ୍ଟଯଜ୍ଞ ତାର ଶିଖ ଛୁଟି ଯାଇ ॥
ବୃହସ୍ପତି ତୁଲ୍ୟ ଜନ ରଚିତ ଯେ ସ୍ତୁତି ।
ଲଙ୍ଘନକ ସ୍ତବ ବୋଲି ତାହାଙ୍କୁ କହନ୍ତି ॥
ଦେବତା ମାନଙ୍କ ଆଗେ ତାହା ନ ପଢ଼ିବ ।
ବେଣି ନ ଧାଇଁବ ପୁଣି ପଶା ନ ଖେଳିବ ॥
ମଳମୂତ୍ର ନ ତେଜିବ ଜଳର ଭିତରେ ।
ହସ୍ତ ଧଉତ କରିବ ଭୋଜନ ଶେଷରେ ॥
ଉଲଗ୍ନ ହୋଇ କଦାପି ନ କରିବ ସ୍ନାନ ।
ଯାଉଁ ଯାଉଁ ନ କରିବ ବେଦାଦି ପଠନ ॥
ଅକାରଣେ ନିଜଶିର ନ ଛୁଇଁବ କରେ ।
ନ ଛିଣ୍ଡାଇବ ଯେ ନଖ ରୋମାଦି ଦାନ୍ତରେ ॥
ଶୋଇବା ଲୋକର ନିଦ ନ ଭାଙ୍ଗିବ ବଳେ ।
ଖାଦ୍ୟ ନଖାଇବ ସୂର୍ଯ୍ୟ ଉଦେ ହୋଇଲା ବେଳେ
ପ୍ରେତ ଧୂଆଁକୁ ଦେଖିଲେ ଆଡ଼ହୋଇ ଯିବ ।
ଶୂନ୍ୟ ମନ୍ଦିର ଭିତରେ କେବେହେଁ ନ ଶୋଇବ
ଗୋଡ଼ର ଜୋତାକୁ କାଢ଼ି ନ ବୋହିବ ଆପେ
ଅକାରଣେ ନ ଛିଙ୍କିବ କାଠି ଦେଇ ନାକେ ॥
ନଈକି ନ ପହଁରିବ ବଳେ ଅକାରଣେ ।
ନଘଷିବ ନ ଧୋଇବ ଚରଣ ଚରଣେ ॥
ପାଦୁକା ନ ଚଢ଼ାଇବ ନାଆଁକୁ ଦେଖାଇ ।
କଂସାପାତ୍ରେ ଜଳ ନେଇ ପାଦକୁ ନ ଧୋଇ ॥

ଦେବତା ବ୍ରାହ୍ମଣ ଗୋରୁ ପବନ ଅନଳ ।
ବିପ୍ର ଚନ୍ଦ୍ର ସୂର୍ଯ୍ୟେ ନ ଦେଖାଇ ପାଦତଳ ॥
ଶୁଚିମନ୍ତ ନ ହୋଇଣ ଶେଯେ ନ ଶୋଇବ ।
ଯାନ ନ ଚଢ଼ିବ ପୁଣି ବେଦ ନ ପଢ଼ିବ ॥
ତନ୍ନଗୋଷ୍ଠ ସନ୍ଧିକାଳେ କେବେହେଁ ନ ଶୋଇବ
କ୍ଷଉର ନ ହେବ ପୁଣି ସ୍ନାନ ନ କରିବ ॥
ଉଦ୍ୱର୍ତ୍ତନ ଭୋଜନ ଗମନ ତେଜିବ ।
ତନ୍ନସନ୍ଧ୍ୟାରେ ଏମାନ କେବେହେଁ ନ କରିବ ॥
ଭୋଜନ କରି ସାରିଣ ହାତକୁ ନ ଧୋଇ ।
ଗୋବିପ୍ର ବ୍ରାହ୍ମଣ ଅଗ୍ନି ଦେବତା ନ ଛୁଇଁ ॥
ଯେ କେହି ଦ୍ରବ୍ୟକୁ ପାଦେ ପକାଇ ନ ଦେବ
ଶୁଚିମନ୍ତ ନ ହୋଇଣ ଅଗ୍ନି ନ ପୂଜିବ ॥
ଆବର ଦେବତା ଋଷି ନାମ ସଂକୀର୍ତ୍ତନ ।
ଅଶୁଚି ଅବସ୍ଥାରେ ଯେ କରିବ ବର୍ଜନ ॥
ଅଗାଧ ଗମ୍ଭୀର ଜଳେ ବଳେ ନ ବୁଡ଼ିବ ।
ଅକାରଣେ ବଳବନ୍ତ ପଣେ ନ ଧାଇଁବ ॥
ବାମହସ୍ତେ ଜଳପାନ କେବେହେଁ ନ କରିବ ।
ପାତ୍ର କାମୁଡ଼ି କଦାପି ଜଳ ନ ପିଇବ ॥
ବାମହସ୍ତରେ ଗୋରୁକୁ ନ ଦେବ ଯେ ଗ୍ରାସ ।
ଦନ୍ତେ ଛିଣ୍ଡାଇ ନ ଦେବ ଗୋରୁ ମୁଖେ ଘାସ
ଆଚମନ କରି ନଦୀ ପାରି ହୋଇଯିବ ।
ତାହା ନ କରି ସେ ନଦୀ ପାରି ନ ହୋଇବ
ଆପଣାର ରେତ ତ୍ୟାଗ ନ କରିବି ଜଳେ ।
ଅମେଧ୍ୟ ଦ୍ରବ୍ୟେ ଚର୍ଚ୍ଚିତ ପ୍ରତିମାକୁ ବଳେ ॥
ପୂଜା ନ କରିବ ରକ୍ତ ବସ୍ତ୍ରହିଁ ନ ଦେବ ।
ଉଚ୍ଚ ନୀଚ ଖାଲ ଢିପ ଆଦି ନ ଡେଇଁବ ॥
ମଇଥୁନ ନ କରିବ ଜଳର ଭିତରେ ।
ଚଇତ୍ୟ ବୃକ୍ଷ ଛେଦନ ନ କରିବ କରେ ॥
ଜଳ ମଧ୍ୟେ ନ ଛିଙ୍କିବ ନାକେ କାଠିଦେଇ ।
ଛେପ ଖଙ୍କାର ଏ ଆଦି ଜଳେ ନ ପକାଇ ॥
ହାଡ଼ ପାଉଁଶ ଖପର କପାଳ ଅଙ୍ଗାର ।
କେଶ କଣ୍ଟା ତୁଷ ଆଦି ଦ୍ରବ୍ୟ ଯେ ଖଙ୍କାର ॥
ଏ ସବୁ ଦ୍ରବ୍ୟ ଉପରେ କେବେହେଁ ନ ବସିବ ।
ଅନଳକୁ ନ ଲଙ୍ଘିବ ତଳେ ନ ଥୋଇବ ॥
ପାଦତଳେ ନ ରଖିବ ଉଚ୍ଚେ ନ ରଖିବ ।
ଫୁଙ୍କି ନ ଜାଳିବ ଫୁଙ୍କି ଲହରି ନ ଦେବ ॥

ଅକାରଣେ ଏକଶାଖା ବୃକ୍ଷେ ନ ଚଢ଼ିବ ।
ଅଶୁଚି ହୋଇଣ ଏଣେ ତେଣେ ନ ଚାହିଁବ ॥
ଅଗ୍ନି କି ଅଗ୍ନିରେ ଜଟନ ନ କରିବ ଶାନ୍ତ ।
ଗୃହଦାହ ଆଦିରେ ଏ ଦୋଷ ନ ଧରନ୍ତି ॥
ସ୍ୱଜନ ମୃତ୍ୟୁ ସମ୍ବାଦ ଆପେ ଆପେ ଯାଇ ।
କାହାରିକି ନ କହିବ ଶୁଣାଇବ ନାହିଁ ॥
ନ ବିକିବ ଦ୍ରବ୍ୟେ ଆନ ଦ୍ରବ୍ୟାଦି ମିଶାଇ ।
କୁଟ କପଟ କରିଣ ଲବା ବଦଳାଇ ॥
ଶୁଚିମନ୍ତ ନ ହୋଇଣ ଅଗ୍ନି ନ ଛୁଇଁବ ।
ତୀର୍ଥରେ କିବା ଜଳରେ ସୀମା ନ ବାରିବ ॥
ନିୟମ ଯା କରିଥିବ ନ ଭାଙ୍ଗିବ ତାହା ।
ବ୍ୟାଘ୍ର ଗୋରୁ ଗାଇ ମୃଗ ଶୂକର ବରାହା ॥
ଏ ଆଦି ଯେତେକ ପଶୁ ପକ୍ଷୀ ଯେ ଆବର ।
ଏହାଙ୍କୁ ଯେ ଲଢ଼ାଇବ ନାହିଁ ପରସ୍ପର ॥
ଜଳରେ କିବା ଶରୀରରେ ଅନଳ ପବନେ ।
ପୀଡ଼ା ନ ଦେବେ କାହାକୁ ବୁଦ୍ଧିମନ୍ତ ଜନେ ।
ସତ କର୍ମମାନ କରି କି ଅବା କରାଇ ।
ପଛେ ଗୁରୁଜନଙ୍କୁ ଯେ ଠକାଇବ ନାହିଁ ॥
ସଞ୍ଜେ ସକାଳେ ବାହାର କବାଟ ଫିଟାଇ ।
ଭଲ କରି ଦେଖୁଥିବ ଗୃହ ରକ୍ଷା ପାଇଁ ॥
ଗନ୍ଧ ମାଲ୍ୟ ବ୍ୟବହାର କରିଣ ବାହାରେ ।
କଳି ଗୋଳ ନ କରିବ କାହାରି ସଙ୍ଗରେ ॥
ଆବର ଯେ ମାଡ଼ଗୋଳ ନ କରିବ ପୁଣି ।
ଘରପାର ସଙ୍ଗତରେ ଖାଇ ଅନ୍ନ ପାଣି ॥
ବାହାରେ ଥିବ କି ଥିବ ଗୃହର ଭିତରେ ।
ଠିଆ ଠିଆ ନ ଖାଇବେ ବିପ୍ରେ ତରତରେ ॥
ଉଚ୍ଛିଷ୍ଟ ହସ୍ତେ ନ ଛୁଇଁ ଆପଣା ଶରୀର ।
ଅଗ୍ନିଦେବତାର ଦେହେ ନ ଦେବ ସେ କର ।
ବହୁତକାଳ ଜଳରେ ପଶି ନ ରହିବ ।
ରହିଲେ ଦେହରୁ ଜାଣ ଶିଶ୍ର ଛୁଟିଯିବ ॥
କୂଳ ବାନ୍ଧିଣ ଆବର ହସ୍ତକି ଛଳଇ ।
ଲଭିଥିବା ବୃକ୍ଷକୁ ଯେ ପୁଣି ନ ଜଳାଇ ॥
ମୁଖରେ ଫୁଙ୍କିବ ଶୁଖୁ ଅଗ୍ନି ଥାଇ ମୁଖେ ।
କଥା ନ କହିବ ଶତ୍ରୁଙ୍କ ସମ୍ମୁଖେ ॥
ଅଜାଣ ଯଜମାନଙ୍କୁ ଜଣାଇବ ନାହିଁ ।
ଗତାୟାତ ନ କରିବ ନିତ୍ୟ ଏକା ହୋଇ ॥
ଦଳବନ୍ଧ ହୋଇ ଆତଯାତ ନ କରିବ ।
ଦେବାଳୟେ ପ୍ରଦକ୍ଷିଣ ନ କରି ନ ଯିବ ॥
ବସନେ ବାନ୍ଧି ନୋହିବ ଦେବ ଆୟତନେ ।
ନିଦେ ନ ଶୋଇ ପଢ଼ିବ ଏକାକେ ନିର୍ଜନେ ॥
ଏକା ହୋଇଣ ନ ଯିବ ଅଧାର୍ମିକ ସଙ୍ଗେ ।
ବ୍ୟାଧିରେ ଦୂଷିତ ହୋଇଅଛି ଯେ ସର୍ବାଙ୍ଗେ
କି ଅବା ପତିତ ଜନ ସଙ୍ଗେ ସଙ୍ଗୀ ହୋଇ ।
ନ ଯିବ ଶୂଦ୍ର ସଙ୍ଗତେ ଟୋଟ ଯୋତା ନାହିଁ
ଏମନ୍ତ ହୋଇ କଦାପି ବାଟ ନ ଚାଲିବ ।
ଛତାଅଗ୍ନି ବିପ୍ର ବାମେ ରଖିଣ ନ ଯିବ ॥
ଯୋଗୀ ସିଦ୍ଧ ଯତି ବ୍ରତୀ ନିନ୍ଦା ନ କରିବ ।
ଗୋ ବିପ୍ର ଉପରେ ଯେହେ ଛାଇ ନ ପଡ଼ିବ
ପତିତ ବା ରୋଗିଙ୍କର ପାଖେ ନ ବସିବ ।
କେଶ ପାଉଁଶ ଅଙ୍ଗାର ପାଦେ ନ ମାଡ଼ିବ ॥
ସ୍ଥୁଧିଁଣୀ ସମ୍ମାର୍ଧିକା ସ୍ନାନ ଘଟ ଜଳ ।
ପାଳିଷ୍ଠା ଛୁରା ଚୂନୁଡ଼ା ପାଣି ଏ ସକଳ ॥
ବର୍ଜନ କରିବ ଦ୍ୱିଜ ଅଭକ୍ଷ ଭକ୍ଷଣ ।
ଅପେୟ ପାନ ଆବର କରିବ ବର୍ଜନ ।
ଏହି ସଦାଚାର ସବୁ ଧର୍ମ ମଧ୍ୟେ ସାର ।
ଗୋପୀନାଥ କହେ ଯହିଁ ଅଛଇ ଆଚାର ॥
ତହିଁ ଧର୍ମ ତହିଁ ଲକ୍ଷ୍ମୀ ତହିଁ ଜନାର୍ଦ୍ଦନ ।
ଯେଉଁ ଜନାର୍ଦ୍ଦନ ସେହି ବୈକୁଣ୍ଠ ଭୁବନ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ସଦାଚାର ବର୍ଣ୍ଣନଂ ନାମ ସପ୍ତବିଂଶୋଽଧ୍ୟାୟଃ ।



## ଅଷ୍ଟାବିଂଶ ଅଧ୍ୟାୟ ।

### ଭକ୍ଷ୍ୟାଭକ୍ଷ ନିର୍ଣ୍ଣୟ ।

କହନ୍ତି ଯେ ବ୍ୟାସଦେବ ଶୁଣନ୍ତୁ ମୁନିଏ ।
ଶୂଦ୍ରର ଯେ ଅନ୍ନ ତାହା ବିପ୍ରେ ଯେ ନ ଖାଏ
ମୋହରେ କିବା କ୍ଷୁଧାରେ ଅନାପଦ କାଳେ
ଶୂଦ୍ରର ଅନ୍ନ ଭୋଜନ କଲେ ବିପ୍ର ବଳେ ॥
ସେ ବିପ୍ର ଶୂଦ୍ର ଯୋନିରେ ଜନମ ଲଭଇ ।
ଛମାସ ଯେ ବିପ୍ର ଶୂଦ୍ର ଅନ୍ନକୁ ଭକ୍ଷଇ ॥

ସେ ନିନ୍ଦିତ ଶୂଦ୍ରଜାଣ ବଞ୍ଚିଥିବା ଯାଏ ।
ମଲେ ପୁଣି ମହୀରେ ସେ ଶ୍ୱାନ ଜନ୍ମ ପାଏ ॥
ଜାଣିଥା ହେ ଦ୍ୱିଜବର ମରଣ ସମୟେ ।
ବିପ୍ର କ୍ଷତ୍ରୀ ବୈଶ୍ୟ ଶୂଦ୍ର ଅନ୍ନ ପେଟେ ଥାଏ ॥
ଯାହାର ଅନ୍ନ ଥାଇ ଯେ ସେହି ଯୋନି ପାଇ
ନଟ ନର୍ତ୍ତକର ଅନ୍ନ ଅଭକ୍ଷ ଅଟଇ ॥
ଚଣ୍ଡାଳର ଅନ୍ନ ପୁଣି ଚମାରର ଅନ୍ନ ।
ଗଣାନ୍ନ ଗଣିକାଅନ୍ନ କ୍ଲୀବଜନ ଅନ୍ନ ॥
ଏ ସବୁ ଅନ୍ନ ଅଭକ୍ଷ ଜାଣ ଦ୍ୱିଜବରେ ।
ଠକ ଜୀବିକା ଯାହାର ପୁଣି ଏ ସଂସାରେ ॥
ରଜକର ଅନ୍ନ ଚୋରର ତସ୍କର ଅନ୍ନ ।
ପତାକା ବହନକାରୀ ଅଟନ୍ତି ଯେ ଜନ ॥
ଗୀତ ବାଦ୍ୟ ବ୍ୟବସାୟୀ ଜାଣ ଯେତେ ନର ।
ଲୋହକାର ଅନ୍ନ ମୃତ ଅନ୍ନ ଯେ ଆବର ॥
ଅଭକ୍ଷ ଏହାଙ୍କ ଅନ୍ନ ଜାଣ ମୁନିଗଣେ ।
କୁମ୍ଭାର ଅନ୍ନ ଆବର ଚକ୍ରକାର ଜନେ ॥
ଶୂଦ୍ର ଯାହାର ଜୀବିକା ଅନ୍ନ ତାହାଙ୍କର ।
ଦୁଇଥର ବିବାହିତା ନାରୀ ଯେ ଆବର ॥
ଏହାଙ୍କର ଅନ୍ନ ଜାଣ ଅଭକ୍ଷ୍ୟ ଅଟଇ ।
ଛତ୍ର ଧରଣ ଯେ ଜନ ଜୀବନ ପୋଷଇ ॥
ପତିତ ଜନ ଆବର ଶାପଗ୍ରସ୍ତ ଜନ ।
ଅଭକ୍ଷ୍ୟ ଅଟଇ ଦ୍ୱିଜେ ଏହାଙ୍କର ଅନ୍ନ ॥
ସୁନାରୀ ଯେ ଅଭିନେତା ଶଇଳୂଷ ବ୍ୟାଧ ।
ପୀଡ଼ିତ ଯେ ଚିକିତ୍ସକ ବ୍ୟଭିଚାର ବନ୍ଧ୍ୟ ॥
ଅଭକ୍ଷ ଏହାଙ୍କ ଅନ୍ନ ଜାଣ ମୁନିଜନ ।
ବ୍ୟଭିଚାରିଣୀ ଯେ ନାରୀ ଅଭକ୍ଷ ତା ଅନ୍ନ ॥
ଦ୍ୱାରପାଳ ସୁନାରୀର ନାସ୍ତିକ ଯେ ନର ।
ଦେବ ଦେବୀଙ୍କି ଯେ ନିନ୍ଦା କରନ୍ତି ଆବର ॥
ମଦ ବିକ୍ରୟକାରୀ ଯେ ଏମାନଙ୍କ ଅନ୍ନ ।
ବିଶେଷରେ ଯେ କରନ୍ତି କୁକୁର ଭୋଜନ ॥
ସ୍ତ୍ରୀଙ୍କି ଯେ ଉପପତି ଆଣିଣ ଯୋଗାଇ ।
ଆପଣାର ଭାର୍ଯ୍ୟାକୁ ଜାର କୋଳେ ଦେଇ ॥
ସମାଜ ଚ୍ୟୁତ ଯେ ଜନ ଅଟଇ ଆବର ।
ଏହାଙ୍କ ଅନ୍ନ ଅଭକ୍ଷ ଜାଣ ଦ୍ୱିଜବର ॥
ଉଚ୍ଛିଷ୍ଟ ଭୋଜନକାରୀ ଯେବା କଦାଚାରୀ ।
ପାପିର ଅନ୍ନ ଅଭକ୍ଷ ଜନ ଅନ୍ନ ସରି ॥

ବହୁତ ଜନର ପୁଣି ଅଇଁଠା ଯେ ଘୃତ ।
ଶସ୍ତ୍ରଜୀବୀର ଯେ ଅନ୍ନ ଖାତୁ ଯେ ରୁଦିତ ॥
ଅପବାଦଗ୍ରସ୍ତ ଜନ ଏମାନଙ୍କ ଅନ୍ନ ।
ଅଭକ୍ଷ ଅନ୍ନ ଅଟଇ ଜାଣ ମୁନିଜନ ॥
ଛିଙ୍କ ପଡ଼ିଥିବା ଅନ୍ନ ଅଭକ୍ଷ ଅଟଇ ।
ବିପ୍ରଦ୍ୱେଷକାରୀ ଅନ୍ନ ଖାଇ ନ ଯୋଗାଇ ॥
ପାପ କାର୍ଯ୍ୟରେ ଅଧିକ ଇଚ୍ଛା ବଳେ ଯାର
ପିଣ୍ଡ ଅନ୍ନ ଯେ ମୃତକ ଅନ୍ନହିଁ ଆବର ॥
ବୃଥା ପାକ ଅନ୍ନ ପୁଣି ଆଦ୍ୟ ଶ୍ରାଦ୍ଧ ଅନ୍ନ ।
ଆତୁର ଜନର ଅନ୍ନ ଅଭକ୍ଷ ଯେ ଜାଣ ॥
ବନ୍ଧ୍ୟା ନାରୀର ଯେ ଅନ୍ନ ଅଭକ୍ଷ ଅଟଇ ।
କୃତଘ୍ନ ଜନର ଅନ୍ନ ଖାଇ ନ ଯୋଗାଇ ॥
ଅଭକ୍ଷ ଅଟଇ ପୁଣି ଶିଳ୍ପିଙ୍କର ଅନ୍ନ ।
ଶାସ୍ତ୍ରବିକ ଯେ ପୋଷନ୍ତି ଆପଣା ଜୀବନ ॥
ଏହାଙ୍କ ଅନ୍ନ ଅଭକ୍ଷ ଜାଣ ଏ ସଂସାରେ ।
ଘଣ୍ଟି ବଜାଇ ଉଦର ପୋଷନ୍ତି ଯେ ନରେ ॥
ତାଙ୍କ ଅନ୍ନ ଶୁଣ୍ଡି ଅନ୍ନ ଅଭକ୍ଷ ଅଟଇ ।
ବଇଦ୍ୟର ଅନ୍ନ ପୁଣି ଖାଇ ନ ଯୋଗାଇ ॥
ଅଭକ୍ଷ ଯେ ଧ୍ୱଜବନ୍ଧ ରୋଗିଙ୍କର ଅନ୍ନ ।
ବଡ଼ ଆଉଁ ବଡ଼ ହୋଇଥାଏ ଯେଉଁ ସାନ ॥
ତାହାଙ୍କ ଅନ୍ନ ଅଭକ୍ଷ୍ୟ ଅଟଇ ଯେ ପୁଣି ।
ଅଭକ୍ଷ ମଧ୍ୟେ ସୁନାର ଅନ୍ନକୁ ଯେ ଗଣି ॥
ଦଧୀଷ୍ଟୁ ପତିର ଅନ୍ନ ଅଭକ୍ଷ ଯେ ଜାଣ ।
ନିନ୍ଦିତ ସର୍ବେଷ ଅନ୍ନ ସର୍ବସ୍ୱମ୍ଭ ଅନ୍ନ ॥
ଅସଂସ୍କାର ଅନ୍ନ ପୁଣି ଗୁରୁଜନଙ୍କର ।
ଦୂଷିତ ଅନ୍ନ ଯେତେକ ଅଭକ୍ଷ ଆବର ॥
ଶୂଦ୍ରଙ୍କ ମଧ୍ୟେ ଏମାନେ ସତ ଶୂଦ୍ର ଜାଣ ।
ଆର୍ଦ୍ଧିକ ଯେ କୁଳମିତ୍ର ଗୋପ ଦାସ ଜନ ॥
ନାପିତ ସ୍ୱରଣ କୁମ୍ଭକାର କୃଷିକାରୀ ।
ଏହାଙ୍କର ଅନ୍ନ ଭୋଜ୍ୟ ଅନ୍ନସଙ୍ଗେ ସରି ॥
ଘୃତ ପକ୍ୱ ତୈଳ ପକ୍ୱ ଗୋ ଦୁଗ୍ଧ ଆବର ।
ଛତୁ ପିଣ୍ୟାକ ଏ ଦ୍ରବ୍ୟ ଭୋଜ୍ୟ ଏହାଙ୍କର ॥
ଏହାଙ୍କ ତଇଲେ କିଛି ଦୋଷ ନ ଲାଗଇ ।
ଦ୍ୱିଜର ଅଭକ୍ଷ ଫଳ ଶୁଣ ଏବେ କହି ॥
କଲମ୍ବୀ ଶାଗ ଆବର ଧଳା ବାଇଗଣ ।
ତାଳ ଖଜୁରାଦି ରସ ପିଆଜ ରସୁଣ ॥

ବର୍ତ୍ତୁଳ ପାଣି ଲକ୍ଷାର ବର୍ତ୍ତୁଳ ଯେ ଲଡ଼ୁ ।
ଝୋଳ ଦେଉଥିବା ଦ୍ରବ୍ୟ ମାନ ଆଣି ପେଜୁ ॥
ଗ୍ରାମ୍ୟ ବରାହ ଘୋଡ଼ୁଆଁ ଗାଈର ଯେ ଦୁଧ ।
କରକା ବକୁଳାକାଳ୍ ବମୁଖ ଓପ ଦ୍ରବ୍ୟ ॥
ଏମାନ ଖାଇଲେ ଦ୍ୱିଜ ପତିତ ହୁଅଇ ।
କୁଥାରେ ଟୁଖେଚଣ୍ଡୀ ଘୃତ ବ୍ରାହ୍ମଣ ନ ଖାଇ ॥
କ୍ଷିରି ପିଠା ନ ଖାଇବ ଦେବଙ୍କୁ ନ ଦେଇ ।
ମୋହନ ଭୋଗ ଦେବତା ଆଗରେ ନ ଥୋଇ ।
ବଳ ପଶୁ ମାଂସ ବିନା ଅନ୍ୟ ନ ଖାଇବ ।
ଘୃତ ପକ୍ୱ ଯବମଣ୍ଡ କଇଥ କଦମ୍ବ ॥
ପ୍ଲକ୍ଷ ବଟ ଆଦି ଫଳ ଦେବତାଙ୍କୁ ଦେଇ ।
ପଛେ ଭୋଜନ କରିବ ଦ୍ୱିଜ ତାହା ନେଇ ॥
ରାତ୍ରରେ ଯେ ଛତୁ ନ ଖାଇବ ଘୋଳ ଦହି ।
ଦେବଧାନ୍ୟ ତିଳ ମିଶା ଦ୍ରବ୍ୟ ତିଳ ଦହି ॥
ମାଛ ନ ଖାଇବ ଦ୍ୱିଜ ଦେବା ଭୋଗ ବିନା ।
ଦୁଗ୍ଧ ସଙ୍ଗତରେ ତିକ୍ତ ଗ୍ରହେ ଅଛି ମନା ॥
ସକ୍ଷାର ଅନ୍ନ ଆବର କୃମି ଦୁଷ୍ଟ ଅନ୍ନ ।
ନ କରିବ ଯେ କଦର୍ଯ୍ୟ ଅନ୍ନକୁ ଭୋଜନ ॥
ଅସତ ସଂସର୍ଗ ଅନ୍ନ ଭୋଜନ ନିଷେଧ ।
କୃମି କୀଟ ବେଢ଼ିଥିବା ଅନ୍ନ ଯେ ଅସିଦ୍ଧ ॥
ଦେଖିଲ ମାତ୍ରେ ଯେ ଦ୍ରବ୍ୟ ଘୃଣା ଉପୁଜିବ ।
ସେ ଦ୍ରବ୍ୟମାନଙ୍କୁ ଦ୍ୱିଜ କେବେ ନ ଭୁଞ୍ଜିବ ॥
କୁକୁର ଶୁଙ୍ଘିଲା ଅନ୍ନ ଖାଇ ନ ଯୋଗାଇ ।
ସିଦ୍ଧ ଓହ୍ଲାଇ ପୁଣି ଯେବେ ତାହା ସିଦ୍ଧ ହୋଇ
ତାକୁ ନ ଖାଇବ ଦ୍ୱିଜ ଜାଣ ମୁନିଗଣ ।
ଚଣ୍ଡାଳ ଦୃଷ୍ଟି ପଡ଼ିଲେ ଅଭକ୍ଷ ଯେ ଅନ୍ନ ॥
ରଜୋବତୀ ନାରୀ ଦୃଷ୍ଟି ପଡ଼ଇ ଯେ ଅନ୍ନେ ।
ଦ୍ୱିଜ ତାହା ନ ଖାଇବ ଜାଣ ମୁନି ଜନେ ॥
ପତିତ ଜନର ଦୃଷ୍ଟି ଯେବେ କି ପଡ଼ଇ ।
ଦ୍ୱିଜର ସେ ଅନ୍ନ ଜାଣ ଅଭକ୍ଷ ଅଟଇ ॥
ଗୋରୁ ଶୁଂଘିଥିବା ଅନ୍ନ ଦ୍ୱିଜ ନ ଖାଇବ ।
କଦର୍ଯ୍ୟ ସ୍ଥାନେ କଦର୍ଯ୍ୟ ଭାବେ ଯାହା ଥିବ ॥
ବାସି ଅଇଁଛଡ଼ା ଅନ୍ନ କୁଆମରା ଅନ୍ନ ।
କୁକୁଡ଼ା ଛୁଆଁ ଆବର କୃମିର ଦଂଶନ ॥
ମନୁଷ୍ୟ ଶୁଂଘିଲେ ସେହି ଅନ୍ନ ନ ଖାଇବ ।
କୁଷ୍ଠରୋଗୀ ଛୁଇଁଲେ ସେ ଅନ୍ନକୁ ତେଜିବ ॥
ନ ଖାଇବ ରଜସ୍ୱଳା ପରଷିବା ଅନ୍ନ ।
ନ କରିବ ରୋଗିଣୀର ଦେଖା ଭୋଜନ ॥
ମଳଲୁଗା ପରଲୁଗା ଯେ ନାରୀ ପିନ୍ଧଇ ।
ତାର ପରଷିବା ଅନ୍ନ ଅଭକ୍ଷ ଅଟଇ ॥
ବତ୍ସହୀନା ରମଣୀର ପ୍ରସବିବା କ୍ଷୀର ।
ପ୍ରସବ ଅନ୍ତେ ନ ଗଲେ ଦଶ ଦିନ ତାର ॥
ଆବର ଗାଈର କ୍ଷୀର ମେଷ ଛାଗ କ୍ଷୀର ।
ଏ ସବୁ ଅପେୟ ଜାଣ ଆହେ ଦ୍ୱିଜବର ॥
କୁରର ଚକୋର ହଂସ ଦାତ୍ୟୁହ ଚଟକ ।
କୋକିଳ ବାୟସ ଗୃଧ୍ର ଜାଳପାଦ ଶୁକ ॥
ବକ ଚକ୍ରବାକ ପେଚା ଭାସ ପାରାବତ ।
ଗ୍ରାମ କୁକ୍କୁଟ ମାର୍ଜାର ଟିଟ୍ଟିଭ କପୋତ ॥
ଗର୍ଦ୍ଦଭ ଶୃଗାଳ ବ୍ୟାଘ୍ର ମର୍କଟ କୁକ୍କୁର ।
ବନଚର ଜଳଚର ଶୂକର ଆବର ॥
ସ୍ଥଳଚର ପଞ୍ଚନଖୀ ପଶୁପକ୍ଷୀ ଯେତେ ।
ଦ୍ୱିଜର ଆହାର ଯୋଗ୍ୟ ନୋହେ କଦାଚିତେ
ଗୋଧି କୂର୍ମ ଶଶା ଖଡ୍ଗ ମତ୍ସ୍ୟ ଯେ ଶଲ୍ଲକ ।
ପଞ୍ଚନଖୀ ମଧ୍ୟେ ଏହି ଜୀବ ଜାଣ ଭକ୍ଷ ॥
ସଶଲ୍କ ଆବର ମତ୍ସ୍ୟ ରୁରୁ ମୃଗ ମାଂସ ।
ଦେବତା ବ୍ରାହ୍ମଣେ ଦେଇ କରିପାର ଗ୍ରାସ ॥
କପିଞ୍ଜଳ ବାର୍ଦ୍ଧ୍ରୀ ରସ ମାଛ ଯେ ତିତିର ।
କପୋତ ବକ ମୟୂର ଭକ୍ଷ ଯେ ଆବର ॥
ପ୍ରଜାପତି କହିଛନ୍ତି ଏହା ଦ୍ୱିଜଗଣେ ।
ଦଣ୍ଡିକର ସିଂହ୍ମା ରୋହ୍ମା ପାଠିନ ଏ ମୀନେ ॥
ଆହାର ଯୋଗ୍ୟ ଅଟନ୍ତି ଜାଣ ଦ୍ୱିଜବରେ ।
ଦ୍ୱିଜେ ଏ ମାଂସ ପ୍ରୋକ୍ଷଣ କରି ମନ୍ତ୍ରସାରେ ॥
ଖାଇ ପାରନ୍ତି ଯେ ପ୍ରାଣ ରକ୍ଷାର ନିମନ୍ତେ ।
ଦେବ ଦ୍ୱିଜ ଖାଇସାର ତୃପ୍ତ ହୋଇଲ ଅନ୍ତେ ॥
ଖାଇଲ ନରର କିଛି ପାପ ନ ହୁଅଇ ।
ଔଷଧ ଅର୍ଥେ ଖାଇଲେ ଦୋଷ ନ ଲଗଇ ॥
ଯଜ୍ଞର ମାଂସ ଖାଇଲେ ନାହିଁ ତହିଁ ଦୋଷ ।
ଲୋଭେ ପଡ଼ି ନ ଖାଇବ କଦାପି ଏ ମାଂସ ॥
ଦେବକାର୍ଯ୍ୟେ ଶ୍ରାଦ୍ଧରେ ଯେ ହୋଇ ନିମନ୍ତ୍ରିତ
ମାଂସ ଆହାର ନକରେ ସେ ଜନ ପତିତ ॥
ମରଣାନ୍ତେ ନରକରେ ପଡ଼ଇ ସେ ଯାଇଁ ।
ପଶୁଦେହେ ଲୋମ ଯେତେ ତେତେକାଳ ଥାଇ

ଅଦେୟ ଅପେୟ ମଦ୍ୟ ଅସ୍ପୃଶ୍ୟ ଜଗତେ ।
ଏଣୁ ମଦ୍ୟକୁ ବୈଷ୍ଣବେ ଦ୍ୱିଜାତି ସମସ୍ତେ ॥
ଖାଇଲେ ସେ ମଳମୂତ୍ର କହିବା ପର୍ଯ୍ୟନ୍ତେ ।
ବାହାର କରିବା ଯାଏ ଅସ୍ପୃଶ୍ୟ ଜଗତେ ॥
କଳ୍ପକାର୍ଯ୍ୟେ ଅଧିକାରୀ ହୋଇ ନ ପାରଇ ।
ଏଣୁ ଏ ସବୁ ବୈଷ୍ଣବ ଯତ୍ନପର ହୋଇ ॥
ଅଭକ୍ଷ ଅପେୟ ଜନେ କର ପରହାର ।
ନୋହିଲେ ରୌରବ ନର୍କେ ବସନ୍ତି ଭୁମ୍ବର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ଭକ୍ଷାଭକ୍ଷ ନିର୍ଣ୍ଣୟୋ ନାମ
ଅଷ୍ଟାବିଂଶୋଽଧ୍ୟାୟଃ ।



## ଊନତ୍ରିଂଶ ଅଧ୍ୟାୟ ।

### ଗୃହୀଧର୍ମ ନିର୍ଣ୍ଣୟ ।

କହିଲେ ଯେ ବ୍ୟାସଦେବ ଶୁଣ ମୁନିଜନେ
ପୂର୍ବେ ବ୍ରହ୍ମା କହିଥିଲେ ଋଷି ସନ୍ନିଧାନେ ॥
ଯେଉଁ ଦାନ ଧର୍ମକଥା କହୁଅଛି ଶୁଣ ।
ଯୋଗ୍ୟପାତ୍ରେ ଦିଆଯାଏ ଶ୍ରଦ୍ଧାରେ ଯେ ଅନ୍ନ
ପ୍ରଣବ ମନ୍ତ୍ର ସହିତ ଜଳକରେ ଦେଇ ।
ଭୁକତି ମୁକତି ଫଳ ସେ ଦାନ ଦିଅଇ ॥
ବଶିଷ୍ଟ ଜନକୁ ଦିଏ ଶ୍ରଦ୍ଧାରେ ଯେ ଦାନ ।
ସେ ଦାନ ପ୍ରକୃତ ଦାନ ଋଷିଗଣ ଜାଣ ॥
ଯେ ଦାନରେ ସ୍ୱାର୍ଥ ଥାଇ ସେ ସଞ୍ଚୟ ଧନ ।
ନିତ୍ୟ ନୈମିତ୍ତିକ କାମ୍ୟ ତ୍ରିବିଧ ଏ ଦାନ ॥
ଚତୁର୍ଥ ଦାନ ବିମଳ ଦାନ ମଧ୍ୟେ ସାର ।
କିଛି କାମନା ନକରି ଶ୍ରଦ୍ଧାବନ୍ତ ନର ॥
ଶ୍ରଦ୍ଧାବନ୍ତ ହୋଇ ଯାହା କିଛି କରେ ଦାନ ।
ତାହା ନାମ ନିତ୍ୟ ଦାନ ଋଷିଗଣ ଜାଣ ॥
ଯେ ଦାନ କରନ୍ତି ପାପ ଶାନ୍ତିର ନିମନ୍ତେ ।
ଏହାକୁ ଯେ ନୈମିତ୍ତିକ ବୋଲନ୍ତି ଜଗତେ ॥
ଏ ଦାନଗୋଟି ଉତ୍ତମ ନୋହେ ଋଷିଗଣ ।
ପୁତ୍ରଜୟ ଅଇଶ୍ୱର୍ଯ୍ୟ ସୁଖପାଇଁ ଦାନ ॥
ଯାହା ଦିଅନ୍ତି ତା ନାମ ଅଟଇ କାମ୍ୟଦାନ ।
ମୁକତି ପଥକୁ ସେହି କରାଏ ଦର୍ଶନ ॥
ଈଶ୍ୱର ପ୍ରୀତି ନିମନ୍ତେ ଧର୍ମଯୁକ୍ତ ଚିତ୍ତେ ।
ତାହାକୁ ବିମଳ ଦାନ ବୋଲନ୍ତି ଜଗତେ ॥
ଯୋଗ୍ୟପାତ୍ରେ ଦାନ ଦେବ ଶକ୍ତି ଅନୁସାରେ ।
ଯେ ଲୋକେ ସବୁ ଆପଦୁ ରକ୍ଷା କରିପାରେ ॥
ସେହି ଜାଣ ଯୋଗ୍ୟପାତ୍ର ତାକୁ ଦାନ ଦେବ ।
ଉତ୍ତମରୂପେ କୁଟୁମ୍ବମାନଙ୍କୁ ପୋଷିବ ॥
ତହିଁରୁବଳିବ ଯାହା ତାହା ଦେବ ଦାନ ।
ନିଷ୍ଫଳ ହୋଇବ ଜାଣ ଏଥୁକଲେ ଆନ ॥
ବଇଦିକ କୁଳବନ୍ତ ବିଦ୍ୟାବନ୍ତ ଜନେ ।
ତପୀ ବ୍ରହ୍ମଚାରୀ ଦୀନ ଦରିଦ୍ରଙ୍କୁ ଦାନେ ॥
ଶରଧା ଭକତି କରି ବିନୟେ ତୋଷିବ ।
ଅଗ୍ନିହୋତ୍ର ଦ୍ୱିଜ ଯେହୁ ମହାଦାନ ଦେବ ॥
ସେ ଜନ ପରମ ପଦ ପାଇବ ନିଶ୍ଚୟ ।
ଯେ ସ୍ଥାନରେ ନାହିଁ ରୋଗ ଶୋକ ଆଦି ଭୟ
ଭକତିରେ ବଇଦିକ ବିପ୍ରକୁ ଅଣାଇ ।
ଆଗ୍ନ କିଆରୀ ଗହମ କିଆରୀ ଦିଅଇ ॥
ତାହାର ଜନମ ଆଉ ନାହିଁ ଏ ସଂସାରେ ।
ଦରିଦ୍ର ବିପ୍ରକୁ ଡାକି ଆଣି ଯେଉଁ ନରେ ॥
ଗୋଚର୍ମ ଭୂମି କରନ୍ତି ତାଙ୍କ ହସ୍ତେ ଦାନ ।
ସର୍ବ ପାପରୁ ସେ ନିଶ୍ଚେ ହୁଅନ୍ତି ମୋଚନ ॥
ସବୁ ଦାନଠାରୁ ଶ୍ରେଷ୍ଠ ଅଟେ ଭୂମିଦାନ ।
ଅନ୍ନଦାନ ଏକା ଅଟେ ଏହାର ସମାନ ॥
ଏହା ତହୁଁ ବିଦ୍ୟା ଦାନ ଅଧିକ ଅଟଇ ।
ଶାନ୍ତ ଶୁଚି ଧର୍ମବନ୍ତ ବିପ୍ରେ ବିଦ୍ୟାଦେଇ ॥
ବ୍ରହ୍ମଲୋକେ ଗତିକରିବ ପାଇ ମରଣାନ୍ତେ ।
ଶ୍ରଦ୍ଧାରେ ଯେ ସୁନା ଦିଏ ବ୍ରହ୍ମଚାରୀ ହସ୍ତେ ॥
ସବୁ ପାପ ଖଣ୍ଡି ବ୍ରହ୍ମ ଲୋକରେ ବସଇ ।
ଗୃହୀଙ୍କି ଯେ ଅନ୍ନଦେଲେ ମହାଫଳ ପାଇ ॥
ବୈଶାଖ ପୂର୍ଣ୍ଣିମା ଦିନ ଉପବାସ କରି ।
ଧର୍ମରାଜଙ୍କୁ ଆପଣା ମନରେ ସୁମରି ॥
ଶୁଚିମନ୍ତ ଶାନ୍ତ ଚିତ୍ତେ ଆନନ୍ଦ ମନରେ ।
ସାତ କିବା ପାଞ୍ଚଗୋଟି ବିପ୍ର ଆଣି ଘରେ ॥
କୃଷ୍ଣ ତିଳ ମଧୁ ଘେନି ପୂଜିଲେ ତା ଫଳେ
ପାପ ସକଳ ଖଣ୍ଡନ ହୁଅଇ ସେକାଳେ ॥

କୃଷ୍ଣ ମୃଗଛାଲ ପାଟ ତିଳ ଗଦାକରି ।
ଘୃତ ମଧୁ ଯେ ହିରଣ୍ୟ ରଖି ତାଂ ଉପରି ॥
ବ୍ରାହ୍ମଣ ହସ୍ତରେ ଯେବେ କରଇ ତା ଦାନ ।
ସକଳ ଦୁଷ୍କୃତ ତାର ହୁଅଇ ଖଣ୍ଡନ ॥
ଜଳ ପୂର୍ଣ୍ଣ କୁମ୍ଭ ପୁଣି ଘୃତାନ୍ନ ଯେ ଜନ ।
ବୈଶାଖ ପୂର୍ଣ୍ଣିମା ଦିନ ବିପ୍ରେ ଦିଏ ଦାନ ॥
ଧର୍ମରାଜଙ୍କୁ ଆପଣା ମନରେ ସୁମରି ।
ସକଳ ପାପ ଭସ୍ମରୁ ଯାଇ ସେହି ତରି ॥
ସାତ କିବା ପାଞ୍ଚଗୋଟି ବିପ୍ରଙ୍କୁ ଅଣାଇ ।
ସୁନା ତିଳ ଜଳପାତ୍ର ଯେବେ ଦାନଦେଇ ॥
ବ୍ରହ୍ମହତ୍ୟା ପାପ ଛାଡ଼ି ଯାଇ ରହେ ଦୂରେ ।
ମାଘମାସ କୃଷ୍ଣପକ୍ଷ ଦ୍ୱାଦଶୀ ତିଥିରେ ॥
କଳା ଲୁଗା ପିନ୍ଧି ଉପବାସେ କୃଷ୍ଣତିଳେ ।
ଘୃତ ସହିତ ଆହୁତି ଦେଇଣ ଅନଳେ ॥
ଭକତିରେ ବ୍ରାହ୍ମଣଙ୍କୁ କଲେ ତିଳଦାନ ।
ଆଜନମ ପାପରୁ ସେ ପାଏ ପରିତ୍ରାଣ ॥
ପୁଣି ସେହି ଅମାବାସ୍ୟା ଦିନ ମନେ ମନେ ।
ପ୍ରୀତ ହୁଅ ହୃଷୀକେଶ ବିଷ୍ଣୁ ସନାତନେ ॥
ଏମନ୍ତ କହି ତପସ୍ୱୀ ବିପ୍ରଙ୍କୁ ଡକାଇ ।
ଦାନଦେଲେ ତାର ଫଳେ ପାପ ଛାଡ଼ିଯାଇ ॥
ନ ରହେ ସପତ ଜନ୍ମ କୃତ ପାପ ତାର ।
କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ ଯେଉଁ ନର ॥
ବ୍ରାହ୍ମଣ ଭୋଜନେ ପୂଜା କରେ ପିନାକର ।
ଜନ ମନୋହର ସେହି ଆଉ ମୁନିବର ॥
କୃଷ୍ଣ ଅଷ୍ଟମୀ ଦିବସେ ସ୍ନାନକରି ଜନ ।
ଧାର୍ମିକ ବିପ୍ରଙ୍କୁ ଆଣି ଧୋଇ ତା ଚରଣ ॥
ଭକତିରେ ଗନ୍ଧପୁଷ୍ପ ଦେଇ ପୂଜା କରି ।
ଦାନ ଦିଏ ମହାଦେବ ମନରେ ସୁମରି ॥
ପରମଗତି ସେ ପାଇ ପାପ ଯାଏ କ୍ଷୟି ।
ଭକତ ଦ୍ୱିଜ ଯେତେକ ତାଙ୍କର ଏ ଶ୍ରେୟି ॥
କୃଷ୍ଣାଷ୍ଟମୀ ଚତୁର୍ଦ୍ଦଶୀ ଅମାବାସ୍ୟା ଦିନ ।
ବିଶେଷେ ପୂଜା କରିବେ ଦେବ ତ୍ରିଲୋଚନ ॥
ଏକାଦଶୀ ତିଥିରେ ଯେ ନିରାହାରେ ରହି ।
ଦ୍ୱାଦଶୀରେ ବିଷ୍ଣୁମୁଖେ ପୂଜେ ଦ୍ୱିଜଗ୍ରାହୀ ॥
ପରମପଦ ସେ ପାଇ ବୈକୁଣ୍ଠେ ଯାଇ ।
ଏଥିରେ ଜାଣିବ ତିଳେ ସନ୍ଦେହ ଯେ ନାହିଁ ॥

ଶୁକ୍ଳପକ୍ଷ ଦ୍ୱାଦଶୀ ଯେ ବିଳମ୍ବା ତିଥି ।
ଏ ତିଥିରେ ପୂଜିବ ଯେ ଦେବ ଶିବାପତି ॥
ଅଥବା ବିଷ୍ଣୁ ଉଦ୍ଦେଶେ ପୂଜିବ ଶଙ୍କର ।
ବିପ୍ରେ ଦାନ ଦେଲେ ପାଏ ବଇକୁଣ୍ଠ ପୁର ॥
ଅନନ୍ତଫଳ ତହିଁରେ କଳି ନ ହୁଅଇ ।
ଯେ ଦେବ ପୂଜା ମନାସି ବିପ୍ରଙ୍କୁ ପୂଜଇ ॥
ସେ ଦେବତା ତାର ପ୍ରତି ହୁଅନ୍ତି ପ୍ରସନ୍ନ ।
ଯେହୁ ସକଳ ଦେବତା ମୂରତି ବ୍ରାହ୍ମଣ ॥
ବିପ୍ର ନ ପାଇଲେ ଦେବ ପ୍ରତିମା ପୂଜିବେ ।
ପ୍ରତିମାଠାରୁ ଅଧିକ ଅଟନ୍ତି ଭୂଦେବେ ॥
ପ୍ରତିମା ବିପ୍ର ଦୁହିଙ୍କି ଯେ ଜନ ପୂଜଇ ।
ଫଳ ତାହାର ସବୁହିଁ ଅଧିକ ହୁଅଇ ॥
ବିଭୂତି କାମନାକାରୀ ପୂଜିବ ବାସବ ।
ବ୍ରହ୍ମତେଜ ଜ୍ଞାନ କାମୀ ବ୍ରହ୍ମାଙ୍କୁ ପୂଜିବ ॥
ଆରୋଗ୍ୟକାମୀ ପୂଜିବ ଆଦିତ୍ୟ ଦେବଙ୍କୁ ।
ଧନକାମୀ ଯେ ପୂଜିବ ଅଗ୍ନି ଦେବତାଙ୍କୁ ॥
କାର୍ଯ୍ୟ ସିଦ୍ଧିକାରୀ କରେ ବିନାୟକ ପୂଜା ।
ଭୋଗ କାମନାକାରୀ ଯେ କରେ ଚନ୍ଦ୍ରପୂଜା ॥
ମୋକ୍ଷ କାମୀଜନ ନିତ୍ୟ ହରିଙ୍କି ପୂଜିବ ।
ଯୋଗ ମୋକ୍ଷ ବ୍ରହ୍ମଜ୍ଞାନ ଯେ ଜନ ଇଚ୍ଛିବ ॥
ସୁରେଶ୍ୱର ବିରୂପାକ୍ଷ ପୂଜିବ ସେ ନିତ୍ୟ ।
ଜ୍ଞାନ ଭୋଗ ବାଞ୍ଛା କରେ ଯେ ଜନ ସତତ ॥
ଭୂତେଶ୍ୱର ମହେଶ ବା କେଶବ ପୂଜିବ ।
ତେବେ ସଂସାର ମଧ୍ୟରୁ ମୁକତି ପାଇବ ॥
ଅଳପ ଜଳ ଦାନରେ ଅଳପ ଫଳ ପାଇ ।
ବହୁତ ଦେଲେ ବହୁତ ଫଳ ଯେ ମିଳଇ ॥
ତଇଳଦାନେ ସନ୍ତତି ମିଳଇ ଜାଣିବ ।
ଦୀପଦାନ କଲେ ଚକ୍ଷୁ ଉତ୍ତମ ପାଇବ ॥
ଭୂମି ଦାନ କଲେ ଜନ ସବୁ ସୁଖ ପାଇ ।
ସୁନା ଦାନ କଲେ ଜାଣ ଆୟୁଷ ବଢ଼ଇ ॥
ଗୃହ ଦାନ କଲେ ଜନ ପାଏ ଭଲ ଘର ।
ରୁପା ଦାନ କଲେ ରୂପ ହୁଅଇ ସୁନ୍ଦର ॥
ବସନ ଦାନେ ଚନ୍ଦ୍ରମା ପ୍ରାୟ ବିରାଜଇ ।
ଅଶ୍ୱ ଦାନ କଲେ ଯାନ ଉତ୍ତମ ମିଳଇ ॥
ଅନ୍ନ ଦାନ କଲେ ବଢ଼େ ଜାଣ ଶୋଭା ଶିରୀ ।
ଗୋଦାନ କଲେ ଲୋକ ଯେ ସୂର୍ଯ୍ୟଲୋକେ ସରି

ସୁନ୍ଦରୀ ଭାର୍ଯ୍ୟା ମିଳେ କଲେ ଶଯ୍ୟା ଦାନ ।
ଐଶ୍ବର୍ଯ୍ୟ ମିଳଇ କଲେ ଅଭୟ ପ୍ରଦାନ ॥
ଶାଶ୍ୱତ ସୁଖ ମିଳଇ ଧାନ୍ୟ ଦାନ କଲେ ।
ଶାଶ୍ୱତ ମୁକତି ମିଳେ ବେଦ ଦାନ ଦେଲେ ॥
ବଇଦିକ ବିପ୍ରେ ଯେବେ ଦିଏ ବହୁ ଧାନ୍ୟ ।
ମରଣାନ୍ତେ ସ୍ୱର୍ଗଭୋଗ କରଇ ସେ ଜନ ॥
ଗୋଗ୍ରାସ ଦେଲେ ସକଳ ପାପୁ ଯାଏ ତରି ।
କାଷ୍ଠ ଦାନ ଦେଲ ଲୋକ ହୁଏ ଅଗ୍ନି ପରି ॥
ଭକତରେ ବିପ୍ରଙ୍କୁ ଯେ ଦିଏ ନାନା ଫଳ ।
ଆବର ପାନୀୟ ଦ୍ରବ୍ୟ ଶାକ କନ୍ଦମୂଳ ॥
ସର୍ବଦା ଆନନ୍ଦଯୁକ୍ତ ହୁଅଇ ସେ ଜନ ।
ଔଷଧ ଦାନେ ହେବ ବ୍ୟାଧିରୁ ମୋଚନ ॥
ମିଷ୍ଟାନ୍ନ ଦାନରେ ସୁଖୀ ଦୀର୍ଘାୟୁ ହୁଅଇ ।
ଅସିପତ୍ର ନରକରୁ ସେହି ରକ୍ଷା ପାଇ ॥
ଯେ ଯାହା ମାଗିବ ଯେହ୍ନେ ପ୍ରୟୋଜନ ଯାହା ।
ଅକ୍ଷୟ ସ୍ୱର୍ଗ ପାଇବ ଦାନ ଦେଲେ ତାହା ॥
ବିଷୁବ ଅୟନ ଦିନେ ସଂକ୍ରାନ୍ତି ଗ୍ରହଣେ ।
ଯାହା ଦେବ ତା ଅକ୍ଷୟ ଜାଣ ଋଷିଗଣେ ॥
ପ୍ରୟାଗ ଆଦି ଯେ ତୀର୍ଥ କ୍ଷେତ୍ରେ ପୁଣ୍ୟସ୍ଥାନେ
ନଦୀରେ ଆବର ବନେ ଅକ୍ଷୟ ଏ ଦାନେ ॥
ଦାନଠୁଁ ଅଧିକ ଧର୍ମ ଜଗତରେ ନାହିଁ ।
ଏଣୁ ଦାନ ବଇଦିକ ବିପ୍ର କରେ ଦେଇ ॥
ସ୍ୱର୍ଗଲାଭ ଅର୍ଥେ ପୁଣି ଧନଲାଭ ଅର୍ଥେ ।
ପାପର ଶାନ୍ତି ନିମନ୍ତେ ଦେଉଥିବ ନିତ୍ୟେ ॥
ଆବର ମୁକତି ପାଇଁ ଦେଉଥିବ ଦାନ ।
ଯେଉଁ ପାପୀ ମୋହେ ପଡ଼ି ହୋଇଣ ଅଜ୍ଞାନ ॥
ଗୋରୁ ବିପ୍ର ଅଗ୍ନି ଦେବ ନିବାରଇ ଦାନେ ।
ପକ୍ଷି ଯୋନିରେ ଜନମ ଲଭନ୍ତି ସେ ଜନେ ॥
ଧନ ଅରଜି ଯେ ଜନ ଦେବତା ବ୍ରାହ୍ମଣ ।
ପୂଜା ନ କରଇ ତାର ଧନ ଅକାରଣ ॥
ଏଣୁ ତାହାର ସର୍ବସ୍ୱ ହରିବ ନୃପତି ।
ବାହାର କରି ଦେବ ତା ରାଜ୍ୟୁ ସେ ଝଟତି ॥
ଦୁର୍ଭିକ୍ଷରେ ଅନ୍ନ କଷ୍ଟେ ମରୁଥିବା ଜନ ।
ବ୍ରାହ୍ମଣ ପ୍ରାଣ ନ ରଖେ ନ ଦେଇଣ ଅନ୍ନ ॥
ସେ ଅତି ନିନ୍ଦିତ ଜନ ଜାଣ ଏ ସଂସାରେ ।
ତାହାର ସ୍ପର୍ଶରୁ ଦାନ ନ ନେବେ ନରେ ॥

ତାହାର ପାଖରେ ଘର କରି ନ ରହିବେ ।
ରାଜା ଦାରୁଣୀ ତତାଇ ତା ଅଙ୍ଗରେ ଦେବେ ॥
ରାଜ୍ୟରୁ ତାକୁ ବାହାର କରିଦେବେ ପୁଣି ।
ଏକାଳେ ଦାନ ନ ଦେଇ ଯେବେ କେହି ପ୍ରାଣୀ
ସେ ଦ୍ରବ୍ୟକୁ ଆନବେଳେ କରେ ନେଇ ଦାନ
ପାପୀଠୁଁ ଅଧିକ ପାପୀ ସେ ଲୋକକୁ ଜାଣ ॥
ନରକ କୁଣ୍ଡରେ ପଡି ପଚୁଥାଏ ସେହି ।
ବଇଦିକ ବିଦ୍ୟାବନ୍ତ ଜିତେନ୍ଦ୍ରିୟ ଯେହି ॥
ଆବର ଯେ ସତ୍ୟବାଦୀ ଯତି ବ୍ରହ୍ମଚାରୀ ।
ତାହାଙ୍କୁ ଯେ ଦାନ ଦେବ କଷ୍ଟ ନ ବିଚାରି ॥
ଧର୍ମବନ୍ତ ବିଦ୍ୟାବନ୍ତ ଦ୍ୱିଜ କ୍ଷୁଧାତୁରେ ।
ଭୋଜନ ଦେବ ତାହାଙ୍କୁ ପୁଣି ସମାଦରେ ॥
ଦଶରାତ୍ର ଉପବାସେ ଥିଲେ ମୂର୍ଖଜନ ।
ତାହାଙ୍କୁ କଦାପି ଜାଣ ନ ଦେବ ଭୋଜନ ॥
ନିକଟେ ବୈଦିକ ଥିଲେ ତାହାକୁ ନ ଦେଇ ।
ଦୂରେ ଥିବା ବିପ୍ର ଆଣି ଯେ ଦାନ ଦିଅଇ ॥
ତାର ସପତ ପୁରୁଷ ସେ ପାପେ ପଡନ୍ତି ।
ସେ ଯେବେ ତାଠାରୁ ଗୁଣେ ଅଧିକ ହୁଅନ୍ତି ॥
ପୂଜାଦ୍ରବ୍ୟ ପ୍ରତିଗ୍ରହ ଯେ ଜନ କରଇ ।
ଆବର ପୂଜା ଦ୍ରବ୍ୟକୁ ଯେ ଦାନ ଦିଅଇ ॥
ସେହି ଦୁଇଜଣଙ୍କର ସ୍ୱର୍ଗପୁରେ ବାସ ।
ଏଥିରୁ ଅନ୍ୟଥା ହେଲେ ନରକେ ନିବାସ ॥
ନାସ୍ତିକ ଭଣ୍ଡ ପାଷଣ୍ଡ ବେଦ ଯେ ନ ଜାଣେ ।
ଅନ୍ନ ପାଣି ନ ଦେବ ଯେ ତାକୁ ଋଷିଗଣେ ॥
ମୂର୍ଖ ବିପ୍ର ସୁନା ଗୋରୁ ଅଶ୍ୱ ମହୀ ତଳ ।
ଦାନ ଦେଲେ ପୋଡ଼ିଯାଏ ଶୁଷ୍କକାଷ୍ଠ ତୁଲ୍ୟ ॥
ମହିତ ଲୋକ ଦେଖିଣ ମାଗିବ ଯେ ଦାନ ।
ଶୂଦ୍ରକୁ ଯେ ନ ମାଗିବ କଦାପି କାର୍ପଣ ॥
ଆପଣା ବୃତ୍ତି କାମନା ଦ୍ୱିଜ କରୁଥିବ ।
ଅଧିକ ଧନରେ ଲୋଭ କେବେ ନ କରିବ ॥
ଧନଲୋଭୀ ନ ବୋଲଇ କଦାପି ବ୍ରାହ୍ମଣ ।
ଏକଥା ନିଗୋଟି ଅଟଇ ପ୍ରତ୍ୟକ୍ଷ ପ୍ରମାଣ ॥
ମନକୁ ସନ୍ତୋଷ କଲେ ଯେ ଗତି ମିଳଇ ।
ବେଦଯଜ୍ଞ ଅନୁଷ୍ଠାନେ ସେ ଗତି ନ ପାଇ ॥
ଶୂଦ୍ରର ଦ୍ରବ୍ୟକୁ କେଭେ ନ କରିବ ଲୋଭ ।
ଜୀବିକା ନିମନ୍ତେ ଧନ ଯେତେ ଲୋଡ଼ାକର ॥

ତହୁଁ ଅଧିକ ଧନଟିରେ ନ ବଳାଇ ମନ ।
ବଳାଇଲେ ଅଧୋଗତି ପାଇବ ସେ ଜନ ॥
ସନ୍ତୋଷ ନୋହିଲେ ସ୍ୱର୍ଗେ ବାସ ନ ଯୋଗାଇ
ରଖିଲ ଶତ୍ରୁ ଜନ ଯେ ଚଣ୍ଡାଳ ବୋଲାଇ ॥
ଦାନ ଦେଇବ ଗୁରୁଙ୍କ ଉଦ୍ଧାର ନିମନ୍ତେ ।
ଆବର ଧନ ଆଣିବ ଭୃତ୍ୟଜନ ଅର୍ଥେ ॥
ଦେବତା ଅତିଥି ପାଇଁ ଦେଇବ ଯେ ଦାନ ।
ଆପେ ଭୋଗେ ନ କରିବ ସେ ଦ୍ରବ୍ୟ ଗ୍ରହଣ
ଗୃହସ୍ଥ ଲୋକ ସଦାଶୁଦ୍ଧ ହୋଇଣ ଏମନ୍ତେ ।
ଦେବତା ଅତିଥି ପୂଜା କରୁଥିବ ନିତ୍ୟେ ॥
ଆତ୍ମା ସଂଯମ ପାଇବ ଉତ୍ତମ ଯେ ସ୍ଥାନ ।
ଘରଯାକୁ ପୁତ୍ର ପାଶେ ଦେଇ ନିଜଧନ ॥
ବନେ ପଶିବ ଏକାକି ଉଦାସୀନ ହୋଇ ।
ଗୃହୀର ଧର୍ମ ତୁମ୍ଭଙ୍କୁ କହିଲି ବୁଝାଇ ॥
ଏ ଧର୍ମେ ରହି ଯେ ନିତ୍ୟ ବିଷ୍ଣୁଙ୍କୁ ପୂଜଇ ।
ଆଉ ତାର ଜନ୍ମ ନାହିଁ ମୁକତ ହୁଅଇ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ଗୃହସ୍ଥ ଧର୍ମ ନିର୍ଣ୍ଣୟୋ ନାମ
ଊନତ୍ରିଂଶୋଽଧ୍ୟାୟଃ ।



## ତ୍ରିଂଶ ଅଧ୍ୟାୟ ।

### ବାନପ୍ରସ୍ଥ ଧର୍ମ ନିର୍ଣ୍ଣୟ ।

ଶୁଣୁଛନ୍ତି ଋଷିଗଣ କହୁଛନ୍ତି ବ୍ୟାସ ।
ଗୃହାଶ୍ରମେ ରହି ଅଧେ କଟାଇ ଆୟୁଷ ॥
ଅଗ୍ନି ଦେଇ ବାନପ୍ରସ୍ଥ ଧର୍ମ ଆଚରିବ ।
କିବା ଗୃହେ ଥାଇ ପୁତ୍ର ବଧୂ କରାଇବ ॥
ବନେ ଯିବ ଘରଯାକୁ ପୁତ୍ର ପାଶେ ଦେଇ ।
ତେବେ ସେ ଧରମ ଶୋଭା ପ୍ରସିଦ୍ଧ ହୁଅଇ ॥
ଶୁକ୍ଳପକ୍ଷ ଉତ୍ତରାୟନ ପୂର୍ବାହ୍ନେ ।
ତପ କରିବ ନିୟମେ ରହି ଘୋରବନେ ॥
ପିତୃ ଦେବତା ପୂଜିବ ଫଳ ମୂଳେ ନିତ୍ୟ ।
ସେ ଫଳ ମୂଳ ଦେଇଣ ସେବିବ ଅତିଥ ॥
ତହୁଁ ଯହୁଁ ବଳିବ ତା କରିବ ଆହାର ।
ନଖ ନ କାଟିବ ପୁଣି ନ ଛେଦିବ ଯନ୍ତର ॥
ଶିରେ ଜଟା ବାନ୍ଧି ପୁଣି ବକଳ ପିନ୍ଧିବ ।
ଆଠଗୁଣ୍ଠାରୁ ଅଧିକ ଭିକ୍ଷା ନ ମାଗିବ ॥
ମଉନ ହୋଇବ ହୋମ କରୁଥିବ ପୁଣି ।
ପଞ୍ଚଯଜ୍ଞ କରୁଥିବ ଫଳମୂଳ ଆଣି ॥
ପ୍ରାଣୀଙ୍କଠାରେ ସର୍ବଦା ଦୟା ରଖିଥିବ ।
ଶୁଚିମନ୍ତ ହୋଇଥିବ ଦାନ ନ ଦେଇବ ॥
ଅମାବାସ୍ୟା ଦିନେ ପୁଣି ପୂର୍ଣ୍ଣିମା ଦିବସେ ।
ଯଜ୍ଞ କରିବ ଆବର ମର୍ଗୁଶିର ମାସେ ॥
ଚତୁର୍ମାସ୍ୟ ବ୍ରତ ଯାଗ କରୁଥିବ ପୁଣି ।
ଉତ୍ତରାୟଣ ଦକ୍ଷିଣାୟନ ଏ ବେନି ॥
ଶରଦ ବସନ୍ତ ଆଦି ଋତୁରେ ଯେ ଆପେ ।
ଅଗ୍ନି ଦେବତା ପୂଜିବ ଧ୍ୟାନ ଏହିରୂପେ ॥
ଫଳ ମୂଳ ଚରୁ ଆଦି ଦେଇ ଭିନ୍ନେ ଭିନ୍ନେ ।
ବନଦେବତା ପୂଜିବ ବସିବ ଭୋଜନେ ॥
ମଦ ମାଂସ ନ ଖାଇବ ଆଉ ଯେ କଖାରୁ ।
ବାଇଗଣ ମୂଳା ଆଦି କନ୍ଦମୂଳ ସାରୁ ॥
ଏ ଆଦି ଫଳ ବର୍ଜନ କରିବ ଯତନେ ।
ପ୍ରାଣିଠାରେ ହିଂସା ଦ୍ରୋହ ନ କରିବ ମନେ ॥
ଜ୍ଞାନ ଚିନ୍ତା କରୁଥିବ ବ୍ରହ୍ମନିଷ୍ଠ ହୋଇ ।
ମଇଥୁନେ ଜାଣ ସବୁ ଫଳ ନାଶ ଯାଇ ॥
ପତ୍ନୀ ଦେଇ ତହିଁ ଯେବେ ପୁତ୍ର ଜାତକର ।
ନ ଛୁଇଁବେ ଦ୍ୱିଜାତିଏ ସେ ପୁତ୍ରକୁ ତାର ॥
ବେଦରେ ସେ ପୁତ୍ରର ଯେ ଅଧିକାର ନାହିଁ
ତାହାର ବଂଶ ଯେତେକ ଏହିରୂପେ ରହି ॥
ଭୂମିରେ ଶୋଇବ ପୁଣି ଗାୟତ୍ରୀ ଜପିବ ।
ମନ୍ତ୍ରପୂତ କରି କାୟା ଶୋଷିକି ଶୋଧିବ ॥
ମିଛ ନ କହିବ ନିନ୍ଦା ନ କରିବ କାର ।
ନିଦ୍ରା ଆଳସ୍ୟ ବର୍ଜନ କରିବ ଆବର ॥
ବନ ପଶୁଙ୍କ ସହିତ କରିବ ବିହାର ।
ଶଯ୍ୟା କରିବ ପାଷାଣେ ପତ୍ରର ଉପର ॥
ଦିନକୁ ମାତ୍ର ଆହାର ସଞ୍ଚି ରଖିଥିବ ।
କିବା ମାସକ ବର୍ଷକ ପାଇଁ ଯେ ସଞ୍ଚିବ ॥
ଦିବସେ କିବା ରାତ୍ରିରେ ଖାଇବ ଯେ ଥରେ ।
କି ଅବା ଯେ ଚାନ୍ଦ୍ରାୟଣ ବିଧି ବିଧାନରେ ॥

କିବା ଫଳମୂଳ ଖାଇ ଜୀବନ ରଖିବ ।
କିବା ଭୂଇଁ ପାଦେ ରହି ତପ ଆଚରିବ ॥
କିବା ପଞ୍ଚାଗ୍ନି ଆଶିବ ଘୋର ନିଦାଘରେ ।
ବରଷା ଧାରା ସହିବ ବରଷା କାଳରେ ॥
ଶୀତକାଳେ ଓଦାଲୁଗା ପିନ୍ଧିଣ ରହିବ ।
ପିତୃ ଦେବତା ତର୍ପଣ ତ୍ରିସନ୍ଧ୍ୟା କରିବ ॥
ଅଥବା ସୂର୍ଯ୍ୟ କିରଣ ପାନକରି ରହି ।
ଏକପାଦେ ଛିଡ଼ା ହେବ ଘୋର କଷ୍ଟ ସହି ॥
ପଞ୍ଚାଗ୍ନି ଧୂଆଁ ପିଇବ ସୋମପାୟୀ ହେବ ।
ଶୁକ୍ଳପକ୍ଷରେ ଦୁଗ୍ଧ ପିଇଣ ରହିବ ॥
ଏମନ୍ତେ ଯୋଗ ସାଧିବ ଘୋର କଷ୍ଟ ସହି ।
କୃଷ୍ଣପକ୍ଷରେ ଗୋମୟ ଗଛ ପତ୍ର ଖାଇ ॥
ରୁଦ୍ରାଧ୍ୟାୟ ପଢି ପଢି ହରିଥିବ ମନ ।
କୃଷ୍ଣ ମୃଗ ଛାଲ କରି କଟିରେ ବନ୍ଧନ ॥
ଶୁକ୍ଳ ପଇତା କଣ୍ଠରେ ରୁଦ୍ରାକ୍ଷ ମାଳାଇ ।
ଯୋଗ ଅଭ୍ୟାସ କରିବ ଧ୍ୟାନପର ହୋଇ ॥
କିବା ବନେ ଥାଇ ଗ୍ରାମେ ଗ୍ରାମେ ବୁଲି ବୁଲି ।
ଆଠଗ୍ରାସ ଭିକ୍ଷା ଅନ୍ନ ମାଗିବ ଯେ ଥାଳି ॥
ଭିକ୍ଷା ଖପରରେ ରଖି କରିବ ଭୋଜନ ।
କିବା ଖାଇବ ପତ୍ରରେ ହସ୍ତେ ସେହି ଅନ୍ନ ॥
ବ୍ରହ୍ମଜ୍ଞାନ ପାଇ ଯୋଗେ ଦେହ ବିସର୍ଜିବ ।
ଏ ବାନପ୍ରସ୍ଥ ଧର୍ମରେ ଅକ୍ଷୟ ହୋଇବ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ବାନପ୍ରସ୍ଥାଶ୍ରମ ଧର୍ମ କଥନଂ ନାମ
ତ୍ରିଂଶୋଽଧ୍ୟାୟଃ ।



## ଏକତ୍ରିଂଶ ଅଧ୍ୟାୟ ।

### ଶ୍ରୀ ବିଷ୍ଣୁ ମହିମା ।

କହିଲେକ ସୂତ ମୁନି ଶୁଣ ମୁନିଗଣେ ।
ବର୍ଣ୍ଣାଶ୍ରମ ଧର୍ମ ସବୁ ଶୁଣିଲ ଶ୍ରବଣେ ॥
ବ୍ୟାସ ଯାହା କହିଥିଲେ କହିଲି ମୁଁ ତାହା ।
ବର୍ଣ୍ଣାଶ୍ରମ ଧର୍ମ ଆଦି ଅଛି ଯାହା ଯାହା ॥
ହରି ଭକ୍ତିର କଳାକୁ ନୋହିବେ ସମାନ ।
ଶ୍ରୀହରି ଭକତି ଏକା କଳିରେ ପ୍ରଧାନ ॥
ଏ ସବୁ ଧର୍ମ କେବଳ ଆନ ଆନ ଯୁଗେ ।
ଆଶ୍ରମ ଧର୍ମ ଆଦି ଯେ ପୂଜା ଯାଗ ଯଜ୍ଞେ ॥
ଏ ସବୁ ଧର୍ମ କଳିରେ କରି ନ ହୋଇ ।
କଳିରେ ପ୍ରାଣୀଙ୍କ ଆୟୁ ଅଳପ ଅଛଇ ॥
ଧନ ବଳ ନାହିଁ ପୁଣି କରିବେ କିପରି ।
ଏଣୁ ସତ୍ୟ ଆଦିଯୁଗେ ଏ ଧର୍ମ ଆଚରି ॥
କଳିର ଧର୍ମ କେବଳ ଶ୍ରୀହରି ଭକତି ।
ଯେଉଁ ନରେ ନାରାୟଣ ଦେବତା ପୂଜନ୍ତି ॥
ସେ ସବୁ ଧର୍ମରେ ଭାଗୀ ହୁଅଇ ଜାଣିବ ।
ସେହି ପୁଣ୍ୟଫଳେ ଜରା ମୃତ୍ୟୁକୁ ଜିଣିବ ॥
ପରଂବ୍ରହ୍ମ ସନାତନ ଯେ ଶାନ୍ତ ମୂରତି ।
ହୃଷୀକେଶ ଦାମୋଦର ଯାହାକୁ ବୋଲନ୍ତି ॥
ସେ ପ୍ରଭୁଙ୍କୁ ହୃଦପଦ୍ମ ମଧ୍ୟେ ଯେ ରଖଇ ।
ତିନି ଭୁବନକୁ ଜାଣ ଜିଣି ସେ ପାରଇ ॥
ହରିଭକ୍ତି ସୁଧା ରସ ପାନ କଲା ଜନ ।
କଳି ଯେ କାଳ ଉରଗ ତାହାର ଦଂଶନ ॥
ତହୁଁ ଜାତ କାଳକୂଟ କଳିବିଷ ଯେତେ ।
ରହି ନ ପାରନ୍ତି ତାର ଗାତ୍ରେ ତିଳ ମାତ୍ରେ ॥
ଆତ୍ମ ରକ୍ଷା କରିବାକୁ ସେ ଏକା ସମର୍ଥ ।
ଆଦେହି ଋଷିଗଣେ ଯାହା କହୁ ତା ଯଥାର୍ଥ ॥
ଗୁରୁ ମୁଖେଁ ହରିନାମ ଯେ କରେ ଗ୍ରହଣ ।
ତାର ଅନ୍ୟ ମନ୍ତ୍ର ଜପ ଜାଣ ଅକାରଣ ॥
ଶ୍ରୀହରି ପାଦ ଉଦକ ଯେ ଶିରେ ଧରଇ ।
କି ନିମନ୍ତେ ଆଉ ସ୍ନାନ କରିବ ସେ ଯାଇଁ ॥
ହୃଦେ ହରି ପାଦପଦ୍ମ ଯେହୁ ରଖିପାରେ ।
ସେ କିପା ଯଜ୍ଞ କରିବ ରହି ଏ ସଂସାରେ ॥
ହରିର କର୍ମ ସବୁରେ ଯେହୁ ବଖାଣଇ ।
ବିପ୍ରଙ୍କ ହସ୍ତରେ ଦାନ ଦେବ ସେ କିପାଇଁ ॥
ହରି ଗୁଣ ଗାଇ ତାଳ ମାରି ଯେ ନାଚଇ ।
ଶୁଣି ଶୁଣି ପୁଣି ପୁଣି ପ୍ରେମେ ନିମଜ୍ଜଇ ॥
ସମାଧି ଯୋଗ ସାଧିବା ଜନର ଯେ ଗତି ।
ସେ ତା ପାଇ କୃଷ୍ଣ ପ୍ରେମେ ମଗ୍ନ ଯା ମତି ॥
ହରି ଭକତର ବର୍ଣ୍ଣାଶ୍ରମ ଯେତେ ଶୁଣ ।
ପାପୀ ପାଷାଣ୍ଡ ଯେ ପ୍ରିୟ ଆଶକତ ଜନ ॥

ନାରୀଙ୍କ ନୟନ ଛଟା ବଙ୍କିମା ଗୃହିଣୀ ।
ସୁର ମୁନିଗଣଙ୍କର ଦୁର୍ଜ୍ଜୟ ସେ ପୁଣି ॥
ତାକୁ ଯେ ଜିଣି ପାରଇ ସେ ହରି ଭକତ ।
ଅତି ବିଚିତ୍ର ଅଟଇ ନାରୀଙ୍କ ଚରିତ ॥
ଲୋଭେ ପଡ଼ି ବିହ୍ୱଳିତ ଯୋଗି ମୁନି ଜନ ।
ଯେ ମୂରୁଷ ସ୍ତ୍ରୀ ଆସକ୍ତ ଜାଣ ଋଷିଗଣ ॥
ତା ତହିଁ ହରି ଭକତ ରହି ନ ପାରଇ ।
ରାକ୍ଷସୀ ଏ ଜଗତରେ କାମିନୀ ବୋଲଇ ॥
ପୁରୁଷ ମନ ହରଣ କରିବା ମାନସେ ।
ବିହରୁଥାନ୍ତି କାମିନୀ ମୋହିନୀର ବେଶେ ॥
ପୁରୁଷଙ୍କ ବୁଦ୍ଧି ଗ୍ରାସ କରନ୍ତି ଅକାଳେ ।
ଯେ ପର୍ଯ୍ୟନ୍ତ ନ ଥାନ୍ତି ସେ ନାରୀଙ୍କର ମେଳେ
ତାବତ କାଳ ବିଦ୍ୟାର ପ୍ରଭାବ ସେ ଥାଇ ।
ତାବତ କାଳ ସେ ଜନ ଜ୍ଞାନୀ ଯେ ବୋଲଇ ॥
ତାବତ କାଳ ତାହାର ଥାଇ ବୁଦ୍ଧି ସୁଧୀ ।
ତାବତ କାଳ ସେ ବ୍ୟକ୍ତି ଲଭଇ ସମୃଦ୍ଧି ॥
ତାବତ କାଳ ତାହାର ଜପ ତୀର୍ଥ ବ୍ରତ ।
ତାବତ କାଳ ଥାଇ ସେ ତପେ ଅନୁରକ୍ତ ॥
ତାବତ କାଳ ତାହାର ଗୁରୁ ପାଦ ସେବା ।
ତାବତ କାଳ ତାହାର ଧର୍ମ ଆଚରିବା ॥
ତାବତ କାଳ ତା ମନ ଭବ ନିସ୍ତାରଣେ ।
ତାବତ କାଳ ବିବେକ ଥାଇ ତାର ମନେ ॥
ତାବତ କାଳ ପ୍ରବୋଧ ସତ ସଙ୍ଗେ ରୁଚି ।
ତାବତହିଁ ପରିତ୍ରାଣେ ମନ ତାର ଅଛି ॥
ଯାବତ ନାରୀ ନୟନ ତରଳ କଲ୍ଲୋଳେ ।
ପଡ଼ି ନାହାନ୍ତି ମୂରୁଖେ ମନର ବିହ୍ୱଳେ ॥
ତାବତହିଁ ସର୍ବ ଧର୍ମ କର୍ମ ଅଛି ଜାଣ ।
ତାହାଙ୍କ ମଧ୍ୟେ ଯେତେକ ହରି ଭକ୍ତଜନ ॥
ହରି ପାଦପଦ୍ମ ମକରନ୍ଦ ପାନ ଭୋଳେ ।
ନିରନ୍ତର ମଜ୍ଜିଥାନ୍ତି ପ୍ରେମରସଭରେ ॥
ଲୋଳ ନୟନ କଟାକ୍ଷ ନୟନେ ଯୁବତୀ ।
ତାଙ୍କଠାରେ ପ୍ରଭୁପଣ କରି ନ ପାରନ୍ତି ॥
ଜନ୍ମେ ଜନ୍ମେ ହୃଷୀକେଶ ସେବା ଯେ କରଇ
ବିଷ୍ଣୁ ପ୍ରୀତି ଅର୍ଥେ ବିପ୍ରେ ଦାନ ଯେ ଦିଅଇ ॥
ଅଗ୍ନିରେ ହୋମ କରନ୍ତି ତାହାଙ୍କୁ ଯୁବତୀ ।
ନୟନ କଟାକ୍ଷ ବାଣେ ଭେଦି ନ ପାରନ୍ତି ॥

ନାରୀଙ୍କର ସଉନ୍ଦର୍ଯ୍ୟ କେହି ବଖାଣଇ ।
ସୁନ୍ଦରି ବୋଲି ଯା ସବୁ ସେ ମନେ କରଇ ॥
ବଦନର ସଉନ୍ଦର୍ଯ୍ୟ ଅଙ୍ଗର ଭୂଷଣ ।
ସ୍ନେହ ଆମୃ ଜ୍ଞାନ ଶୂନ୍ୟ ସେ ରୂପ ଲାବଣ୍ୟ ॥
ବିଷ୍ଠା ମୂତ୍ର ପୂଜ ରକ୍ତ ଚର୍ମ ମାଂସ ହାଡ଼ ।
ବସା ମେଦ ନାଡ଼ୀ ଲୋମ ରାଜିରେ ଯେ ଗାଢ଼
ସଉନ୍ଦର୍ଯ୍ୟ କାହିଁ ଅଛି ସେହି କଳେବରେ ।
ଗୋଟି ଗୋଟି ଚିନ୍ତା କରି ସ୍ନାନ କଲେ ନାରେ
ଶୁଚି ହୁଅନ୍ତି ଯେ ନରେ ଆହେ ଋଷିଗଣ ।
ଜାଣି ଶୁଣି ସଉନ୍ଦର୍ଯ୍ୟ ବଖାଣନ୍ତି ଜନ ॥
ଏଥିରୁ ବିଚିତ୍ର ଆଉ କି ଅଛି ଜଗତେ ।
ଦଇବର ବଳ ଏହି ଜାଣିବ ସାକ୍ଷାତେ ॥
ଦୁର୍ଦ୍ଦଇବ ବଳରୁ ଯେ ଏ ଦୁର୍ଦ୍ଦଶା ସିନା ।
କୁତ୍ସିତ ଅଙ୍ଗ ଲୋଭେ ମୂରୁଖେ ଉନ୍ମନା ॥
ବିଚାରିଲେ ନର ନାରୀ ଏ କିଛି ନୁହନ୍ତି ।
ଏଣୁ ସାଧୁ ସନ୍ତେ ନାରୀ ସଙ୍ଗ ନ କରନ୍ତି ॥
କାମିନୀ ଆଶ୍ରିତେ ନରେ ନ ହୁଅନ୍ତି ସିଦ୍ଧ ।
ଏଣୁ କାମିନୀ ତେଜନ୍ତି ଜାଣି ଜ୍ଞାନବୃଦ୍ଧ ॥
କାମିନୀ ସଙ୍ଗିର ସଙ୍ଗ ନ କରନ୍ତି କେବେ ।
ସଙ୍ଗ କଲେ ପଡ଼ନ୍ତି ଯେ ନର୍କ ରଉରବେ ॥
ଦଇବ ବଳୁ ଠକେରେ ପଡ଼ଣ ଅଜ୍ଞାନୀ ।
କାମ ଲୋଭେ ନର୍କ କୁଣ୍ଡେ ଭ୍ରମେ ନାନା ଯୋନି
ଜନମ ଯନ୍ତ୍ରୁ ହୁଏ ତହିଁ କ୍ରୀଡ଼ା କରେ ।
ମୂତ୍ର ରେତ ଦୁର୍ଗନ୍ଧହିଁ କିଛି ନ ବିଚାରେ ॥
ଏଥୁଁ ଅଶୁଚି ସଂସାରେ ଅଛଇ କି ଆଉ ।
ତହିଁରେ ବୁଡ଼ି ମରଇ ସୁଧା ଥାଉଁ ଥାଉଁ ॥
କି ଆଶ୍ଚର୍ଯ୍ୟ ଦଇବର ଏହି ବିଡ଼ମ୍ବନା ।
କଷ୍ଟହିଁ ପାଇଲେ ତହୁଁ ନ ହୁଏ ବିମନା ॥
କି ବିଚିତ୍ର ମାନବର ଏ ନାରୀଙ୍କ ପଣ ।
ଏଣୁ ବିଚାର କରନ୍ତି ବୁଦ୍ଧିମନ୍ତ ଜନ ॥
ନାରୀଙ୍କର ଦୋଷ ଗୁଣ ଅଛଇ ବିଦ୍ଧିତ ।
ମଇଥୁନେ ବଳ ହାନି ହୁଅଇ ତ୍ୱରିତ ॥
ବଳ ହାନି ହୋଇଲେ କାଳ ନିଦ୍ରା ଘାରେ ଆସି
ନିଦ୍ରା ଘାରନ୍ତେ ଅଜ୍ଞାନ ବଳେ ମାଡ଼ି ବସି ॥
ଜ୍ଞାନ ହଜନ୍ତେ ଆୟୁଷ ଅଳପକେ ତୁଟି ।
ଆୟୁଷ ତୁଟନ୍ତେ କାଳ ଧରି ନିଏ ଚୁଟି ॥

ଏଣୁ ବୁଦ୍ଧିମନ୍ତ ଜନେ ଦେଖି କାମିନୀକି ।
କାଳ ପାଶ ମଣି ଦୂରୁ ଯାଏ ବାଟ ବାଙ୍କି ॥
ଗୋବିନ୍ଦର ପାଦପଦ୍ମେ ମନକୁ ରଖଇ ।
ଭ୍ରମର ପ୍ରାୟେ ତହିଁ ଆନନ୍ଦେ ଖେଳଇ ॥
ଗୋବିନ୍ଦର ପାଦ ସେବା ଛାଡ଼ି କେଉଁ ମୂଢ଼ ।
କାମିନୀ ପାଦ ସେବାରେ ମନ କରେ ଦୃଢ଼ ॥
ଜନାର୍ଦ୍ଦନ ପାଦ ସେବା ମୁକତିଦାୟିନୀ ।
ନାରୀ ଯୋନି ସେବା ମହା ଶଙ୍କଟକାରଣୀ ॥
ବାରଂବାର ଯନ୍ତ୍ରେ ପୀଡ଼ା ପାଇଲ ପରସ୍ତ୍ର ।
ପୀଡ଼ା ପାଇଣ ଦେହକୁ କରୁଛନ୍ତି ଧ୍ୱସ୍ତ ॥
ହାୟ ହାୟ କି ବଚିତ୍ର ବିଧି ବିଡ଼ମ୍ବନା ।
ବାଞ୍ଛା ଟେକି କରୁଅଛନ୍ତି ଶୁଣ ମହାମନା ॥
ହୃଦୟ ମଧ୍ୟରେ କର ଗୋବିନ୍ଦ ସ୍ଥାପନ ।
ଯୋନି ଯନ୍ତ୍ରଣାରୁ ହେଲେ ପାଇବ ମୋଚନ ॥
କେବଳ କାମିନୀ ସଙ୍ଗ ଛାଡ଼ିଛି ଯେ ନର ।
ପଦେ ପଦେ ଅଶ୍ୱମେଧ ଫଳ ହୋଏ ତାର ॥
ଦୈବ ଯୋଗେ ବିଭା ହେଲେ ସତୀ କୁଳବତୀ ।
ତାହାର ଗର୍ଭରେ ପୁତ୍ର କରି ଉତପତ୍ତି ॥
ତା ସଙ୍ଗ ଛାଡ଼ି ଗୋବିନ୍ଦ ପାଦେ ଦେବ ମନ ।
ତାଠାରେ ଶ୍ରୀଜଗନ୍ନାଥ ସଦା ସୁପ୍ରସନ୍ନ ॥
ନାରୀ ସଙ୍ଗକୁ ଅସତ ସଙ୍ଗ ବୋଲି ଜାଣି ।
ହରିଭକ୍ତି ବିନାଶିନୀ ଯେଣୁ ସେ କାମିନୀ ॥
ସଙ୍ଗ ତେଜି ହରି ପାଦେ ଭକତି ରଖ ।
ତ୍ରୈଲୋକ୍ୟ ଦୁର୍ଲଭ ତହୁଁ ନ ହୁଅ ବିମୁଖ ॥
ଯାର ଭକ୍ତି ଥାଇ ହରି ଚରଣେ ନିରତେ ।
ସେ ଜନ କୃତାର୍ଥେ ଧନ୍ୟ ଏ ତିନି ଜଗତେ ॥
ଯେଉଁ ଧର୍ମେ ହରିଙ୍କର ପ୍ରୀତି ହୁଏ ଜାତ ।
ସେହି ସେହି ଧର୍ମ କରୁଥିବ ଅବିରତ ॥
ଗୋବିନ୍ଦ ସନ୍ତୋଷେ ସବୁ ଜଗତ ସନ୍ତୋଷ ।
ହରି ଅସନ୍ତୋଷେ ସବୁ ପ୍ରାଣୀ ଅସନ୍ତୋଷ ॥
ଶ୍ରୀହରି ଭକତି ବିନା ଜନମ ବିଫଳ ।
ଶ୍ରୀଗୋବିନ୍ଦଙ୍କୁ ପୂଜିଲେ ପୂଜିଲ ସକଳ ॥
ବ୍ରହ୍ମା ଆଦି ଦେବଙ୍କର ପୂଜା ହେଲା ତହିଁ ।
ଏଣୁ ନିତ୍ୟ ପୂଜୁଥିବ ପ୍ରଭୁ ଭବତ୍ରାହୀ ॥
ବ୍ରହ୍ମା ଆଦି ଦେବଗଣ ଯା ପାଦ ସେବନ୍ତି ।
ତାହାଙ୍କୁ କେ ନ ପୂଜିବ ଯେ ପ୍ରଭୁ ଶ୍ରୀପତି ॥
ଜନାର୍ଦ୍ଦନ ପଦ ଦୁଇ ଧରନ୍ତି ଯେ ହୃଦେ ।
ନିରତେ ତାହାର ଗୃହେ ସଉଭାଗ୍ୟ ଉଦେ ॥
ଅତି ଭାଗ୍ୟବତୀ ତାର ଜନ୍ମ କଲା ମାତା ।
ସୁକୃତବନ୍ତ ତାହାର ଜନ୍ମକଲା ପିତା ॥
ଶରଣାଗତ ବତ୍ସଳ ଜଗତ୍ ବନ୍ଦନ ।
ଗୋବିନ୍ଦ ମାଧବ ରାମ କୃଷ୍ଣ ଜନାର୍ଦ୍ଦନ ॥
ନିତ୍ୟ ଘୋଷୁଥାଇ ତାର ନର୍କଗତି ନାହିଁ ।
ପ୍ରତ୍ୟକ୍ଷେ ହରି ରୂପୀ ବ୍ରାହ୍ମଣଙ୍କୁ ଯେହି ॥
ଯଥା ଯୋଗ୍ୟ ପୂଜା କରେ ବିଧି ବିଧାନରେ ।
ତାଠାରେ ପ୍ରସନ୍ନ ଥାନ୍ତି ହରି ନିରନ୍ତରେ ॥
ବିପ୍ର ରୂପେ ବିହରନ୍ତି ମହୀରେ ଶ୍ରୀହରି ।
ଏଣୁ ପବିତ୍ର ଅଟଇ ବିପ୍ର ପାଦ ବାରି ॥
ବିପ୍ର ବିନା ଧର୍ମ କର୍ମ ସକଳ ବିଫଳ ।
ଯେ ଜନ ବିପ୍ର ଚରଣ ପ୍ରକ୍ଷାଳିତ ଜଳ ॥
ପାନ କରି ଶେଷ ଜଳ ମସ୍ତକେ ଘେନଇ ।
ତହିଁରେ ସେ ଆପଣାର ଆତ୍ମାକୁ ତାରଇ ॥
ସେ ଶିର ଜଳେ ତା ପିତୃ ହୁଅନ୍ତି ତୃପତ ।
ବିପ୍ରଙ୍କୁ ଯେ ମିଷ୍ଟ ଅନ୍ନ କରିବ ଅର୍ପିତ ॥
ସେ ସବୁ ଦ୍ରବ୍ୟ ଯେବେ ନି ଦିଅ ବିପ୍ର ମୁଖେ ।
ସାକ୍ଷାତେ ସେ ଦ୍ରବ୍ୟ ଦେଲ ଜାଣ କୃଷ୍ଣ ମୁଖେ
ସ୍ୱୟଂ ପ୍ରଭୁ ହରି ତାହା କରନ୍ତି ଭୋଜନ ।
ବିପ୍ର ଭୁଞ୍ଜିଲେ ଭୁଞ୍ଜନ୍ତି ଜାଣ ଜନାର୍ଦ୍ଦନ ॥
ଆହା କି ବିଚିତ୍ର ଏହି ବିଧି ବିଡ଼ମ୍ବନା ।
ଦ୍ୱିଜରୂପୀ କେଶବଙ୍କୁ ନ କରି ଅର୍ଚ୍ଚନା ॥
ପ୍ରତିମା ଆଦିରେ ବିଷ୍ଣୁ ପୂଜୁଥାନ୍ତି ନରେ ।
ପ୍ରତିନିଧି ପୂଜା ସିନା ଅଭାବ ସମୟରେ ॥
ସାକ୍ଷାତରେ ବିପ୍ର ରୂପେ ବିରାଜନ୍ତି ହରି ।
କିପାଁ ପ୍ରତିମା ପୂଜିବ ବିପ୍ର ତେଜି କରି ॥
ବିପ୍ର ଥିବାରୁ ଏ ପୃଥ୍ୱୀ ଧନ୍ୟ ଯେ ବୋଲାଇ ।
ବିପ୍ରଙ୍କ ହସ୍ତରେ ଯେଉଁ ଦ୍ରବ୍ୟ ଦିଆଯାଇ ॥
ସେ ଦ୍ରବ୍ୟ ଶ୍ରୀହରି ହସ୍ତେ ଦିଆ ଗଲା ଜାଣ ।
ଯେ ଜନ ନିତ୍ୟ ବନ୍ଦଇ ବିପ୍ରର ଚରଣ ॥
ବିପ୍ରଙ୍କୁ ଦେଖିବା ମାତ୍ରେ କରେ ନମସ୍କାର ।
ତାହାର ଦେହକୁ ପାପ ଛାଡ଼ି ହୋଇ ଦୂର ॥
ବ୍ରହ୍ମହତ୍ୟା ଆଦି ମହାପାପ ଯାଏ ଛାଡ଼ି ।
ଏଣୁ ସାଧୁ ବିପ୍ର ପୂଜେ ସବୁ ଧର୍ମ ଏଡ଼ି ॥

ବ୍ରାହ୍ମଣଙ୍କୁ ବିଷ୍ଣୁ ଜ୍ଞାନ କରଇ କରନ୍ତେ ।
ସୁଧାର୍ମି ବିପ୍ରର ମୁଖେ ଶୁଣେ ଯେ ନିତ୍ୟେ ॥
ମରଣାନ୍ତେ ସେହି ଜନ କୋଟି କଳ୍ପ ଯାଏ ।
ପୀୟୂଷ ଧାରା ତାହାର ତୁଣ୍ଡେ ପଡୁଥାଏ ॥
ଦ୍ୱିଜର ତୁଣ୍ଡକୁ ମହାକ୍ଷେତ୍ର ବୋଲି କହି ।
ଉର୍ବରା ଭୂଇଁ ତହିଁରେ ବାଲି କଣ୍ଟା ନାହିଁ ॥
ଅଳପ ବୁଣିଲେ ତହିଁ ପାଇ କୋଟି ଗୁଣେ ।
ଘୃତ ସହିତ ଭୋଜନ ଦେଲେ ବିପ୍ରଗଣେ ॥
ବହୁତ କାଳ ସେ ଜନ ଆନନ୍ଦରେ ଥାଇ ।
କୋଟି କଳ୍ପ ଯାଏଁ ସେହି ଗତି ମୁକ୍ତି ପାଇ ॥
ନିତ୍ୟ ଯେ ବ୍ରାହ୍ମଣ ମୁଖେଁ ଶୁଣଇ ପୁରାଣ ।
ତହିଁରେ ତା ପାପ ରାଶି ପୋଡ଼ି ଯାଏ ପୁଣ ॥
ସବୁ ତୀର୍ଥ ବ୍ରତ ମଧ୍ୟେ ପୁରାଣ ଅଧିକ ।
ଶ୍ରଦ୍ଧାରେ ଶୁଣଇ ଯେ ତହୁଁ ପାଦ ଏକ ॥
ତା ତହୁଁ ସଦା ପ୍ରସନ୍ନ ହୁଅନ୍ତି ଶ୍ରୀହରି ।
ବିଷ୍ଣୁ ଯେମନ୍ତେ ଜଗତେ ସୂର୍ଯ୍ୟ ମୂର୍ତ୍ତି ଧରି ॥
ବାହାରନ୍ତି ଜୀବଗଣେ ଦେଇଣ କିରଣ ।
ତେସନ ପୁରାଣ ରୂପେ ଦେବ ଜନାର୍ଦ୍ଦନ ॥
ପ୍ରାଣୀର ଅନ୍ତରେ ଥାଇ ବିକାଶ ପାଆନ୍ତି ।
ଜୀବଜନ୍ତୁଙ୍କୁ ତହିଁରେ ପବିତ୍ର କରନ୍ତି ॥
ଏଣୁ ସକଳ ପୁରାଣ ପରମ ପାବନ ।
ହରି ପାଦେ ପାଇବାକୁ ଅଛି ଯାର ମନ ॥
କୃଷ୍ଣ ଦ୍ୱୈପାୟନ ମୁନି ନାମ ଯାହାଙ୍କର ।
ଯାହାଙ୍କୁ ବୋଲନ୍ତି ଲୋକେ ବ୍ୟାସ ମୁନିବର ॥
ତାହାଙ୍କ କୃତ ପୁରାଣ ଶୁଣିବ ଶ୍ରଦ୍ଧାରେ ।
ବିଷ୍ଣୁ ଭକତେ ଶୁଣନ୍ତି ତାହା ନିରନ୍ତରେ ॥
ବ୍ୟାସ ମୁନି ରୂପଧାରୀ ଆପଣେ ଶ୍ରୀହରି ।
ବେଦ ବେଦାନ୍ତକୁ ଅର୍ଥ କରି ଭାଗ କରି ॥
ତହୁଁ ସେ ଅତି ନିର୍ମଳ ପୁରାଣ ରଚିଲେ ।
ପୁରାଣେ ସବୁ ଧର୍ମର ନିର୍ଣ୍ଣୟ ସେ କଲେ ॥
ସେହି ପୁରାଣ ଯେ ଧର୍ମ ସ୍ୱୟଂ କେଶବ ।
ପୁରାଣ ଶୁଣିବା ଜନ ବିଷ୍ଣୁ ତୁଲ୍ୟ ଦେବ ॥
ବିପ୍ର ଯେ ସ୍ୱୟଂ ସାକ୍ଷାତେ ଦେବଦେବ ହରି ।
ପୁରାଣ ଆବର ଧର୍ମ ଜାଣ ସେହିପରି ॥
ଏହାଙ୍କ ସଙ୍ଗ ପାଇଲେ ହରିଙ୍କି ପାଇଲ ।
ପାପ କଳ୍ମଷ ନାଶଇ ଯେସନ୍ତ ଗଙ୍ଗାଜଳ ॥

କେଶବ ନିଜେ ତରଳ ହୋଇ ବହିଯାନ୍ତି ।
ଜଗତେ ପାପି ଲୋକଙ୍କ ତାରିବାର ପାଇଁ ॥
ଏ ଭୂତଳେ ଗଙ୍ଗା ବିଷ୍ଣୁ ଭକତିଦାୟିନୀ ।
ଲୋକ ନିସ୍ତାରଣୀ ପୁଣି ଶ୍ରୀହରି ରୂପିଣୀ ॥
ଜାଣିବ ଶ୍ରୀହରି ଥାନ୍ତି ଏହି ଏହାରେ ସେ ।
ଗୋ ବିପ୍ର ଗଙ୍ଗା ପୁରାଣ ଅଶ୍ୱତ୍ଥ ପାଦପେ ॥
ଏହାଙ୍କ ପୂଜାରେ ପୂଜା ପାନ୍ତି ନିଜେ ହରି ।
ଏଣୁ ଏହାଙ୍କୁ ପୂଜିବ ମନ ଦୃଢ଼ କରି ॥
ବିଷ୍ଣୁ ଭକ୍ତି ବିନା ଯେଣୁ ଏ ଜନ୍ମ ବିଫଳ ।
ଦୁସ୍ତର ସାଗର ଜାଣ ଏହି କଳି କାଳ ॥
ହରି ଭକତି ଏଥିରେ ନଉକା ଅଟଇ ।
ପାପ ତହିଁ ଭାସୁଥାନ୍ତି ଗ୍ରାହ ରୂପ ହୋଇ ॥
ବିଷୟରେ ଆସକତି ତହିଁରେ ଭଉଁରୀ ।
ଅଜ୍ଞାନ ତହିଁ ରହନ୍ତି ଫେଣ ରୂପ ଧରି ॥
ମହାସର୍ପ ରୂପେ ତହିଁ ଥାନ୍ତି ଦୁଷ୍ଟ ଗଣେ ।
ହିଂସା କହରି ଉଠଇ ପର୍ବତ ପ୍ରମାଣେ ॥
ଏଣୁ ସେ କଳି ସମୁଦ୍ର ମହା ଭୟଙ୍କର ।
ଶ୍ରୀବିଷ୍ଣୁ ଭକତି ନାବ ଗୋଟି ଆଶ୍ରାକର ॥
ନୋହିଲେ ତରି ନ ପାରି ଯେ ଅତି ଦୁସ୍ତର
ଅସତ ସଙ୍ଗେ କି ସୁଖ ଜନଜନ୍ତୁଙ୍କର ॥
ଅଦ୍ଭୁତ ଲୀଳାକାରୀ ଯେ ଦେବ ଜନାର୍ଦ୍ଦନ ।
ତାହାଙ୍କ ଅପୂର୍ବ ଲୀଳା ବିଚିତ୍ର ଗଠନ ॥
ସେ ଲୀଳା ଆଖ୍ୟାନେ ସଦା ହୁଅ ଆସକତ ।
ଏଣୁ ବିଚିତ୍ର ଅଟନ୍ତି ଏ ଜନ ଜଗତ ॥
ବିଷୟରେ ଆସକତ ଥାଏ ଯେତେବେ ମନ ।
ନାନାଦି ବିଷୟ ମିଶା ହରିକଥା ଶୁଣ ॥
ନିର୍ଗୁଣ ବ୍ରହ୍ମଜ୍ଞାନରେ ଥାଏ ଯେତେବେ ମନ ।
ତଥାପି ହରିର କଥା କରିବ ଶ୍ରବଣ ॥
ହେଳାରେ ଯେତେବେଳ କେହି ସେ କଥା ଶୁଣନ୍ତି
ତହିଁରେ ତାଙ୍କରେ ହରି ପ୍ରସନ୍ନ ହୁଅନ୍ତି ॥
ଅକର୍ମୀ ହେଲେହେଁ ସେହି ଭକତବତ୍ସଳ ।
ଭକତଙ୍କ ପାଇଁ ନାନା କର୍ମରେ କୁଶଳ ॥
ଅଯୁତ ଅଯୁତ କରି ଯାଗ ରାଜସୂୟ ।
କରି ପୁଣି ଶତ ଶତ ଯଜ୍ଞ ବାଜପେୟ ॥
ତହିଁରେ ତାଙ୍କ ଦର୍ଶନ କଦାପି ନ ପାଇ ।
ଭକତରେ ବଶ ଏଣୁ ପ୍ରଭୁ ଭାବଗ୍ରାହୀ ॥

ବିଷୟ ଲୋଭୀ କଷ୍ଟୁର ନରେ ଏବେ ଶୁଣ ।
ଯେଉଁ ପାଦେ ସେବାରତ ନିତ୍ୟ ସାଧୁଜନ ॥
ଦୁସ୍ତର ଭବ ସମୁଦ୍ର ତରଣରେ ସାର ।
ସେହି ହରି ପଦ୍ମପାଦତଳ ଆଶ୍ରାକର ॥
ଆପେ ଆପକୁ ଗୌରବ କରକେ ନ ପରି ।
ଗୋବିନ୍ଦ ସୁନ୍ଦର ପାଦପଦ୍ମ କରିବାଞ୍ଛି ॥
ତାହା ସେବା ଭିନ୍ନଆଉ ନାହିଁ କିଛି ଗତି ।
ହେଲେ ଦୁଃଖୁ ତରିବାର ଥାଏ ଯେବେ ମତି ॥
ତେବେ କରି ଦୁଃଖମୟ ଜନ୍ମ ନିବାରଣ ।
କୃଷ୍ଣ ଚରଣ ଯୁଗଳ ତହିଁର କାରଣ ॥
ସେ ଅଭୟ ସଜ କଞ୍ଜ ଚରଣକୁ ଭଜ ।
ଭକତର ଆଜ୍ଞାକାରୀ ସେହି ଦେବରାଜ ॥
କାହିଁ ବା ଅଇଲ ତୁମ୍ଭେ କାହିଁ ଯିବ ପୁଣି ।
ବିଚାର କରନ୍ତି ଏହା ବୁଦ୍ଧିମନ୍ତ ପ୍ରାଣୀ ॥
ଧର୍ମ ସଞ୍ଚିବା ଆଶାରେ ହରି ଆଶ୍ରାକର ।
ନରକେ ପଡ଼ି ପଡ଼ି ପଡ଼ି ଯେବେ ଉଠେ ନର ॥
ସ୍ଥାବର ଜଙ୍ଗମ ଆଦି ତନୁ ପୁଣି ପାଇ ।
ସଉଭାଗ୍ୟ ବଳେ ଯେବେ ମାନବ ହୁଅଇ ॥
କର୍ମବଳେ ଭୂମିତଳେ ଯେବେ ଜନମଇ ।
ବାଲ୍ୟକାଳେ ନାନା ଦୋଷେ ଯେତୁ ପୀଡ଼ାପାଇ
ଯୁବାକାଳେ ନାନା ରୋଗେ ପାଏ ନାନାକଷ୍ଟ
ଦୁର୍ଭିକ୍ଷ ଦାରିଦ୍ର ଆଦି ଦୁଃଖେ ହୋଏ ନଷ୍ଟ ॥
ତହିଁରୁ ଆଉ ଅଧିକ ପୀଡ଼ା ବୁଢ଼ା କାଳେ ।
ବ୍ୟାଧି ଯୋଗୁ ମନ ତାର ଗମଇ ଚଥିଁଳେ ॥
ତହୁଁ ମରଣ ଲଭଇ ଏଥିରୁ ଅଧିକ ।
କି ଦୁଃଖ ଅଛି ସଂସାରେ କର ତା ବିବେକ ॥
ତହିଁ ପୁଣି ଆପଣାର କର୍ମ ବଳେ ଯାଇ ।
ଯମଲୋକରେ ବହୁତ ଯନ୍ତ୍ରଣା ସେ ପାଇ ॥
ଏହିରୂପେ ଜନ୍ମ ଥାଇ ପୁଣି ମରୁଥାଇ ।
ଗୋବିନ୍ଦର ପାଦଦୁଇ ଯେଂ ଜନ ଚିନ୍ତଇ ॥
ତାହାର ଏ କଷ୍ଟ ଭୋଗ ନାହିଁ ଋଷିଗଣେ ।
ଯାହାର ମାନସ ଥାଇ ଗୋବିନ୍ଦ ଚରଣେ ॥
ବହୁତ କଷ୍ଟେ ଜନମେ ଅତି କଷ୍ଟେ ମରେ ।
ବାରମ୍ବାର ଏହି କଷ୍ଟପାଏ ଏ ସଂସାରେ ॥
ଘରେ ଥିବା ଧନ ଯତ୍ନେ ରଖିଲେ କି ଫଳ ।
ଯେତେବେଳେ ଯମଦୂତେ ବଳେ ଧରି ଚୁଳ ॥
ଓଡ଼ାର ଧରଣ ନେବେଁ କି ହେବ ସେ ଧନ ।
ଯହିଁ ରଖିଥିବ ତହିଁ ଥିବ କିଛି ଦିନ ॥
ଆପଣାର ସଙ୍ଗତରେ ନ ପାରିବ ନେଇ ।
କଷ୍ଟେ ଅରଜି ନ ନେଇ ତହିଁ ଯିବ ଥୋଇ ॥
ନ ଦେଇ ନ ଖାଇ ସେହି ସଞ୍ଚିଥିବା ଧନେ ।
କିଛି ଫଳ ନାହିଁ ଜାଣ ଆହେ ଋଷିଗଣେ ॥
ଯେବେ ବୋଲ ତା କୁଟୁମ୍ବ ତହିଁରେ ବଞ୍ଚିବେ
ତା ପାଇଁକି ତା କୁଟୁମ୍ବେ ନରକ ଭୁଞ୍ଜିବେ ॥
ଦେଇଥିଲେ ଅବଶ୍ୟ ସେ ଧନକୁ ପାଇବେ ।
ସେ ଦାନ ପୁଣ୍ୟବଳେ ସେ ନର୍କ ନ ଦେଖିବେ
ଦାନ ଯେ ଅଟଇ ସ୍ୱର୍ଗ ପଥକୁ ନିଶୁଣୀ ।
ଦାନ ସବୁ କଲ୍ମଷ ନାଶ କରେ ମୁନି ॥
ଗୋବିନ୍ଦ ପାଦେ ଭକତି ଜନମାଇ ଦାନ ।
ଦାନ ସବୁ ପୁଣ୍ୟ ଠାରୁ ଅଟଇ ମହାପୁଣ୍ୟ ॥
ଏଣୁ ସେ ଧନ ଅସତ କର୍ମେ ନ ଲଗାଇ ।
ସତ ପାତ୍ରେ ଦେଉଥିବ ଗୋବିନ୍ଦଙ୍କୁ ଧ୍ୟାଇ ॥
ନିଦ୍ରା ତନ୍ଦ୍ରା ତେଜି ହରି ଅଗ୍ରତେ ନାଚିବ ।
ତାଳମାରି ହରି ଗୁଣ ଆନନ୍ଦେ ଗାଇବ ॥
ଯାହାକିଛି ଘରେ ଥିବ ଆନନ୍ଦମନରେ ।
ତାହାସବୁ ସମର୍ପିବ ଶ୍ରୀକୃଷ୍ଣ ପୟରେ ॥
ଶ୍ରୀକୃଷ୍ଣ ଅର୍ପିତ ଦ୍ରବ୍ୟ ମଙ୍ଗଳ ଦିଅଇ ।
ଅନ୍ୟେ ତା ଅର୍ପିତ ହେଲେ ଅସୁଖ ମିଳଇ ॥
ଚକ୍ଷୁ ଦୁଇରେ ଶ୍ରୀହରି ପ୍ରତିମା ଘଡ଼ିବ ।
କର୍ଣ୍ଣ ଦୁଇରେ ଶ୍ରୀକୃଷ୍ଣ ଗୁଣକୁ ଶୁଣିବ ॥
ଜିଭରେ ଶ୍ରୀହରି ପାଦ ଉଦକ ପିଇବ ।
ଗୋବିନ୍ଦ ପାଦ ତୁଳସୀ ନାସାରେ ସୁଙ୍ଘିବ ॥
ଚର୍ମେ ସ୍ପର୍ଶ କରିବ ଶ୍ରୀହରିଙ୍କ ଭକତ ।
ମନେ ହରିପାଦ ଧ୍ୟାନ କରୁଥିବ ନିତ୍ୟ ॥
ଏଥିରେ ପ୍ରାଣୀ କୃତାର୍ଥ ହୋଇବେ ନିଶ୍ଚୟ ।
ତାଙ୍କଠାରେ ଥିବ ଯେବେ ହୃଦୟ ଆଶୟ ॥
ମରଣାନ୍ତେ ପ୍ରାଣୀ ନିଶ୍ଚେ ତାହାଙ୍କୁ ପାଇବ ।
ଚିନ୍ତାର୍ଥୀ ଜନେ ସ୍ୱପଦ ଦିଅନ୍ତି ମାଧବ ॥
ଅନାଦି ଅନନ୍ତ ସେହି ଦେବ ନାରାୟଣ ।
ତାହାଙ୍କ ଚରଣ ସେବା ନ କରେ କେ ଜନ
ଯେ ଜନ ନିୟୁତ ଚର ହୋଇଣ ନରତେ ।
ବିଷ୍ଣୁ ପାଦ ଅରବିନ୍ଦ ପୀରତି କମନ୍ତେ ॥

ଶକତ ଅନ୍ନ ରୂପରେ କରୁଥାଇ ଦାନ ।
ବିଷ୍ଣୁ ଚରଣ ଯୁଗଳ ରଖି ସଦା ମନ ॥
ଗଡ଼ଇ ପଡ଼ଇ ଉଠି ହସଇ ଖେଳଇ ।
ନାଚଇ ତାଳ ମାରଇ ହରି ବୋଲୁଥାଇ ॥
ସୁରବରଙ୍କ ନିକଟୁ ପୂଜା ସେ ପାଇବ ।
ଭଜେ ଦୀନ ଗୋପୀନାଥ ମୁକୁନ୍ଦ ମାଧବ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ହରି ମାହାତ୍ମ୍ୟ ବର୍ଣ୍ଣନଂ ନାମ
ଏକତ୍ରିଂଶୋଽଧ୍ୟାୟଃ ।



## ଦ୍ୱାତ୍ରିଂଶ ଅଧ୍ୟାୟ ।

ଆଦିସ୍ୱର୍ଗ ମହିମା ।

କହିଲେ ସେ ସୂତମୁନି ଏଥୁ ଅନନ୍ତରେ ।
ଅନେକ ରୂପ ଧରନ୍ତି ବିଷ୍ଣୁ ଏ ସଂସାରେ ॥
ଅରୂପ ହୋଇଲେହେଁ ସେହି ଦେବ ନାରାୟଣ ।
ଅନେକ ଅପୂର୍ବ ରୂପ କରନ୍ତି ଧାରଣ ॥
ଲୋକ ନିସ୍ତାର ନିମନ୍ତେ ମହିମା ଏମନ୍ତ ।
ପୁରାଣ ପୁରୁଷ ନାମେ ଲୋକରେ ବିଖ୍ୟାତ ॥
ପୁରାଣ ଗୋଟି ସ୍ୱରୂପ ଅଟଇ ତାଙ୍କର ।
ଯେ ମହାପୁରାଣ ଅଟେ ଅଠର ପ୍ରକାର ॥
ସବୁ ପୁରାଣର ଶ୍ରେଷ୍ଠ ଏ ପଦ୍ମ ପୁରାଣ ।
ପୁରାଣ ରୂପୀ ଯେ ସେହି ଦେବ ନାରାୟଣ ॥
ବ୍ରହ୍ମ ପୁରାଣ ଅଟଇ ଶ୍ରୀହରିଙ୍କ ଶିର ।
ପଦ୍ମପୁରାଣ ହୃଦୟ ଅଟଇ ତାଙ୍କର ॥
ଶ୍ରୀହରି ଦକ୍ଷିଣ ବାହୁ ଶ୍ରୀ ବିଷ୍ଣୁ ପୁରାଣ ।
ଶିବ ପୁରାଣ ତାଙ୍କର ବାମବାହୁ ଜାଣ ॥
ଶ୍ରୀ ବିଷ୍ଣୁର ଦୁଇ ଉରୁ ଭାଗବତ ଗ୍ରନ୍ଥ ।
ତାଙ୍କ ନାଭି ନାରଦୀୟ ପୁରାଣ ବିହିତ ॥
ଦକ୍ଷିଣ ପାଦ ତାଙ୍କର ମାର୍କଣ୍ଡ ପୁରାଣ ।
ଅଗ୍ନି ପୁରାଣ ତାହାଙ୍କ ବାମ ଯେ ଚରଣ ॥
ଦକ୍ଷିଣ ଜାନୁ ତାଙ୍କର ଭବିଷ୍ୟ ପୁରାଣ ।
ବ୍ରହ୍ମ ବଇବର୍ତ୍ତ ବାମ ଜାନୁ ବୋଲି ଜାଣ ॥
ଲିଙ୍ଗ ପୁରାଣ ଦକ୍ଷିଣ ଗୋଇଠି ତାଙ୍କର ।
ବାମ ଗୋଇଠି ବରାହ ପୁରାଣ ଆବର ॥
ସ୍କନ୍ଦ ପୁରାଣକୁ ତାଙ୍କ ଲୋମରାଜି କହି ।
ବାମନ ପୁରାଣ ତାଙ୍କ ମାଉଁସ ବୋଲାଇ ॥
ଶ୍ରୀ ବିଷ୍ଣୁର ପିଠି କୂର୍ମ ପୁରାଣ ଅଟଇ ।
ମତ୍ସ୍ୟ ପୁରାଣକୁ ବିଷ୍ଣୁ ମେଦ ବୋଲି କହି ॥
ଶ୍ରୀ ବିଷ୍ଣୁର ମଜ୍ଜା ଅଟେ ଗରୁଡ଼ ପୁରାଣ ।
ହାଡ଼ ଅଟଇ ତାଙ୍କର ବ୍ରହ୍ମାଣ୍ଡ ପୁରାଣ ॥
ଏରୂପେ ପୁରାଣ ରୂପୀ ଦେବ ଚକ୍ରଧର ।
ପଦ୍ମପୁରାଣ ହୃଦୟ ଅଟଇ ତାଙ୍କର ॥
ସେ ପଦ୍ମପୁରାଣ ଯେବେ ଅଧ୍ୟାୟେ ପଢ଼ିବ ।
ସକଳ ପାପରୁ ନିଶ୍ଚେ ମୁକତ ହୋଇବ ॥
ଆଦି ସ୍ୱର୍ଗ ଖଣ୍ଡରେ ସେ ପୁରାଣ ସଂପୂର୍ଣ୍ଣ ।
ତାହାକୁ ଏକା ପଢ଼ଇ ଯେବେ କେହି ଜନ ॥
ପଦ୍ମପୁରାଣ ପଢ଼ିବା ଫଳ ସେହୁ ପାଇ ।
ଏ ଆଦି ସ୍ୱର୍ଗଖଣ୍ଡକୁ ଯେ ଜନ ଶୁଣଇ ॥
ସାପ କାତି ଛଡ଼ାଇଣ ମୁକ୍ତ ହେଲ ପ୍ରାୟେ ।
ତେସନ ମହାପାପରୁ ସେ ମୁକତ ପାଏ ॥
ଯେବେ ସର୍ବଧର୍ମ ଭ୍ରଷ୍ଟ ହୋଏ ଦୁରାତ୍ମା ।
ଏ ଆଦି ସ୍ୱର୍ଗଖଣ୍ଡକୁ ଶୁଣେ ଦୃଢ଼ କରି ॥
ନିଶ୍ଚୟେ ପବିତ୍ର ହେବ ଜାଣ ଋଷିଗଣ ।
ଯେ ଫଳ ପାଇ ଶୁଣିଲେ ସକଳ ପୁରାଣ ॥
ପଦ୍ମପୁରାଣ ଶୁଣିଲେ ସେ ଫଳ ମିଳଇ ।
ମାଘମାସେ ଯେଉଁ ଲୋକ ପ୍ରୟାଗକୁ ଯାଇ ॥
ସ୍ନାନ କରି ଯେସନେ ହୁଏ ପାପରୁ ମୁକତ ।
ଏ ଆଦି ସ୍ୱର୍ଗଖଣ୍ଡକୁ ଶୁଣିଲେ ତେମନ୍ତ ॥
ବିପ୍ରହସ୍ତେ ସ୍ୱର୍ଣ୍ଣତୁଳା ଦାନେ ଯେଉଁ ପୁଣ୍ୟ ।
ସମଗ୍ର ପୃଥିବୀ ଯେବେ କରେ କେହି ଦାନ ॥
ଦରିଦ୍ର ଲୋକର ଋଣ ଯେ ଶୁଝି ଦିଅଇ ।
ବାର ବାର ହରି ନାମ ସହସ୍ର ପଢ଼ଇ ॥
ସକଳ ବେଦ ପଢ଼ଇ ନିତି ଯେଉଁ ଜନ ।
ପାଠପଢ଼ା ଗୁରୁ ରଖେ କରି ବୃତ୍ତିଦାନ ॥
ଭୟାକୁଳ ଜନକୁ ଯେହୁ ଅଭୟ ଦିଅଇ ।
ଗୁଣବନ୍ତ ଜ୍ଞାନବନ୍ତ ଧର୍ମବନ୍ତ ଏହି ॥
ଏମନ୍ତ ଯାହାକୁ କରି ଯାଏ ଅନୁମାନ ।
ଜ୍ୟେଷ୍ଠ ଆଷାଢ଼ ମାସରେ ଯେବେ କେହି ଜନ

ନିର୍ଜଳ ସ୍ଥାନରେ ଜଳଛତ୍ର ଦେଉଥାଇ ।
ବିପ୍ର ଗୋରୁଙ୍କ ନିମନ୍ତେ ଯେ ପ୍ରାଣ ଦିଅଇ ॥
ଏ ଆଦି ପୁଣ୍ୟ କର୍ମରେ ଫଳ ହୁଏ ଯେତେ ।
ଏ ଆଦି ସ୍ୱର୍ଗଖଣ୍ଡକୁ ଯେବେ ଶୁଣି ଚିତ୍ତେ ॥
ସଭାରେ ଶୁଣାଇ କିବା ଆପଣେ ଶୁଣଇ ।
ତହିଁରେ ଏ ସବୁ ଫଳ ତାହାକୁ ମିଳଇ ॥
ଶୁଚିମନ୍ତ ହୋଇ ଯେହୁ ପଢ଼ୁଥାଇ ନିତ ।
ନାନା ସୁଖ ଭୋଗେ ତାର ଯାଏ ଦିନରାତ ॥
ମଲ୍ଲ ବେଳେ ଦିବ୍ୟ ଯାନ ଚଢ଼ଇ ସେ ଜନ ।
ନାରୀଙ୍କ କିଙ୍କିଣୀ ନାଦ କରଇ ଶ୍ରବଣ ॥
ମଧୁର କୋମଳ ବାଣୀ ଶୁଣି ଶୁଣି ଯାଇ ।
ଦେବଇନ୍ଦ୍ରଠାରୁ ଅଧେ ଆସନ ସେ ପାଇ ॥
ବହୁତ କାଳ ସେ ସ୍ୱର୍ଗେ ସୁଖ ଭୋଗ କରି ।
ସୂର୍ଯ୍ୟ ଲୋକରେ ସୁଖରେ ଦିନ କାଳ ହରି ॥
ବହୁତ କାଳ ତହିଁରେ ସେହି ପୂଜା ପାଇ ।
ସେଠାରୁ ପୁଣି ସେ ଚନ୍ଦ୍ର ଲୋକକୁ ଗମଇ ॥
ବହୁତ ଦିନ ସେଠାରେ ପାଇ ସେ ଆଦର ।
ତହୁଁ ସେ ଯାଇ ସପତ ଋଷିଙ୍କର ଘର ॥
ତହିଁ ନାନାସୁଖ ଭୋଗ କରି ଦିନା କେତେ ।
ସେଠାରୁ ଧ୍ରୁବ ଲୋକକୁ ଯାଇ ସେ ତଦନ୍ତେ
ତହିଁ ଗଉରବ ପାଇ ବସେ ବ୍ରହ୍ମ ଲୋକେ ।
ତେତେଜାବନ୍ତ ହୋଇ ବ୍ରହ୍ମଜ୍ଞାନ ପାଇ ଥୋକେ
ସେ ଜ୍ଞାନ ବଳେ ନିର୍ବାଣ ମୁକତି ଲଭଇ ।
ଏ ସଂସାରେ ବୁଦ୍ଧିମନ୍ତ ଜନ ତାକୁ କହି ॥
ସାଧୁ ମେଳେ ସତସଙ୍ଗେ ରହି ଦିନ ହରେ ।
ଉତ୍ତମ ପୁଣ୍ୟ ତୀର୍ଥରେ ନିତ୍ୟ ସ୍ନାନ କରେ ॥
ପୁଣ୍ୟ କଥାରେ ଆଳାପେ ହରୁଥାଇ ଦିନ ।
ଉତ୍ତମ ଶାସ୍ତ୍ର ଶୁଣଇ ଦେଇ ମନ କର୍ଣ୍ଣ ॥
ସେ ମହାଶାସ୍ତ୍ର ଭିତରେ ଏ ପଦ୍ମପୁରାଣ ।
ଧନୁର୍ବେଦ ପଢ଼ିବାର ଫଳ କରେ ଦାନ ॥
ସେ ପଦ୍ମ ପୁରାଣେ ଆଦି ସ୍ୱର୍ଗଖଣ୍ଡ ଏହି ।
ସବୁ ଲୋକଙ୍କର ମହାପୁଣ୍ୟ ଉପୁଜାଇ ॥
ହରିଭକ୍ତି ରସ ସାର ରହିଛି ଏ ଗ୍ରନ୍ଥେ ।
ଗୋବିନ୍ଦ ଗୋବିନ୍ଦ ନାମ ଭଜ ହେ ନିରତେ
କେବଳ ଦେବାଧିଦେବରାୟ ସେହି ହରି ।
ତାଙ୍କ ନମସ୍କାର କରି ଦିବା କି ଶର୍ବରୀ ॥

ପବିତ୍ର ନିର୍ମଳ ପୁରି ପାଇବଟି ଯେବେ ।
ସତ୍ତ୍ୱ ଶୁଦ୍ଧ ବସ ଭାଇ ହରିପାଦ ନାବେ ॥
ଏ ଘୋର ଭବ ସମୁଦ୍ର ଅଥଳ ଅକୂଳ ।
ଲହରୀ ନାହିଁ ଏଥିରେ ନାହିଁ ପୁଣି ଜଳ ॥
ହରି ନାମ ବଳେ ଏକା ଏହୁ ପାରି ତରି ।
ଦ୍ୱିଜ ଗୋପୀନାଥ ମୁଖେ ବୋଲେ ହରି ହରି
ହରି ହରି ବୋଲ ହରି ସବୁ ଦୁଃଖ ହରି ।
ହରି ଚରଣେ ଶରଣ ପଶ ନିରନ୍ତରି ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଆଦି
ସ୍ୱର୍ଗ ମହାତ୍ମ୍ୟ କଥନଂ ନାମ
ଦ୍ୱାତ୍ରିଂଶୋଽଧ୍ୟାୟଃ ।



## ତ୍ରୟସ୍ତ୍ରିଂଶ ଅଧ୍ୟାୟ ।

### କଳିକାଳ ତ୍ରାଣୋପାୟ ।

ପଚାରିଲେ ଶଉନକ ଆଦି ମୁନି ସୂତ ।
ଏହି କଳି କାଳ ଆସି ହେଲା ଉପସ୍ଥିତ ॥
କେଉଁ କର୍ମେ ଜୀବଜନ୍ତୁ ପାଇବେ ଉଦ୍ଧାର ।
ତାହା ଆମ୍ଭଙ୍କୁ ବୁଝାଇ କହ ମୁନିବର ॥
ଏମନ୍ତ ଶୁଣି ବୋଇଲେ ସୂତ ମହାମୁନି ।
ଜାଣିଲି ତୁମ୍ଭେ ସଂସାରେ ଅଟ ମହାଜ୍ଞାନୀ ॥
ଯେଣୁ ସବୁ ଲୋକଙ୍କର ଶୁଭ ବାଞ୍ଛାକାରୀ ।
ତେଣୁ ପୂର୍ବକାଳ କଥା କହୁଛି ବିସ୍ତାରି ॥
ସର୍ବଜ୍ଞ ସର୍ବ ପୂଜିତ ବ୍ୟାସ ମୁନିବର ।
ତାହାଙ୍କ ଶିଷ୍ୟ ଜୈମିନି ନାମେ ଦ୍ୱିଜବର ॥
ସେ ତାଙ୍କୁ ପଚାରି ଥିଲେ ତୁମ୍ଭେ ଯା ପଚାର ।
ବ୍ୟାସ ଦେଇଥିଲେ ତାଙ୍କୁ ଏରୂପେ ଉତ୍ତର ॥
ବଇଷ୍ଣବ ଚୂଡ଼ାମଣି ସେହି ଜଇମିନି ।
ସବୁ ଶାସ୍ତ୍ରର ତତ୍ତ୍ୱକୁ ଜାଣନ୍ତି ସେ ମୁନି ॥
ସତ୍ୟବତୀ ସୁତ ବ୍ୟାସ ପାଦତଳେ ପଡ଼ି ।
ଦଣ୍ଡବତ ହୋଇ ପୁଣି ଉଠି କର ଯୋଡ଼ି ॥
ପଚାରି ଥିଲେ ଏମନ୍ତ ଶୁଣ ମୁନିବରେ ।
ଅତି ଅଳପାୟୁ ହେବେ କଳିକାଳ ନରେ ॥

ଏ କାରଣୁ ପଚାରୁଅଛି ଆହେ ଗୁରୁଦେବ ।
କେଉଁ ଧର୍ମ କର୍ମ କହ ଅଳପକେ ହେବ ॥
ତହିଁରେ ଯେମନ୍ତ ସେହୁ ପାଇବ ମୁକତି ।
ଏ ସନ୍ଦେହକୁ ମୋଚନ କର ମହାମତି ॥
ଏମନ୍ତ ଶୁଣି ବୋଇଲେ ବ୍ୟାସ ମୁନିବର ।
ତତ୍ତ୍ୱକଥା ବୁଝିବାରେ ମନ ଅଛି ତୋର ॥
କହୁଅଛି ମନଦେଇ ଶୁଣ ଜଇମିନି ।
ସାଧୁ ସଙ୍ଗ କରି ଲୋକେ ହୋଇବେ ଶାସ୍ତ୍ର ଜ୍ଞାନୀ
ତହୁଁ ଯେ ହରି ଭକତି ଜନ୍ମିବ ତାଙ୍କର ।
ଭକତିର ବଳେ ଜ୍ଞାନ ହୋଇବ ଅପାର ॥
ସେହି ଜ୍ଞାନବଳେ ଗତି ମୁକତି ପାଇବେ ।
ବିଷ୍ଣୁ ଭକତ ଜାଣନ୍ତି ଏକା ବଇଷ୍ଣବେ ॥
ପାପିଷ୍ଠ ଜନ ଯେତେକ ଏ ମହୀ ମଣ୍ଡଳେ ।
ବିଷ୍ଣୁ ମହିମା ନ ପଶେ ତାଙ୍କ କର୍ଣ୍ଣ ବିଳେ ॥
ପଶିଲେ ଉପହାସରେ ଉଡ଼ାଇ ଦିଅନ୍ତି ।
ନ ଶୁଣନ୍ତି ନ କହନ୍ତି ପୁଣି ନ ପଢ଼ନ୍ତି ॥
ମହାପାପଙ୍କ ମଧ୍ୟରେ ହୁଅନ୍ତି ସେ ଗଣା ।
ଦେଖି ସୁଦ୍ଧା ଜାଣି ଶୁଣି ହେଉଥାନ୍ତି ବଣା ॥
ଶ୍ରୀହରି ଚରଣ ତଳେ ମାନସକୁ ଥୋଇ ।
ବଇଷ୍ଣବ କୃଷ୍ଣକଥା ଆନନ୍ଦେ ଶୁଣଇ ॥
ଶୁଣାଇ ପୁଣ ପଢ଼ଇ ପଢ଼ାଇ ଯତନେ ।
ଅସତ କଥା କୀର୍ତ୍ତନ କରନ୍ତି ଯେ ଜନେ ॥
ପାପିଙ୍କର ଗୁରୁ ବୋଲି ତାହାଙ୍କୁ ଜାଣିବ ।
ଆଉରି ବିପ୍ର କହିବ ଶୁଣ ହରିଭକ୍ତି ଭାବ ॥
ଯହିଁ କୃଷ୍ଣ କଥା ତହିଁ ପ୍ରଭୁ ଜଗନ୍ନାଥ ।
ସେ ସ୍ଥାନ ଛାଡ଼ି ନ ଯାନ୍ତି ସେହି କଦାଚିତ ॥
ଶ୍ରୀକୃଷ୍ଣ କଥା ଆରମ୍ଭ କରିବା ସମୟେ ।
ଯେ ଜନ ତହିଁରେ ବାଧା ବିଘ୍ନ ଜନମାଏ ॥
ଶତମନ୍ୱନ୍ତର ଯାଏ ନର୍କେ ପଡ଼ି ପଚେ ।
ତାହାର ସେହି ଯନ୍ତ୍ରଣା କଦାପି ନ ଘୁଞ୍ଚେ ॥
ପୁରାଣର କଥା ଶୁଣି ଯେ ଜନ ନିନ୍ଦଇ ।
ଆଉରି ତର୍କ ବିତର୍କ ବିବାଦ କରଇ ॥
ନିବା ଉପହାସ କରି ନାନା କଥା କହେ ।
ବହୁକ୍ଲେଶ ନର୍କକୁଣ୍ଡେ ସେହି ପଡ଼ି ରହେ ॥
କୃଷ୍ଣ ଚରିତ ଶୁଣିବା ପାଇଁ ଯାର ମନ ।
ଜନ୍ମ ଜନ୍ମାନ୍ତର ପାପ ହୁଅଇ ଦହନ ॥

ବିଳମ୍ବ ନ ହୁଏ ପୁଣି ଜାଣ ତତକ୍ଷଣେ ।
ଶ୍ରଦ୍ଧା ଭକତିରେ କୃଷ୍ଣ ଚରିତ ଯେ ଶୁଣେ ॥
କେବଣ ଗତି ତାହାର ହୁଏ ନ ଜାଣଇ ।
ସେହି ଯେବେ ମହାପାପୀ ହୋଇ ଥାଇ ॥
ପରସ୍ତ୍ରୀ ହରିଥାଇ ଚୁରି କରି ।
ସୁନାଚୋରି କରି ପୁଣି ଥାଏ ଗୋରୁ ମାରି ॥
ବ୍ରହ୍ମହତ୍ୟା ଆଦି ଯେତେ ପାପ ଗୁରୁତର ।
ସକଳ ତା ଦେହୁଁ ଛାଡ଼ି ହୁଅନ୍ତି ଅନ୍ତର ॥
ଆଗ ପାପ କରି ପଛେ ତହୁଁ ନିବର୍ତ୍ତଇ ।
ଶ୍ରୀକୃଷ୍ଣର ଗୁଣମାନ କୀର୍ତ୍ତନ କରଇ ॥
ଅନଳରେ ତୁଳା ରାଶି ପୋଡ଼ିଗଲା ପ୍ରାୟେ ।
ତାହାର ଦେହର ସବୁ ପାପ ପୋଡ଼ିଯାଏ ॥
ଆହେ ବିପ୍ର କି କହିବି ମୁଁ ତୁମ୍ଭ ଅଗ୍ରତେ ।
ଶ୍ରୀକୃଷ୍ଣ ଚରିତ ଚିତ୍ତ ଲେଖି ତାଳପତ୍ରେ ॥
ଯେ ଜନ ଘରେ ରଖଇ ପୂଜଇ ଆଦର ।
ତାହାକୁ ଦେଖି ଡରନ୍ତି ଯମର କିଙ୍କର ॥
ତାହାର ଘରକୁ ପଶି ନ ପାରନ୍ତି ବଳେ ।
ଦୂରରୁ ଦେଖି ପଳାନ୍ତି ଭୟରେ ବିହ୍ୱଳେ ॥
ଏମନ୍ତ ଶୁଣି ବୋଇଲେ ମୁନି ଜଇମିନି ।
କାହାକୁ ଯେ ବଇଷ୍ଣବ ବୋଲନ୍ତି ସୁଜ୍ଞାନୀ ॥
ଆହେ ଗୁରୁ କହ ସେହି ବୈଷ୍ଣବ ଲକ୍ଷଣ ।
ଆଉରି ତାଙ୍କ ମହିମା କରନ୍ତୁ ବଖାଣ ॥
ବ୍ୟାସ ବୋଇଲେ ହେ ଦ୍ୱିଜ ଶୁଣ ମନଦେଇ
ବୈଷ୍ଣବର ପାଦଜଳ ଯେ ଶିରେ ଘେନଇ ॥
ତହିଁରୁ କିଞ୍ଚିତ ଜଳ କରେ ପୁଣି ପାନ ।
କିପାଁ ସେ କରିବ କଷ୍ଟେ ଯାଇଁ ତୀର୍ଥ ସ୍ନାନ ॥
କ୍ଷଣେ ଅତିଧ ସାଧୁ ସଙ୍ଗ ଯେ ଜନ କରଇ ।
ବ୍ରହ୍ମହତ୍ୟା ଆଦି ପାପ ତାର ନାଶଯାଇ ॥
ଯାହାର କୁଳରୁ ଜଣେ ହୁଏ ବଇଷ୍ଣବ ।
ଯେତେ ପାପୀ ଥାନ୍ତି ତାର କୁଳରେ ଜାଣିବ
ସମସ୍ତେ ମୋକ୍ଷ ହୁଅନ୍ତି ଏହାର ପ୍ରସାଦେ ।
ଯେଜନ ନ ପଡ଼େ ଲୋଭ ମୋହ କାମକ୍ରୋଧେ
ଆଉରି ଦମ୍ଭ ହିଂସାରେ ଯେହୁ ନ ପଡ଼ଇ ।
ପରମ ବୈଷ୍ଣବ ସେହି ଜଗତେ ବୋଲାଇ ॥
ପିତା ମାତାଠାରେ ଯାର ସମାନ ଭକତି ।
ଗୁରୁଜନଙ୍କୁ ଦେଖିଲେ କରଇ ବିନତି ॥

ସକଳ ପ୍ରାଣିଙ୍କ ହିତ କାମନା କରନ୍ତି ।
କରନ୍ତେ ଦୟା ଯାହାର ହୃଦେ ବସିଥାଇ ॥
ମନେ ଗର୍ବ ନ କରଇ କହୁଥାଏ ସତ ।
ବିପ୍ରଙ୍କ ଠାରେ ଭକତ ଥାଇ ଅବିରତ ॥
ପରସ୍ତ୍ରୀଙ୍କ ଦେଖିଲେ ହୁଏ ନପୁଂସକ ।
ସବୁରି ମତେ ବୈଷ୍ଣବ ଅଟଇ ସେ ଲୋକ ॥
ଯେ ଜନ ହରିର ନାମ ଗାଉଥାଇ ବସି ।
ହରିର ଗୁଣ କୀର୍ତ୍ତନ କରେ ଦିବା ନିଶି ॥
ତୁଳସୀ ମାଳା ଧାରଣ କରିଥାଇ ଗଳେ ।
ଦେହ ପବିତ୍ର କରଇ ହରିପାଦ ଜଳେ ॥
ପରମ ବୈଷ୍ଣବ ବୋଲି ତାହାଙ୍କୁ ଜାଣିବ ।
ତୁଳସୀ ପତ୍ର ଗୋଟାଏ କାନେ ଖୋସିଥିବ ॥
କିବା ଘେନିଥିବ ତାହା ଆପଣାର ଶିରେ ।
ଜାଣିବ ବୈଷ୍ଣବ ସେହି ଅଟଇ ଏ ସଂସାରେ ॥
ପାଷଣ୍ଡ ଜନ ସଙ୍ଗରେ ଯେ ସଙ୍ଗୀ ନୁହଇ ।
ବିପ୍ରଙ୍କଠାରେ ଯେ ଦ୍ୱେଷ ହିଂସା ନ କରଇ ॥
ପାଷାଣ୍ଡ ଜନଙ୍କ ସଙ୍ଗେ ନ କରଇ ସଙ୍ଗ ।
ତୁଳସୀ ବୃକ୍ଷକୁ କରେ ଜଳ ଅଭିଷେକ ॥
ତାହାକୁ ବୈଷ୍ଣବ ବୋଲି ଜାଣିବୁ ତୁ ଦ୍ୱିଜ ।
ତୁଳସୀ ପତ୍ରେ ଯେ ପୂଜେ ଦେବ ଦେବରାଜ ॥
କନ୍ୟାଦାନ କରଇ ଯେ ଅତିଥି ପୂଜଇ ।
ବିଷ୍ଣୁ ଚରିତ ଗ୍ରନ୍ଥକୁ ଯେ ନିତ୍ୟ ଶୁଣଇ ॥
ସେ ଜନକୁ ବଇଷ୍ଣବ କହନ୍ତି ହୋ ଜାଣ ।
ଶାଳଗ୍ରାମ ଶିଳାଥାନ୍ତି ଯା ଗୃହରେ ପୁଣ ॥
ହରିଙ୍କ ସ୍ଥାନ ମାର୍ଜନା ଯେ କରଇ ନିତ ।
ପିତୃ ଯଜ୍ଞ କରି ବୋଲି ଲୋକେ ପ୍ରବର୍ତ୍ତାନ୍ତି ॥
ହୀନଜନଠାରେ ଦୟା ଥାଇଟି ଯାହାର ।
ଏହାଙ୍କୁ ଯେ ବଇଷ୍ଣବ କହି ଦ୍ୱିଜବର ॥
ବେଦପାଠେ ଅନୁରକ୍ତ ଯେ ଜନ କରନ୍ତେ ।
ଶ୍ରଦ୍ଧାରେ ହରି ମନ୍ଦିରେ ଦୀପ ଜାଳେ ନିତ୍ୟେ
ପର ନିନ୍ଦା ନ କରଇ ଜାଣ ଦ୍ୱିଜବର ।
ପରମ ବୈଷ୍ଣବ ସେହି ଜଗତ ଭିତର ॥
ସୂତ ମୁନି କହୁଛନ୍ତି ଶଉନକ ଆଗେ ।
ଗୁରୁମୁଖୁ ଶୁଣିଥିଲି କଥାର ପ୍ରସଙ୍ଗେ ॥
ଏରୂପେ ଜୈମିନି ଆଗେ କହିଥିଲେ ବ୍ୟାସ ।
ତାହା ମୁଁ ତୁମ୍ଭ ଆଗରେ କଲଇଁ ପ୍ରକାଶ ॥
ଶ୍ରଦ୍ଧା କରି ଏ ଅଧ୍ୟାକୁ ଯେ ଜନ ଶୁଣଇ ।
ସକଳ ପାପରୁଁ ସେହି ମୁକତ ହୁଅଇ ॥
ବିଷ୍ଣୁର ପରମ ପଦ ପାଇ ସେ ଦେହାନ୍ତେ ।
ହରି ହରି ବୋଲେ ଦ୍ୱିଜ ଗୋପୀନାଥ ନିତ୍ୟେ

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ କଳି-
କାଳ ବ୍ରାହ୍ମଣାଚାର୍ଯ୍ୟ ବର୍ଣ୍ଣନଂ ନାମ
ତ୍ରୟସ୍ତ୍ରିଂଶୋଽଧ୍ୟାୟଃ ।



## ଚତୁସ୍ତ୍ରିଂଶ ଅଧ୍ୟାୟ ।

### ହରିମନ୍ଦିର ଲେପନ ମାହାତ୍ମ୍ୟ ।

ସୂତ ମୁନି କହିଲେ ହେ ଶଉନକ ଶୁଣ ।
ବ୍ୟାସ ଜୈମିନି ସଂବାଦ ପାପ ବିନାଶନ ॥
ଆଉ ଏକ ପୁରାତନ ଧର୍ମ ମୁଁ କହଇ ।
ଜଇମିନି କହିଥିଲେ ହେ ଗୁରୁ ଗୋସାଇଁ ॥
ଏ ଜଗତେ କି କି କର୍ମ କରି ପାପୀନରେ ।
ପଶି ପାରିବେ ଜଗତ ପତିର ମନ୍ଦିରେ ॥
ସେ କଥା ମୋତେ କହନ୍ତୁ ଅନୁଗ୍ରହ କରି ।
ଏମନ୍ତ ଶୁଣି ବୋଇଲେ ବ୍ୟାସ ତପସ୍ୱୀ ॥
ଶ୍ରଦ୍ଧାରେ ହରି ମନ୍ଦିର ଯେ ଜନ ଲିପନ୍ତି ।
ପାପରୁ ମୁକତ ହୋଇ ବଇକୁଣ୍ଠେ ଯାନ୍ତି ॥
ଆହେ ଜଇମିନି ତୁମ୍ଭେ ଶୁଣ ସାବଧାନେ ।
ଜଗତୀ ପତି ମନ୍ଦିର ଲିପନ୍ତି ଯେ ଜନେ ॥
ତାହାଙ୍କର ପୁଣ୍ୟ କେତେ କହି ନ ପାରଇ ।
ଆହେ ଦ୍ୱିଜ ଯେତେ ଧୂଳି ସେ ଗୃହରେ ଥାଇ
ତେତେ ସହସ୍ର କଳପ ବଇକୁଣ୍ଠେ ବସେ ।
ପୁରୁଣା କଥା ଗୋଟାଏ କହୁଛି ତୋ ପାଶେ ॥
ଦ୍ୱାପର ଯୁଗେ ଦଣ୍ଡକ ନାମେ ଥିଲା ଚୋର ।
ମହାଭୟ ଉପୁଜାଇ ଲୋକମାନଙ୍କର ॥
ବ୍ରହ୍ମସ୍ୱ ହରଣକାରୀ ସେ ଚୋର ଅଟଇ ।
ମିତ୍ରକୁ ମାରି ତାହାର ଧନ ହରି ନେଇ ॥
ମିଛ କଥା କହି କରି ଅରଜଇ ଧନ ।
ବଳେ କରିଣ ପରସ୍ତ୍ରୀଙ୍କି କରଇ ଗମନ ॥

ଗୋବ୍ର ମାଂସ ଖାଏ କରି ସ୍ୱଭାବ ତାହାର
ଏହିମତ କାଟୁ ଥାଏ ରଜନୀ ବାସର ॥
ପାଷାଣ୍ଡଙ୍କ ସଙ୍ଗେ ଥାଏ କରି ସୁରାପାନ ।
ଦ୍ୱିଜାତି ନ୍ୟାସ ବିନାଶୀ ନାମକି ହରମ ॥
ଶରଣାଗତ ମାରଣୀ ବେଶ୍ୟାଲମ୍ପଟ ଥିଲା ।
ଦିନେ ସେହି ଚୋର ବିଷ୍ଣୁ ମନ୍ଦିରେ ପଶିଲା ॥
ଶ୍ରୀବିଷ୍ଣୁଙ୍କ ଦ୍ରବ୍ୟ ଚୋରି କରିବା ନିମନ୍ତେ ।
ଦ୍ୱାର ବାଟେ ଯାଇ ଘର ଭିତରେ ପଶନ୍ତେ ॥
ଗୋଡେ଼ ଲାଗିଥିଲା ଯେଉଁ କାଦୁଅ ତାହାର ।
ଘଷି ଦିଅନ୍ତେ ସେ ଭୂମି ଦିଶିଲା ସୁନ୍ଦର ॥
ଦୁଇଗୋଟି ଲୁହାକାଠି ଧରି ସେ ତକ୍ଷଣେ ।
ଦ୍ୱାର୍‌ଖୋଲି ନିଶବଦେ ପଶିଲା ଭବନେ ॥
ସୁନ୍ଦର ଚାନ୍ଦୁଆ ଟଣା ହୋଇଅଛି ତହିଁ ।
ରତ୍ନ ଦୀପ ବସିଅଛି ଧାଡ଼ି ଧାଡ଼ି ହୋଇ ।
କାର୍ପିନ ଦୀପ ଜଳଇ ଆବର ବହୁତ ।
ହୋଇଛି ପୁଣି ତଇଳ ଗନ୍ଧେ ସୁବାସିତ ॥
ଫୁଲ ବାସନାରେ ଘର ମହକ ଉଠଇ ।
ସେ ଗୃହ ଭିତରେ ପଶି ସେ ଚୋର ଦେଖଇ
ରାଧା କୃଷ୍ଣ ଶୋଇଛନ୍ତି ସୁନ୍ଦର ପଲଙ୍କେ ।
ରାଧା ଶୋଭା ପାଉଛନ୍ତି ଶ୍ରୀ ଗୋବିନ୍ଦ ଅଙ୍କେ ॥
ପୀତାମ୍ବରଧାରୀ ସେହି ଦେବ ଯେ ଅଚ୍ୟୁତ ।
ଚରଣ ତଳରେ ପଡ଼ି କଲା ଦଣ୍ଡବତ ॥
ତକ୍ଷଣେ ତା'ଦେହୁ ପାପ ସବୁ ଛାଡ଼ିଗଲା ।
ତହୁଁ ସେ ଚୋର ମନରେ ଏମନ୍ତ ଭାବିଲା ॥
ଏହାଙ୍କୁ ନେବି କିପାଇଁ କି ହେବ ମୋହର ।
ଚୋରି କରିବାରେ ମୁହିଁ ବ୍ୟସ୍ତ ନିରନ୍ତର ॥
ଏହାଙ୍କର ସେବା କରି ନ ପାରିବି ଏଣୁ ।
ନ ନିମନ୍ତେ ଏହାଙ୍କୁ ମୁଁ ନେବି ଜାଣୁ ଜାଣୁ ॥
ଧନ ନେଲେ ସିନା ମୋର କାର୍ଯ୍ୟରେ ଆସିବ
ଏମନ୍ତ ଭାବି ସେ ଚୋର ଦ୍ରବ୍ୟେ କଲା ଲୋଭ
ବିଷ୍ଣୁ ପିନ୍ଧିଲା ବସନ ଖଣ୍ଡିକ ଆଣିଲା ।
ସେ ବସନ ମୂଲ୍ୟ କାହୁଁ ଜାଣିବ ସେ ଭିଲା ॥
ତଳେ ବିଛାଇ ତହିଁରେ ପୂରାଇଲା ଧନ ।
ତହିଁ ଥିବା ସୁନା ରୂପା ଅଳଙ୍କାର ମାନ ॥
ଯତନେ ବାନ୍ଧି ସେ ଚୋର ଆନନ୍ଦ ମନରେ ।
ଝୁଲାଇ ଦିଅନ୍ତେ ଚକ୍ରଧରଙ୍କ ମାୟାରେ ॥
ଟିଣୁ ଟିଣୁ ହୋଇ ଖସି ପଡ଼ିଲା ଭୂତଳେ ।
ଗଣ୍ଠି ଫିଟି ଗଲା ଯହୁଁ ବିଷ୍ଣୁ ମାୟା ବଳେ ॥
ଶୋଇଥିଲେ ଯେତେ ଲୋକ ସେ ଘରକୁ ଜଗି
ତାହାଙ୍କ କର୍ଣ୍ଣେ ପଶନ୍ତେ ଉଠିଲେ ସେ ଜାଗି
ଚୋର ଚୋର ଧର ଧର ପାଡ଼ିଲେ ବୋବାଳି
ଧନ ଛାଡ଼ି ପଳାଇଲା ଚୋର ବୁଦ୍ଧିଶାଳୀ ॥
କିଛି ଦୂର ସେହି ଚୋର ଧାଇଁ ଧାଇଁ ଯାନ୍ତେ
କାଳ ସର୍ପ ଆସି ତାକୁ ଦଂଶିଲା ତୁରନ୍ତେ ॥
ତକ୍ଷଣେ ସେଠାରେ ପଡ଼ି ମଲା ସେହି ଚୋର ।
ବ୍ରହ୍ମରନ୍ଧ୍ରେ ଫୋଟି ଗଲା ବଡ଼ଜ୍ୱାଳା ତାର ॥
ଯମରାଜାର ଆଜ୍ଞାରେ ତାର ଦୂତ ଗଣ ।
ମିଳିଲେ ତକ୍ଷଣେ ପାଶ ମୁଦ୍ଗର ଧରଣ ॥
ଦାନ୍ତ ସବୁ ବଡ଼ ବଡ଼ ମୁଖ ଭୟଙ୍କର ।
କଟୀରେ ତାଙ୍କର ଚର୍ମ ହସ୍ତେ ଚର୍ମ ଡୋର ॥
ତାହାକୁ ସେ ଦଉଡରେ ବାନ୍ଧି ଘେନି ଗଲେ
ଅତି ଦୁର୍ଗମ ପଥରେ କଷ୍ଟ ଦେଇ ନେଲେ ॥
ଯମ ତାହାକୁ ଦେଖିଣ ଅତି କ୍ରୋଧଭରେ ।
ମନ୍ତ୍ରୀ ଚିତ୍ର ଗୁପତଙ୍କୁ ପଚାରିଲେ ଖରେ ॥
ଏହାର କି ପାପ ପୁଣ୍ୟ କହ ମୋତେ ବେଗେ
ଚିତ୍ର ଗୁପତ କହିଲେ ଯମରାଜା ଆଗେ ॥
ବିଧାତା ସର୍ଜି ଅଛଇ ଯେତେକ ପାତକ ।
ସେ ସବୁ ପାପ କରିଛି ଏହି ମୂଢ଼ ଲୋକ ॥
କେବଳ ପୁଣ୍ୟ ଗୋଟିଏ ଅଛି ଯେ ଏହାର ।
ମନଦେଇ ଶୁଣ ଶୁଣ ଧର୍ମ ଅବତାର ॥
ତହିଁରେ ସକଳ ପାପ ହୋଇଛି ଖଣ୍ଡନ ।
ଏହିରୂପେ ମୋର ମନେ ହୁଏ ଅନୁମାନ ॥
ସେ ଧର୍ମ ସକଳ ପାପ ବିଲେପନ କାରୀ ।
ଯମୁନାର ଭାଇ ମନ୍ତ୍ରି ମୁଖୁଁ ଶୁଣି କରି ॥
ଆଶ୍ଚର୍ଯ୍ୟହୋଇ ବୋଇଲେ ଅହୋ ଚିତ୍ରଗୁପ୍ତେ
ଏମନ୍ତ କି ଧର୍ମ ଅଛି କହ ତାହା ମୋତେ ॥
ବୋଇଲେ ଚିତ୍ର ଗୁପତ ଯୋଡି ଦୁଇକର ।
ଆହେ ପ୍ରଭୁ ଏହି ପାପୀ ଅଟେ ବଡ଼ ଚୋର ॥
ବିଷ୍ଣୁ ଦ୍ରବ୍ୟ ଚୋରି କରି ଆଣିବା ନିମନ୍ତେ ।
ଶ୍ରୀ ବିଷ୍ଣୁ ମନ୍ଦିର ଦ୍ୱାର କବାଟ ଫିଟାନ୍ତେ ॥
ଯେଉଁ କାଦୁଅ ଏହାର ଗୋଡେ଼ ଲାଗିଥିଲା ।
ବିଷ୍ଣୁ ଦୁଆର ମୁହଁରେ ତାକୁ ଘଷି ଦେଲା ॥

ତେତେଣେ ସୁନ୍ଦର ଦର୍ଶିଲ ସେ ଦୁଆର ମୁହିଁ ।
ତହିଁରେ ନିଷ୍ପାପ ହେଲ ଏହାର ଯେ ଦେହି
ପାଚ ଗାତ ଯାହା ଥିଲ ବୃଦ୍ଧି ହୋଇ ଗଲ ।
ସେ ପୁଣ୍ୟ ବଳେ ଯା ଦେହେଁ ପାପ ନ ରହିଲ
ଏଣୁ ଏ ପାପିଷ୍ଠ ଦଣ୍ଡ ଦେଇ ନ ପାରିବ ।
ଏ ଧର୍ମିଷ୍ଠ ବଇକୁଣ୍ଠ ପୁରକୁ ଏ ଯିବ ॥
ଚିତ୍ର ଗୁପତର କଥା ଯମରାଜା ଶୁଣି ।
କନକ ଆସନ ତାକୁ ଦେଲେ ସେହିକ୍ଷଣି ॥
ଚରଣେ ପ୍ରଣାମ କରି ତାକୁ ପୂଜା କଲେ ।
ବିନୟ କରଣ ପୁଣି ଏମନ୍ତ ବୋଇଲେ ॥
ତବ ପାଦଧୂଳୀ ପଡ ମୋହର ମନ୍ଦିର ।
ପବିତ୍ର ହୋଇଲା ଆଜି ଯାଅ ବିଷ୍ଣୁପୁର ॥
ଯହିଁ ଜନ୍ମ ମୃତ୍ୟୁ ନାହିଁ ଜରା ବ୍ୟାଧି ନାହିଁ ।
ନାନା ଉପଭୋଗ ଯେଉଁ ପୁରରେ ମିଳଇ ॥
ଏମନ୍ତ କହି ଉତ୍ତମ ବିମାନେ ବସାଇ ।
ବଇକୁଣ୍ଠ ଭୁବନକୁ ଦେଲେ ସେ ପଠାଇ ॥
ଚିର ସୁଖ ପାଇଲ ସେ ବଇକୁଣ୍ଠେ ରହି ।
ଆହେ ଦ୍ୱିଜବର ଆଉ କି କହିବ ମୁହିଁ ॥
ଶରଧାରେ ବିଷ୍ଣୁ ଘର ଲିପଇ ଯେ ନର ।
ତାହାର କି ଗତି ହେବ ମନରେ ବିଚାର ॥
ଶ୍ରଦ୍ଧା ଭକତିରେ ଏହା ଶୁଣଇ ପଢଇ ।
କୋଟି ଜନମର ପାପ ତକ୍ଷଣେ ଖଣ୍ଡଇ ॥
ଦୀନ ଗୋପୀନାଥ ବୋଲେ ବୋଲ ହରି ହରି
ହରି ମନ୍ଦିର ଲିପିଲେ ପାପୁ ଯିବ ତରି ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ହରି
ମନ୍ଦିର ଲେପନ ମାହାତ୍ମ୍ୟଂ
ନାମ ଚତୁସ୍ତ୍ରିଂଶୋଽଧ୍ୟାୟଃ ।



## ପଞ୍ଚତ୍ରିଂଶ ଅଧ୍ୟାୟ ।

### ଦୀପଦାନ ମାହାତ୍ମ୍ୟ ।

ପଚାରିଲେ ଶଉନକ ଆହେ ସୂତ ମୁନି ।
ସବୁ ପୁରାଣ ଶାସ୍ତ୍ରରେ ଅଛ ତୁମ୍ଭେ ଜ୍ଞାନୀ ॥
କାର୍ତ୍ତିକ ବ୍ରତ ମହିମା କହିବା ଗୁଛାଇ ।
ସେ ବ୍ରତ କଲେ ଯେ କି ନ ଫଳ ତହିଁ ପାଇ ॥
ନ କଲେ କି ଦୋଷ ହୁଏ ସେ କଥାଂ କହିବ ।
ସୂତ ବୋଇଲେ ତା ଶୁଣ ହେ ମୁନିପୁଙ୍ଗବ ॥
ପୂର୍ବ କାଳେ ଏକ ଦିନେ ସତ୍ୟବତୀ ସୁତ ।
ବ୍ୟାସମୁନି ନାମରେ ଯେ ଜଗତେ ବିଖ୍ୟାତ ॥
ପଚାରିଥିଲେ ଏ କଥା ମୁନି ଜଇମିନି ।
କହୁଥିଲେ ବ୍ୟାସ ଯାହା ମୁହିଁ ଥିଲି ଶୁଣି ॥
ବହୁତ ପୁଣ୍ୟ ଦିଅଇ କାର୍ତ୍ତିକ ଯେ ମାସ ।
ସେ ପୁଣ୍ୟ ମାସେ ଛାଡଇ ଯେହୁ ମାଛ ମାଂସ ॥
ତଇଳ ଛାଡଇ ପୁଣି ଛାଡେ ମଇଥୁନ ।
ବହୁତ ଜନ୍ମର ପାପ ହୁଅଇ ଦହନ ॥
ସେ ପାପୀ ମୁକତ ହୋଇଁ ବଇକୁଣ୍ଠ ପାଏ ।
ଯେ ନର କାର୍ତ୍ତିକ ମାସେ ମାଛ ମାଂସ ଖାଏ ॥
ନ ଛାଡଇ ମଇଥୁନ ତଇଳ ଆବର ।
ଜନ୍ମେ ଜନ୍ମେ ହେଉ ଥାଇ ଗ୍ରାମର ଶୂକର ॥
କାର୍ତ୍ତିକେ ତୁଳସୀ ପତ୍ରେ ଯେ ବିଷ୍ଣୁ ପୂଜଇ ।
ପତ୍ରେ ପତ୍ରେ ଅଶ୍ୱମେଧ ଯାଗ ଫଳ ପାଇ ॥
କାର୍ତ୍ତିକେ ଯେ ମୁନି ଫୁଲେ ବିଷ୍ଣୁ ପୂଜାକରେ
ମୋକ୍ଷ ହୋଇ ବସଇ ସେ ବଇକୁଣ୍ଠ ପୁରେ ॥
ଦେବଙ୍କୁ ଦୁର୍ଲଭ ଯେଉଁ ଶ୍ରୀବିଷ୍ଣୁ ଭୁବନ ।
ଶ୍ରୀହରି କୃପାରେ ତହିଁ କରଇ ଗମନ ॥
ମୁନି ଶାଗ କାର୍ତ୍ତିକରେ ଯେ ନର ଭକ୍ଷଇ ।
ବରଷକ ପାପ ତାର କ୍ଷଣକରେ ଯାଇ ॥
କାର୍ତ୍ତିକ ମାସ ହରିର ଅଟଇ ଅତି ପ୍ରିୟ ।
ଶ୍ରଦ୍ଧାରେ ଯେ ମୁନି ଫଳ କରଣ ସଞ୍ଚୟ ॥
ଶ୍ରୀହରିଙ୍କ ନିବେଦନ କରି ତାହା ଖାଇ ।
କୋଟି ଜନମର ପାପ କ୍ଷଣକରେ ଯାଇ ॥
ଘୃତ ମିଶାଇ ସୁରସ ଦ୍ରବ୍ୟ ଭକତରେ ।
ହରି ପାଦେ ନିବେଦନ କରେ କାର୍ତ୍ତିକରେ ॥
ସବୁ ପାପୁ ମୁକ୍ତ ହୋଇ ବଇକୁଣ୍ଠେ ବସେ ।
ଏକ ପଦ୍ମଫୁଲ ଦେଲେ ବିଷ୍ଣୁଙ୍କୁ ସେ ମାସେ ॥
ପାପୁଁ ମୁକ୍ତ ହୋଇ ଅନ୍ତେ ବିଷ୍ଣୁପଦଂ ପାଇ ।
ପ୍ରାତଃ ସ୍ନାନ କାର୍ତ୍ତିକରେ ଯେ ଜନ କରଇ ॥
ସବୁ ତୀର୍ଥ ସ୍ନାନ ଫଳ ପାଇଂ ସେହୁ ନର ।
ଯେ ଜନ କାର୍ତ୍ତିକ ମାସେ ଜାଣି ଦ୍ୱିଜବର ॥

ଆକାଶେ ଦୀପ ଦିଅଇ ତାହାର ଶରୀରେ ।
ବ୍ରହ୍ମହତ୍ୟା ଆଦି ପାପ ଛାଡ଼ି ଯାନ୍ତି ଦୂରେ ॥
ଅନ୍ତେ ହରି ମନ୍ଦିରକୁ କରଇ ଗମନ ।
ବିଷ୍ଣୁ ପ୍ରୀତି କାମନାରେ କାର୍ତ୍ତିକେ ଯେ ଜନ ॥
ମୁହୂର୍ତ୍ତେକ ଦୀପ ଜାଳେ ବସି ଭକତିରେ ।
ସର୍ବଦା ହରି ପ୍ରସନ୍ନ ଥାନ୍ତି ତା ପ୍ରତିରେ ॥
ଯେ କାର୍ତ୍ତିକେ ବିଷ୍ଣୁ ଗୃହେ ଜାଳେ ଘୃତଦୀପ ।
ତା ଦେହୁ ଛାଡ଼ି ପଳାଇ ଯାନ୍ତି ସବୁ ପାପ ॥
ଦିନେ ଦିନେ ଅଶ୍ୱମେଧ ଫଳକୁ ସେ ପାଏ ।
ତାର କଥା ଇତିହାସ ଶୁଣ ତାହା କହେ ॥
ମନ ଦେଇ ଶୁଣ ତାହା ଆହେ ଦ୍ୱିଜବର ।
ସେ କଥା ଗୋଟା ଅଟଇ ତ୍ରେତୟା ଯୁଗର ॥
ଯାହା ସଙ୍ଗ ଯୋଗୁ ମହା ପାପୀ ମୁକ୍ତ ପାଇ ।
ଶୁଚିମନ୍ତ ଦ୍ୱିଜ ଏକ ଘର କରି ଥାଇ ॥
ବୈକୁଣ୍ଠ ନାମ ତାହାର ସେ ଏକ ସମୟେ ।
କାର୍ତ୍ତିକ ମାସରେ ହରି ଆଗେ ଦୀପ ଦିଏ ॥
ଘୃତରେ ପୂର୍ଣ୍ଣ କରିଣ ସେ ଦୀପ ଜାଳଇ ।
ସେ ଦିନ ଆପଣା ଗୃହେ ଗଲା ରଖିଦେଇ ॥
ଦୀପ ଘିଅ ଖାଇବାକୁ ଆସି ଏକ ମୂଷା ।
ଆସଇ ପୁଣି ପଳାଇ ଖୋଜଇ ସେ ଲସା ॥
ଏଣିକି ତେଣିକି ଗୃହେଁ ବିଗିଡର ତଳେ ।
ଦୀପେ ମୁଖ ଲଗାଇଲା ମୂଷା ଡରି ଡରେ ॥
ବଳିତା ତେଜ ଉଠିଲେ ହଲି ଚଳି ହୋଇ ।
ଉଜ୍ଜ୍ୱଳ ହୋଇ ସେ ଦୀପ ଜଳିଣ ଉଠଇ ॥
ଘୃତ ନ ପିଇ ପଳାଇ ଗଲା ଅଗ୍ନି ଭୟେ ।
ହରି କୃପାରେ ତା ପାପ ସବୁ ଗଲା କ୍ଷୟେ ॥
ପଳାଇ ଆସୁ ତାହାକୁ ସାପ ଦେଲା ଗିଳି ।
ଯମ ଆଜ୍ଞାରେ ସେଠାରେ ଯମ ଦୂତେ ମିଳି ॥
ପାଶ ମୁଦ୍ଗର ତାଙ୍କର ହସ୍ତେ ବିରାଜଇ ।
ବାନ୍ଧିବା ପାଇଁ ଯାଆନ୍ତେ ଦଉଡ଼ୀ ଦିଶାଇ ॥
ଏସମୟେ ବିଷ୍ଣୁ ଦୂତେ ଭେଟିଲେ ତାହାଙ୍କୁ ।
ପାଶ ଛଡ଼ାଇ ପକାଇ ଦେଲେ ସେ ଜନକୁ ॥
ବିଷ୍ଣୁ ଦୂତେ ବହିଛନ୍ତି ଭୁଜ ଚାରି ଚାରି ।
ସେ ସମସ୍ତେ ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ॥
ଗରୁଡ଼ ଚଢ଼ି ସେଠାରେ ହୋଇଛନ୍ତି ବିଜେ ।
ତାଙ୍କ ସହିତେ ଶୋଭଇ ବିମାନ ବିରାଜେ ॥
ଦିବ୍ୟହଂସ ଯୋଗ୍ୟ ହୋଇଛନ୍ତି ସେ ବିମାନେ ।
ଇଚ୍ଛା ଅନୁସାରେ ଯାଇ ପାରଇ ଗଗନେ ॥
ସେ ବିମାନ ହୋଇ ଅଛି କନକେ ସୁନ୍ଦରୀ ।
ଯମ ଦୂତଙ୍କୁ ସେ ଦୂତେ କହିଲେ ଏ ବାଣୀ ॥
ବିଚାର ନାହିଁ ତୁମ୍ଭର ତୁମ୍ଭେ ଅତି ମୂଢ଼ ।
ଧର୍ମର ଯେ ତତ୍ତ୍ୱ ତାହା ଅଟଇ ଅତି ଗୂଢ଼ ॥
ବିଷ୍ଣୁର ଭକତକୁ ରେ ବାନ୍ଧିଲ କିପାଇଁ ।
ବଞ୍ଚିବାକୁ ଆଶାଥିଲେ ବେଗେ ଯା ପଳାଇ ॥
ଶୁଣି ଯମ ଦୂତଙ୍କର ଥରିଲା ସର୍ବାଙ୍ଗ ।
ବିନୟ କରି କହିଲେ ଯୋଡ଼ି କର ଯୁଗ ॥
କି ପୁଣ୍ୟ କଲାରୁ ତୁମ୍ଭେ ନିଅ ବିଷ୍ଣୁପୁରେ ।
ଚାଲ କାହୁଁ ଏ ଇନ୍ଦୁର ମହା ପାପ କରେ ॥
ଦେବତା ବିପ୍ର ମାନଙ୍କୁ ଅଇଁଠା ଖୁଆଇ ।
ଖାଇବା ପାଇଁକି ଯାହା ପ୍ରାଣୀ ସଞ୍ଚିଥାଇ ॥
ତାହା ସବୁ ଚୋରିରେ ଏ କାଟି କରେ ଶେଷ ।
ତେଣୁ ଏ ପାପୀକି ନେଉ ଆମ୍ଭେ ବାନ୍ଧି କରି ॥
ବିଷ୍ଣୁ ଦୂତେ ବୋଇଲେ ହୋ ଶୁଣ ଯମଦୂତେ
ଘୃତ ଦୀପ ଜଳୁଥିଲା ଶ୍ରୀବିଷ୍ଣୁ ଅଗ୍ରତେ ॥
ସେ ଦୀପ ତେଜ ଦେଇଛି ଏ ଇନ୍ଦୁର ଗୋଟି
ଏହା ଦେହେ ଥିଲା ଯେଉଁ ପାପ କୋଟିକୋଟି
ସେ ସବୁ ଦଗ୍ଧ ହୋଇଲା ଏହାର ତକ୍ଷଣେ ।
ଏଣୁ ବଇକୁଣ୍ଠେ ନେବୁ ଆମ୍ଭେ ବିଷ୍ଣୁଗଣେ ॥
ଶ୍ରଦ୍ଧାରେ ବା ଅଶ୍ରଦ୍ଧାରେ ଯେବେ କେହି ଜନ
ବିଷ୍ଣୁର ଦୀପ ବଳିତା ତେଜଦିଏ ଜାଣ ॥
କୋଟି ଜନମର ପାପ ତାର ଛାଡ଼ିଯାଇ ।
ଅନ୍ତଃକାଳେ ବଇକୁଣ୍ଠ ପୁରକୁ ସେ ଯାଇ ॥
କାର୍ତ୍ତିକ ମାସରେ କିବା ଏକାଦଶୀ ଦିନେ ।
ଭକତିରେ ବିଷ୍ଣୁଙ୍କୁ ଯେ ତୋଷେ ଦୀପଦାନେ
ହରି ଏକା ତାର ପୁଣ୍ୟ କହିବାକୁ କ୍ଷମ ।
ଆହେ ଯମଦୂତେ ସେହି ପୁଣ୍ୟ ଯେ ଅସୀମ ॥
ଭକତିରେ ଯେଉଁଜନ ଶ୍ରୀହରି ମନ୍ଦିରେ ।
ଘୃତ ପୂର୍ଣ୍ଣକରି ଦୀପ ଜାଳି ଦାନକରେ ॥
ସହସ୍ର ଅଶ୍ୱମେଧ ସେ କରିବ କିପାଇଁ ।
ଅଶ୍ୱମେଧ ଯଜ୍ଞକଲେ ଇନ୍ଦ୍ରଲୋକ ପାଇ ॥
ଯେ ଜନ କାର୍ତ୍ତିକ ମାସେ ଶ୍ରୀହରି ମନ୍ଦିରେ ।
ଘୃତ ଦୀପ ଜାଳେ ବସି ଶ୍ରଦ୍ଧା ଭକତିରେ ॥

ବଇକୁଣ୍ଠ ନଗର ପାଇ ଏଣୁ ଏ ଅଧିକ ।
ଏଥା ଶୁଣି ଯମଦୂତେ ଗଲେ ଯମଲୋକ ॥
ବିଷ୍ଣୁଦୂତେ ତାଙ୍କୁ ସେହି ବିମାନେ ବସାଇ ।
ବଇକୁଣ୍ଠ ଭୁବନକୁ ତହୁଁ ଘେନି ଯାଇ ॥
ହରି କୃପାରେ ସେ ପୁଣି ରାଜକନ୍ୟା ହୋଇ ।
ଇନ୍ଦ୍ର ନାରୀ ହୋଇ ମହାସୁଖ ଭୋଗ କଲା ॥
ହରିର ସେବା ମହିମା ବଳେ ପୁଣି ପାଇ ।
ଅନ୍ତକାଳରେ ଗୋଲୋକ ଭୁବନ ସେ ଯାଇ ॥
ଏ ଦୀପଦାନ ମାହାତ୍ମ୍ୟ ଶୁଣଇ ଯେ ଜନ ।
ପାପ ଛଡ଼ାଇ ବୈକୁଣ୍ଠେ କରଇ ଗମନ ॥
ଦୀନ ଗୋପୀନାଥ ବୋଇଲ ବୋଲ ହରି ହରି
ଦୀପଦାନ କରି ଭବସିନ୍ଧୁ ଯାଅ ତରି ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ଦୀପଦାନ ମାହାତ୍ମ୍ୟଂ ନାମ
ପଞ୍ଚତ୍ରିଂଶୋଽଧ୍ୟାୟଃ ।



## ଷଟ୍‌ତ୍ରିଂଶ ଅଧ୍ୟାୟ ।

### ଜୟନ୍ତୀ ବ୍ରତ ମାହାତ୍ମ୍ୟ ।

ପଚାରିଲେ ଶଉନକ ଆହେ ମୁନି ସୂତ ।
ଲୋକେ କରନ୍ତି ଜୟନ୍ତୀ ନାମେ ଯେଉଁ ବ୍ରତ
ତାହାର ମହିମା କେତେ କରନ୍ତି କପାଇଁ ।
ଯେଣୁ ସେ ବ୍ରତ ସଂସାର ଶୋଷଣ ଅଟଇ ॥
ଏମନ୍ତ ଶୁଣି ବୋଇଲେ ସୂତ ମୁନିବର ।
କହୁଅଛି ଶୁଣ ତୁମ୍ଭେ ମହିମା ତାହାର ॥
ଯାହା ତୁମ୍ଭେ ପଚାରିଲ ହେ ମୁନି ପୁଙ୍ଗବ ।
ପୂର୍ବେ ସଭାକରି ବସିଥିଲେ ଯେ ବାସବ ॥
ତେତିଶ କୋଟି ଦେବତା ବ୍ରହ୍ମାଙ୍କ ସହିତେ ।
ସେ ସଭାରେ ବସିଥିଲେ ଦେବଲୋକ ଯେତେ
ଋଷି ମୁନି ଥିଲେ ତହିଁ ସେ ଅମରପୁରେ ।
ପଚାରିଥିଲେ ନାରଦ ବ୍ରହ୍ମାଙ୍କ ଛାମୁରେ ॥
ବ୍ରହ୍ମା କହିଥିଲେ ଯାହା ଶୁଣିଥିଲି ମୁହିଁ ।
ତାହା କହୁଅଛି ତୁମ୍ଭେ ଶୁଣ ମନଦେଇ ॥

ଜୟନ୍ତୀ ଉପବାସରେ ବିଷ୍ଣୁଲୋକ ପାଇ ।
ଜୟନ୍ତୀ ବ୍ରତକୁ ଯେହୁ ମହିନ ସ୍ମରଇ ॥
ଜୟନ୍ତୀ ଜୟନ୍ତୀ ବୋଲି ଯେ କରଇ କୀର୍ତ୍ତନ ।
ସପ୍ତ ଜନମର ପାପ ହୁଅଇ ଦହନ ॥
ଉପବାସ କଲା ଲୋକ କଥା କି କହିବ ।
ଜନ୍ମ ତାର ନାହିଁ ପାଏ ବିଷ୍ଣୁର ଛାଇବା ॥
ଷଡ଼ ଜୟନ୍ତୀ କାହାକୁ ବୋଲନ୍ତି ତା ଶୁଣ ।
ଚୈତ୍ରମାସ ଶୁକ୍ଳପକ୍ଷ ନବମୀ ଯେ ଜାଣ ॥
ରାମ ନବମୀ ତାହାକୁ ସମସ୍ତେ କହନ୍ତି ।
କେହି ସେହି ନବମୀକୁ କହନ୍ତି ବାସନ୍ତୀ ॥
ଫଗୁଣର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ତିଥି ।
ଶିବ ଚତୁର୍ଦ୍ଦଶୀ ବୋଲି ଯାହାକୁ କହନ୍ତି ॥
ବଇଶାଖ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ ।
ଦୁର୍ଗା ଅଷ୍ଟମୀ ଯେ ପୁଣି ମାସର ଆଶ୍ୱିନ ॥
ଶ୍ରବଣା ନକ୍ଷତ୍ର ଯୁକ୍ତ ଶୁକଳ ଦ୍ୱାଦଶୀ ।
ଏ ଷଡ଼ ତିଥି ଜୟନ୍ତୀ ବୋଲି ଲୋକେ ଘୋଷି
ଏ ଷଡ଼ ଜୟନ୍ତୀ ମହାପୁଣ୍ୟକୁ ଦିଅଇ ।
ଅତି ଶୁଭଫଳପ୍ରଦ ବୋଲି ଲୋକେ କହି ॥
ଯେତେକ ଜୟନ୍ତୀ ବ୍ରତ ଅଛି ତା ଭିତରେ ।
କୃଷ୍ଣବଲ୍ଲଭ ଜୟନ୍ତୀ ସାର ମୁନିବରେ ॥
କୃଷ୍ଣ ଜନ୍ମାଷ୍ଟମୀ ବୋଲି ତାହାକୁ କହନ୍ତି ।
ପାପନାଶିନୀ ନାମରେ ଲୋକେ ତା ବିଖ୍ୟାତି ॥
କୋଟି ଯଜ୍ଞଫଳ ଦିଏ ଏ ଜୟନ୍ତୀ ବ୍ରତ ।
ଯେଉଁ ଫଳ ପାଇ କଲେ ଅଯୁତେକ ତୀର୍ଥ ॥
ସୁବର୍ଣ୍ଣ ସହସ୍ର ଦାନକଲେ ନିତି ନିତି ।
ଯେଉଁ ଫଳମାନ ହୁଏ ଜାଣ ତୁମ୍ଭେ ଯତି ॥
ଜୟନ୍ତୀ ଉପବାସରେ ସେ ଫଳ ମିଳଇ ।
ସୂର୍ଯ୍ୟ ଗ୍ରହଣ କାଳରେ କୁରୁକ୍ଷେତ୍ରେ ଯାଇ ॥
ସହସ୍ର ଭାର ସୁବର୍ଣ୍ଣ ଦାନର ଯେ ଫଳ ।
ଜୟନ୍ତୀ ଉପବାସର ଜାଣ ସେହିଫଳ ॥
କୃଷ୍ଣମୃଗ ସହସ୍ରେକ ଦାନେ ଫଳ ଯେତେ ।
ସେ ଫଳ ମିଳେ ଜୟନ୍ତୀ ଉପବାସ ବ୍ରତେ ॥
ଶତ ଶତ ଧେନୁଦାନେ ଯେ ଫଳ ମିଳଇ ।
ଜୟନ୍ତୀ ଉପବାସରେ ସେହି ଫଳ ପାଇ ॥
ବାପୀ କୂପ ତଡ଼ାଗାଦି ପୋଖରୀ ଖୋଳିଲେ ।
ଦେବତା ଆପିଲେ ପୁଣି ଦେଉଳ ତୋଳିଲେ

ଏ ସବୁ କର୍ମରେ ପୁଣ୍ୟହୁଏ ଯେତେ ଯେତେ
ସେ ଫଳ ପାଇ ଜୟନ୍ତୀ ଉପବାସ ବ୍ରତେ ॥
ପିତା ମାଆ ଗୁରୁଜନ ସେବାରେ ଯେ ଫଳ ।
ଜୟନ୍ତୀ ଉପବାସରେ ସେ ଫଳ ସକଳ ॥
ସାଗର ସହିତ ମହୀଦାନେ ଫଳ ଯେତେ ।
ସେ ଫଳ ମିଳେ ଜୟନ୍ତୀ ଉପବାସ ବ୍ରତେ ॥
ଯେ ଫଳ ପାଇ ସହସ୍ର କୋଟି କନ୍ୟାଦାନେ ।
ସେ ଫଳ ପାନ୍ତି ଜୟନ୍ତୀ ଉପବାସୀ ଜନେ ॥
ସମୂଳେ ସବୁ ଆପଦ କର୍ମ୍ମଫଳ ପାଇବ ।
ଏମନ୍ତ ଫଳ ଯେ ତୀର୍ଥ ବ୍ରତକୁ କରିବ ।
ଆଉର ଯେ ସବୁଲୋକ ସତ୍ୟ ବ୍ରତାଶ୍ରୟୀ ।
ତହିଁରେ ତାଙ୍କର ଯେତେ ଫଳ ତପସ୍ୱୀ ॥
ସେ ସବୁ ଫଳ ମିଳଇ ଏ ଜୟନ୍ତୀ ବ୍ରତେ ।
ଏ କଥା ଗୋଟିକ ତୁମ୍ଭେ ରଖିଥିବ ଚିତ୍ତେ ॥
ଗଙ୍ଗା ଯମୁନା ନର୍ମଦା ସରସ୍ୱତୀ ସ୍ନାନେ ।
ଯେଉଁ ସବୁ ପୁଣ୍ୟଫଳ ପାନ୍ତି ସାଧୁଜନେ ॥
ଜୟନ୍ତୀ ଉପବାସରେ ସେହି ଫଳ ପାଇ ।
ଚନ୍ଦ୍ରକ୍ଷୟ ଦିନ ଶ୍ରାଦ୍ଧ ଯେ ଜନ କରଇ ॥
ଯେତେକ ଫଳ ହୁଅଇ ତହିଁରେ ତାହାର ।
ସେ ଫଳ ଜୟନ୍ତୀ ଉପବାସେ ନୃପବର ॥
ନାରଦ ମୁନି କହିଲେ ଆହେ ପିତାମହ ।
ପୂର୍ବେ କିଏ କରିଛନ୍ତି ତାହା ତୁମ୍ଭେ କହ ॥
ବ୍ରହ୍ମା ବୋଇଲେ ଯେ କାର୍ତ୍ତବୀର୍ଯ୍ୟ ନରପତି ।
ବୁଦ୍ଧିମନ୍ତ କୁମାର ଯେ କର୍ଣ୍ଣ ସେନାପତି ॥
ସଗର ଦିଲୀପ ରାଜା କାକୁସ୍ଥ ଆଉର ।
ଗଉତମ ବାଲ୍ମୀକି ଗର୍ଗ ମୁନିବର ॥
ଦ୍ରୁପଦାଦ୍ୟ ଯେ ପୁଣି ଜାମଦଗ୍ନ୍ୟ ମୁନି ।
ଆଉର ଶୁଣ ନନ୍ଦୁଛି ହେ ନାରଦ ଜ୍ଞାନୀ ॥
ଭାଦ୍ର ଶୁକଳ ଅଷ୍ଟମୀ ତିଥି ଯେ ଜୟନ୍ତୀ ।
ରାଧା ଜନ୍ମାଷ୍ଟମୀ ବୋଲି ଯାହାକୁ କହନ୍ତି ॥
ସେ ଉପବାସ ବ୍ରତର ମହିମା ହୋ ଶୁଣ ।
ଯାହା ସେ ମନେ ବାଞ୍ଛଇ ତାହା ହୋଏ ପୂର୍ଣ୍ଣ ॥
ବିଷ୍ଣୁ ପ୍ରୀତି ଅର୍ଥେ ବ୍ରତ ବର୍ଷ ତା କରିବ ।
କୋଟି ଜନମର ପାପ ମୁହୂର୍ତ୍ତକେ ଯିବ ॥
ଯତି ନିଷ୍ଠାପର ହୋଇ ରାତ୍ର ଉଜାଗରେ ।
ଗନ୍ଧ ପୁଷ୍ପ ନଇବେଦ୍ୟ ଦେଇ ପୂଜା କରେ ॥
ଏରୂପେ କଲେ ମାନବେ ଏ ଜୟନ୍ତୀ ବ୍ରତ ।
ଅଜ୍ଞାନ କୃତ ହେଉ ବା ହେଉ ଜ୍ଞାନ କୃତ ॥
ଦେବକୀ ସୁତ ପ୍ରସାଦେ ମଣିଷେ ତାହାର ।
ମୁକ୍ତ ପାଇ ସବୁ ପାପ କୋଟି ଜନମର ॥
ଜୟନ୍ତୀ ତିଥିରେ କରେ ଯେ ଅନ୍ନ ଭୋଜନ
ନରଙ୍କ ମଧ୍ୟେ ଅଧମ ଅଟଇ ସେ ଜନ ॥
ତିନି ଭୁବନର ପାପ ତା ସଙ୍ଗେ ଭ୍ରମଇ ।
ସାଗର ଆଦି ଯେ ତୀର୍ଥ ପୁଣ୍ୟ ଫଳ ଦେଇ ॥
ମୁକ୍ତିର ସ୍ଥାନ ଯେତେକ ଅଛଇ ଆଉର ।
ଜୟନ୍ତୀ ବ୍ରତ ଉପାସ କରନ୍ତି ଯେ ନର ॥
ନିରତେ ସେ ସବୁ ରହିଥାନ୍ତି ତାର ଘରେ ।
କୃଷ୍ଣ ବଲ୍ଲଭ ଜୟନ୍ତୀ ବ୍ରତ ଯେହୁ କରେ ॥
ସବୁ ଦେବତା ସକଳ ତୀର୍ଥ ତାର ଦେହେ ।
ଆଉର ନିରତେ ରହିଥାନ୍ତି ତାର ଗୃହେ ॥
ବେଦରେ କିବା ପୁରାଣେ ଦେଖି ନାହିଁ କାହିଁ ।
କୃଷ୍ଣାଷ୍ଟମୀ ବ୍ରତ ତୁଲ୍ୟ ଅଧିକ ବା ନାହିଁ ॥
କୃଷ୍ଣ ରାଧାଷ୍ଟମୀ ବ୍ରତ ସବୁହିଁ ଅଧିକ ।
ଭକତିରେ ନ କରଇ ଯେବେ କେହି ଲୋକ
ସେ କୁରୂରଗ୍ରାସ ହୁଏ ଜାଣ ଦ୍ୱିଜବର ।
ଜୟନ୍ତୀ ଦିନେ ଯେ ଭୁଞ୍ଜେ ସେହି ମୂଢ ନର
ଏକାଦଶୀରେ ଭୋଜନ କଲି ପ୍ରାୟ ସେହି ।
ମହାନରକ ସକଳ ଭୁଞ୍ଜେ ତାର ଦେହି ॥
ଜୟନ୍ତ ଦିନେ ଭୋଜନ କଲି ଲୋକଙ୍କର ।
ଏକ ଉତ୍ତର ଶତେକ କୁଳ ଯେ ତାହାର ॥
ଗଲେଣି ପୁଣି ହୋଇବ ସେ ସବୁ ସମସ୍ତେ ।
ନର୍କେପଡ଼ି ଦୁଃଖ ପାଉଥିବେ ନାନା ମତେ ॥
ସେ ଜୟନ୍ତୀ ବ୍ରତ ଯେବେ ପଡ଼େ ବୁଧବାରେ
ରୋହିଣୀ ନକ୍ଷତ୍ର ମତେ ପୁଣି ସେ ଦିନରେ ॥
ଆଉ ସେ କୋଟିଏ ବ୍ରତ କରିବ କପାଇଁ ।
ସେ ସମସ୍ତ ବ୍ରତ ଫଳ ସେ ଦିନରେ ପାଇ ॥
ଯୁଗେ ଯୁଗେ ଏ ଜୟନ୍ତୀ ବ୍ରତହିଁ ପ୍ରଶସ୍ତେ ।
ସବୁ ଯୁଗେ ସବୁ ପାପ କରଇ ନିହତ ॥
କୃଷ୍ଣଜନ୍ମାଷ୍ଟମୀ ଦିନ ରହି ଉଜାଗରେ ।
ପୁରାଣ ପଢ଼ଇ ଯେବେ ଶ୍ରଦ୍ଧା ଭକତିରେ ॥
ଆଜନମ ପାପ ଦହେ ତୁଳାରାଶି ପ୍ରାୟ ।
ଯେ ତାକୁ ପୂଜେ ତାହାର ପାପକୁ ନ ଭୟ ॥

ସେ ଦିନ ପୁରାଣ ପଢ଼ିଥିବା ଲୋକଙ୍କୁ ଯେ ।
ଗନ୍ଧ ପୁଷ୍ପ ଧନ ରତ୍ନ ଦେଇ ପାଦ ପୂଜେ ॥
କୋଟିକୁଳ ଉଦ୍ଧାରି ସେ ବିଷ୍ଣୁପୁରେ ଯାଇ ।
ଇହ ଲୋକେ ଯେ ଜୟନ୍ତୀ ବ୍ରତ ନ କରଇ ॥
ଧର୍ମଛଡ଼ା ହୋଇ ସେହି ନରକେ ପଡ଼ଇ ।
ଗନ୍ଧ ପୁଷ୍ପ ଧୂପ ଘୃତ ପୂର୍ଣ୍ଣ ଦୀପ ଦେଇ ॥
ପୁରାଣ ପଢ଼ା ବିପ୍ରଙ୍କୁ ପୂଜଇ ଭକ୍ତିରେ ।
ପୁରାଣ ପାଠ ଦକ୍ଷିଣା ଦିଏ ତାହା କରେ ॥
ଏକୋଇଶ ପୁରୁଷଙ୍କୁ ତାରଇ ସେ ଜନ ।
ଦୁର୍ଭାଗ୍ୟ ନ ଛୁଅଇଁ ଯେ ତାହାର ସଦନ ॥
କଳି ନ ଲାଗେ ତା ଘରେ ବିଧବା କେ ନୋହି
ପୁତ୍ର ନାତି ଧନ ଧାନ୍ୟ ପୂର୍ଣ୍ଣ ତାର ଗୃହେ ॥
କଦାପି ତାର କାମନା ବିଫଳ ନୁହଇ ।
ମରଣାନ୍ତେ ବିଷ୍ଣୁଲୋକେ ଗମନ କରଇ ॥
କୃଷ୍ଣଚନ୍ଦ୍ର ମନ ରଖି ମନାସିଲେ ବ୍ରତ ।
ଜଗତେ ସେ କୁଳବନ୍ତ ଈଶ୍ୱର ପଣ୍ଡିତ ॥
ଯେ ସବୁ ଅଛି ନିୟମ ତୀର୍ଥ ବ୍ରତ ଯେତେ ।
ଜୟନ୍ତୀ ଷୋଳ କଳାରୁ କଳାଏ ସହିତେ ॥
ତୁଳନା ନୋହିବ କେବେ ଶୁଣ ହେ ବିପ୍ର ।
ଦ୍ୱାଦଶ ବେଳା ଅଷ୍ଟମୀ ଫଳ ସମକଛ ॥
ରାଧା କୃଷ୍ଣଜନ୍ମାଷ୍ଟମୀ ବ୍ରତ ଯେ କରଇ ।
ପତ୍ନୀ ସହିତ ସେ ଦିନ ଉପାସେ ରହଇ ॥
ହରି ସନ୍ନିଧାନେ ନିତ୍ୟ ରହନ୍ତି ସେ ବେଳା ।
ଯେ ଜନ ଜୟନ୍ତୀ ବ୍ରତ କରି ପାରି ପୁଣି ॥
ଅନ୍ୟ ବ୍ରତ ଉପବାସ ଆଦି ଯେ କରଇ ।
ଶ୍ରୀ ବିଷ୍ଣୁର ବଇକୁଣ୍ଠ ପୁରେ ସେ ଗମଇ ॥
କୃଷ୍ଣବଲ୍ଲଭ ଜୟନ୍ତୀ ବ୍ରତର ଏ ଗୁଣ ।
ଅନାଶ୍ରୟୀ କୁଳଛଡ଼ା କୁଯୋନିଜଜନମ ॥
ଅଗ୍ନିଦାହୀ ଆବର ପାପୀଜନ ଯେତେ ।
ବଇକୁଣ୍ଠପୁର ଯାନ୍ତି ଏ ଦେହର ଅନ୍ତେ ॥
ବ୍ରହ୍ମହତ୍ୟା ଆଦି ପାପ ମେରୁ ତୁଲ୍ୟ ଯାର ।
ଜୟନ୍ତୀ ଉପବାସରେ ପୋଡ଼ି ଯାଏ ତାର ॥
ଜୟନ୍ତୀ ବ୍ରତ କରିବା ପାଇଁ ଯାର ମନ ।
ଯମ ରାଜା ଡରୁଥାନ୍ତି ତାଙ୍କୁ ନିତି ଦିନ ॥
ଦେହାନ୍ତେ ପରମ ଗତି ତାହାଙ୍କୁ ମିଳଇ ।
ସୂତ କହିଲେ ହେ ବିପ୍ର ଶୁଣ ମନ ଦେଇ ॥
ନାରଦଙ୍କୁ କହି ବ୍ରହ୍ମା ଗଲେ ନିଜପୁରେ ।
ସବୁ ବୁଝାଇ କହିଲୁଁ ତୁମ୍ଭ ଅଗ୍ରତରେ ॥
ଜୟନ୍ତୀ ବ୍ରତ ମହିମା ଶୁଣଇ ଯେ ଜନ ।
ପାପ ଛଡ଼ାଇ ବୈକୁଣ୍ଠେ କରଇ ଗମନ ॥
ଜୟନ୍ତୀ ବ୍ରତେ ଯେ ଜନ ପୁରାଣ ପଢ଼ଇ ।
କି ଅବା ଜୟନ୍ତୀ ବ୍ରତ ଉପାସ କରଇ ॥
ତାଙ୍କ ଦରଶନେ ପାପୀ ହୁଅଇ ମୁକତ ।
ଗୋପୀନାଥ କହେ ଜନେ କର କୃଷ୍ଣ ବ୍ରତ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗ ଖଣ୍ଡେ
ଜୟନ୍ତୀ ବ୍ରତ ମାହାତ୍ମ୍ୟଂ ନାମ
ଷଟ୍‌ତ୍ରିଂଶୋଽଧ୍ୟାୟଃ ।



## ସପ୍ତତ୍ରିଂଶ ଅଧ୍ୟାୟ ।

### ସନ୍ତାନୋତ୍ପତ୍ତି କଥନ ।

ଶଉନକ ବୋଇଲେ ହେ ସୂତ ମୁନିବର
ସକଳ ପୁରାଣ କଥା ଜଣା ଶୁଣା ତୋର ॥
ମହାବୁଦ୍ଧିମନ୍ତ ତୁମ୍ଭେ ମୁନିଙ୍କ ଭିତରେ ।
କି କଲେ ଜନେ ଅପୁତ୍ରୀ ହୁଅନ୍ତି ସଂସାରେ ॥
କି କଲେ ପୁଣି ହୁଅନ୍ତି ଜନେ ପୁତ୍ରବନ୍ତ ।
ଏ ସବୁ କଥା ବୁଝାଇ କହ ତୁ ଆମ୍ଭନ୍ତ ॥
ସୂତ ମୁନି କହିଲେ ଯେ ପୂର୍ବେ ବେଦବର ।
ଏହି କଥା କହିଥିଲେ ନାରଦ ଆଗର ॥
ତାହା ମୁହିଁ କହୁଅଛି ଶୁଣ ମୁନିଜନେ ।
ନାରଦ ବ୍ରହ୍ମାଙ୍କ ପାଖେ ବସି ଏକଦିନେ ॥
ବୋଇଲେ ହେ ପଦ୍ମଯୋନି ପିତାମହ ବ୍ରହ୍ମା ।
ତୁମ୍ଭ ତହୁଁ ଆଉ ଜଣେ ନାହିଁ ମହାତମା ॥
ଅପୁତ୍ରିକ କାହିଁପାଇଁ ମାନବେ ହୁଅନ୍ତି ।
କହ କି ପାପରୁ ବନ୍ଧ୍ୟା ହୁଅନ୍ତି ଯୁବତି ॥
ସର୍ବପ୍ରାଣି ହିତକାରୀ ଅଟ ତୁମ୍ଭେ ପୁଣି ।
ତୁମ୍ଭ ମୁଖୁ ଶୁଣିବାକୁ ଇଚ୍ଛା ଏ କାହାଣୀ ॥
କି କି କର୍ମକରି କନ୍ୟା ଉପୁଜାନ୍ତି ପୁଣି ।
ନପୁଂସକ ହୁଅନ୍ତି ଯେ କୀ ପୁ କର୍ମ କରି ॥

କୁକର୍ମ କରି ପ୍ରିୟଏ ମତ୍ସ୍ୟଗ୍ରୀ ହୁଅନ୍ତି ।
ଏସବୁ କଥା ବୁଝାଇ କହି ପ୍ରଜାପତି ॥
ଅତି ଦୁଃଖିତ ହୁଅନ୍ତି କପି ଏ ସଂସାରେ ।
କେଉଁ ପୁଣ୍ୟ ବଳେ ପୁତ୍ର ଉପୁଜନ୍ତି ନରେ ॥
ବ୍ରହ୍ମା କହିଲେ ସଂକ୍ଷେପେ କହୁଅଛି ଶୁଣ ।
ପଚାରୁଛ ଆଚମ୍ବିତ କଥା ଯେ କାରଣ ॥
ପୂର୍ବ ଜନ୍ମେ ଯେଉଁଜନ ପୁରାଣ ଶୁଣଇ ।
ଶୁଣିସାରି ବିପ୍ରକୁ ଯେ ଭୂମି ଦାନ ଦେଇ ॥
ଦୁଧିଆଳୀ ଗାଈ ଘୋଡା ଦିଅଇ ଆବର ।
ସୁବର୍ଣ୍ଣ ଦକ୍ଷିଣା ଦେଇ ତୋଷେ ଦ୍ୱିଜବର ॥
ଆବର ଏକ ସୁନାର ପ୍ରତିମା ଦିଅଇ ।
ବହୁତ ପୁତ୍ର ତାହାର ନିଶ୍ଚୟ ହୁଅଇ ॥
ପରପୁଅକୁ କପଟେ ମାରଇ ଯେ ନାରୀ ।
ଜନ୍ମେ ଜନ୍ମେ ମତ୍ସ୍ୟଗ୍ରୀ ସେ ହୁଏ ଗର୍ଭଧରି ॥
ଯେ ନାରୀ ଶ୍ରଦ୍ଧାରେ ସୁନା ପ୍ରତିମା ଦିଅଇ ।
ଭକତରେ ବ୍ରାହ୍ମଣର ପାଦୋଦକ ପିଇ ॥
ପୁରାଣ ଶୁଣି ଦିଅଇ ଦକ୍ଷିଣା ବହୁତ ।
ବହୁତ ଉପୁଜାଇ ଯେ ଜୀବବତ୍ସା ସୁତ ॥
ଜନ୍ମିଲା ବୁଢ଼ି ଯାଉଥିବା ଶିଶୁକୁ ଯେ ନାରୀ ।
ଚକ୍ଷୁରେ ଦେଖି ତାହାକୁ ନ ଆଣେ ଉଦ୍ଧାରି ॥
ଅପୁତ୍ରିକ ହୁଅନ୍ତି ଯେ ଜନ୍ମେ ଜନ୍ମେ ଜାଣ ।
ତହିଁର ଯେ ପ୍ରତୀକାର କହୁଅଛି ଶୁଣ ॥
ସୁନା ସହିତ ଯେ ପାଣି କଖାରୁ ଦିଅଇ ।
ବିପ୍ରକୁ ବୃଷ ଦକ୍ଷିଣା ଦେଇଣ ତୋଷଇ ॥
ବାଳକ ବ୍ରତ ଆବର ଗୌରୀ କନ୍ୟା ଦାନ ।
ଶ୍ରଦ୍ଧା ଭକତରେ ପୁଣି ଶୁଣଇ ପୁରାଣ ॥
ତାହାର ପୁତ୍ର ହୁଅଇ ଏ କଥା ନିଶ୍ଚୟ ।
ପୂର୍ବ ଜନ୍ମ ପାପ ତାର ହୋଇଯାଇ କ୍ଷୟ ॥
ଅତିଥିକି ନିରାଶ ଯେ କରିଥାଇ ପୂର୍ବେ ।
କୋପକରି ଅତିଥିକି ଦଣ୍ଡିଥାଇ ଯେବେ ॥
ଇହଜନ୍ମେ ଅପୁତ୍ରିକ ନିଶ୍ଚେ ସେ ହୁଅଇ ।
ଯେବେ କ ଯେ ପୁଣି ବିପ୍ର ଅତିଥି ପୂଜଇ ॥
ଅନ୍ନ ଜଳ ଦାନ ଯେବେ କରେ ଦେବାଳୟେ ।
ପୁତ୍ର ପୁଣି ହୁଏ ତାର ପାପ ଯାଏ କ୍ଷୟେ ॥
ଗର୍ଭନାଶ କରିଥାନ୍ତି ଯେଉଁ ନରନାରୀ ।
ତାହାଙ୍କର ପୁଅ ହୋଇ ଜନ୍ମି ପୁଣି ମରି ॥

ଯେ ନାରୀ ସ୍ୱାମୀ ସହିତ ଏକାଦଶୀ କରେ ।
ପୁତ୍ରବତୀ ହୁଅଇ ସେ ଜନ୍ମ ଜନ୍ମାନ୍ତରେ ॥
ସ୍ୱାମୀ ସଉଦାଗରୀ ହୋଇ ସୁଖେ କରେ ଘର ।
ଗୋବଧ କରି କରାଇ ଥାଇ ଯେଉଁ ନର ॥
ଯେଉଁ ଶୂଦ୍ର କରିଥାଇ ବ୍ରାହ୍ମଣୀ ହରଣ ।
ଜନ୍ମେ ଜନ୍ମେ ନପୁଂସକ ହୁଏ ସେହୁ ଜାଣ ॥
ଏ ପାପ କରି ପଶ୍ଚାତେ ଯେ ପୁଣ୍ୟ କରଇ ।
ତାହାର ଗର୍ଭେ ଦୁହିତା ଏକ ଉପୁଜଇ ॥
ତ୍ରେତାଯୁଗ କଥା ଦ୍ୱିଜ କହୁଅଛି ଶୁଣ ।
ଶ୍ରୀଧର ନାମରେ ଥିଲା ଏକ ନୃପରାଣ ॥
ଧନବନ୍ତ ଅପୁତ୍ରିକ ଅଟେ ସେ ନୃପତି ।
ତାହାର ଭାରିଯା ନାମ ହେମ ପ୍ରଭାବତୀ ॥
ଏକ ଦିନେ ବ୍ୟାସମୁନି ମିଳିଲେ ତା ଘରେ ।
ରାଜା ଗନ୍ଧପୁଷ୍ପ ଦେଇ ମୁନିଙ୍କ ପାଖରେ ॥
ପଚାରିଲା ଅପୁତ୍ରିକ ହେଲି ମୁଁ କପାଇଁ ।
କହ ଲୋକ ହିତକାରୀ ହେ ମୁନି ଗୋସାଇଁ ॥
କନକ ଦଣ୍ଡ ମଣ୍ଡିତ ଆସନେ ବସାଇ ।
ରାଜା ରାଣୀ ଦୁହେଁ ତାଙ୍କ ପାଦଦୁଇ ଧୋଇ ॥
ସେ ପାଦ ଉଦକ ଦୁହେଁ ସେପିଣ ଗର୍ଭକୁ ।
ବିପ୍ର ପାଦୋଦକ ପିଇବାରୁ ପାପ ତାଙ୍କୁ ॥
ଛାଡ଼ି ପଳାଇଲା ଆଉ ନ ପାରିଲା ପଶି ।
ନୃପତିର ପଚାରିବା କଥା ଶୁଣି ଋଷି ॥
ବୋଇଲେ ଯାହା ତୁ ମୋତେ ପଚାରୁ ବିନୟେ ।
ଯେଉଁ କର୍ମେ ଅପୁତ୍ରିକ ହୋଇଛୁ ତୁ ରାୟେ ॥
ଯେଣୁ ପୁଣି ଏ ରାଣୀର ପୁତ୍ର ନ ହୁଅଇ ।
ପୂର୍ବଜନ୍ମେ ଚନ୍ଦ୍ର ନାମେ ବିପ୍ର ଥିଲୁ ତୁହି ॥
ଏହି ତୋ ଭାରିଯା ନାମ ଥିଲା ଯେ ଶଙ୍କରୀ ।
ରୂପ ଗୁଣେ ଶଚୀ ରମ୍ଭା ନୋହିବେ ସରି ॥
ବାଟେ ଯାଉଁ ଯାଉଁ ଏକ ଦିନେ ତୁମ୍ଭେ ଦୁଇ ।
ବାଳୁତ ପୁତ୍ରେକ ଜନ୍ମିଲା ବୁଡ଼ିଣ ମରଇ ॥
ଦେଖି ତୁମ୍ଭେ ଦୁହେଁ ତାକୁ ନ ତୋଳି ଧଇଲ ।
ବ୍ରାହ୍ମଣ ବୋଲି ନିଜକୁ ବଡ଼ ମନେ କଲ ॥
ହେଳାକରି ଚାଲି ଗଲ ସେ ବାଳକ ମଲା ।
ତେଣୁ ତୁମ୍ଭ ଦୁହିଙ୍କର ପୁତ୍ର ନ ହୋଇଲା ॥
ବହୁତ ପୁଣ୍ୟ ଥିବାରୁ ରାଜା ରାଣୀ ହେଲ ।
ନୃପତି ବୋଇଲେ କୃପା କରି ଏବେ ବୋଲ

କି କଲେ ହେ ମୁନି ପୁତ୍ର ହୋଇବ ଆମ୍ଭର ।
ଅପୁତ୍ରିକ ହୋଇଁ ଆମ୍ଭେ ହୋଇଲୁ ନା ପାର ॥
ପୁତ୍ର ନ ଥିବା ଲୋକର ଜନମ ବିଫଳ ।
ବ୍ୟାସେ ଯେ କହିଲେ ତୁହେ ଶୁଣ ମହୀପାଳ ॥
ପାଣି କଖାରୁ ଗୋଟିଏ କରୁ ଯେବେ ଦାନ ।
ସୁବର୍ଣ୍ଣରେ ତାକୁ ପୁଣି କରିବୁ ଭୂଷଣ ॥
ବେଦ ବିଧିରେ ବିପ୍ରର ହସ୍ତେ ଦେବୁ ଦାନ ।
ଦକ୍ଷିଣା ପାଇଁ ବୃଷେକ କରିବୁ ପ୍ରଦାନ ॥
ଗଉରୀ କନ୍ୟା ପ୍ରଦାନ କର ସତ ପାତ୍ରେ ।
ସଂକଳ୍ପ କରି ପୁରାଣ ଶୁଣ ଦିବା ରାତ୍ରେ ॥
ବାଳବ୍ରତ କର ବାବୁ ପାପ ଯିବ କ୍ଷୟ ।
ପାଇବ ସୁନ୍ଦର ଗୁଣବନ୍ତ ଯେ ତନୟ ॥
ବ୍ରହ୍ମା ବୋଇଲେ ବ୍ୟାସଙ୍କ ମୁଖୁ ରାଜା ଶୁଣି ।
ପୁରାଣ ଶୁଣିଲେ ତୁହିଁ ଧର୍ମମତେ ପୁଣି ॥
କୁଷ୍ମାଣ୍ଡ ଦାନ ଗଉରୀ କନ୍ୟା କଲେ ଦାନ ।
ସକଳ ପାପ ତହିଁରେ ହୁଅନ୍ତେ ଦହନ ॥
ବରଷକ ମଧ୍ୟେ ପୁତ୍ର ହୋଇଲା ତାଙ୍କର ।
ସେ ପୁତ୍ର ଗୋଟି ରୂପରେ ଗୁଣରେ ସୁନ୍ଦର ॥
କୁଳର ନାୟକ ହେଲା ରାଜ୍ୟରେ ନୃପତି ।
ସକଳ ଜନ ପରଜା ତା ପାଦେ ଗତି ॥
ସୂତ ବୋଇଲେ ଏହା ଯେ ଶୁଣେ ଭକତିରେ ।
ଉତ୍ତମ ଦାନ ଦିଅଇ ବିପ୍ରର ହସ୍ତରେ ॥
ଅପୁତ୍ରିକ ହୋଇ ଥିଲେ ପୁତ୍ର ମୁଖ ଦେଖେ ।
ସଂକ୍ଷେପି କହିଲି ଏହା ମୁଁ ତୁମ୍ଭ ସମ୍ମୁଖେ ॥
ଶାସ୍ତ୍ର ବିଧି ଅନୁସାରେ ଶ୍ରଦ୍ଧା ଭକତିରେ ।
ଯେ ନାରୀ ପୁରାଣ ଶୁଣି ବିପ୍ରପୂଜା କରେ ॥
ନିଶ୍ଚେ ପୁତ୍ରବତୀ ସ୍ୱାମି ସଉଭାଗୀ ହେବ ।
ପୋଥି ଉପରେ ଭକ୍ତିରେ ସୁନା ରୂପା ଦେବ ॥
ବସ୍ତ୍ର ଫୁଲ ମାଳ ଗନ୍ଧ ଆବର ଦିଅଇ ।
ତାହାର ସକଳ ପାପ କ୍ଷୟ ହୋଇ ଯାଇ ॥
ପୂର୍ବ ଜନମରେ ମୂଢ଼ ଅଜ୍ଞାନୀ ଯେ ଜନ ।
ବ୍ରହ୍ମହତ୍ୟା ଶିଶୁହତ୍ୟା କରେ ଜନ୍ମେ ଜନ୍ମ ॥
ଖଳ ଦୁଷ୍ଟ ପୁତ୍ର ପାଉଥାଇ ଜାଣ ଦ୍ୱିଜ ।
ଗୌପୀନ ଥ କହେ ନିତ୍ୟ ହରିନାମ ଭଜ ॥
ହରି ଭଜିଲେ ନିଶ୍ଚୟ ଭବୁ ଯିବ ତରି ।
ହରି ହରି ବୋଲି ଭାଇ ଦିବସ ଶର୍ବରୀ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ସନ୍ତାନୋତ୍ପତ୍ତି କଥନଂ ନାମ
ସପ୍ତତ୍ରିଂଶୋଽଧ୍ୟାୟଃ ।



## ଅଷ୍ଟତ୍ରିଂଶ ଅଧ୍ୟାୟ ।

ଦେବମନ୍ଦିର ମୃତ୍ତିଲେପନ ମାହାତ୍ମ୍ୟ ।

ପଚାରିଲେ ଶଉନକ କହ ମୁନି ସୂତ ।
କି କଲେ ଯେ ବଇକୁଣ୍ଠ ହୁଅଇ ପ୍ରାପତ ॥
ତବ ମୁଖୁଁ ଶୁଣିବାକୁ ଇଚ୍ଛା ଅଛି ମୋର ।
ଏ ଭବ ସାଗରେ ନାବ ତୁମ୍ଭେ ମୁନିବର ॥
ଏମନ୍ତ ଶୁଣି ବୋଇଲେ ସୂତ ମହା ମୁନି ।
ଏ ସଂସାରେ ତୁମ୍ଭେ ଏକା ଅଟ ମହାଜ୍ଞାନୀ ॥
ଜନ ଜଗତ ମଙ୍ଗଳ ବାଞ୍ଛା କର ଯେଣୁ ।
ଧନ୍ୟ ଧନ୍ୟ ତୁମ୍ଭଙ୍କୁ ଯେ ବୋଲୁ ଆମ୍ଭେ ଏଣୁ ॥
ଯହିଁରେ ଶୁଣିବା ଲୋକ ପାପ ଯାଏ ନାଶ ।
ସେ କଥା ଗୋଟି ସଂକ୍ଷେପେ କହୁଛି ହେ ବସ ॥
ମାଟିରେ ଘର ଗୋଟିଏ ତୋଳି ଯେବେ କେହି
ବ୍ରାହ୍ମଣରୂପୀ ବିଷ୍ଣୁର ହସ୍ତେ ଦାନ ଦେଇ ॥
ତହିଁରେ ଯେ ପୁଣ୍ୟ ହୁଏ ମନ ଦେଇ ଶୁଣ ।
ସକଳ ପାପ ତାହାର ହୁଅଇ ଦହନ ॥
ସଉଧ ଭବନ ଏକ ବିଷ୍ଣୁ ଲୋକେ ପାଇ ।
ବହୁ ଗଉରବ ପାଇଁ ସୁଖେ ଦିନ ଯାଇ ॥
ବିଷ୍ଣୁରୂପୀ ବିପ୍ରହସ୍ତେ ସଉଧ ମନ୍ଦିର ।
ଯେ ଦାନ ଦିଅଇ ନିଶ୍ଚେ ଜାଣ ସେହି ନର ॥
ଶ୍ରୀହରିଙ୍କ ମନ୍ଦିର ପାଇ ଦେବତା ହୁଅଇ ।
ଶେଷେ ପୁଣି ବଇକୁଣ୍ଠ ପୁରକୁ ଗମଇ ॥
ସୁନାର ସଉଧ ଘରେ ରହି ସୁଖ କରେ ।
ଘର ଦେଇ ବିପ୍ରକୁ ଯେ ରଖଇ ସୁଖରେ ॥
ତାହାର ପୁଣ୍ୟ ଅଦ୍ଭୁତ ଧାତାକୁ ଅଜଣା ।
କି କହିବ ଶଉନକ ମୁନି ମହାମନା ॥
ବରଷା ଧାର କେହ୍ୱା ଗଣିପାରେ ବସି ।
କେହ୍ୱା ଗଣି ପାରନ୍ତି ବସି ଧୂଳିରାଶି ॥

ଏ ପୁଣ୍ୟ ଗଣି ପାରିବ ଦେଖିନାହିଁ ଜଗେ ।
ପୁରୁଣା କଥା ଗୋଟାଏ ଶୁଣ ମହାମୁନେ ॥
ସୃଷ୍ଟି କର୍ତ୍ତା ଅଟନ୍ତି ଯେଉଁ ବେଦବର ।
ପଶ୍ଚିର ଥିଲେ ନାରଦ ଯେ ତାଙ୍କ କୁମର ॥
ସେ ଯାହା ତାହାଙ୍କୁ କହିଥିଲେ ତାହା ଶୁଣ ।
ଦ୍ୱାପର ଯୁଗର କଥା ପୁରୁଣା ସେ ଜାଣ ॥
ଏକ ବାର ନାରୀ ଥିଲା ସେ ଅତି ସୁନ୍ଦରୀ ।
ତାନାମ ଚନ୍ଦ୍ରିକାକ୍ଷୀ ସୁକେଶୀ ସେ ଗୋରୀ ॥
ସରୁକଟି ଶୁଭ୍ରହାସୀ ହରିଣୀନୟନା ।
ଦିନେ ଦେଶାନ୍ତରେ ଗଲା ସେହି ସୁଲୋଚନା ।
ସଙ୍ଗପାଇ ସବୁ ପାପକଲା ସେ ସୁନ୍ଦରୀ ।
ଧନପାଇବା ଆଶାରେ ସେହି ବେଶ୍ୟାନାରୀ ॥
ଜନସଙ୍ଗ ଲେଉଟାଉଁ ଭେଟିଲା ଦେଉଳ ।
କ୍ଷଣକାଳ ବସି ତହିଁ ଖାଇବାଇ ତାମ୍ବୁଳ ॥
କଉଡ଼ିକି ପାନଛିଟା ହାତେ ଧରି ବାଳୀ ।
ଫୋପାଡ଼ିଦେଇ ଦେଉଳେ ହାତ ଦେଲାବୋଲି
ହାତଭଲ କରି ପୋଛିପାଛି ତହୁଁ ଗଲା ।
ନଗରେ ପଶିଣ ଜାର ପୁରୁଷ ଖୋଜିଲା ॥
ଏକ ଜାର ସଙ୍ଗତରେ କଲାକ ସଙ୍କେତ ।
ରାତ୍ରି ହୁଅନ୍ତେ ସେ ବେଶ୍ୟା ହୋଇ ବସ୍ତ୍ରାନ୍ତ
ସଙ୍କେତ ସ୍ଥାନକୁ ବନେ ଗମନ କରଇ ।
ଦେଖିଲା ଧନୀ କୁମର ସେସ୍ଥାନରେ ନାହିଁ ॥
ଭୟପାଇ ମନମଧ୍ୟେ ନାନା ଚିନ୍ତା କଲା ।
କିପାଇଁ ଧନୀ କୁମର କାହିଁ ନ ଆସିଲା ॥
ସାପ କି ଖାଇଲା ତାକୁ ବାଘ ଗଲା ଖାଇ ।
ସଙ୍କେତ ଛାଡ଼ି କେମନ୍ତ ଏଥୁ ମୁହିଁ ଯାଇ ॥
କିବା କେଉଁ ରମଣୀର ଫାନ୍ଦରେ ପଡ଼ିଲା ।
ଏମନ୍ତେ ମନମଧ୍ୟରେ ନାନା ଚିନ୍ତାକଲା ॥
ଘୋର ଅନ୍ଧକାର ବାଟ ମହା ଭୟଙ୍କର ।
କଣ୍ଟା ଆଳ ଡରେ ଫେରି ନଇଲା ନଗର ॥
କାଳ ବ୍ୟାଘ୍ର ରୂପଧରି ସେଠାରେ ମିଳିଲା ।
ବଳେଧରି ମାରି ବେଶ୍ୟାଁ ରୁଧିର ପିଇଲା ॥
ଚମଦଣ୍ଡ ଡୀଛରେ ଯମ ଦୂତେ ବାନ୍ଧିନେଲେ ।
ଭକତବତ୍ସଳ ଶ୍ରୀବିଷ୍ଣୁ ତା ଜାଣିଲେ ॥
ଦୂତଙ୍କୁ ପଠାଇ ଦେବ୍ତା ଅଇଲେ ସେ ଧାଇଁ
ଯମଦୂତଙ୍କୁ ବାଟରେ ଭେଟିଲେ ସେ ଯାଇଁ ॥

ବୋଇଲେ କିଏରେ ତୁମ୍ଭେ ଯାଉଛ କି ଘେନି
ବିକୃତରୂପ ତୁମ୍ଭର ନ ପାରୁଛୁ ଚିହ୍ନି ॥
ଦେଖା ଯାଉଛତ ତୁମ୍ଭେ ରାକ୍ଷସ ପରାୟେ ।
ବିଷ୍ଣୁ ଭକତକୁ ନିଅ ନାହିଁ କରେ ଭୟ ॥
ଯମଦୂତେ ଦେଖିଲେ ଯେ ରୂପ ତାହାଙ୍କର ।
କଳାମେଘପରି ଦିଶେ ତାଙ୍କ କଳେବର ॥
ଫୁଟିଲା କମଳ ପ୍ରାୟେ ଦିଶଇ ବଦନ ।
ବେନି ବେନିକର୍ଣ୍ଣ ଦିବ୍ୟ କୁଣ୍ଡଳେ ମଣ୍ଡନ ॥
କଟୀର ମେଖଳା ସବୁ ଦିଶଇ ସୁନ୍ଦର ।
ଚକ୍ର ଆଦି ଅସ୍ତ୍ରସବୁ ବିରାଜଇ କର ॥
ଏମନ୍ତ ବିଷ୍ଣୁଦୂତଙ୍କୁ ଦେଖି ଯମଦୂତେ ।
ଡରେ ଘେନି ପଳାଇଲେ ତାହାକୁ ତୁରିତେ ॥
କ୍ରୋଧେ ବିଷ୍ଣୁଦୂତେ ପଛୁ ମାଇଲେ ଗୋଡ଼ାଇ
କାନ୍ଦି କାନ୍ଦି ଯମଦୂତେ ଗଲେକି ପଳାଇ ॥
କହିଲେ ଏ ସବୁ କଥା ଯମର ଛାମୁରେ ।
ଯମରାଜା ଶୁଣି ଚିତ୍ରଗୁପ୍ତଙ୍କୁ ପଚାରେ ॥
ବେଶ୍ୟା କି ପୁଣ୍ୟେ ମୁକତି ପାଇଲା ତା କହ ।
ଚିତ୍ରଗୁପତେ ବୋଇଲେ ଶୁଣ ଯମରାୟ ॥
ଜନ୍ମକାଳୁଁ ପାପ ବିନା ପୁଣ୍ୟ ନାହିଁ ତାର ।
ଏକମାତ୍ର ପୁଣ୍ୟ ଅଛି ଶୁଣ ନାଶକର ॥
ଦିନେ ଧନ ଆଶାରେ ସେ ଜାର ଖୋଜିଗଲା ।
ନାନା ଅଳଂକାରେ ସର୍ବ ଅଙ୍ଗ ମଣ୍ଡାଇଲା ॥
କାଞ୍ଚୀପୁରେ ଯାଇ ଦେଖେ ଶ୍ରୀବିଷ୍ଣୁ ମନ୍ଦିର ।
ଶ୍ରମହରିବା ନିମନ୍ତେ ବସେ ସେଠାବର ॥
ପାନଖାଇ ଛିଟା ତାର କାନ୍ଥରେ ଲିପିଲା ।
କଉଡ଼ିକେ ଲିପନ୍ତେ ତା ସୁନ୍ଦର ଦିଶିଲା ॥
ଏହିପୁଣ୍ୟ ବଳେ ସବୁ ପାପଗଲା କ୍ଷୟି ।
ତେଣୁ ତୁମ୍ଭ ଦଣ୍ଡ ଯୋଗ୍ୟ ନୋହିଲା ହେ ରାୟି ॥
ବଇକୁଣ୍ଠେ ଘେନିଗଲେ ତାକୁ ବିଷ୍ଣୁଦୂତେ ।
ଯମ ଯମଦୂତେ ଶୁଣି ରହିଲେ ନିଶ୍ଚିନ୍ତେ ॥
ରାଜହଂସ ଯୋଗୀ ଦିବ୍ୟ ବିମାନରେ ବସି ।
ବଇକୁଣ୍ଠ ପୁରେ ଗଲା ବେଶ୍ୟା ପାଇ ଖୁସି ॥
ବିଷ୍ଣୁ ଆଜ୍ଞାରେ ସେ ତହିଁ ଘେନି କୋଟି କୁଳ ।
ସତ୍ୟଧର୍ମହେ ରହିଲା କାଳକଳ୍ପ ଫଳ ॥
କହିଲୁଁ ତୁମ୍ଭ ଆଗରେ ଆହେ ଦ୍ୱିଜବର ।
ଭକତରେ ବିଷ୍ଣୁ ଗୃହ ଲିପଦ୍ଧ ଯେ ନର ॥

କାବାରୂନରେ ଲିପଇ ଶ୍ରୀ ବିଷ୍ଣୁ ଦେଉଳ ।
କୋଟିଏ ଅଶ୍ୱମେଧ କରିବାର ପୁଣ୍ୟରୁ ଯେ ଫଳ ॥
ଏ ଅଧ୍ୟା ଶ୍ରଦ୍ଧାରେ ଯେହୁ ପଢଇ ଶୁଣଇ ।
ସକଳ ପାପ ଛଡ଼ାଇ ବଇକୁଣ୍ଠେ ଯାଇ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ହରିମନ୍ଦିର
ଚୂର୍ଣ୍ଣ ଲେପନ ମାହାତ୍ମ୍ୟଂ ନାମ
ଅଷ୍ଟତ୍ରିଂଶୋଽଧ୍ୟାୟଃ ।



# ଊନଚତ୍ୱାରିଂଶ ଅଧ୍ୟାୟ ।

## ଶ୍ରୀରାଧାଷ୍ଟମୀ ବ୍ରତ ମାହାତ୍ମ୍ୟ ।

ଶଉନକ ବୋଇଲେ ହେ ସୂତ ମହାମତି ।
ଘୋର ସଂସାର ସାଗର ଦୁସ୍ତର ଯେ ଅତି ॥
କି କଲେ ତହୁଁ ଉଦ୍ଧାର ପାଇବେ ସକଳେ ।
ସୁଖେ ବସିବେ ଅଭୟ ଗୋଲୋକ ମଣ୍ଡଳେ ॥
ସୂତମୁନି କହିଲେ ହେ ଶୁଣ ଦ୍ୱିଜବର ।
ରାଧାଷ୍ଟମୀ ବ୍ରତର ଯେ ମହିମା ଅପାର ॥
ପୂର୍ବେ ବ୍ରହ୍ମା ନାରଦଙ୍କୁ କହିଥିଲେ ଯାହା ।
ସଂକ୍ଷେପି କହୁଛି ଏକମନେ ଶୁଣ ତାହା ॥
ଦିନେ ନାରଦ ବ୍ରହ୍ମାଙ୍କୁ କହିଲେ ଏମନ୍ତ ।
କି ପୁଣ୍ୟ କି ଫଳ ଦିଏ ରାଧାଷ୍ଟମୀ ବ୍ରତ ॥
ପୂର୍ବରୁ ଏ ବ୍ରତ ଗୋଟି କରିଥିଲେ କିଏ ।
ଯେ ନ କରେ ତାହାର କି ପାପ ପୁଣି ହୁଏ ॥
ସେ ରାଧା କାହିଁ ଜନମ ହୋଇଲେ କେମନ୍ତେ
ଆଦ୍ୟ ପ୍ରାନ୍ତ କରି ସବୁ ତାହା କହ ମୋତେ
ବ୍ରହ୍ମା ବୋଇଲେ ରେ ବାବୁ ଶୁଣ ମନଦେଇ
ରାଧାଜନ୍ମାଷ୍ଟମୀ ବ୍ରତ ସଂକ୍ଷେପି କହଇ ॥
କି କହିବ ନାରଦ ମୁଁ ତୋହର ଅଗ୍ରତେ ।
ରାଧାଜନ୍ମାଷ୍ଟମୀ ବ୍ରତ ପୁଣ୍ୟ ଫଳ ଯେତେ ॥
ହରି ବିନା ଆନ କେହି ନ ପାରିବେ କହି ।
ଭକ୍ତିରେ ଥରେ ଯେବେ ବ୍ରତକରେ କେହି
ବ୍ରହ୍ମହତ୍ୟା ଆଦି ଯେତେ ମହାପାପ ତାର ।
ଯେତେତ ଥାଇ ପୁଣି କୋଟି କୋଟି ଜନମର ॥

ସବୁ କ୍ଷୟ ଯାଇ ସେହି ମହାବ୍ରତ ଫଳେ ।
ଲକ୍ଷେ ଏକାଦଶୀ କଲେ ଯେଉଁ ଫଳ ମିଳେ
ତହୁଁ ସହସ୍ର ଗୁଣରେ ଅଧିକ ତା ଫଳ ।
ଯେଉଁ ଫଳ ସୁନାଦାନ କଲେ ମେରୁ ତୁଲ୍ୟ
ରାଧା ଜନ୍ମାଷ୍ଟମୀ ବ୍ରତ ବାରେ ଯେ କରଇ ।
ଶତଗୁଣରେ ଅଧିକ ଫଳ ତହୁଁ ପାଇ ॥
ସହସ୍ର କନ୍ୟାଦାନରେ ହୁଏ ଫଳ ଯେତେ ।
ବୃଷଭାନୁସୁତା ରାଧା ଜନ୍ମାଷ୍ଟମୀ ବ୍ରତେ ॥
ଥରକେ ତେତିକ ଫଳ ପାନ୍ତି କଲି ଲୋକ ।
ସ୍ନାନକଲେ ତୁଲ ଗଙ୍ଗା ଆଦି ତୀର୍ଥଯାକ ॥
ଯେତିକ ଫଳ ମିଳଇ ତେତିକ ସେ ବ୍ରତେ ।
ଶ୍ରୀକୃଷ୍ଣର ପ୍ରାଣପ୍ରିୟା ଯେଉଁ ଏ ଜଗତେ ॥
ହେଳାରେ ବା ଅଶ୍ରଦ୍ଧାରେ ଯେବେ ପାପୀଜନ
ରାଧାଷ୍ଟମୀ ବ୍ରତ କରେ ଜାଣ ରେ ନନ୍ଦନ ॥
କୋଟିକୁଳ ସଙ୍ଗେ ଘେନି ବଇକୁଣ୍ଠେ ଯାଇ ।
ପୁରୁଣା କଥା ଗୋଟିଏ ବାବୁ ରେ କହଇ ॥
ସତ୍ୟଯୁଗର ସେ କଥା ଶୁଣ ଦେଇ ମନ ।
ଥିଲା କରି ଏକ ବେଶ୍ୟା କରେ ବେଶ୍ୟାପଣ
ତାର ନାମ ଲୀଳାବତୀ ଅପୂର୍ବ ସୁନ୍ଦରୀ ।
ହରିଣୀନୟନା ଶୁଭ୍ରଅଙ୍ଗୀ ସେହି ଗୋରୀ ॥
କେଶ ତାହାର ସୁନ୍ଦର ହସ ତା ମଧୁର ।
ପାପକୁ ଯେ ତିଳେ ମାତ୍ର ନାହିଁ ତାର ଡର ॥
ଧନଲୋଭେ ବେଶ୍ୟାପଣ କରୁଥାଏ ନିତ ।
ନ ବାରଇ କିଛି ସେହି ଜାତ କି ଅଜାତ ॥
ପୁଣ୍ୟ କାହାକୁ କହନ୍ତି ନ ଜାଣଇ ସେହି ।
ଦିନକର କଥା ତୁହ୍ମେ ଶୁଣ ମନଦେଇ ॥
ଧନ ଆଶାରେ ଆପଣା ଘରୁ ବାହାରିଲା ।
ଏକ ନଗର ଭିତରେ ଯାଇ ସେ ପଶିଲା ॥
ଦେଖିଲା ସୁନ୍ଦର ଏକ ଦେବତା ମନ୍ଦିର ।
ତହିଁ ଏକତ୍ର ହୋଇଣ ବହୁତ ଯେ ନର ॥
ରାଧା ଜନ୍ମାଷ୍ଟମୀବ୍ରତ କରୁଛନ୍ତି ବସି ।
ମଧ୍ୟରେ ରାଧା ମୂରତି ସୁନ୍ଦର ଯେ ଦିଶି ॥
କେ ଦିଅଇ ଗନ୍ଧପୁଷ୍ପ କେ ଦିଏ ବସନ ।
ପାଶ ବସି କେ ଜାଳଇ ଘୃତରେ ସେ ଦୀପ ॥
କେ ଧୂପ ଦିଅଇ ଏକେ ନାନାଫଳ ଦେଇ ।
ଏକେ ନାଚଇ କେ ମଧୁର ସ୍ୱରେ ଗୀତ ଗାଇ ।

କେ ସ୍ତୁତି କରନ୍ତି କେହୁ ସ୍ତବ ଯେ ପଢଇ ।
ତାଳ ବେଣୁ ମୃଦଙ୍ଗ ଏ ଆଦି କେ ବଜାଇ ॥
କଉତୁକ ହୋଇ ତାହା ସବୁ ସେ ଦେଖିଲା
ଧୀରେ ଧୀରେ ତାହାଙ୍କର ନିକଟକୁ ଗଲା ॥
ବିନୟରେ ପଚାରିଲା ତାହାଙ୍କୁ ଏମନ୍ତ ।
ପୁଣ୍ୟଆତ୍ମା ହୋଇଅଛ ସମସ୍ତେ ତୁମ୍ଭେତ ॥
ଆନନ୍ଦ ହୋଇ ଏଠାରେ କି କରୁଅଛ ରହି ।
କହିଲେ ସେ ବଇଷ୍ଣବେ ବେଶ୍ୟାମୁଖ ଚାହିଁ ॥
ପରହିତେ ରତ ସଦା ବଇଷ୍ଣବଗଣ ।
ବୋଇଲେ ଯାହା କରୁଛୁଁ ମନଦେଇ ଶୁଣ ॥
ଭାଦ୍ରବମାସ ଶୁକ୍ଳ ଅଷ୍ଟମୀ ଯେ ତିଥି ।
ଶ୍ରୀରାଧିକାଦେବୀଙ୍କର ଅଟଇ ଜନ୍ମ ତିଥି ॥
ସେ ଦେବୀ ସେହି ତିଥିରେ ଜନ୍ମ ହୋଇଥିଲେ
ଆଜି ସେ ତିଥିରେ ତାଙ୍କ ବ୍ରତ କରୁ ଭଲେ
ଯତନେ କରୁ ସମସ୍ତେ ଉପବାସ ରହି ।
ତହିଁର ଯେ ଫଳ ତୁ ଗୋ ଶୁଣ ମନଦେଇ ॥
ଗୋରୁହତ୍ୟା ବ୍ରହ୍ମହତ୍ୟା କରିଥିବା ନର ।
ପରସ୍ତ୍ରୀ ହରିଥାଏ ଯେ ବା ସୁନାଚୋର ॥
ଯେବଣ ଜନ ବିଶ୍ୱାସଘାତକା ଅଟଇ ।
ଗୁରୁପତ୍ନୀକି ସୁନ୍ଦରୀ ଦେଖି ଯେ ହରଇ ॥
ସ୍ତ୍ରୀହତ୍ୟା କରିଥାଇ ଯେ ଜନ ଆବର ।
ଏ ସବୁରେ ଯେତେ ପାପ ହୁଅଇ ତାହାର ॥
ଯେବେ ଏହି ରାଧାଷ୍ଟମୀ ବ୍ରତ ସେ କରଇ ।
ତକ୍ଷଣେ ତାର ଏ ସବୁ ପାପ କ୍ଷୟ ଯାଇ ॥
ତାହାଙ୍କ ମୁଖୁ ସେ ବେଶ୍ୟା ଏ ବଚନ ଶୁଣି ।
ବାରମ୍ବାର ସବୁ କଥା ମନ ମଧ୍ୟେ ଗୁଣି ॥
ବୋଇଲା କରିବି ମୁହିଁ ଆଜି ଏହି ବ୍ରତ ।
ମନରେ ଭାଳି ସେ ବେଶ୍ୟା କରଣ ନିଶ୍ଚିତ ॥
ରାଧାଷ୍ଟମୀ ବ୍ରତ କଲା ବ୍ରତୀଙ୍କ ସଙ୍ଗତେ ।
ଯେ ଯାହା ଗୃହକୁ ଗଲେ ବ୍ରତ ସମାପତେ ॥
ବେଶ୍ୟା ବ୍ରତ ସାରି ତହୁଁ କରନ୍ତେ ଗମନ ।
ବାଟେ ତାକୁ କାଳସର୍ପ କଲକ ଦଂଶନ ॥
ଯମରାଜା ଆଜ୍ଞାପାଇ ଦୂତେ ଧାଇଁ ଆସି ।
ଲଗାଇଲେ ତା ଗଳାରେ ଦୃଢେ ଚର୍ମ ଫାଶୀ
କ୍ରୋଧରେ ତାକୁ ବହୁତ ଦେଲେ ପୁଣି ଗାଳି
ନେବାକୁ ଯମପୁରକୁ ମନେ ମନେ ଭାଳି ॥

ଏ ସମୟେ ବିଷ୍ଣୁ ଦୂତେ ମିଳିଲେକ ତହିଁ ।
ଶଙ୍ଖ ଚକ୍ର ଗଦା ପଦ୍ମ କରେ ବିରାଜଇ ॥
ରାଜହଂସ ଯୋଗ୍ୟ ଏକ ସୁନାର ବିମାନ ।
ଚକ୍ରରେ ତା ଗଳା ଫାଶ କରିଣ ଛେଦନ ॥
ରଥରେ ବସାଇ ଘେନି ବଇକୁଣ୍ଠେ ଗଲେ ।
ବ୍ରତଫଳେ ରାଧା କୃଷ୍ଣ ସହିତେ ମିଳିଲେ ॥
ଗୋଲୋକ ଭୁବନେ ବେଶ୍ୟା ଆନନ୍ଦେ ରହିଲା
ସକଳ ପାପ ତାହାର ତେଜେଣ ଦୂର ହେଲା ॥
ଯେ ଅଜ୍ଞାନୀ ରାଧାଷ୍ଟମୀ ବ୍ରତ ନ କରଇ ।
ଶତକୋଟି କଳପ ସେ ନର୍କରେ ପଡଇ ॥
ଏ ବ୍ରତେ ରାଧାକୃଷ୍ଣଙ୍କ ପୀରତି ବଢଇ ।
ସବୁ ପାପ ଛାଡି ଦୂରେ ଯାଆନ୍ତି ପଳାଇ ॥
ଯେ ନାରୀ ନ କରେ ଅନ୍ତେ ଯମପୁରେ ଯାଇ
ଚିରକାଳ ନର୍କେ ପଡ ନାନାଦୁଃଖ ପାଇ ॥
କେତେବେ ଯେବେ ଆସି ମର୍ତ୍ତ୍ୟେ ଜନମଇ ପୁଣି
ବାଲ୍ୟେତ ବିଧବା କଷ୍ଟ ପାଇ ସେ ରମଣୀ ॥
ଆରେ ବାବୁ ଏକକାଳେ ଦୁଷ୍ଟଙ୍କ ଭୟରେ ।
ଗୋରୁ ରୂପ ଧରି ଦୁଃଖେ ଆସି ମୋ ପାଶରେ
ରୋଦନ କରି ଆପଣା ଦୁଃଖକୁ ଜଣାଇ ।
ତାହାର କଷ୍ଟ ନ ସହିପାରି ମୁହିଁ ଯାଇଁ ॥
ଜଣାଇଲି ଶ୍ରୀବିଷ୍ଣୁର ଛାମୁରେ ତା ଦୁଃଖ ।
ଶୁଣି ସେ ବିଷ୍ଣୁ କହିଲେ ଆହେ ଚତୁର୍ମୁଖ ॥
ଦେବଙ୍କୁ ଘେନି ମର୍ତ୍ତ୍ୟକୁ ଯାଅ ତୁମ୍ଭେ ଆଗେ
ତୁମ୍ଭ ପଛେ ପଛେ ଆମ୍ଭେ ଯାଉଅଛୁଁ ବେଗେ
ମୋହର ଗଣ ଯେତେକ ମୋହ ସଙ୍ଗେ ଥିବେ
ଏମନ୍ତ ଶୁଣି ମର୍ତ୍ତ୍ୟକୁ ଗଲୁଁ ଆମ୍ଭେ ଦେବେ ॥
ତହୁଁ କୃଷ୍ଣ ପ୍ରାଣାଧିକା ରାଧିକାଙ୍କୁ ଚାହିଁ ।
ବୋଇଲେ ଗୋ ଦେବି ମହୀଭାର ନାଶ ପାଇଁ
ମର୍ତ୍ତ୍ୟମଣ୍ଡଳରେ ଆଗ ହୁଅ ଯାଇଁ ଜାତ ।
କୃଷ୍ଣ ଆଜ୍ଞା ପାଇଁ ରାଧା ମହୀରେ ସମ୍ଭୂତ ॥
ଭାଦ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ।
ବୃଷଭାନୁ ଯଜ୍ଞ ଭୂମି ଶୋଧିବା ବେଳରେ ॥
ଦିବ୍ୟ ରୂପ ଧରି ଦେବୀ ଉପୁଜିଲେ ତହିଁ ।
ବୃଷଭାନୁ ରାଜା ତାଙ୍କୁ ସେ ସମୟେ ପାଇ ॥
ଆନନ୍ଦ ମନେ ତାହାଙ୍କୁ ଘେନିଗଲେ ପୁରେ ।
ଦେଲେ ତାଙ୍କୁ ପାଟ ମହାଦେଈଙ୍କ କୋଳରେ

ରାଣୀ ତାହାଙ୍କୁ ପାଳିଲେ ବହୁତ ଯତନେ ।
କୃଷ୍ଣ ଜନମିଲେ ବସୁଦେବଙ୍କ ଭବନେ ॥
ଆଜିର ବାଳୁ ଯାହା ଯାହା ପଚାରିଲୁ ମୋତେ ।
ସବୁ ବୁଝାଇ କହିଲି ମୁଁ ତୋର ଅଗ୍ରତେ ॥
ଗୋପନୀୟ ଗୋପନୀୟ ଗୋପନୀୟ ଏହି ।
ସୂତ ମୁନି କହନ୍ତି ଯେ ଶଉନକେ ଚାହିଁ ॥
ଏ ରାଧା ମାହାତ୍ମ୍ୟ ଯେହୁ ଭକତିରେ ଶୁଣେ ।
ପାପ ନାଶି ବସଇ ସେ ବୈକୁଣ୍ଠ ଭୁବନେ ॥
ଧର୍ମ ଅର୍ଥ କାମ ମୋକ୍ଷ ଏହି ଚତୁର୍ବର୍ଗ ।
ଦ୍ୱିଜ ଯୋଗୀନାଥ କହନ୍ତି ନ ବାଧଇ ରୋଗ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ରାଧାଷ୍ଟମୀ ବ୍ରତ ମାହାତ୍ମ୍ୟଂ ନାମ
ଊନଚତ୍ୱାରିଂଶୋଽଧ୍ୟାୟଃ ।



## ଚତ୍ୱାରିଂଶ ଅଧ୍ୟାୟ ।

### ସମୁଦ୍ର ମନ୍ଥନ ।

ପଚାରିଲେ ଶଉନକ ମୁନି ଆହେ ସୂତ ।
ବଡ଼ ସନ୍ଦେହ ଆବର ହୋଇଅଛି ଜାତ ॥
ପୂର୍ବେ କି କାରଣେ କଲେ ସମୁଦ୍ର ମନ୍ଥନ ।
ଏ କଥା ଗୋଟା ଶୁଣିବା ପାଇଁ ମୋର ମନ ॥
କହିବୁକ ଜନମୁନି କହି ତା ବୁଝାଇ ।
ସୂତ ବୋଇଲେ ହେ ବିପ୍ର ଶୁଣ ମନ ଦେଇ ॥
ସମୁଦ୍ର ମନ୍ଥନ କଥା ସଂକ୍ଷେପେ କହୁଛି ।
ଇନ୍ଦ୍ର ଦୁର୍ବାସା ସମ୍ବାଦ ଯାହା ଶୁଣି ଅଛି ॥
ସେହି ଇତିହାସ ଗୋଟା କହୁଅଛି ଶୁଣ ।
ମୁନିଚନ୍ଦ୍ର ଶୁଣ ତୁମ୍ଭେ ହୋଇ ସାବଧାନ ॥
ମହାତେଜା ବ୍ରହ୍ମଋଷି ଦୁର୍ବାସା ଯେ ଦିନେ ।
ଈଶ୍ୱର ଅଂଶେ ଜନମ ମହା ତପୋଧନେ ॥
ଇନ୍ଦ୍ରଙ୍କୁ ଦେଖିବା ପାଇଁ ଗଲେ ସ୍ୱର୍ଗପୁରେ ।
ଦେଖିଲେ ଶଚୀପତିଙ୍କି ଗଜର ଉପରେ ॥
ମୁନି ତାଙ୍କୁ ପାରିଜାତ ମାଳା କଲେ ଦାନ ।
ସେ ମାଳା ହସ୍ତେ ଧରଣ ସହସ୍ର ଲୋଚନ ॥

ଗଜ ମସ୍ତକରେ ଥୋଇ ଦେଇ ତହୁଁ ଗଲେ ।
ସୈନ୍ୟ ସଙ୍ଗେ ନନ୍ଦନ ବନରେ ମିଳିଲେ ॥
ଗଜ ସେହି ମାଳା ଛିଣ୍ଡାଇ ପକାଇଲା ତଳେ ।
ମହାମୁନି ଦୁର୍ବାସା ତା ଦେଖି କୋପ କଲେ ॥
ବୋଇଲେ ପାଇଛୁ ଯେଣୁ ତ୍ରୈଲୋକ୍ୟ ଶିରୀ ।
ତେଣୁ ଅବମାନନା ତୁ କଲୁ ବଜ୍ରଧାରୀ ॥
ଏଣୁ ହତଶିରୀ ହୁଅ ଆଜିଠୁଁ ମୋର ବୋଲେ ।
ଶାପ ପାଇ ପୁରନ୍ଦର ପୁରକୁ ଫେରିଲେ ॥
ଦେଖିଲେ ଜଗତ ମାତା ଶିରୀ ଯେ ନାହାନ୍ତି ।
ତନୁ ଦୂର ହତ ଶିରୀ ଦେଖି ଶଚୀପତି ॥
କ୍ଷୁଧା ତୃଷାରେ ଆକୁଳ ଜୀବ ଜନ୍ତୁଗଣ ।
ମେଘ ଗଣ ନ କରନ୍ତି ଜଳ ବରଷଣ ॥
ବାପୀ ପୋଖରୀ ଗଡ଼ିଆ ଶୁଖିଲ ପଡ଼ିଲ ।
ତରୁ ଲତା ଝାଉଁଳିଲା ଫଳ ନ ଫଳିଲା ॥
କ୍ଷୁଧା ତୃଷାରେ ବ୍ୟାକୁଳ ହେଲେ ଦେବଗଣ ।
ବ୍ରହ୍ମାଙ୍କ ଛାମୁରେ କାନ୍ଦି କଲେ ନିବେଦନ ॥
ଦେବତାଙ୍କ କଷ୍ଟ ଶୁଣି ବିଧାତା ପୁରୁଷ ।
ଭୃଗୁ ଆଦି ମୁନି ଥିଲେ ତାହାଙ୍କର ପାଶ ॥
ଦେବତା ମୁନିଙ୍କି ଘେନି ବ୍ରହ୍ମା ତହୁଁ ଗଲେ ।
କ୍ଷୀର ସାଗର ଉତ୍ତର ତଟରେ ମିଳିଲେ ॥
ଅଷ୍ଟାକ୍ଷର ନାରାୟଣ ମନ୍ତ୍ର କଲେ ଜପ ।
ଶ୍ରୀ ବିଷ୍ଣୁଙ୍କୁ ପୂଜା କଲେ ଦେଇ ଧୂପ ଦୀପ ॥
ତହୁଁ ହରି ଦେବତାଙ୍କୁ ହୋଇଲେ ପ୍ରସନ୍ନ ।
ସଦୟେ ଗରୁଡ଼ ପୃଷ୍ଠ କଲେ ଆରୋହଣ ॥
ଏକ ଦୃଷ୍ଟିରେ ଚାହିଁଲେ ଦେବତା ସକଳେ ।
ଶ୍ୱେତ ପଦ୍ମ ନେତ୍ର ଶୋହେ ବଦନ ମଣ୍ଡଳେ ॥
ଗଳାରେ ଯେ ବନମାଳା ଅପୂର୍ବ ସୁନ୍ଦର ।
ଶ୍ରୀବତ୍ସ ବିପ୍ରର ପାଦଚିହ୍ନ ଶୋହେ ଉର ॥
ବକ୍ଷସ୍ଥଳେ ବିରାଜଇ କଉସ୍ତୁଭ ମଣି ।
ଏ ଭବଂସାଗର ନାବ ଶଙ୍ଖଚକ୍ର ପାଣି ॥
ଜଗତ ଈଶ୍ୱର ବିଷ୍ଣୁ ଦେଖି ଏହିରୂପେ ।
ଆନନ୍ଦରେ ବୁଡ଼ି ଯାଇ ନୟନର ଆପେ ॥
ଏକ ମୁଖେ ଜୟ ଜୟ କହି ଯୋଡ଼ି କର ।
ଏକାବେଳେ ଶ୍ରୀବିଷ୍ଣୁଙ୍କୁ କଲେ ନମସ୍କାର ॥
ଏକ ମୁଖେ ବୋଇଲେ ହେ ଦୟାନ୍ଧି ଠାକୁର ।
ବ୍ରହ୍ମ ଶାପେ ଏହି ତନି ଜଗତ ଚିତାହାର ॥

( ସମୁଦ୍ରମନ୍ଥନ । )



ଭ୍ରାତୃଭାବେ ଦେବାସୁର ହୋଇ ଏକତ୍ରିତ ।
ସାଗର ମନ୍ଥିବା ପାଇଁ ହୋଇଣ ଉଦ୍ୟତ ॥
ବାସୁକିଙ୍କୁ ରଜ୍ଜୁ କରି ଅତ୍ୟନ୍ତ ଆଣ୍ଠରେ ।
ମନ୍ଦରେ ସିନ୍ଧୁ ମନ୍ଥନ୍ତି ଦେଖ ଲ ପ୍ରକାରେ ॥

ସମ୍ପଦ ହୀନ ହୋଇଗଲେ ଶିଷ୍ଟ ଭୃଷ୍ଟ ଗଲା ।
ସୁର ଅସୁର ମାନଙ୍କ ସର୍ବେ ମଲା ଗଲା ॥
କି କହିବୁଁ ଚରାଚରେ ପ୍ରାଣୀହିଁ ଯେତେକ ।
କ୍ଷୁଧା ତୃଷାର ଆକୁଳେ କରୁଛନ୍ତି ଶୋକ ॥
ଏ ସକଳ ଲୋକ ରକ୍ଷା କର ନାରାୟଣ ।
ତୋର ଅଭୟ ଚରଣେ ପଶିଲୁ ଶରଣ ॥
ଶ୍ରୀବିଷ୍ଣୁ ବୋଇଲେ ଯେହୁଁ ଲକ୍ଷ୍ମୀ ଠାକୁରାଣୀ
ଏହି ତିନି ଜଗତର ଅଟନ୍ତି କାରଣୀ ॥
ରହିଲା ମାତ୍ରେ ଜଗତ ଅଇଶ୍ୱର୍ଯ୍ୟ ପୂର୍ଣ୍ଣ ।
ବ୍ରହ୍ମ ଶାପେ ସେ ଇନ୍ଦିରା ହୋଇଲେ ଅନ୍ତର୍ଦ୍ଧାନ ॥
ଯେବେ ତୁମ୍ଭେ ସୁରାସୁରେ ଏକାବେଳେ ମିଳି
ସ୍ୱର୍ଣ୍ଣ ପର୍ବତ ବୋଲାଇ ଯେ ମନ୍ଦର ଗିରି ॥
ତାହାକୁ ଉପାଡି ଆଣି ସମୁଦ୍ରେ ପକାଇ ।
ସର୍ପରାଜ ବାସୁକିକି ତହିଁରେ ଗୁଡାଇ ॥
ମନ୍ଥନ ଖୁଆ କରି ସେ ମନ୍ଦର ପର୍ବତେ ।
ବାସୁକିକି ରଜ୍ଜୁ କରି ମନ୍ଥିବ ସମସ୍ତେ ॥
କ୍ଷୀର ସାଗର ମନ୍ଥନୁ ଲକ୍ଷ୍ମୀ ଉପୁଜିବେ ।
ଜଗତର ମାତା ସେହି ଜନଙ୍କୁ ପାଳିବେ ॥
ଲକ୍ଷ୍ମୀ ପାଇଲେ ତୁମ୍ଭେ ଯେ ପାଇଲ ସକଳ ।
କୂର୍ମ ରୂପେ ଧରିବି ମୁଁ ମନ୍ଦର ଶଇଳ ॥
ସୂତ ମୁନି କହନ୍ତି ଯେ ଶୌନକ ଶୁଣନ୍ତି ।
ଏମନ୍ତ କହି ଅନ୍ତର ହୋଇଲେ ଶିରୀପତି ॥
ବିଷ୍ଣୁଙ୍କୁ ନ ଦେଖି ଫେରି ଅଇଲେ ସକଳେ
ଦେବତା ଅସୁରେ ମିଳି ବେଗେ ଚଳିଗଲେ ॥
କ୍ଷୀର ସାଗର ମନ୍ଥନ କରିବା ନିମନ୍ତେ ।
ଦେବ ଦାନବ ଗନ୍ଧର୍ବ ଗଣ ତହିଁ ଯେତେ ॥
ମନ୍ଦରକୁ ଗଲେ ପାଶରେ ଏକାବେଳେ ମିଳି ।
ମନ୍ଦର ଗିରିକି ବଳେ ଉପାଡିଲେ ତୋଳି ॥
ଧରାଧରି କରି ସର୍ବେ ଆଣିଲେକ ବହି ।
ଚଡ଼ ଚଡ଼ ଶବଦରେ କମ୍ପଇ ଯେ ମହୀ ॥
କ୍ଷୀର ସମୁଦ୍ର ଭିତରେ ପକାଇଲେ ନେଇ ।
ପର୍ବତ ବୁଡ଼ିଣ ଥିଲା କୂଳହିଁ ନ ପାଇ ॥
ତାହା ଦେଖି ସୁରାସୁରେ ହୋଇଲେ କାତର
ଏକ ମୁଖରେ ବୋଇଲେ ରଖ ଦାମୋଦର ॥
ଆମ୍ଭର ଏ କଷ୍ଟ ଯାକ ଅକାରଣ ଗଲା ।
ଗିରି ବୁଡି ଗଲା ତାର ପତା ନ ମିଳିଲା ॥
କି ବୁଦ୍ଧି କରିବୁଁ କିଛି ବୁଦ୍ଧି ଦିଶୁ ନାହିଁ ।
ତୁମ୍ଭେ ଅନ୍ତର୍ଯ୍ୟାମୀ ନାଥ ତ୍ରି ସବଗ୍ରାହୀ ॥
ଦେବଙ୍କ ଆରତ ଜାଣି ଜଗତ ଠାକୁର ।
ସମୁଦ୍ର ଭିତରେ ହୋଇଲେ କୂର୍ମ ଅବତାର ॥
ସ୍ୱର୍ଗ ପ୍ରମିତ କେତେ ତାର ପରିମାଣ ନାହିଁ ।
ଗିରି ତୋଳିଲେ ଆପଣା ପୃଷ୍ଠରେ ବସାଇ ॥
ପର୍ବତ ମୂଳ ଧଇଲେ ପ୍ରଭୁ ଆଦିମୂଳ ।
ଜଳ ଉପରେ ଭାସିଲା ଦେଖିଲେ ସକଳ ॥
ଅନନ୍ତ ନାଗକୁ ଦେଲେ ଗିରିରେ ଗୁଡାଇ ।
ଲାଞ୍ଜିକୁ ଧରି ତାହାର ସମସ୍ତେ ବୁଲଇ ॥
ମନ୍ଥନ ଆରମ୍ଭ କଲେ ଏକାଦଶୀ ଦିନ ।
କାଳକୂଟ ବିଷ ହେଲା ପ୍ରଥମେ ଉତ୍ପନ୍ନ ॥
ଜ୍ୱାଳରେ ବ୍ୟାକୁଳ ହୋଇ ନ ପାରିଲେ ସହି ।
ତ୍ରାହି କରି ତ୍ରାହି କରି ଶଙ୍କରଙ୍କୁ କହି ॥
ଈଶ୍ୱର ଆରତ ଦେଖି ଦେବ ବିଶ୍ୱେଶ୍ୱର ।
ବୋଇଲେ ହେ ଦେବଗଣେ ନ ହୁଅ କାତର ॥
ମୋର ହସ୍ତେ କାଳକୂଟ ବିଷ ଦିଅ ଆଣି ।
କହି କରି ବଢାଇଲେ ଦେବ ଶୂଳପାଣି ॥
ଶ୍ରୀ ବିଷ୍ଣୁଙ୍କୁ ଧ୍ୟାନ କରି ହୃଦୟ ମଧ୍ୟରେ ।
ମହାମନ୍ତ୍ର ପଢି ବିଷ କ୍ଷେପିଲେ ଉଦରେ ॥
ଶ୍ରୀବିଷ୍ଣୁ ମନ୍ତ୍ର ପ୍ରଭାବେ ବିଷ ହେଲା ଜୀର୍ଣ୍ଣ ।
ଆହେ ଦ୍ୱିଜ ସେହି ମନ୍ତ୍ର କହୁଅଛୁଁ ଶୁଣ ॥
ଶ୍ରୀ ବିଷ୍ଣୁର ନାମ ତ୍ରୟ ମନ୍ତ୍ର ତାକୁ କହି ।
ଅଚ୍ୟୁତାନନ୍ତ ଗୋବିନ୍ଦ ତିନି ନାମ ଏହି ॥
ଆଦ୍ୟରେ ପ୍ରଣବ ଅନ୍ତେ ନମଃ ଶବ୍ଦ ଦେବ ।
ଏ ମନ୍ତ୍ର ପଢିବା ମାତ୍ରେ ବିଷ ଜୀର୍ଣ୍ଣ ହେବ ॥
ଏ ମହା ମନ୍ତ୍ର ବିଷ୍ଣୁର ଜାଣ ଦ୍ୱିଜବର ।
ଜାଣି ବା ନ ଜାଣି ବିଷ ଖାଇଥିବା ନର ॥
ଏ ମନ୍ତ୍ର ପଢି ଝାଡିଲେ ନ ରହିବ ବିଷ ।
ବିଷଭକ୍ଷି ନୀଳକଣ୍ଠ ହୋଇଲେ ମହେଶ ॥
ସକଳ ପ୍ରାଣୀ ଆନନ୍ଦ ହୋଇଲେ ଏହା ଦେଖି ।
ଶଙ୍କର ସ୍ତୁତି ପଢିଲେ ବ୍ରହ୍ମ ବେଦ ଆସି ॥
ସମୁଦ୍ର ପୁଣି ମନ୍ଥିଲେ ମିଳି ଦେବାସୁରେ ।
କନ୍ୟା ଏକ ଉପୁଜିଲା ସେହି ମନ୍ଥନରେ ॥
ଘୋର କାଳମୁଖ ତାର ମହାଭୟଙ୍କର ।
ଆକ୍ଷିଦୁଇ ଗୋଟା ରଙ୍ଗ ଯେସନେ ରୁଧିର ॥

ରୁକ୍ଷ ପିଙ୍ଗଳ କେଶ ଉଡେ ଫର୍ଫର୍ ।
ଜୀର୍ଣ୍ଣଶୀର୍ଣ୍ଣ ଗୋଡ଼ା ତା ଅତି ଅସୁନ୍ଦର ॥
ସେ କନ୍ୟା ନାମ ଅଲକ୍ଷ୍ମୀ ଦେବଗଣେ ସୃଷ୍ଟି ।
ବୋଇଲା କି କରିବି ମୁଁ ଦିଅ ତାହା କହି ॥
ଲକ୍ଷ୍ମୀ ଠାକୁରାଣୀଙ୍କର ସେ ବଡ଼ ଭଉଣୀ ।
ଦେବେ ତାହାଙ୍କୁ କହିଲେ ଶୁଣ ଠାକୁରାଣୀ ॥
ଯେଉଁ ଘରେ ଯେଉଁ ପୁରେ ଯେଗ୍ରାମେ ନଗରେ
ନିବାରିତ କଳିରୋଳ ଲଗେ ନିରନ୍ତରେ ॥
ସେ ସ୍ଥାନମାନଙ୍କେ ଶୁଭେ ରହି ତୁ ଗୋ ଯାଇ ।
ନିଷ୍ଠୁର କଥା ଯାହାଙ୍କ ମୁଖୁ ବାହାରଇ ॥
ମିଛ କଥା କହୁଥାନ୍ତି ଯେ ଜନେ ଆବର ।
ଯେ ପୁଣି ସନ୍ଧ୍ୟାବେଳରେ କରନ୍ତି ଆହାର ॥
ଦୁଃଖ ଦେଉଥିବୁ ତାଙ୍କୁ ଥାଇ ତାଙ୍କ ଘରେ ।
କପାଳ କେଶ ପାଉଁଶ ଥାଇ ଯେ ସ୍ଥାନରେ ॥
ଯହିଁ ପୁଣି ଥାଇ ହାଡ ତୁଷ ଯେ ଅଙ୍ଗାର ।
ସେହି ସବୁ ସ୍ଥାନ ମାତ ତୋହର ଯେ ଘର ॥
ପାଦଦୁଇ ନ ଧୋଇ ଯେ କରଇ ଭୋଜନ ।
କଳିକି ଯେଜ୍ଞ ତା ଘରେ ଥିବୁ ରାତ୍ର ଦିନ ॥
ଖାଇଲା ଭାତକୁ ସ୍ପର୍ଶ ଯେ ତାହା ଛୁଅଁଇ ।
ନରଙ୍କ ମଧ୍ୟେ ଅଧମ ସେହି ଗୋ ଅଟଇ ॥
କହୁଁଷ ତୁ ଦେଉଥିବୁ ରହି ତାର ଘରେ ।
ତିଳ ପିଠା ଭୁଞ୍ଜନ୍ତି ଯେ ପାପବୁଦ୍ଧି ନରେ ॥
ପୋଇ କଳମ୍ବ ପିଆଜ ଭୁଞ୍ଜନ୍ତି ଆବର ।
ତୋହର ମା ବାସସ୍ଥାନ ତାହାଙ୍କ ମନ୍ଦିର ॥
ଗୁରୁ ଦେବତା ଅତିଥି ପୂଜା ଯହିଁ ନାହିଁ ।
ଯାଗ ନ ହୁଅଇ ବେଦ ଧ୍ୱନି ନ ଶୁଭଇ ।
ସେ ସ୍ଥାନରେ ଯାଇ ତୁ ଗୋ ରହି ଘର କରି
କଉଣସି ଚିନ୍ତା ମନେ ନ ଥିବ ତୋହରି ॥
ପର ଅପବାଦେ ରତ ଥାନ୍ତି ଯେ ନିରତେ ।
ପରଧନ ହରନ୍ତି ଯେ କପଟେ ନାନାମତେ ॥
ସାଧୁ ବିପ୍ର ବୃଦ୍ଧଜନ ପୂଜା ଯହିଁ ନାହିଁ ।
ଦରିଦ୍ର ପାପଦାୟିନୀ ହେବୁ ତୁ ଗୋ ତହିଁ ॥
ବାଳ ବଲ୍ଲଭ ଅଲକ୍ଷ୍ମୀ କନ୍ୟାକୁ ଏମନ୍ତେ ।
କହି ସମୁଦ୍ର ମନ୍ଥିଲେ ସୁରାସୁରେ ଯେତେ ॥
ମହାଗଜ ଐରାବତ ତହୁଁ ଉପୁଜିଲା ।
ତହୁଁ ପୁଣି ଉଚ୍ଚୈଃଶ୍ରବା ଅଶ୍ୱ ଜାତ ହେଲା ॥

ଧନ୍ୱନ୍ତରୀ ବୈଦ୍ୟରାଜ ଉଠିଲେ ତଦନ୍ତେ ।
ପାରିଜାତ ଫଳଗଛ ତହୁଁ ଉପୁଜନ୍ତେ ॥
ସୁରଭି ଗୋମାତା ପୁଣି ତହୁଁ ହେଲା ଜାତ
ଅପସରାଗଣ ହେଲେ ତଦନ୍ତେ ସମ୍ଭୂତ ॥
ସେହି ଏକାଦଶୀ ଦିନ ରାତ୍ରି ପାହିଗଲା ।
ଦ୍ୱାଦଶୀ ତିଥିରେ ରବି ଉଦୟ ହୋଇଲା ॥
ମହାଲକ୍ଷ୍ମୀ ଶିରୀଦେବୀ ହେଲେ ଉତପତ୍ତି ।
ସବୁ ସୁଲକ୍ଷଣ ଅଙ୍ଗେ ବିରାଜୁ ଅଛନ୍ତି ॥
ଧର୍ମ ଦେବତା ଆବର ସକଳ ଦେବତା ।
ଦେଖିଲେ ନେତ୍ରେ ଜଗତ ଜନଙ୍କର ମାତା ॥
ଶ୍ରୀ କୃଷ୍ଣ ହୃଦୟାଳୟା ଦେବୀ କମଳିନୀ ।
ନୟନ ପବିତ୍ର କଲେ ଦେଖି ସୁର ମୁନି ॥
ଶୀତଳ କିରଣ ଚନ୍ଦ୍ର ଲକ୍ଷ୍ମୀ ସାନଭାଇ ।
ଉପୁଜିଲେ ତାଙ୍କ କରେ ସୁଧା ବିରାଜଇ ॥
ଶ୍ରୀହରି ଜାୟା ତୁଳସୀ ଦେବୀ ହେଲେ ଜାତ ।
ସବୁରି ପୂର୍ଣ୍ଣ ହୋଇଲା ଯହୁଁ ମନୋରଥ ॥
ଗିରି ଯହିଁ ଥିଲା ତହିଁ ଥୋଇ ଦେଲେ ନେଇ
ଲକ୍ଷ୍ମୀ ଦେବୀ ଶ୍ରୀ ପଦ୍ମରେ ସର୍ବେ ଲୟଦେଇ
କର ଯୋଡ଼ି ସ୍ତୁତି କଲେ ଲକ୍ଷ୍ମୀ ଦେବୀଙ୍କର ।
ଶ୍ରୀ ଲକ୍ଷ୍ମୀ ଦେବୀଙ୍କ ମନ୍ତ୍ର ଜପିଲେ ଆବର ॥
ପ୍ରସନ୍ନେ ଦେବୀ ଦେବଙ୍କୁ ଏମନ୍ତ ବୋଇଲେ ।
ଆମ୍ଭେ ସୁପ୍ରସନ୍ନ ହେଲୁ ତୁମ୍ଭଠାରେ ଭଲେ ॥
ଆହେ ଦେବଗଣେ ତୁମ୍ଭେ ମାଗି ନେଇନବର ।
ଏମନ୍ତ ଶୁଣି ବୋଇଲେ ସକଳ ଅମର ॥
ହରିପ୍ରିୟା କମଳା ତୁ ଜଗତ ଜନନୀ ।
ତୋ ବିନା ଅତି ବ୍ୟାକୁଳ ଜଗତର ପ୍ରାଣୀ ॥
ସମସ୍ତଙ୍କୁ ପ୍ରାଣ ଦାନ କର ତୁ ଗୋ ମାତ ।
ଦେବଙ୍କ ମୁଖୁ କମଳା ଶୁଣିଣ ଏମନ୍ତ ॥
ବୋଇଲେ ପାଳିବି ସବୁ ପ୍ରାଣୀଙ୍କି ଏଥର ।
ଶଙ୍ଖ ଚକ୍ର ଗଦାଧର ଜଗତ ଈଶ୍ୱର ॥
ଜଳ ମଧ୍ୟେ ବିରାଜନ୍ତି ଦେବ ନାରାୟଣ ।
ଦେଖି ତାଙ୍କୁ ନମସ୍କାର କଲେ ଦେବଗଣ ॥
କରକୁ ଆଞ୍ଜୋଳି କରି ପଢ଼ି ଶ୍ଲୋକ ସ୍ତୁତି ।
ଗଦଗଦସ୍ୱରେ ପୁଣି ଏମନ୍ତ କହନ୍ତି ॥
ସଂସାର ଜନରକ୍ଷଣୀ ଜଗତ ଜନନୀ ।
ହେ ପ୍ରଭୁ ତୁମ୍ଭ ବଲ୍ଲଭା ଏହି କମଳିନୀ ॥

ଏହାଙ୍କୁ ଯେ ଦେବରାଜ୍ୟ ପାଟରାଣୀ କର ।
ସେହି ଦେବୀ ଠାକୁରାଣୀ ତୁମ୍ଭେ ଯେ ଠାକୁର ॥
ଶ୍ରୀ ବିଷ୍ଣୁ ତହୁଁ ପ୍ରତିଜ୍ଞା ନ କଲେ ତା ଦେଖି
ଲକ୍ଷ୍ମୀଦେବୀ ବୋଇଲେ ହେ ଶ୍ୱେତପଦ୍ମଆକ୍ଷି
ବଡ଼ ଭଉଣୀ ମୋହର ବିଭା ହୋଇ ନାହିଁ ।
ମୁଁ କେମନ୍ତେ ବିଭାହେବି କହ ଭବଗ୍ରାହୀ ॥
ସୂତମୁନି କହନ୍ତି ଯେ ଶୌନକ ଶୁଣନ୍ତି ।
ଲକ୍ଷ୍ମୀର ମୁଖୁଁ ଏମନ୍ତ ଶୁଣି ଶିରିପତି ॥
ବେଦ ବିଧି ଅନୁସାରେ ଦେବଙ୍କ ସାକ୍ଷାତେ ।
ଉଦ୍ଦାଳକ ମୁନିଙ୍କି ଯେ ଦେଖିଣ ଅଗ୍ରତେ ॥
ଅଲକ୍ଷ୍ମୀ କନ୍ୟାକୁ ବିଭା ହୁଅ ତୁମ୍ଭେ ମୁନି ।
ବାଧ୍ୟ ହେଲେ ଉଦ୍ଦାଳକ ବିଷ୍ଣୁ କଥା ମାନି ॥
ଅଲକ୍ଷ୍ମୀକି ବିଭାଦେଇଁ ଦେବ ନାରାୟଣ ।
କଲେ ଲକ୍ଷ୍ମୀଦେବୀଙ୍କର କରକୁ ଗ୍ରହଣ ॥
ଦେବଗଣ ବାରମ୍ବାର କଲେ ନମସ୍କାର ।
ବଳରେ ଅଧିକ ଯେଣୁ ସକଳ ଅସୁର ॥
ତାହାଙ୍କୁ ମାରି ସେଠାରୁ ଦେଲେ ଘଉଡ଼ାଇ
କାନ୍ଦି କାନ୍ଦି ଦଶଦିଗେ ଗଲେ ସେ ପଳାଇ ॥
ତହୁଁ ଶ୍ରୀବିଷ୍ଣୁ ଆଜ୍ଞାରେ ଦେବତା ସମସ୍ତେ ।
ମଧୁ ପିଇବାକୁ ଧାଡ଼ି ହୋଇଣ ବସନ୍ତେ ॥
ପରଷି ଦେବାକୁ ତହୁଁ ଲଗାଇଲେ କାଳ ।
ଆପଣା ଭିତରେ ଯହୁଁ ହେଲେ ବୋଲବୋଲ
ଶ୍ରୀବିଷ୍ଣୁ ଉଠିଲେ ତହୁଁ ସ୍ତ୍ରୀରୂପ ଧରି ।
ସୁବର୍ଣ୍ଣ ପାତ୍ରେ ଅମୃତ ପରଷିଲେ ହରି ॥
ରାହୁ ଅସୁର ବିଷ୍ଣୁର ମାୟା ଜାଣିପାରି ।
ଅମୃତ ପିଇଲା ତହିଁ ଦେବରୂପ ଧରି ॥
ଚନ୍ଦ୍ରସୂର୍ଯ୍ୟଙ୍କ ମଝିରେ ଥିଲା ସେ ଅସୁର ।
ବିଷ୍ଣୁଙ୍କୁ ଠାରି କହନ୍ତେ କ୍ରୋଧେ ଚକ୍ରଧର
ସୁବର୍ଣ୍ଣ ପାତ୍ରେ ଛେଦିଲେ ରାହୁର ଯେ ଶିର ।
ମୁଣ୍ଡ ଠାବେ ଗଣ୍ଡି ଠାବେ ହେଲା ଅସୁରର ॥
ଅମୃତ ପିଇବା ଯୋଗୁଁ ନ ମରି ବଞ୍ଚିଲା ।
ମୁଣ୍ଡ ତାର କେତୁ ହେଲା ଗଣ୍ଡି ରାହୁ ହେଲା ॥
ଭୟରେ ବିହ୍ୱଳ ହୋଇ ସେ ଦୁଇ ଅସୁର ।
କ୍ଷଣେ ନ ରହି ପଳାଇ ଗଲେ ବହୁଦୂର ॥
ଆଜଯାଏ ସେହି କ୍ରୋଧ ହୃଦମଧ୍ୟେ ଧରି ।
ସେ ଦିନରେ ତାଙ୍କ ସଙ୍ଗେ ଆସି ଯୁଦ୍ଧକରି ॥

ବଳେ ତାହାଙ୍କୁ ଗ୍ରାସନ୍ତି ଆହେ। ଦ୍ୱିଜବର ।
ସେ କାଳ ଗୋଟି ଦୁର୍ଲ୍ଲଭ ବ୍ରହ୍ମାଣ୍ଡ ଭିତର ॥
ସବୁ ଜଳ ଗଙ୍ଗାଜଳ ତୁଲ୍ୟ ସେହି କାଳେ ।
ବେଦବ୍ୟାସ ତୁଲ୍ୟ ଜାଣ ବିପ୍ରହିଁ ସକଳେ ॥
କାକତୀର୍ଥେ ସ୍ନାନକରେ ସେ କାଳେ ଯେ ଜନ
ତାର ସେହି ସ୍ନାନ ହୁଏ ଜାଣ ଗଙ୍ଗାସ୍ନାନ ॥
ସେ କାଳ ଦାନ ଅକ୍ଷୟ ପୁଣ୍ୟକୁ ଦିଅଇ ।
କୋଟି ଜନମର ପାପ ସମୂଳରେ ଯାଇ ॥
କି କମନ୍ତେ କୋଟି ଯଜ୍ଞ କରିବ ଆଦର ।
ବିଦ୍ୟାର୍ଥୀର ବିଦ୍ୟାଲାଭ ହୁଅଇ ଅପାର ॥
ପୁତ୍ରାର୍ଥୀର ପୁତ୍ରଲାଭ ନିଶ୍ଚୟ ହୁଅଇ ।
ମୋକ୍ଷାର୍ଥୀ ଜନ ଯେ ମୋକ୍ଷ ଫଳ ନିଶ୍ଚେପାଇ
ସାଧକର ମନ୍ତ୍ର ସିଦ୍ଧ ହୁଅଇ ନିଶ୍ଚୟେ ।
ନିରତେ ଶରଣ ଗୋପୀନାଥ ପଦ୍ମପାୟେ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ସମୁଦ୍ର ମନ୍ଥନଂ ନାମ
ଚତ୍ୱାରିଂଶୋଽଧ୍ୟାୟଃ ।



## ଏକଚତ୍ୱାରିଂଶ ଅଧ୍ୟାୟ ।

ଲକ୍ଷ୍ମୀବ୍ରତ ।

ପୁନରପି ପଚାରିଲେ ମୁନି ଶୌନକ ।
ତୁମ୍ଭେ ମହାଜ୍ଞାନୀ ଅଟ ସୂତ ପୌରାଣିକ ॥
ସାକ୍ଷାତେ ବିଷ୍ଣୁ ସ୍ୱରୂପୀ ଯେହ୍ନେ ବେଦବ୍ୟାସ ।
ସେହି ମହାମୁନିଙ୍କର ତୁମ୍ଭେ ଯେଣୁ ଶିଷ୍ୟ ॥
ତୁମ୍ଭର ଦେହରେ ନାହିଁ ରାଗ ଅହଂକାର ।
ଲୋକ ପ୍ରତି ଅନୁଗ୍ରହ ନିରତେ ତୁମ୍ଭର ॥
ସ୍ତ୍ରୀଏ ହୁଅନ୍ତି କିପାଁ ସଉଭାଗ୍ୟବତୀ ।
ଅମୃତ ପ୍ରାୟେ ସବୁରି ଚକ୍ଷୁକୁ ଦିଶନ୍ତି ॥
ପତିର ଠାରେ ପିରତି ବଢ଼ାନ୍ତି ଆଦର ।
ପାପେ କିପାଁ ମନ ଥାଏ କେତେ ସ୍ତ୍ରୀଙ୍କର ॥
ସ୍ୱାମୀ ଅପ୍ରିୟ ହୁଅନ୍ତି ପୁଣି ଅଭାଗିନୀ ।
ଏଥି ଶୁଣିବାକୁ ଇଚ୍ଛା କରେ ମୁହିଁ ପୁଣି ॥

ଲକ୍ଷ୍ମୀଦେବୀଙ୍କର ଜନ୍ମ ହେଲ ପୁଣି କାହିଁ ।
ମୋ ସନ୍ଦେହ ଦୂରକର ଏ ସକଳ କହି ॥
ସୂତ ମୁନି ବୋଇଲେ ହେ। ଶୁଣ ଦ୍ୱିଜବର ।
କହୁଛି ପୂର୍ବର କଥା ମୁଁ ତୁମ୍ଭ ଆଗର ॥
ସେ କଥା ଗୋଟା ଦୁର୍ଲ୍ଲଭ ପବିତ୍ର ଆବର ।
ବହୁକାଳର ପୁରୁଣା ଦ୍ୱାପର ଯୁଗର ॥
ଯେଉଁପର ଘଟଥିଲ ଶୁଣ ସାବଧାନେ ।
ଦ୍ୱାପରେ ରାଜାଏ ଥିଲ ଭଦ୍ରଶ୍ରବା ନାମେ ॥
ସଉରାଷ୍ଟ୍ର ଦେଶ ଗୋଟା ରାଜଧାନୀ ତାର ।
ଜାଣଇ ସେ ଋଗ୍‌ବେଦ ବେଦାଙ୍ଗ ଆବର ॥
ସୁରତ ଚନ୍ଦ୍ରିକା ନାମେ ତାର ମହାଦେଈ ।
ତା ଗର୍ଭେ ସେ ରାଜା ସାତପୁତ୍ର ଉପୁଜାଇ ॥
ଗୋଟିଏ ମାତ୍ର ଦୁହିତା ଜାଣ ଦ୍ୱିଜବର ।
ତାହାର ସର୍ବାଙ୍ଗ ଯାକ ଅପୂର୍ବ ସୁନ୍ଦର ॥
ସତ ବିନା ମିଛକଥା ତା ତୁଣ୍ଡେ ନ ପଶେ ।
ତାତହିଁ ପିତାର ସ୍ନେହଥାଏ ଯେ ବିଶେଷେ ॥
ତାର ନାମ ଶ୍ୟାମ ବାଳା ଏକଦିନେ ସେହି ।
ଯତନରେ ଅଳଙ୍କାର ଘେନିଣ ସୁମୁହିଁ ॥
ସଖୀଙ୍କ ସଙ୍ଗେ ଖେଳିବା ନିମନ୍ତେ ସେ ଗଲ ।
ବାଲୁକା ମୟ ଭୂମିରେ ପ୍ରବେଶ ହୋଇଲ ॥
ସୁବର୍ଣ୍ଣ ରତ୍ନ ତହିଁରେ ଥିବାରୁ ଗୁପତେ ।
ଚକ ଚକ ଦିଶା ଯାଏ ସେହି ସଇକତେ ॥
କଉତୁକେ ଖେଳି ଖେଳି ସେ ସୁନ୍ଦରୀମଣି ।
କଦମ୍ବ ତରୁ ମୂଳରେ ବସିଲ ତରୁଣୀ ॥
ଲୋକହିତକାରିଣୀ ଯେ ସଂସାର ତାରିଣୀ ।
ଜଗତ ଜନ ଜନନୀ ଲକ୍ଷ୍ମୀ ଠାକୁରାଣୀ ॥
ହେ ବିପ୍ର ସେକାଳେ ଆସି ମିଳିଲେ ସେ ପୁରେ
ବୃଦ୍ଧବ୍ରାହ୍ମଣୀ ରୂପରେ ରାଜାର ନଗରେ ॥
ବିଚାରିଲେ ମନମଧ୍ୟେ ଦେବୀ ଯେ ଏମନ୍ତେ ।
ବ୍ରହ୍ମାଣ୍ଡରେ ଚରାଚର ପ୍ରାଣୀ ଛନ୍ତି ଯେତେ ॥
ତାଙ୍କ ପାଳନ କରତା ଅଟଇ ନୃପତି ।
ତାଙ୍କୁ ଛାଡ଼ି କିପାଁ ମୁହିଁ ଯିବି ଆନକତି ॥
ଏମନ୍ତ ଭାବି ମିଳିଲେ ନୃପତି ମନ୍ଦିରେ ।
ଦେଖିଲେ ତହିଁ ପତାକା ଉଡ଼େ ଫରହରେ ॥
ସୁନା କାନ୍ଥରେ ସୁନ୍ଦର ଦିଶେ ସବୁଘର ।
ଦାସୀ ଜଗି ବସିଅଛି ରାଣୀ ସିଂହଦ୍ୱାର ॥

ସେ ବୁଢ଼ୀ ବ୍ରାହ୍ମଣୀ ତାକୁ ବୋଇଲ ହେ ଦାସି
ସକଳ ଶୁଭ ଲକ୍ଷଣ ତୁମ୍ଭ ଅଙ୍ଗେ ଦିଶି ॥
ଦ୍ୱାର ଛାଡ଼ିଦିଅ ମୋତେ ଭିତରକୁ ଯିବି ।
ସୁରତି ଚନ୍ଦ୍ରିକା ପାଟ ରାଣୀଙ୍କି ଦେଖିବି ॥
ଦାସୀ ହସ୍ତେ ରତ୍ନଦଣ୍ଡ ଗୋଟି ଶୋଭାପାଇ ।
ବୁଢ଼ୀ କଥାରେ ପରମ ଆନନ୍ଦିତ ହୋଇ ॥
ବୋଇଲ ଲୋ ବୁଢ଼ୀ ତୁହି କୋଉଠୁ ଭଗିଣୀ ।
ତୋର କିଏ ପତି ତୁହି କାହାର ଘରଣୀ ॥
କାହିଁ ଆସିଅଛୁ ତୁହି କି ନାମ ତୋହର ।
କିମନ୍ତେ ଆସିଅଛୁ ଏ ରାଜାର ପୁର ॥
ରାଣୀର ସଙ୍ଗତେ ଦେଖା କରିବୁ କିପାଇଁ ।
ଏସବୁ କଥା ମୋ ଆଗେ କହ ତୁ ବୁଝାଇ ॥
ଶୁଣିବାକୁ କଉତୁକ ବଢ଼ୁଛି ମୋହର ।
ବୁଢ଼ୀ ବୋଲେ ଶୁଣ ତୁଗୋ ରତ୍ନଦଣ୍ଡକରି ॥
ପାଟ ମହାଦେଈଙ୍କର ଯେଣୁ ତୁଗୋ ଦାସୀ ।
ତେଣୁ ତୋ ଆଗେ କହିବି ସକଳ ବିଶେଷି ॥
ଆବର ଶୁଣିବା ପାଇଁ ବଳାଛି ତୋ ମନ ।
କହୁଅଛି ଶୁଣ ତାହା ହୋଇ ସାବଧାନ ॥
ଜାଣ ଗୋ ଦାସି ମୋ ନାମ କମଳା ଅଟଇ ।
ଦ୍ୱାରବତୀ ନାମେ ଏକ ପୁରୀ ଯେ ଅଛଇ ॥
କାନ୍ତର ନାମ ମୋହର ଅଟେ ଭୁବନେଶ ।
ଦ୍ୱାରବତୀ ପୁରେ ଥାନ୍ତି ରହି କରି ବାସ ॥
ରତ୍ନବେତଧାରିଣି ଗୋ ଶୁଣ ମନ ଦେଇ ।
ଏ ତୁମ୍ଭ ଘରକୁ ଯହିଁ ପାଇଁ ଆସିଛଇଁ ॥
ବୈଶ୍ୟର ଦୁହିତା ଥିଲ ପୂର୍ବେ ତୋର ରାଣୀ
କହୁଅଛି ଶୁଣ ଦାସି ତାହାର କାହାଣୀ ॥
ଅତିଦୁଃଖେ କାଳକାଟେ ଶାଶୂଘରେ ରହି ।
ଏକଦିନେ ସ୍ୱାମି ସଙ୍ଗେ କଳିକଲ ସେହି ॥
ତା ସ୍ୱାମୀ ତାକୁ ବହୁତ ମାଡ଼ ଯେ ମାରିଲ ।
କ୍ରୋଧେ ସେହି ଶାଶୁଘରୁ ବାହାର ଅଇଲ ॥
କାନ୍ଦି କାନ୍ଦି ଯାଉଥିଲ ଶୁଣି ତା ରୋଦନ ।
ଧୀରେ ଧୀରେ କଲି ମୁହିଁ ତା ପାଶେ ଗମନ ॥
ତାକୁ ମୁହିଁ ପଚାରନ୍ତେ ସବୁ ସେ କହିଲ ।
କିଛିମାତ୍ର କପଟ ସେ ତହିଁ ନ ରଖିଲ ॥
ତା ଦୁଃଖ ନ ସହି ତାକୁ କହିଲି ଏମନ୍ତ ।
ମୋହର କଥା ମାନି ତୁଁ କର ବାରବ୍ରତ ॥

ମୋକଥାରେ ସେ ରମଣୀ ବର-ବ୍ରତ କଲା ।
ସେ ବ୍ରତ ପ୍ରସାଦେ ତାର ଦୁଃଖ ଦୂର ହେଲା ॥
ସ୍ୱାମୀ ପୁତ୍ର ଘେନି ସେହି ସୁଖେ କଲା ଘର ।
ଏକାବେଳେ ପ୍ରାଣ ଗଲା ପତି ପତ୍ନୀଙ୍କର ॥
ଯମ ଆଜ୍ଞାରେ ଯେ ଯମଦୂତେ ବେଗେ ଆସି ।
ଦୁହିଙ୍କ ଗଳାରେ ଦେଲେ ଚର୍ମରଜ୍ଜୁ ଫାଶି ॥
ଦୂତଙ୍କ ମଧ୍ୟେ ପ୍ରଧାନ ଚଣ୍ଡ ଯେ ପ୍ରଚଣ୍ଡ ।
ସେ ଦୁହିଙ୍କ ହସ୍ତେ ଅଛି ଯମକାଳ ଦଣ୍ଡ ॥
କାଳ ବିକାଳଙ୍କ ହସ୍ତେ ଲୁହାର ମୁଦ୍ଗର ।
ବାନ୍ଧି ଘେନି ଯିବାବେଳେ ଲକ୍ଷ୍ମୀର କିଙ୍କର ॥
ଶଙ୍ଖଚକ୍ର ଗଦା ତାଙ୍କ ହସ୍ତେ ବିରାଜଇ ।
ତାଙ୍କୁ ନେବାକୁ ମିଳିଲେ ଲକ୍ଷ୍ମୀ ଆଜ୍ଞାପାଇ ॥
ଦେଖି ତାଙ୍କୁ ଯମଦୂତେ ଡରେ ପଳାଇଲେ ।
ଲକ୍ଷ୍ମୀଦୂତେ ସେ ଫାଶକୁ କାଟିପକାଇଲେ ॥
ରାଜହଂସ ଯୋଗ୍ୟ ଦିବ୍ୟ ବିମାନେ ବସାଇ ।
ପୁଣ୍ୟମନ୍ତ୍ର ବାଟେ ବାଟେ ଲକ୍ଷ୍ମୀପୁରେ ଯାଇ ॥
ଯେତେ ଥର କରିଥିଲା ବ୍ରତ ସେ କାମିନୀ ।
ତେତେ ସହସ୍ର ବରଷ ରହେ ସ୍ୱାମିଘେନି ॥
ସେପୁଣ୍ୟ ଗୋଟା ତାହାର ଶେଷ ହୋଇଯାନ୍ତେ
ଏହି ରାଜରାଣୀ ହୋଇ ଜନମିଲେ ମର୍ତ୍ତ୍ୟେ ॥
ଅଗୋ ଦାସୀ ପାଇବାରୁ ଏବେ ପ୍ରଭୁପଣ ।
ଧନ ଧାନ୍ୟରେ ତା ଘର ହେବାରୁ ଗୋ ପୂର୍ଣ୍ଣ ॥
ଧନଗର୍ବେ ପାସୋରିଛି ସେ ବ୍ରତକୁ ରାଣୀ ।
କହିବ ତାହାକୁ ବ୍ରତ କରିବାକୁ ପୁଣି ॥
ଦ୍ୱାରେଥିବା ଦାସୀ ଶୁଣି ବୋଇଲା ଏମନ୍ତ ।
କେଉଁପ୍ରକାରେ ତୁଏ ବୁଝି କହ ସେହି ବ୍ରତ ॥
କେଉଁ ମାସରେ ସେବ୍ରତ ଗୋଟା ଗୋ ହୁଅଇ ।
କେଉଁ ଦେବତା ଗୋ ସେହି ବ୍ରତେ ପୂଜାପାଇ ॥
କହିବାର ହୁଏ ଯେବେ କହ ତୁଗୋ ମାତ ।
କମଳା ବୋଇଲେ ଦାସି ଶୁଣ ଦେଇ ଚିତ୍ତ ॥
କାର୍ତ୍ତିକ ଯାଏନ୍ତେ ପଶନ୍ତେ ମାସ ମର୍ଗଶିର ।
ସେ ମାସରେ ପଡ଼ିବ ଯେ ଦିନ ଗୁରୁବାର ॥
ପୂର୍ବାହ୍ନରେ ଏହିବ୍ରତ ହୁଅଇ ଗୋ ଦାସି ।
ସୂର୍ଯ୍ୟ ଉଦେହେଲେ ପରେ ବ୍ରତୀ ଯାକ ମିଶି ॥
ସ୍ନାନ ସାରି ବାସ ପିନ୍ଧି ନାନାଅଳଙ୍କାର ।
ନାରାୟଣଙ୍କ ସହିତ ପୂଜା ଲକ୍ଷ୍ମୀଙ୍କର ॥

ଏକା ବେଳକେ କରିବେ ଭକତିରେ ବସି ।
କର୍ପୂର ମିଶାଇ ଦୁଧକ୍ଷୀରି ଦେବେ ଦାସୀ ॥
ମିଠାନ୍ନେତେ ଶ୍ରୀଲକ୍ଷ୍ମୀଙ୍କି କରିବେ ସନ୍ତୋଷ ।
ପ୍ରାର୍ଥନା କରି କହିବେ ଏମନ୍ତେ ବିଶେଷ ॥
ଏତିନି ଭୁବନେ ମାତ ତୁ ଗୋ ମୂଳାପାଦ ।
ବିଷ୍ଣୁର ବଲ୍ଲଭ ହୋଇ ଯୁଗେ ଯୁଗେ ଥାଉ ॥
ତୁ ଦେବୀ କମଳା ପୁଣି ଅଟୁ ତୁ ଚପଳା ।
ଏକା ଶ୍ରୀକୃଷ୍ଣଙ୍କ ହୃଦେ ତୁ ଦେବୀ ଅଚଳା ॥
ତେମନ୍ତ ତୁ ସ୍ଥିର ହୋଇ ରହ ମୋହଘରେ ।
ତିଳେମାତ୍ର ପାପନାହିଁ ଏ ମୋର ଶରୀରେ ॥
ଜଗତର ଠାକୁରାଣୀ ଅଟୁ ତୁ କମଳେ ।
ଶରଣ ପଶିଲୁ ମାତ ତୋର ପାଦତଳେ ॥
ଏମନ୍ତେ ପ୍ରାର୍ଥନା କରି ଲକ୍ଷ୍ମୀଙ୍କି କହିବ ।
ନାନାଉପହାର ଦ୍ରବ୍ୟ ଦେଇ ଗୋ ପୂଜିବ ॥
ଶାସ୍ତ୍ରେ ଯେ ବିଧି ବିଧାନ ହୋଇଛି ଭକତ ।
ମହା ଉତ୍ସବେ ତୋଷିବ ଲକ୍ଷ୍ମୀଦେବୀଚିତ୍ତ ॥
ନଇବେଦ୍ୟ ଶେଷ ଦେବ ବ୍ରାହ୍ମଣର ହସ୍ତେ ।
ଆପଣା ସ୍ୱାମୀ ପୁତ୍ରକୁ ଦେବ ଯେଝାମତେ ॥
ଆନକୁ ଦେଇଣ ଆପେ କରିବ ଭୋଜନ ।
ଏହିରୂପେ ଜାଣ ଏହି ବ୍ରତର ବିଧାନ ॥
ଆଦ୍ୟ ଗୁରୁବାର ପୂଜା କରି ଏହିପରି ।
ତହୁଁ ଯେଉଁ ଗୁରୁବାର ପଡ଼ିବ ସୁନ୍ଦରି ॥
ତହିଁର ଯାହା ବିଶେଷ ବିଧି ତାହା ଶୁଣ ।
ଗନ୍ଧମଞ୍ଜି କରିବ ଧଳାପ୍ରାୟ ଚୂର୍ଣ୍ଣ ॥
ତହିଁରେ ନାନାଦି ପିଠାକରିବ ଯତନେ
ତା ସବୁ ଥୋଇବ ଲକ୍ଷ୍ମୀ ଦେବୀ ସନ୍ନିଧାନେ ॥
ନଇବେଦ୍ୟ କରି ତେଣେ ଲକ୍ଷ୍ମୀଙ୍କି ତୋଷିବ ।
ଏମନ୍ତେ ଭକତି କରି ତାହାଙ୍କୁ ପୂଜିବ ॥
ଆଉସବୁ ପୂଜା ଜାଣ ପୂର୍ବ ପରକାରି ।
ବିଶେଷ ପୂଜା ଏତିକି ସେଦିନ ତାଙ୍କର ॥
ତହୁଁ ଯେଉଁ ଗୁରୁବାର ପଡ଼ିବ ସୁନ୍ଦରି ।
ସେଦିନ ଅଧିକ ପୂଜା ଶୁଣ ହେବୁ କରି ॥
ଖଣ୍ଡ ମିଶା ଦହିଭାତ ଆଗରେ ଥୋଇବ ।
ନଇବେଦ୍ୟ କରି ତେଣେ ଲକ୍ଷ୍ମୀଙ୍କି ତୋଷିବ ॥
ଆଉସବୁ ପୂଜା ଜାଣ ଆଦ୍ୟଦିନ ପରି ।
ତହୁଁ ଯେଉଁ ଗୁରୁବାର ପଡ଼ିବ ସୁନ୍ଦରି ॥

ଘୁଅଁ ଗାଈଧାନ ମାର ନୂଆ ଯତ୍ନକର ।
ଚରଣ କରି ଥୋଇବ ଲକ୍ଷ୍ମୀଙ୍କି ସୁମରି ॥
ଏରୂପେ ସେ ମାସେ ହେବ ଚାରି ଗୁରୁବାର ।
ଏମନ୍ତେ ଏ ବ୍ରତପୂଜା ଜାଣ ଲକ୍ଷ୍ମୀଙ୍କର ॥
ଶୁଣ ତୁମେ ଉତ୍ତରିବେ ଦଣ୍ଡହସ୍ତା ମୋର ।
ଧନବସ୍ତ୍ର ଅଳଙ୍କାର ଅନ୍ନଫଳ ବାରି ॥
ବସ୍ତ୍ରମାନଙ୍କ ଏମାନ ଦେଇ ଗୋ ପୂଜିବ ।
ଦାସୀ ବୋଇଲା ଆସିବାଯାଏ ଏଥେ ଥିବ ॥
ରାଣୀ ସୁରତ ଚନ୍ଦ୍ରିକା ଛାମୁରେ ଜଣାଇ ।
ଆସି ତୁମ୍ଭଙ୍କୁ ଏଠାରୁ ଘେନି କନା ଯାଇ ॥
ଆଗୋ ମାତ ତୁମ୍ଭେ କେତେଭି କ୍ରୋଧ ନ କରିବ
ସ୍ତୁତିନତି କହିଲେ ହେ ବ୍ରାହ୍ମଣପୁଙ୍ଗବ ॥
ଏହା କହି ସେ ସୁନ୍ଦରୀ ହାତକୁ ଯୋଡିଲା ।
ଶିରେ ଦେଇ ଚହୁଁ ବେଗ ବେଗ ହୋଇଗଲା
କହିଲା ସେ ସବୁ କଥା ରାଣୀର ଛାମୁରେ ।
ରାଣୀ ସୁରତ ଚନ୍ଦ୍ରିକା ଶୁଣି ତାହା ଥରେ ॥
ଉଠି ବ୍ରାହ୍ମଣୀ ପାଖକୁ ଅଇଲା ସେ ଧାଇଁ ।
ଗର୍ବ କରି ବ୍ରାହ୍ମଣୀକି କହେ ମହାଦେଈ ॥
କି କହିବାକୁ ଆସିଛୁ ତୁ ବୁଢୀ ବ୍ରାହ୍ମଣୀ ।
ଭୟ ତେଜି କହୁ କିନା ମୋ ଆଗେ ତା ପୁଣି
ରାଣୀର ମୁଖୁ ଶୁଣିଣ ତୁକାର ବଚନ ।
ବ୍ରାହ୍ମଣୀ ବୋଇଲା ଦେଖି ତୋର ଦୁଷ୍ଟ ପଣ ॥
ମନ ମୋର ଯିବା ପାଇଁ ହୁଅଇ ଚଥିଲ ।
ଆଉ କି କହିବି ଧନ ଗର୍ବେ ତୁହି ଭେଳ ॥
ଆଜି ଗୁରୁ ବାରେ ବ୍ରତ ନ କରୁ ଚଣ୍ଡାଳି ।
ତୋ ଘରକୁ ରହିଁବାକୁ ମୋ ମନ ନ ବଳି ॥
ଦେଖିଲି ଯେ ଦୁଷ୍ଟପଣ ଗର୍ବ ଭରି ତୋର ।
ବୁଢୀର ବଚନେ ରାଣୀ ହୋଇ କ୍ରୋଧଭର ॥
ଆକ୍ଷି ରଙ୍ଗ ବର୍ଣ୍ଣି କରି ବୁଢୀକି ମାଇଲା ।
ସେ ବୁଢୀ ବ୍ରାହ୍ମଣୀ କାନ୍ଦି କାନ୍ଦି ପଳାଇଲା ॥
ପିଠି ଫାଟି ରକ୍ତ ବହେ ରାଣୀର ପ୍ରହାରେ ।
ଖେଳୁଥିଲା ରାଜ କନ୍ୟା କଦମ୍ବ ମୂଳରେ ॥
ସଖୀଗଣ ଅଛନ୍ତି ଯେ ସଙ୍ଗରେ ତାହାର ।
ରୋଦନ ଶବଦ ଶୁଣି ହେଲା ଚମତ୍କାର ॥
ଧାଇଁ ଆସି ବୁଢୀ ପାଶେ ପ୍ରବେଶ ହୋଇଲା ।
ବୁଢୀର ପିଠି ଆଉଁଷି ପାଦରେ ପଡିଲା ॥

ବୋଇଲା କେ କଲା ତୋର ପିଠିରେ ପ୍ରହାର
ଜାଣିଲି ତାଠାରୁ କେହି ନାହିଁ ଯେ ନିଷ୍ଠୁର ॥
ଦେଖି ଏ ମୋହର ମନ ସ୍ଥିର ହେଉ ନାହିଁ ।
ବେଗେ କହୁଁ କି ନା ବୁଢୀ ସ୍ଥିର ହୋଏ ମୁହିଁ
ରାଜ କନ୍ୟା ଶ୍ୟାମବାଳା ମୁଖୁଁ ଏ ବଚନ ।
ଶୁଣି କମଳା ବ୍ରାହ୍ମଣୀ କହଇ ଗୋ ଶୁଣ ॥
ଭଲ କହିବାକୁ ଆସି ଏ ଦଣ୍ଡ ପାଇଲି ।
କାହାକୁ କହିବି ଏହା ଏ ଦୁଃଖ ଭୋଗିଲି ॥
ଶ୍ୟାମବାଳା ବୋଲେ ଦଣ୍ଡ କେ ଦେଲା ଗୋ କହ
ମନ ଅଥୟ ମୋହର ଅଥୟ ମୋ ଦେହ ॥
ଯେ ତୋତେ ଏ ଦଣ୍ଡ ଦେଲା ତା ଛାତି ପଥର
କମଳା ବ୍ରାହ୍ମଣୀ ବୋଲେ ଶୁଣ ରାମାବର ॥
ଶୋକେ ଗଦଗଦ ହୋଇଁ କମଳା କହଇ ।
ଲକ୍ଷ୍ମୀଙ୍କର ଗୁରୁବାର ବ୍ରତ ଯେ ଅଛଇ ॥
ପୂର୍ବେ ସେ ବ୍ରତକୁ କରି ହୋଇଛି ଏ ରାଣୀ ।
ଧନ ଗର୍ବେ ପାଶୋରିଛି ଏ ଜନମେ ପୁଣି ॥
ସୁମରଣା କରାଇବା ପାଇଁ ମୁହିଁ ଗଲି ।
ତୁକାର ବାଣୀ ବହୁତ ତାଠାରୁ ଶୁଣିଲି ॥
ହିତ କହିଲେ ସେ ଧନଗର୍ବେ ହୋଇ ମତ୍ତ ।
କ୍ରୋଧେ ଆପେ ଉଠି ମାଡ଼ ମାଇଲା ବହୁତ ॥
ମାତାର ନିଷ୍ଠୁର ପଣ ଶୁଣି ଶ୍ୟାମବାଳା ।
କମଳା ବ୍ରାହ୍ମଣୀ ବେନି ଚରଣ ଧଇଲା ॥
ବୋଇଲା ମୋ ମାତା ଦୋଷ କ୍ଷମା କର ମାତ
କହିଲେ ମୁହିଁ କରିବି ଯେ ତୋହର ବ୍ରତ ॥
ଜାତି ଜ୍ଞାନ ବୟସରେ ତୁମ୍ଭେ ଯେଣୁ ବଡ଼ ।
ମନେ ନ ଧର ସେ କଥା ହୋଠା ଛାଡ଼ ଛାଡ଼ ॥
ଆମ୍ଭେ ତୁମ୍ଭ ପାଦତଳ ଦାସୀର ଯେ ଦାସୀ ।
ବ୍ରତର ବିଧାନ କହ ମୋ ଆଗରେ ବସି ॥
ପ୍ରସନ୍ନେ କମଳା ସବୁ କହିଲା ତା ଆଗେ ।
ଶୁଣି ଶ୍ୟାମବାଳା ବ୍ରତ ବିଧି ଅନୁରାଗେ ॥
ଶ୍ରଦ୍ଧା ଭକତରେ କଲା ସେ ଦୁର୍ଲଭ ବ୍ରତ ।
ଚାରି ଗୁରୁବାରେ ତାହା କଲା ସମାପତ ॥
ମହାଲକ୍ଷ୍ମୀ ପରସାଦେ ବିଭା ସେ ହୋଇଲା ।
ଯୁବରାଜ ମାଳାଧର ହସ୍ତକୁ ଧଇଲା ॥
ଅଖିଳ ଧରା ମଣ୍ଡଳାଧିପ ନୃପପ୍ରାୟ ।
ମାଳାଧରର ଯେ ପିତା ସିଦ୍ଧେଶ୍ୱର ରାୟ ॥

ତେଜୋବନ୍ତ ବଳବନ୍ତ ବୁଦ୍ଧିମନ୍ତ ଅତି ।
ଦୂତମୁଖ ଶତ୍ରୁନଙ୍କ ଆଗରେ କହିଲ ॥
ତହୁଁ କଉତୁକ କଥା ଶୁଣ ମନ ଦେଇ ।
ମାଳାଧର ବାଳା କର ଧର ଘେନିଯାଇ ॥
ଶ୍ୟାମବାଳା ତାଙ୍କ ଶ୍ୱଶୁର ଘରକୁ ଯାଆନ୍ତେ ।
ରାଣୀର ଭଣ୍ଡାରେ ଧନ ରତ୍ନ ଥିଲା ଯେତେ ॥
ଦିନକେ ଭିତରେ ସବୁ ଶୂନ୍ୟ ହୋଇଗଲା ।
କେ ନେଲା କି ହେଲା କେହି ଜାଣି ନ ପାରିଲା ॥
କଳା କନା ଖଣ୍ଡେ ତାର ନ ରହିଲା ଘରେ ।
ଚିରିଛିଲ ବସନ ଖଣ୍ଡ ଅଛି ତା ଶରୀରେ ॥
ଖାଇବାକୁ ନ ପାଇଲା କଣ୍ଠ ଶୁଖିଗଲା ।
ତାହାର ପ୍ରତେଜ୍ୟ ତାହାକୁ ଭିକ ନ ମିଳିଲା ॥
କ୍ଷୁଧାତୁରେ ନୃପତିଙ୍କି କହେ ପୁଣି ରାଣୀ ।
ଦୁହିତା ଘରକୁ ତୁମ୍ଭେ ଯାଅ ନୃପମଣି ॥
କିଛି ମାଗିଆଣି ଖାଇ ଜୀବନ ରଖିବା ।
ଏ କ୍ଷୁଧା କଷ୍ଟକୁ ଆଉ ସହି ନ ପାରିବା ॥
ରାଣୀ କଥାରେ ସେ ରାଜା ଅତି କଷ୍ଟେ ଗଲା ।
ମାଳାଧର ପୁରେ ଯାଇଁ ପ୍ରବେଶ ହୋଇଲା ॥
ଦେଖିଲା ଅଛଇ ତହିଁ ଏକ ସରୋବର ।
ତା ତୀରେ ଶ୍ରମ ହରିଲା ବସି ନୃପବର ॥
ତହିଁରୁ ପାଣି ନିଅନ୍ତି ଶ୍ୟାମବାଳା ଦାସୀ ।
ଦେଖିଲେ ଦରିଦ୍ର ଏକ ଅଛି ତହିଁ ବସି ॥
ଦେଖି ତାହାଙ୍କର ଦୟା ଉପୁଜିଲା ଚିତ୍ତେ ।
ପଚାରିଲେ ଆସିଅଛ ତୁମ୍ଭେ କି ନିମନ୍ତେ ॥
ନିଏ ତୁମ୍ଭେ ତୁମ୍ଭ ଅଙ୍ଗ ଦିଶୁଛି ଲୁଖୁରି ।
ଲୁଖୁରି ଯୋଗୁଁ କେଶତ ହୋଇଛି ଝାମ୍ପୁରି ॥
ରକ୍ତ ମାଂସ ନାହିଁ ପୁଣି ଶରୀରେ ତୁମ୍ଭର ।
ଏ ସବୁ କଥା କହ ତୁ ଆଗରେ ଆମ୍ଭର ॥
ଦରିଦ୍ର କହିଲା ମୁହିଁ ଶ୍ୟାମବାଳା ବାପ ।
ସଉରାଷ୍ଟ୍ରେ ଘର ଜାଣ ସେ ଦେଶରେ ନୃପ ॥
ଏ କଥା ଗୋଟା କହିବ ଶ୍ୟାମବାଳା ଆଗେ ।
ସେ କିସ କହିବେ ତାହା କହିବ ମୋତେ ବେଗେ ॥
ମୁହିଁ ତୁହିଁ ନାହିଁ ହୋଇ ଦାସୀଏ ହସନ୍ତି ।
କଉତୁକେ ପୁଣି ଶିର ଦିଗକୁ ଚାହାନ୍ତି ॥
ହସି ହସି ତହୁଁ ଗଲେ ଆପଣାର ପୁରେ ।
କହିଲେ ସେ ସବୁ ଶ୍ୟାମବାଳାର ଛାମୁରେ ॥

ସେ ସୁନ୍ଦରୀ ଶ୍ୟାମବାଳା ଶୁଣି ଏ ବଚନ ।
ଫୁଲ ତେଲ ସରୁଲୁଗା ସୁଗନ୍ଧ ଚନ୍ଦନ ॥
ପାନ ଖିଲି ପୂର୍ଣ୍ଣ ବଟା ଘଡ଼ାଏ ଆବର ।
ସଜାଇ ପଠାଇ ଦେଲା ପିତାର ଛାମୁର ॥
ଘେନି ତାହା ରାଜା ପାଶେ ଗଲେ ଅନୁଚରେ ।
ସ୍ନାନ କରାଇ ବସାଇ ଅମୂଲ୍ୟ ପିଠିରେ ॥
ପୁରକୁ ଘେନି ଆସିଲେ ଦୁହିତା ଦେଖିଣ ।
ଅର୍ଘ୍ୟ ଦେଇଣ ବନ୍ଦିଲା ପିତାର ଚରଣ ॥
ଷଡ଼ରସ ବ୍ୟଞ୍ଜନାଦି ନାନା ମିଷ୍ଟଅନ୍ନ ।
ଭୁଞ୍ଜିଣ ଅତି ସନ୍ତୋଷ ହୋଇଲେ ରାଜନ ॥
ଝିଅ ଘରେ ତିନିଦିନ ରହିଲେ ନୃପତି ।
ଘରକୁ ଯିବି ବୋଲିଲେ ଯାଇ ଝିଅକତି ॥
ଗୁପତେ ଲୁଚାଇ କିଛି ଧନ ଝିଅ ଦେଲା ।
ସେ ଧନ ଘେନି ନୃପତି ଘରକୁ ଆସିଲା ॥
ରାଣୀ ହସ୍ତେ ଦେଲା ସେ ତା ରଖିଲା ଲୁଚାଇ ।
ସେ ଧନ ଅଙ୍ଗାର ହେବା ଦେଖି ମହାଦେଈ ॥
ବହୁତ ରୋଦନ କରି କହିଲା ସ୍ୱାମୀକି ।
ଏ ପୋଡ଼ା କପାଳ ଗୋଟା ପୋଡ଼ି ଯାଉ ନାକି
କି କରିବି ନାଥ ପେଟ କ୍ଷୁଧାରେ ଜଳୁଛି ।
ସହି ନ ପାରିବି ଝିଅ ଘରକୁ ଯାଉଛି ॥
ଏମନ୍ତେ ମେଲାଣି ଘେନି ଗଲା ତହୁଁ ରାଣୀ ।
ପୋଖରୀ କୂଳେ ବସିଲା ବେଳ କାଳ ଜାଣି ॥
ଦାସୀ ପାଣି ନେଲା ବେଳେ ପଚାରିଣ ଗଲେ
ଶ୍ୟାମବାଳା ରାଣୀ ଆଗେ ବୁଝାଇ କହିଲେ ॥
ପିତାଠାରୁ ଅଧିକରେ ପୂଜିଲା ମାତାକୁ ।
ଆନନ୍ଦେ ବହୁ ପ୍ରଶଂସା କଲେ ଦୁହିତାକୁ ॥
ମାର୍ଗଶିର ଗୁରୁବାର ପଡ଼ିଲେଣ ଆସି ।
ଶ୍ୟାମବାଳା କରାଇଲା ବ୍ରତ ଜଗି ବସି ॥
ରାଣୀ ପାଳି କରାଇଲା ବିଧି ଅନୁମତେ ।
ତହୁଁ ଆପଣା ପୁରକୁ ରାଣୀ ଯେ ଆସନ୍ତେ ॥
ଦେଖିଲା ପୂର୍ଣ୍ଣ ହୋଇଛି ସକଳ ଭଣ୍ଡାର ।
ଆନନ୍ଦେ ରହିଲେ ରାଜା ରାଣୀ କରି ଘର ॥
ଲକ୍ଷ୍ମୀବ୍ରତ ପରସାଦେ ଦୁଃଖ ଦୂର ହେଲା ।
ଶୁଣିପାରି ଶ୍ୟାମବାଳା ଆନନ୍ଦ ହୋଇଲା ॥
ଏଥିଅନନ୍ତରେ ଗଲା ପୁଣି କିଛି ଦିନ ।
ଏକ ଦିନକର କଥା ଶୁଣ ତପୋଧନ ॥

ବାପ ମାଆଙ୍କ ସମ୍ପତ୍ତି ଦେଖିବା ନିମନ୍ତେ ।
ଶ୍ୟାମବାଳା ସ୍ୱାମୀକି ଯେ କହିଲା ଏକାନ୍ତେ ॥
ଆଜ୍ଞା ହେଲେ ଦେଖିବାକୁ ଯିବି ବାପଘର ।
ଯାଅ ବୋଲି ଆଜ୍ଞାଦେଲେ ରାଜା ମାଳାଧର ॥
ଏକାକେ ଆଇଲା ସଙ୍ଗେ ଘେନି ଏକ ଦାସୀ ।
ଦୋଳାରୁ ଉତ୍ତରି ଗଲା ଭିତରକୁ ପଶି ॥
ଦୁରୁ ଦେଖି ରାଣୀ ପୁଣି ମନେ ବିଚାରିଲା ।
ଏହି ମୋର ଶ୍ୟାମବାଳା ଦୁହିତା ଆଇଲା ॥
ଏହାକୁ ଦେଖା ନ ଦେବି ଫେରି ଯାଉ ଘରେ ।
ଖୁପକେ ଯା ଦେଇଥିଲି ବାପର ହାତରେ ॥
ସେ ଧନକୁ ମାଗିବାକୁ ଆସିଅଛି ଏହି ।
ଏମନ୍ତ ଭାଳି ସେ ରାଣୀ ଘରେ ଲୁଚି ରହି ॥
ଶ୍ୟାମବାଳା ବୁଝି ଦେଖି ସବୁ ଘର ଦ୍ୱାର ।
ହସ୍ତେ କିଛି ଲୁଣ ଘେନି ହୋଇଲା ବାହାର ॥
ତୁରିତେ ଯାଇଁ ମିଳିଲା ଆପଣାର ପୁରେ ।
ସ୍ୱାମୀ ପଚାରିଲେ ଯାଇଥିଲ ବାପ ଘରେ ॥
କି ଆଣିଛ ବାପଘରୁ ଦେଖା ନିକା ମୋତେ ।
ଶ୍ୟାମବାଳା ବୋଇଲେ ରାଜ୍ୟସାର ଘେନି ହସ୍ତେ
ଆସିଛି ଭୋଜନବେଳେ ଦେଖାଇବି ତାହା ।
ଏମନ୍ତ ବୋଲି ଗୃହକୁ ଯାଇ ସେ ସୁଦେହା ॥
ଷଡ଼ରସର ବ୍ୟଞ୍ଜନ ସରୁ ପକ୍ୱ ଅନ୍ନ ।
ଉତ୍ତମ ରୂପେ ସୁନ୍ଦରୀ କରିଣ ରନ୍ଧନ ॥
କାହିଁରେ ଲୁଣ ନ ଦେଇ ପାକ ସମ୍ପାଦିଲା ।
ସ୍ୱାମିର ନିମନ୍ତେ ସବୁ ଯତନେ ବାଢ଼ିଲା ॥
ମନୋହରେ ବସିଲେ କଲା ରାଜା ମାଳାଧର ।
ଶ୍ୟାମବାଳା ବାଢ଼ି ସବୁ ଥୋଇଲା ସମ୍ମୁଖ ॥
ଅଲୁଣା ହେବାରୁ ରାଜା ହେଲେ ବୈରାଗ୍ୟ ।
ସେ ସୁନ୍ଦରୀ ଦେଲା ରାଜ୍ୟସାର ଯେ ଲବଣ ॥
ଭୋଜନେ ତୃପତ ହୋଇ ବୋଇଲେ ନୃପବର ।
ଧନ୍ୟ ଭାଗ୍ୟବନ୍ତ ମୁହିଁ ସଂସାର ମଧ୍ୟର ॥
ଧନ୍ୟ ଧନ୍ୟ ରାଣୀ ତୁ ଗୋ ବଡ଼ ବୁଦ୍ଧିମତୀ ।
ରାଜ୍ୟ ସାର ଵାଛିଛୁ ଯା ସତ ତାହା ସତୀ ॥
ସୂତ କହିଲେ ଏ ବ୍ରତ କରଇ ଯେ ନାରୀ ।
ଜନ୍ମେ ଜନ୍ମେ ସୁଖପାଏ ଜାଣ ତପଚାରୀ ॥
ଅଭାଗିନୀ ନୁହଇ ସେ ଦରିଦ୍ରା ଆବର ।
ଭକତରେ ଶୁଣଇ ଯେ ନାରୀ ଅବା ନର ॥
ଶରଧାରେ ଏକମନେ କି ଅବା ପଢ଼ଇ ।
ସକଳ ପାପ ଛଡ଼ାଇ ଲକ୍ଷ୍ମୀଲୋକ ପାଇ ॥
ଏ କଥା ନ ଶୁଣି ବ୍ରତ ଯେ ନାରୀ କରଇ ।
ବ୍ରତ ଫଳଯାକ ତାର ନିଷ୍ଫଳ ହୁଅଇ ॥
ଜଗତ ଜନନୀ ଲକ୍ଷ୍ମୀ ଅଭୟ ଚରଣ ।
ଦୀନ ଗୋପୀନାଥ ନିତ୍ୟ ମାଗଇ ଶରଣ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ଲକ୍ଷ୍ମୀବ୍ରତ ବର୍ଣ୍ଣନନାମ ଏକ-
ତ୍ରିଂଶୋଽଧ୍ୟାୟଃ ।



## ଦ୍ୱିତ୍ରିଂଶ ଅଧ୍ୟାୟ ।

ଜନ୍ମାଷ୍ଟମୀ ବ୍ରତ ମାହାତ୍ମ୍ୟ ।

ପଚାରିଲେ ଶଉନକ କହ ଆହେ ସୂତ ।
ସବୁ ପାପ ଯାଏ କଲେ କେଉଁ ପୁଣ୍ୟବ୍ରତ ॥
କୃପାକରି କହ ମୁନି ମୋହର ଅଗ୍ରତେ ।
ସୂତ କହିଲେ ଶୌନକ ଶୁଣ ଏକଚିତ୍ତେ ॥
ବିପ୍ର ପ୍ରାଣ ରଖଇ ଯେ ଧନ ପ୍ରାଣ ଦେଇ ।
ସକଳ ପାପ ଛଡ଼ାଇ ବିଷ୍ଣୁଲୋକେ ଯାଇ ॥
ପୁରାଣ କଥା ଗୋଟିଏ ଶୁଣ ଦ୍ୱିଜବର ।
ସେ କଥା ଗୋଟି ଅଟଇ ଦ୍ୱାପର ଯୁଗର ॥
ଦୀନନାଥ ନାମେ ଥିଲେ ଏକଇ ନୃପତି ।
ଯଜ୍ଞକାରୀ ବଳବନ୍ତ ବଇଷ୍ଣବ ଅତି ॥
ପୁତ୍ର କି କନ୍ୟା କିଛିହିଁ ନୋହିଲା ତାହାର ।
ଏଣୁ ଦିନେ ଅତି ଦୁଃଖେ ସେହି ନୃପବର ॥
ଗାଲବ ମୁନିଙ୍କି ପଚାରିଲେ ଯେ ବିନୟେ ।
ଅପୁତ୍ରିକର କି ପୁଣ୍ୟେ ପୁତ୍ର ଜନ୍ମ ହୁଏ ॥
ହେ ମୁନି ଶାର୍ଦ୍ଦୂଳ ତୁମ୍ଭେ କରୁଣାସାଗର ।
କହିଲେ କରିବି ତାହା ଏ ସତ୍ୟ ମୋହର ॥
ଯେ ନରେ ପୁତ୍ର ନାହିଁ ତା ଜନମ ବୃଥା ।
ଗାଲବ ମୁନି ବୋଇଲେ ଆହେ ନରନାଥ ॥
ସାବଧାନ ହୋଇ ଶୁଣ ପଚାରିଲ ଯାହା ।
ଅପୁତ୍ରିର ପୁତ୍ର ହେବା କଥା ନରନାହା ॥

ମହେଶ କହୁଛି ଏବେ କାରଣ ତାହାର ।
ପୁତ୍ର ଅର୍ଥେ ରାଜା ନରମେଧ ଯାଗ କର ॥
ସର୍ବ ସୁଲକ୍ଷଣ ପୁତ୍ର ପାଇବ ତା ଫଳେ ।
ଶୁଣି ରାଜା ଗାଲବଙ୍କୁ ପୁଣି ପଚାରିଲେ ॥
ନରମେଧ ମହାଯଜ୍ଞ ପ୍ରଧାନ ଆବର ।
କେଉଁରୂପ ତହିଁରେ ଲୋଡ଼ା କି ପ୍ରକାର ନର ॥
ତାହା କହିଲେ ସେ ନର ଆଣିବି ଖୋଜାଇ ।
ଗାଲବ ମୁନି କହିଲେ ଶୁଣ ନୃପସାଇଁ ॥
ସୁନ୍ଦର ମୁଖ ସୁନ୍ଦର ଅଙ୍ଗପାଦ ତାର ।
ସବୁ ଶାସ୍ତ୍ର ତାକୁ ଜଣାଥିବ ଯେ ଆବର ॥
କୁଳୀନ ସେ ହୋଇଥିବ ଏମନ୍ତ ଲକ୍ଷଣ ।
ନର ଯଜ୍ଞେ ଲୋଡ଼ା ହେବ ହେ ନୃପତି ଜାଣ ॥
ହୀନାଙ୍ଗ ମୂରୁଖ କଳା ନର ନ ହୁଅଇ ।
ଏରୂପେ ଯହୁଁ କହିଲେ ସେ ମୁନି ଗୋସାଇଁ ॥
ମୁନିର କଥା ଶୁଣି ସେ ମନୁଜ ଈଶ୍ୱର ।
ଦୂତଙ୍କୁ ପଠାଇ ଦେଲେ ଦେଶ ଦେଶାନ୍ତର ॥
ଗାଲବ ଆଦି ମୁନିଙ୍କି ଯଜ୍ଞ ଅର୍ଥେ ବରି ।
ବହୁତ ଧନ ଦେଇଣ ତାଙ୍କୁ ତୋଷ କରି ॥
ରାଜା ଆଜ୍ଞା ପାଇ ତହୁଁ ଦୂତଗଣ ଗଲେ ।
ଦେଶେ୨ ଗ୍ରାମେ୨ ନଗରେ ପଶିଲେ ॥
ଘରେ ନ ଛାଡ଼ନ୍ତି ସବୁ ଖୋଜି ଖୋଜି ଯାନ୍ତି ।
ଏମନ୍ତ ଲକ୍ଷଣବନ୍ତ ନର ନ ଦେଖନ୍ତି ॥
ଦଶପୁର ନାମେ ଏକପୁରେ ପହୁଞ୍ଚିଲେ ।
ସେ ଦଶପୁର ଭିତରେ ପଶିଣ ଖୋଜିଲେ ॥
ଅତି ସୁନ୍ଦର ତହିଁରେ ଥିବା ଯେତେ ସ୍ତ୍ରୀ ।
ଚଞ୍ଚଳ ନେତ୍ର ତାଙ୍କର ମୃଗ ଶିଶୁ ପରି ॥
କେଶ ଅତ୍ୟନ୍ତ ସୁନ୍ଦର ମୁଖ ଚନ୍ଦ୍ର ପ୍ରାୟ ।
ଦେଖିଲା ମାତ୍ରେ ପୁରୁଷ ଚଞ୍ଚଳ ହୃଦୟ ॥
କାମ ବିକାର ଉଦୟ ହୁଅଇ ତାଙ୍କର ।
ତହିଁ ବହୁ ବିପ୍ର ଗୁରୁଜନଙ୍କର ଘର ॥
ତହିଁ କୃଷ୍ଣ ଦେବ ନାମେ ବିପ୍ରେକ ଅଛଇ ।
ତାହାର ଭାର୍ଯ୍ୟା ନାମ ସୁଶୀଳା ଅଟଇ ॥
ତିନିପୁତ୍ର ତାର ଏକୁଁ ଏକ ଯେ ସୁନ୍ଦର ।
ପରମ ବୈଷ୍ଣବ କୃଷ୍ଣ ଦେବ ଦ୍ୱିଜବର ॥
ଶ୍ରୀ ବିଷ୍ଣୁ ପୂଜାରେ ରତ ଥାଇ ସେ ନିରତେ ।
ପ୍ରିୟ ବାକ୍ୟ କହୁଥାଏ ରହୁଥାଏ ସତ୍ୟେ ॥
ପିତୃ ଭକତ ଯାଜ୍ଞିକ ଦ୍ୱିଜ ଟେମ ଅଟନ୍ତି ।
ଅତିପ୍ରିୟ ବୈଷ୍ଣବ ଜନଙ୍କ ମଣ୍ଡନ ॥
ତାହାଙ୍କୁ ସେ ରାଜଦୂତେ ପୁତ୍ରେକ ମାଗିଲେ
ପୁତ୍ର ଏକ ଦିଅ ଦ୍ୱିଜଗୋସାଇଁ ବୋଇଲେ ॥
ପୁତ୍ର ଦିଅ ପୁତ୍ର ଦିଅ କହି ବାରଂବାର ।
ରାଜାସନ୍ତାପ ବିନାଶ କରି ଦ୍ୱିଜବର ॥
ପୁତ୍ର ନିମନ୍ତେ କରିବେ ଯଜ୍ଞ ନରମେଧ ।
ପୁତ୍ରେକ ଦେଇ ତାହାଙ୍କ ଯଜ୍ଞ କର ସିଦ୍ଧ ।
ତୁମ୍ଭ ପୁତ୍ରକୁ ସେ ଯଜ୍ଞେ ଶେଷେ ଦେବେ ବଳି
ସୁଲକ୍ଷଣ ନ ପାଇଲୁଁ ତୁମ୍ଭ ପୁତ୍ର ଭଳି ॥
ତ୍ରିଶଲକ୍ଷ ସୁନା ଦେଇ ପୁତ୍ର ଏକ ଦିଅ ।
ସୁଖରେ ନ ଦେବ ଯେବେ ରଖି ପୁତ୍ରସ୍ନେହ ।
ବଳେ ଘେନି ଯିବୁ ଆମ୍ଭେ ରାଜା ଆଜ୍ଞାକାରୀ
ଦୂତମୁଖୁ ଏ ଦାରୁଣ କଥା ଶୁଣି କରି ॥
ବ୍ରାହ୍ମଣ ବ୍ରାହ୍ମଣୀ ଶୋକେ ହେଲେ ବିହ୍ୱଳିତ
ଭୂମିରେ ପଡ଼ିଲେ ଦୁହେଁ ହୋଇଣ ମୂର୍ଚ୍ଛିତ ॥
ଯେମନ୍ତେ କି ତାଙ୍କ ପ୍ରାଣ ଯିବାବେଳ ହେଲା
ତାଙ୍କ ଚିତ୍ତରେ ନାନାଦି ଚିନ୍ତା ଉପୁଜିଲା ॥
ତହୁଁ ବୋଇଲେ ଧନେ କି ଜନେ ଏ ଜୀବନେ
ଥାଇକି ହେବ ଏ ସବୁ ଏକାପୁତ୍ର ବିନେ ॥
ଏହା ଶୁଣି ଦୂତେ ହେଲେ କ୍ରୋଧେ ଜରଜର
ତ୍ରିଶଲକ୍ଷ ସୁନାଢାଳି ଦେଲେ ଘରେ ତାର ॥
ବଳେ ବଳେ ଢାଳି ଦେଇ ପୁତ୍ରକୁ ଧଇଲେ ।
କାନ୍ଦି କାନ୍ଦି ଦ୍ୱିଜ କର ଯୋଡ଼ିଣ ବୋଇଲେ ॥
ମୋର ବଡ଼ ପୁଅ ଗୋଟି ଛାଡ଼ି ନିଅ ଆନ ।
ସେ ପୁତ୍ରଗୋଟି ମୋହର ପିଣ୍ଡର କାରଣ ॥
ଏମନ୍ତ ଶୁଣି ବ୍ରାହ୍ମଣୀ କହନ୍ତି କାନ୍ଦି କରି ।
ବିହି ଲେଖିଛି ଏମନ୍ତ କର୍ମରେ ଆମ୍ଭର ॥
ଦୂତେ ବୋଇଲେ ଏ ସାନପୁତ୍ର ଗୋଟି ଦିଅ ।
ଏମନ୍ତ ଶୁଣି ବ୍ରାହ୍ମଣୀ ହୋଇଣ ଅଥୟ ॥
ବାତେ ରମ୍ଭାତରୁ ଭାଙ୍ଗି ଶୋଇଗଲା ପରି ।
ବ୍ରାହ୍ମଣୀ ତଳେ ପଡ଼ିଲା ଚେତା ଗଲା ବୁଡ଼ି ॥
ବୋଇଲା ମୁଣ୍ଡ ବାଡ଼େଇ ହୋଇଣ ମୁଦ୍ଗରେ ।
ସାନ ପୁଅକୁ ନ ଦେବି କେଭେ ତୁମ୍ଭ କରେ ॥
ମଝିଆ ପୁଅ ପଡ଼ିଲା ପିତାମାତା ପାଖେ ।
ବୋଇଲା ବିନୟ କରି କର ଯୋଡ଼ି ଦୁଃଖେ ॥

ଖାଇବା ସଙ୍ଗରେ କନ୍ଦଏ ଯେବେ ମାତା ।
ପୁତ୍ରକୁ ଯେବେ ବିକଣ କରେ ପୁଣି ପିତା ॥
ସର୍ବସ୍ୱ ଯେବେ ହରଣ କରନ୍ତି ନୃପତି ।
ତହିଁରେ କାହାର କିଛି ଅଛି କି ଶକତି ॥
ଏମନ୍ତ କହି ବନ୍ଦିଲା ପିତା ମାତା ପାଦ ।
ଦୂତଙ୍କ ସଙ୍ଗେ ଚଳିଲ ନ କରି ବିଷାଦ ॥
ତହୁଁ ପୁତ୍ର ଦୁଃଖେ ସେହି ବ୍ରାହ୍ମଣ ବ୍ରାହ୍ମଣୀ ।
କାନ୍ଦି କାନ୍ଦି ହେଲେ ପୁଣି ଅନ୍ଧ ଯେ ଅନ୍ଧୁଣୀ ॥
ଦିନେ ସେ ବିପ୍ର ପୁତ୍ରକୁ ବାଟେ ଯାନ୍ତେ ନେଇ
ଭେଟିଲେ ତାହାଙ୍କୁ ବିଶ୍ୱାମିତ୍ର ମହାମୁନି ॥
ତାଙ୍କ ସଙ୍ଗେ ମୃଗଛୁଆ ଅଛନ୍ତି ବହୁତ ।
ବହୁତ ଶିଷ୍ୟ ଅଛନ୍ତି ମୁନିଙ୍କ ସହିତ ॥
ଆଶ୍ରମରେ ବିରାଜନ୍ତି ସେହି ମହାମୁନି ।
ସେ ବାଟେ ଯାନ୍ତେ ସେ ଦୂତେ ଦ୍ୱିଜସୁତ ନେଇ
ରାଜଦୂତ ବୋଲି ତାଙ୍କୁ ପଚାରିଲେ ଋଷି ।
କିଏ ତୁମ୍ଭେ କାହିଁ ଥିଲ କାହୁଁ ଅଛ ଆସି ॥
ତୁମ୍ଭେ କି କାର୍ଯ୍ୟ କରି କହ ତାହା ମୋତେ
ଏମନ୍ତ ଶୁଣି ବୋଇଲେ ତାଙ୍କୁ ରାଜଦୂତେ ॥
ଅହେ ମୁନି ଶୁଣ ତାହା ହୋଇ ସାବଧାନ ।
ଆମ୍ଭେ ଥାଉଁ ଦୀନନାଥ ରାଜା ସନ୍ନିଧାନ ॥
ସେହି ରାଜା ଅପୁତ୍ରିକ ଆମ୍ଭେ ତାର ଦୂତ ।
ନରମେଧ ଯଜ୍ଞ କରେ ପୁତ୍ରର ନିମିତ୍ତ ॥
ଏ ବିପ୍ରପୁତ୍ରକୁ ଆମ୍ଭେ ନେଉଅଛୁଁ ଧରି ।
ଏହାକୁ ସେ ଯଜ୍ଞେ ବଳି ଦେବେ ଦଣ୍ଡଧାରୀ ॥
ଶୁଣି ମୁନିଙ୍କର ଚିତ୍ତେ ଉପୁଜିଲା ଦୟା ।
ସୁନ୍ଦର ସୁଲକ୍ଷଣ ଏ ବିପ୍ର ଶିଶୁ କାୟା ॥
ମୋର ପ୍ରାଣ ଯାଉ ପଛେ ଏହା ପ୍ରାଣ ରହୁ ।
ପିତା ମାତାଙ୍କୁ ଏ କିଛି କାଳ ସୁଖ ଦେଉ ॥
ଶିଶୁର ନିମନ୍ତେ ପୁଣି ଦ୍ୱିଜର ନିମନ୍ତେ ।
ଆବର ସ୍ୱାମି ନିମନ୍ତେ ଯେ ଜର୍ନ କରନ୍ତେ ॥
ତୃଣପ୍ରାୟ ମଣି ନିଜ ପ୍ରାଣକୁ ଦିଅଇ ।
ସୁଖରେ ସେ ବଇକୁଣ୍ଠ ଭୁବନେ ବସଇ ॥
ଏହିରୂପେ ମନେ ମନେ ଭାଳି ମୁନିବର ।
ବୋଇଲେ ହୋ ରାଜଦୂତେ ମୋର ବୋଲ କର
ଏ ବିପ୍ର ଶିଶୁକୁ ଛାଡ଼ି ଦେଇ ନିଅ ମୋତେ ।
ତୁମ୍ଭ ରାଜା ବଳି ଦେଉ ଯାଗ ସମାପତେ ॥
ଦେଖୁଛତ ବାଳକଙ୍କ ଏ ଦ୍ୱିଜର କୁମର ।
ସୁଖ ଭୋଗ କରିନାହିଁ ସଂସାରେ ଆବର ॥
ଏହାର ଯେ ପିତା ମାତା ଏହାର ନିମନ୍ତେ ।
ଆପଣାର ଜୀବନକୁ ଦେବେ ଯମହସ୍ତେ ॥
ଦୂତେ ବୋଇଲେ ହୋ ଦ୍ୱିଜ ତୁମ୍ଭେ ବୁଦ୍ଧିମନ୍ତ
ଦୀନନାଥ ରାଜା ଆଜ୍ଞା ଦେଇଛି ଯେମନ୍ତ ॥
ତାହାକୁ ଛାଡ଼ି ତୁମ୍ଭଙ୍କୁ କେମନ୍ତେ ହୋ ନେବୁ
ତୁମ୍ଭର ଦେହ ପତନ ସହ୍ୟା ନ କରିବୁ ॥
ଏହା କହି ବିପ୍ରସୁତ ନେଇ ଗଲେ ଦୂତେ ।
ବିଶ୍ୱାମିତ୍ର ମୁନି ଗଲେ ତାହାଙ୍କ ସହିତେ ॥
ନୃପତି ପୁରରେ ମିଳିଲେ ଯାଗମଣ୍ଡପରେ ।
ଦୂତେ ଯାଇଁ ଜଣାଇଲେ ନୃପତି ଛାମୁରେ ॥
ଏ ଦ୍ୱିଜ ଗୋଷ୍ଟ ଆସିଛି ପଛରେ ଗୋଡ଼ାଇ ।
ଏ ଦ୍ୱିଜ ପୁତ୍ରକୁ ନେବ ନିଜ ପ୍ରାଣ ଦେଇ ॥
ରାଜା ଶୁଣି ଭୟପାଇ ମୁନିଙ୍କି କହିଲା ।
କରଦୁଇ ଯୋଡ଼ି ପାଦେ ପଡ଼ଣ ଶୋଇଲା ॥
ବ୍ରହ୍ମାର ସମାନ ଦ୍ୱିଜ ତୁମ୍ଭେ ମୁନିବର ।
ବଳି ନ ଦେଇ ଯଜ୍ଞରେ ଯେବେ କି ମୋହର
ପୁତ୍ର ହେବ ଏ ତୁମ୍ଭର ଆଜ୍ଞା ପରମାଣେ ।
ଏ ପୁତ୍ରକୁ ସଙ୍ଗେ ନେଇ ଯିବ ମହାମୁନେ ॥
ବିଶ୍ୱାମିତ୍ର ବୋଇଲେ ହୋ ଶୁଣ ତୁ ରାଜନ ।
ଯଜ୍ଞ ଶେଷ କର ହେବ ଉତ୍ତମ ନନ୍ଦନ ॥
ଏଥିରେ କିଛି ସଂଶୟ ମନରେ ନ କର ।
ଆମ୍ଭ ଦର୍ଶନ ଅମୋଘ ଜାଣ ନୃପବର ॥
ଏମନ୍ତ ଶୁଣି ନୃପତି ଆନନ୍ଦ ହୋଇଲା ।
ମୁନିଗଣ ନେଇ ଯଜ୍ଞ ସମାପତି କଲା ॥
ପୂର୍ଣ୍ଣ ଆହୁତି ଦିଅନ୍ତେ ବିଶ୍ୱାମିତ୍ର ମୁନି ।
ତହୁଁ ବ୍ରାହ୍ମଣ ପୁତ୍ରକୁ ସଙ୍ଗତରେ ନେଇ ॥
ଦଶପୁର ନଗ୍ରେ ଯାଇଁ ପ୍ରବେଶ ହୋଇଲେ ।
ବ୍ରାହ୍ମଣ ଗୃହରେ ମିଳି ଏମନ୍ତ ବୋଇଲେ ॥
ଆହୋ ଦ୍ୱିଜ ଅଛ କି ହୋ ତୁମ୍ଭେ ତୁମ୍ଭ ଘରେ
ମଳପ୍ରାୟ ପଡ଼ିଅଛ ଏ ଗୃହ ଭିତରେ ॥
ତୁମ୍ଭେ କିଏ ଡାକୁଅଛ କାହିଁପାଇଁ ଦ୍ୱାରେ ।
ଆମ୍ଭେ ବିଶ୍ୱାମିତ୍ର କାର୍ଯ୍ୟ ଅଛି ତୁମ୍ଭଠାରେ ॥
ଏମନ୍ତ ଶୁଣି ସେ ବିପ୍ର ବୋଲେ ଦୁଃଖମନେ ।
କି କହିବ ମୋର ଦୁଃଖ ତୁମ୍ଭ ସନ୍ନିଧାନେ ॥

ଘରେ ପଶି ବସିଲେ ବସିଲ ଗୃହକର୍ମଗ୍ରସ୍ତ ।
ମୋ ପୁତ୍ରକୁ ଯକ୍ଷେ ବଳ ଦେବେ ନେଲେ ଧରି
ଅଛି ଅଷ୍ଟମୀ ହେଲୁଣି କାନ୍ଦି କାନ୍ଦି ଆସେ ।
ତୁମ୍ଭ ପୁତ୍ର ସଙ୍ଗେ ଘେନି ଆସିଅଛୁଁ ଏବେ ॥
କାଥ ନାଥ ତୁମ୍ଭ ପୁତ୍ର ଚାହିଁ ଭଲକରି ।
ଶୁଣି ବ୍ରାହ୍ମଣ ବ୍ରାହ୍ମଣୀ ନେତ୍ରୁ ବହେ ବାରି ॥
ମୁନି ବାକ୍ୟରେ ତାଙ୍କର ଚକ୍ଷୁ ଫିଟିଗଲା ।
ପୁତ୍ର ନାମ ଧରି ଘରୁ ବାହାରି ଅଇଲା ॥
ସ୍ନେହଭରରେ ପୁତ୍ର ମୁଖେ ଦେଇଣ ଚୁମ୍ବନ ।
ଭୂମିରେ ଶୋଇ ଧଇଲେ ମୁନିର ଚରଣ ॥
ହେ ମୁନି ଦେଲ ଆମ୍ଭଙ୍କୁ ତୁମ୍ଭେ ଜୀବଦାନ ।
ପୁତ୍ର ଦାନ ନେତ୍ର ଦାନ କଲ ତପୋଧନ ॥
ବିପ୍ରମୁଖୁ ବିଶ୍ୱାମିତ୍ର ଏ ବଚନ ଶୁଣି ।
କଲ୍ୟାଣ କରି ମଠକୁ ଗଲେ ସେହିକ୍ଷଣି ॥
ବିଷ୍ଣୁ ପାଦେ ଲୟ ରଖି ସେହି ମହାଋଷି ।
ଦେବଙ୍କ ଦୁର୍ଲଭ ତପ କଲେ ତହିଁ ବସି ॥
କିଛିକାଳ ଅନ୍ତେ ହେଲ ନୃପତିର ପୁତ୍ର ।
କ୍ଷୀର ସମୁଦ୍ରରୁ ଚନ୍ଦ୍ର ହେଲପ୍ରାୟ ଜାତ ॥
ସୁନ୍ଦର ନୃପତି ଯୋଗ୍ୟ ପୁତ୍ର ଏକ ପାଇ ।
ଆନନ୍ଦେ ପୁତ୍ର ଉତ୍ସବେ ମାତି ନରସାଇଁ ॥
ଧନ ଦାନରେ ଭଣ୍ଡାର ତୁଚ୍ଛକରି ଦେଲା ।
ଦେବ ପ୍ରାୟ ସୁଖେ ରହି ମହୀକି ପାଳିଲା ॥
ଧନ ପ୍ରାଣ ଦେଇ ବିପ୍ର ପାଳଇ ଯେ ଜନ ।
ଏ ସଂସାରେ ପୁଣି ସେହି ନୁହଇ ଜନମ ॥
ନିର୍ବାଣ ମୁକତି ପାଇ ବଇକୁଣ୍ଠେ ବସେ ।
ପୁରାଣ କଥା ଶୁଣନ୍ତି ଯେ ବସି ହରଷେ ॥
କିବା ଭକତିରେ ନିତି ବସି ପଢୁଥାଇ ।
ବିପ୍ରର ମୁଖରୁ ଶ୍ଳୋକେ ଅଧେ ବା ଶୁଣଇ ॥
ନିଶ୍ଚୟ ପାଇ ଦେହାନ୍ତେ ସେ ବିଷ୍ଣୁ ମନ୍ଦିର ।
ଶଉନକ ବୋଇଲେ ହେ ସୂତ ମୁନିବର ॥
ପୂର୍ବେ କହିଥିଲ କୃଷ୍ଣ ଜନ୍ମାଷ୍ଟମୀ କଥା ।
କି କି ମହିମା ତାହାର କହ ହେ ସର୍ବଥା ॥
ଶୁଣି ତା ଭବ ସମୁଦ୍ରୁ ପାଇବୁ ଉଦ୍ଧାର ।
ସୂତ ବୋଇଲେ ହେ ଦ୍ୱିଜ ସଂସାରେ ଯେନର
ଭକତିରେ ଜନ୍ମାଷ୍ଟମୀ ବ୍ରତ କରୁଥାଇ ।
କୋଟି କୁଳ ଘେନି ଆସି ବିଷ୍ଣୁପୁରେ ଯାଇ

ଅଷ୍ଟମୀ ତିଥି ପଡ଼ଇ ଯେବେ ବୁଧବାରେ ।
ରୋହିଣୀ ନକ୍ଷତ୍ର ଯୋଗ ପାଇ ସେ ଦିନରେ
କିବା ସୋମବାରେ ପଡ଼ଇ ଜନ୍ମାଷ୍ଟମୀ ବ୍ରତ ।
ତହିଁରେ ଯେବେ ରୋହିଣୀ ନକ୍ଷତ୍ର ସଂଯୁତ ॥
ସେ ଯୋଗ କୋଟି କୁଳର ମୁକତି ଦିଅଇ ।
ମହା ପାତକୀ ଯେବେ କି ସେ ବ୍ରତ କରଇ ॥
ତହିଁରେ ସକଳ ପାପ ହୁଅଇ ଖଣ୍ଡନ ।
ଅନ୍ତେ ଶ୍ରୀ ହରି ଗୃହକୁ କରଇ ଗମନ ॥
କୃଷ୍ଣ ଜନ୍ମାଷ୍ଟମୀ ବ୍ରତ ଯେ ଜନ ନ କରେ ।
ନରଙ୍କ ମଧ୍ୟେ ଅଧମ ସେହି ଏ ସଂସାରେ ॥
ଇହି ଲୋକେ ଦୁଃଖଭୋଗି ଅନ୍ତେ ନର୍କ ପାଏ ।
ଜନ୍ମ ଜନ୍ମାନ୍ତରେ ଏହି କଷ୍ଟ ପାଉଥାଏ ॥
ବର୍ଷେ ବର୍ଷେ ଏ ତିଥିକୁ ନ କରେ ଯେ ନାରୀ
ସେ ମୃତା ଦାରୁଣ ନର୍କ କୁଣ୍ଡେ ପଡେ ମରି ॥
ଜନ୍ମାଷ୍ଟମୀ ତିଥିରେ ଯେ କରଇ ଆହାର ।
ମହାନର୍କ ଭୋଗୁଥାଏ ସେ ନିରନ୍ତର ॥
ପୂର୍ବକାଳେ ଦିଲୀପ ଯେ ନୃପ ମହାରଥୀ ।
ପଚାରିଥିଲେ ବଶିଷ୍ଠ ମୁନିଙ୍କ ଏ କଥା ॥
ସେ ସକଳ ପାପହାରି କଥା କହୁଁ ଶୁଣ ।
ଦିଲୀପ ବୋଇଲେ ଆହେ ମୁନି ତପୋଧନ ॥
ଭାଦ୍ରବ ମାସରେ କୃଷ୍ଣ ଅଷ୍ଟମୀ ଯେ ତିଥି ।
ଜନମିଥିଲେ ସେ ଦିନ ଦେବ ଶ୍ରୀପତି ॥
ତାହା ଶୁଣିବାକୁ ମନ ବଳୁଛି ମୋହର ।
ଯେଉଁପ୍ରଭୁ ଶଙ୍ଖ ଚକ୍ର ଗଦା ପଦ୍ମ ଧର ॥
ସେ ବିଷ୍ଣୁ କପାଁ ରହିଲେ ଦେବକୀ ଉଦରେ ।
ନରରୂପେ ଜନମିଲେ କପାଁ ଏ ମହୀରେ ॥
ବଶିଷ୍ଠ ମୁନି କହିଲେ ଶୁଣ ହେ ରାଜନ ।
ସ୍ୱର୍ଗପୁରେ ସୁଖ ଭୋଗ ଛାଡ଼ି ଜନାର୍ଦ୍ଦନ ॥
ମହୀ ମଣ୍ଡଳେ ଜନମ ହୋଇଲେ କପାଇଁ ।
ସେକଥା ଗୋଷ୍ଠା ତୁମ୍ଭଙ୍କୁ କହୁଛି ବୁଝାଇ ॥
ପୂର୍ବେ ଥିଲେ କଂସଆଦି ଦୁଷ୍ଟ ରାଜା ଯେତେ
ତାଙ୍କ ଦୁଷ୍ଟ ପଣେ ପୃଥ୍ୱୀ ଦେବୀ ପୀଡ଼ା ପାନ୍ତେ
ନ ସହି ପାରି ତାହାଙ୍କ ପାଦଭର ମହୀ ।
କଂସ ରଜାର ଯେ ଦୂତେ ମଦେ ଗର୍ବବହି ॥
ତାଡ଼ନା ଅବମାନନା ଦେବାରୁ ବହୁତ ।
ଦେହି ବିବର୍ଣ୍ଣ ଦିଶିଲ ଭୟରେ ଚକିତ ॥

ପଡୁଟବଳେ ଭ୍ରମିଲ ତା ନୟନ ଯୁଗଳ ।
ଲୋତକ ଜଡ଼ିଲ ତାହାର ବଦନ ମଣ୍ଡଳ ॥
କାନ୍ଦି କାନ୍ଦି ପଳାଇଲା ଅତି ବେଗେ ମହୀ ।
ଦେବ ମହେଶ୍ୱର ବିଜେ କରୁଛନ୍ତି ଯହିଁ ॥
ବୃଷଭଧ୍ୱଜଙ୍କୁ ତହିଁ କରି ଦରଶନ ।
ନାଥ ନାଥ କହି ଉଚ୍ଚେ କଲେ ସେ ରୋଦନ
ପୃଥ୍ୱୀ କାନ୍ଦନ୍ତେ ତା ଦେଖି ଦେବଦେବ ହର
କ୍ରୋଧ ଯୋଗୁଁ ତାହାଙ୍କର କମ୍ପିଲା ଅଧର ॥
ଦେବଗଣଙ୍କୁ ଆଉରି ପାର୍ବତୀଙ୍କି ଘେନି ।
ବ୍ରହ୍ମାଙ୍କୁ ବୋଇଲେ ଯାଇଁ ଆହେ ପଦ୍ମଯୋନି ॥
ତୁମ୍ଭେ ବିଷ୍ଣୁଙ୍କ ସଙ୍ଗତେ କର ଯା ବିଚାର ।
ଯେମନ୍ତେ ମରିବ ଦୁଷ୍ଟ ସେ କଂସ ଅସୁର ॥
ମହାଦେବଙ୍କର କଥା ଶୁଣି ପ୍ରଜାପତି ।
କ୍ଷୀର ସମୁଦ୍ରେ ମିଳିଲେ ଯହିଁ ଶ୍ରୀପତି ॥
ଅନନ୍ତ ନାଗ ଉପରେ ଶୋଇଛନ୍ତି ଜଦେ ।
ହଂସ ଚଢ଼ି ଗଲେ ସଙ୍ଗେ ଘେନି ଦେବବୃନ୍ଦେ
ଶ୍ରୀହରି ପାଖକୁ ଯାଇ କୋମଳ ମଧୁରେ ।
କର ଯୋଡ଼ି ସ୍ତୁତି କଲେ ଶ୍ରୀ ବିଷ୍ଣୁ ପୟରେ
ପ୍ରଣାମ କରି ବୋଇଲେ ହେ କମଳନେତ୍ର ।
ହେ ହରି ତୁମ୍ଭେ ପରମ ଆତ୍ମା ଯେ ପବିତ୍ର ॥
ବ୍ରହ୍ମା ଶିବ ସହିତରେ ଆମ୍ଭେ ଦେବଗଣ ।
ତୁମ୍ଭ ଅଭୟ ଚରଣେ ପଶିଲୁଁ ଶରଣ ॥
ତୁମ୍ଭେ ପୁଣି ଜଗତକୁ ପାଳ ଲକ୍ଷ୍ମୀକାନ୍ତ ।
ତୁମ୍ଭ ଚରଣେ ଶରଣ ପଶିଲୁଁ ଅଚ୍ୟୁତ ॥
ଦେବଙ୍କ ସ୍ତୁତି ବଚନ ଶୁଣି ଜନାର୍ଦ୍ଦନ ।
ବୋଇଲେ କିପାଇଁ ମୁଖ ଦିଶୁଛି ମଳିନ ॥
ଏତେ କଷ୍ଟେ ତୁମ୍ଭେ କିମ୍ପା ଆସିଛ କିପାଇଁ ।
ଏମନ୍ତ ଶୁଣି ବୋଇଲେ ବ୍ରହ୍ମା ଆଗ ହୋଇ ॥
ତୁମ୍ଭଙ୍କୁ ସକଳ ଲୋକେ କରନ୍ତି ଭାବନା ।
ସକଳ ଦେବେ କରନ୍ତି ତୁମ୍ଭ ଆରାଧନା ॥
ତୁମ୍ଭେ ଦେବ ଦେବରାୟ ଜଗତର ନାଥ ।
ଯେ କାମନ୍ତେ ଆସିଅଛୁଁ ତୁମ୍ଭର ଅଗ୍ରତ ॥
ତାହା କହୁଅଛୁଁ ଶୁଣ ଆରତ ଭଞ୍ଜନ ।
ଦୁଷ୍ଟ କଂସ ଅସୁର ଯେ ମଥୁରା ରାଜନ ॥
ମହାଦେବଙ୍କୁ ମନାଇ ପାଇଅଛି ବର ।
ତିନିଭୁବନେ କାହାକୁ ନ କରେ ଖାତର ॥

ହରଙ୍କ ବରପ୍ରସାଦେ ହୋଇ ଉନମତ୍ତ ।
ଆମ୍ଭମାନଙ୍କ ଉପରେ ତାହାର ଅହନ୍ତା ॥
ତିନି ଭୁବନ ଲୋକଙ୍କୁ ପାଦରେ ଲୋଟାଇ ।
ମହୀ ତାର ପାଦ ଭାର ସହି ନ ପାରଇ ॥
ତା ପାଦ କର ଆଘାତେ ମହାପୀଡ଼ା ପାଇ ।
ତ୍ରାହି କରି ତ୍ରାହି କରି ଦେବ ସର୍ବଗ୍ରାହୀ ॥
ପୂର୍ବେ ତାକୁ ଯେତେବେଳେ ଦେବଦେବ ହର
ବର ଯାଚିଲେ ଠକିଲା ତାହାଙ୍କୁ ଅସୁର ॥
ବୋଇଲା ଭଣଜା ହାତେ ହେଉ ମୋହର ମରଣ ।
ଯେବେ ହୋଇଥିବ ସେହି ଦେବ ନାରାୟଣ ॥
ତା ବିନୁ କାହିଁରେ ମୋର ମୃତ୍ୟୁ ହେବ ନାହିଁ
ଶଙ୍କର ସେଠାରୁଁ ଗଲେ ହେଉ ହେଉ କହି ॥
ଏ କାରଣୁ ଆହେ ଦେବ ସ୍ୱୟଂ ଯାଇ ତୁମ୍ଭେ
ଦେବକୀ ଦେବୀ ଜଠରେ ଉପୁଜିବ ଯେବେ ॥
ନନ୍ଦର ଘରେ ବଢ଼ିବ ଗୋପପୁରେ ଯାଇଁ ।
ତେବେ ସେ ଦୁଷ୍ଟ ଅସୁର ମରିବେ ଗୋସାଇଁ
ବ୍ରହ୍ମାଙ୍କ ମୁଖୁଁ ଏମନ୍ତ ଶୁଣି ନାରାୟଣ ।
ମହାଦେବଙ୍କୁ ବୋଇଲେ ମୋ ବଚନ ଶୁଣ ॥
ପାର୍ବତୀଦେବୀଙ୍କି ଦିଅ ବରଷକ ପାଇଁ ।
ତହୁଁ ଶଙ୍ଖ ଚକ୍ର ଗଦାଧର ଲକ୍ଷ୍ମୀସାଇଁ ॥
ଜଗତ ରକ୍ଷା କାରଣୀ ଦେବୀ ଯେ ପାର୍ବତୀ ।
ତାହାଙ୍କୁ ସଙ୍ଗତେ ଘେନି ମଥୁରା ଚଳନ୍ତି ॥
ଆପେ ରହିଲେ ଦେବକୀ ଦେବୀର ଜଠରେ
ପାର୍ବତୀଦେବୀ ରହିଲେ ଯଶୋଦା ଉଦରେ ॥
ନବମାସ ନବଦିନ ଅନ୍ତେ ଭାଦ୍ରମାସେ ।
କୃଷ୍ଣପକ୍ଷର ଅଷ୍ଟମୀ ତିଥି ଦିବସେ ॥
ରୋହିଣୀ ନକ୍ଷତ୍ର ସେହିଦିନ ରାତି ଅଧେ ।
ଉତ୍ତାନେ ପଡ଼ିଲେ ପ୍ରଭୁ ଭୂତଳର ମଧ୍ୟେ ॥
ମେଘ ଗରଜଇ ଘୋର ବିଜୁଳି ମାରଇ ।
ଅନ୍ଧାରରେ କିଛି ବାଟ ଘାଟ ନ ଦିଶଇ ॥
ଝିପିରି ଝିପିରି ମେଘ ଶୀତଳ ପବନ ।
ଏଣୁ ଯେ ନିଦ୍ରା ଘାରିଛି ସବୁରି ନୟନ ॥
ବସୁଦେବର ଆତ୍ମଜ ରୂପେ ହୋଇଲେ ଜାତ ।
ଏ ବେଳେ ଗୋପ ନନ୍ଦରେ ପାର୍ବତୀ ସମ୍ଭୂତ
ନନ୍ଦ ଭାରିଯା ଯଶୋଦା ବଇରାଟୀ ଗର୍ଭେ ।
ଆନକ ଦୁନ୍ଦୁଭି ନାମଧାରୀ ବସୁଦେବେ ॥

( ବସୁଦେବ ଓ ଶ୍ରୀକୃଷ୍ଣ । )



ବାସୁଦେବେ ବସୁଦେବ ନିଜ କୋଳେ ଧରି ।
ବିଦ୍ୟୁତ ଆଲୋକେ ଯାଏ ଦଗ ଅନୁସରି ॥
ଅନନ୍ତ ଫଣାରେ ବର୍ଷା ଜଳ ନିବାରଇ ।
ଧାମଇଁ ଯମୁନା ନଈ ପାର ହେବା ପାଇଁ ॥

ଦେବକୀ ଗର୍ଭୁ ଜନମି ପଡିଲେ ଭୂମିରେ ।
ବସୁଦେବ ଗୃହୁଁ ଦେଲେ ଏମନ୍ତ ବେଳରେ ॥
ନାଭି ଦକ୍ଷିଣାବର୍ତ୍ତ ପଦ୍ମପ୍ରାୟେ ଅପୂର୍ବ ସୁନ୍ଦର ।
ନେତ୍ର ଭୁଜ ପଦ୍ମପତ୍ର ପ୍ରାୟେ ମନୋହର ॥
ପଦ୍ମ ପ୍ରାୟେ ନେଳ କର ପଲ୍ଲବ ଦଶନ ।
ପୁତ୍ରକୁ ଦେଖି ମନରେ ଆନନ୍ଦ ହୁଅଇ ॥
କଂସ ଅସୁର ଭୟରେ ହୋଇଣ ତରସ୍ତ ।
ଦେବକୀ ବୋଇଲେ ବସୁଦେବଙ୍କୁ ହେ ନାଥ
ନଇ ସାଙ୍ଗି ଯଶୋଦାକୁ ପୁତ୍ରଗୋଟି ଦେଇ ।
ତାହାର କନ୍ୟାକୁ ବେଗେ ଆଣ ପାଲଟାଇ ॥
ତାହାର ମୁଖୁଁ ଏକଥା ବସୁଦେବ ଶୁଣି ।
ପୁତ୍ରକୁ କୋଳେ ଘେନିଣ ଉଠିଲେ ତକ୍ଷଣି ॥
ଗୋପ ମଥୁରା ମଝିରେ ଯମୁନା ବହଇ ।
ପୁତ୍ର ଘେନି ବସୁଦେବ ଯାନ୍ତେ ବେଗ ହୋଇ
ବାଟେ ଦେଖିଲେ ଯମୁନା ଖାଏ ଦୁଇକୂଳ ।
ଘୋର ଗମ୍ଭୀର ଗର୍ଜନ ନାଦ କଲ କଲ ॥
ସୂଅ ଭଉଁରୀ ଫେଣରେ ମହା ଭୟଙ୍କର ।
ଦେଖି ବସୁଦେବ ଅତି ଦୁଃଖରେ କାତର ॥
ପୁତ୍ର ଚିନ୍ତାରେ ବିଳାପ କରଇ ବହୁତ ।
କି କରିବି କେଣେ ଯିବି ନ ଦିଶଇ ପଥ ॥
ଆହ୍ଲାଦେ ଦଇବ ମୋର ସରିଲା ସମ୍ପତ୍ତି ।
କଂସ ଜାଣିଲେ ପଡିବ ନିଶ୍ଚୟେ ବିପତ୍ତି ॥
ଏ ପୁତ୍ରର ପ୍ରାଣଗୋଟି ରହିବ କେମନ୍ତେ ।
ଯମୁନା ନଦୀ ବଇରୀ ହେଲା ମୋର ପଥେ ॥
ନନ୍ଦ ମନ୍ଦିରେ ଯିବାକୁ ବାଟ ନାହିଁ ଆଉ ।
କେବଳ ଏଥକୁ ମହା ଦେବି ମହାବାହୁ ॥
ବିପଦଭଞ୍ଜନ ସେହି ଗଜ ଉଦ୍ଧାରଣ ।
ପୁତ୍ରକୁ ରଖିବେ ସେହୁ ପଶିଲେ ଶରଣ ॥
ପିତାର ମନର କଥା ଜାଣି ଭବଗ୍ରାହୀ ।
ମାୟା କରିଥିଲେ ମନ ବଢିବାର ପାଇଁ ॥
ତହୁଁ ବସୁଦେବ ନଦୀକୂଳେ ରହି ସ୍ନେହେ ।
ଭଣ୍ଡାଏ ପାଣି ଯମୁନା ନଦୀରେ ଯେ ବହେ ॥
ବାଲି ଦିଶଇ ଦେଖିଣ ବସୁଦେବ ମନ ।
ଯିବାପାଇଁ ଉଦବେଗେ ହେଲା ଛନ ଛନ ॥
ଜଳରେ ପଶନ୍ତେ ମାୟା କଲେ ମାୟାଧର ।
ପିତାର କୋଳରୁ ଖସି ପଡିଲେ ଜଳର ॥

ହା ପୁତ୍ର ହା ପୁତ୍ର କହି ବସୁଦେବ ଶୋକେ ।
ଡାକ୍ତାଇଲେ ଆପଣାର ଅଙ୍ଗକୁ କୋତକେ ॥
ଚକିତ ହୋଇ ରହିଲା କାତର ଚିତ୍ତ ।
ଶିରେ କର ଡାଳି ବୋଲେ କର୍ମ ମୁଁ ନ ମଲି
ଜନ୍ମେ ଜନ୍ମେ କରିଥିଲି ମହାପାପ କେତେ ।
ଭୁଞ୍ଜଇ ସିନା ମୁଁ ଆଜ ତାର ଫଳ ଏତେ ॥
ଆହ୍ଲାଦେ ଦଇବ ତୋର ଦୟା ନାହିଁ ଟିକେ ।
ଏମନ୍ତେ କାନ୍ଦି ଜଳରେ ଉଣ୍ଡାଳେ ହାତକେ
ମୁଖରେ ବୋଲଇ ଆହେ ଜଗତର ନାଥ ।
ଶରଣ ପଶିଲି ରଖ ରଖ ମୁଁ ଅନାଥ ॥
ଏ ପୁତ୍ର ଗୋଟିକ ମୋର ରଖ ରଖ ହରି ।
ଦେବାଧି ଦେବରାୟ ହେ ପ୍ରଭୁ ଦଇତାରି ॥
ମୋ ଜୀବନ ଯାଉ ପଛେ ରହୁ ପୁତ୍ର ପ୍ରାଣ ।
ଅନ୍ତର୍ଯ୍ୟାମୀ ନାଥ ପ୍ରଭୁ ହେ ଆରତତ୍ରାଣ ॥
ପିତାର ବିକଳ ସହି ନ ପାରି କଂସାରି ।
କୃପାକରି କ୍ଷଣକରେ ଜଳକ୍ରୀଡା ସାରି ॥
ପିତା ହସ୍ତରେ ରହିଲେ ଆପେ ଆପେ ଆସି ।
ଶୁଣି ଆପଣେ ବସୁଦେବ ମନେ ହୋଇ ଖୁସି ॥
ପୋଛି ପାଞ୍ଛି ଦେଇ ଦେଖେ ବଢିଅଛି ସୂଅ ।
କୁତେ ମୋଟ ହେଲା ବସୁଦେବର ହୃଦୟ ॥
ତର ତର ହୋଇ ବେଗେ ନଦୀପାର ହେଲେ
ଗୋପ ନଗରେ ନନ୍ଦର ଗୃହେ ପହୁଞ୍ଚିଲେ ॥
ଯଶୋଦାକୁ ପୁତ୍ର ଦେଇ କନ୍ୟା ତହୁଁ ଆଣି ।
ଆପଣା ଘରେ ମିଳିଲେ ରାତି ଥାଉଁ ପୁଣି ॥
ଦେବକୀକି କନ୍ୟା ଦେଇ ହୋଇଲେ ନିଶ୍ଚିନ୍ତ
ଦେବକୀ ପ୍ରସବ କଲା ଜାଣିପାରି ଦୂତ ॥
କଂସର ସମ୍ମୁଖରେ ଧାଇଁ ଯାଇଁ ଜଣାଇଲେ ।
ଦେବଶତ୍ରୁ କଂସ ତାଙ୍କୁ ଏମନ୍ତ ବୋଇଲେ ॥
ପୁତ୍ର କି ଦୁହିତା ତାହା କହ ଜାଣି ଆସି ।
ଝିଅ ବୋଲି କହିବାରୁ କଂସ ମହାଦୋଷୀ ॥
ବୋଇଲା ତା ଘେନି ଆସ ମୋପାଶକୁ ବେଗେ
ଧାଇଁ ଯାଇଁ ମିଳିଲେ ସେ ଦେବକୀର ଆଗେ
କନ୍ୟାକୁ ତାଠାରୁ ବଳେ ଆଣିଲେ ଛଡାଇ ।
ଦେବଶତ୍ରୁ କଂସ ଆଗେ ଥୋଇଦେଲେ ନେଇ
ଦୁର୍ଦ୍ଦାନ୍ତ ପ୍ରତାପୀ ସେହି କଂସ ମହାରାୟ ।
ସେ କନ୍ୟାକୁ ଗୃହୁଁ ଚଢେ ଉପୁଜିଲା ଭୟ ॥

ଶୁଦ୍ଧ କାଞ୍ଚନ ପରାୟେ ବର୍ଣ୍ଣ ତାର ହୋଇ ।
ମୁଖର ଶୋଭା ପୂର୍ଣ୍ଣିମା ଚନ୍ଦ୍ରହୁଁ ଉଜ୍ଜଳ ॥
ହୀରକ ବଜୁଳି ପ୍ରାୟେ ତା ନୟନ ଛଟା ।
ଦେଖି ବିଚାରିଲ ଏ ମୋ ଜୀବନର କଣ୍ଟା ॥
ଏମନ୍ତ ଭାଳି ହସିଲ ଅସୁର ରାଜନ ।
ବୋଇଲା ଏହାକୁ ଏଥୁ କାଅ ରେ ବନ୍ଧନ ॥
ଶିଳା ଉପରେ କଚାଡ଼ି ନେଇ ଏହା ପ୍ରାଣ ।
ଅସୁରଗଣ ନୃପତି ଆଦେଶ ପାଇଣ ॥
କନ୍ୟାକୁ ଶିଳା ଉପରେ କଚାଡ଼ିଲ ଯେବେଳେ ।
ବେଢ଼ି ଅଛନ୍ତି ଅସୁରେ ସେହି ଶିଳା ତଳେ
ବିଜୁଳି ପ୍ରାୟେ ଉଠିଲେ ଗଗନେ ଗଉରୀ ।
ଦେଖି ଚକିତ ହୋଇଲା କଂସ ଦଣ୍ଡଧାରୀ ॥
ବିଜୁଳୀକି ଧରିବାକୁ କାହାର ଶକତି ।
ଅସୁରେ ଚଟକା ହୋଇ ଊର୍ଦ୍ଧ୍ୱକୁ ଚାହାନ୍ତି ॥
ଗଗନେ ଥାଇଁ ବୋଇଲେ ସେ ଦେବୀ ଗଉରୀ
ଆରେ କଂସ ଦୁଷ୍ଟ ପଣେ ଲୋଡ଼ୁ ମୋତେ ମାରି
ତୋହର କି ବା ବଳ କେତେ ତୁ ମାରିବୁ ମୋତେ
ଯେ ତୋତେ ମାରିବ ସେହି ଅଛଇ ଗୁପତେ ॥
କହୁଅଛି ତାହା ତୁହି ଶୁଣ ସାବଧାନେ ।
ନନ୍ଦର ମନ୍ଦିରେ ଯାଇଁ ରହିଲା ଗୋପନେ ॥
ବଶିଷ୍ଠ ମୁନି କହନ୍ତି ଦିଲୀପ ଶୁଣନ୍ତି ।
ଏମନ୍ତ କହି ମନ୍ଦିରେ ଗଲେ ଭଗବତୀ ॥
ଦେବୀଙ୍କ ମୁଖୁଁ ଏମନ୍ତ ଶୁଣି କଂସରାଏ ।
ପୂତନା ଭଗିନୀ ମୁଖ ଚାହିଁ କହେ ଭୟେ ॥
ନନ୍ଦ ମନ୍ଦିରକୁ ତୁହି ଯାଇ ଏହିକ୍ଷଣି ।
କପଟେ ତାର ପୁତ୍ରକୁ ମାରି ଲେ ଭଉଣି ॥
ଯାହା ତୁ ମାଗିବୁ ତାହା ଦେବଇଁ ମୁଁ ତୋତେ
ମୋର ଶତ୍ରୁ ମାରିବାକୁ ଯାଅ ଯା ତୁରିତେ ॥
କଂସ ଆଜ୍ଞାରେ ଗୋପକୁ ଅସୁରୁଣୀ ଗଲା ।
କପଟେ ଅତି ସୁନ୍ଦରୀ ରୂପକୁ ଧଇଲା ॥
କାଳ କୂଟ ଗରଳକୁ ଦୁଇସ୍ତନେ ଭରି ।
ନନ୍ଦର ମନ୍ଦିରେ ଯାଇଁ ମିଳିଲା ସୁନ୍ଦରୀ ॥
ଚିହ୍ନି ନ ପାରିଲେ ତାକୁ ଗୋପ ଗଉଡୁଣୀ ।
ନନ୍ଦପୁତ୍ରକୁ କୋଳରେ ଧରି ଅସୁରୁଣୀ ॥
କ୍ଷୀର ଦାନେ ପ୍ରାଣ ହରି ସଦଗତି ପାଇ ।
କ୍ଷୀରସଙ୍ଗତରେ ତାର ପ୍ରାଣ ହରି ନେଇ ॥

ତହୁଁ ପ୍ରଭୁ ଶକଟକୁ ପାଦେ ମର୍ଦ୍ଦିଲେ ।
ତୃଣାବର୍ତ୍ତ ଆଦି ଯେତେ ଅସୁର ନାଶିଲେ ॥
କାଳୀୟ ନାଗ ନାଗୁଣୀ ଦର୍ପକୁ ଦଳିଲେ ।
ତହୁଁ ଯାଇଁ କଂସପୁରେ ମଲ୍ଲଙ୍କୁ ମାଇଲେ ॥
ଦୁର୍ଦ୍ଦାନ୍ତ ପ୍ରତାପୀ କଂସ ଅସୁରେ ବିନାଶି ।
ରହିଲେ ମଥୁରା ପୁରେ ପ୍ରଭୁ ବ୍ରହ୍ମରାଶି ॥
କୃଷ୍ଣ ଜନ୍ମ ଦିନ ବ୍ରତ କହିଲି ରାଜନ ।
ଶୁଣିଲେ ସକଳ ପାପ ହୁଅଇ ଦହନ ॥
କଲେ କେତେ ପୁଣ୍ୟ ହୁଏ ତାହା ମୁଁ ନ ଜାଣେ
ଏ ବ୍ରତ କରନ୍ତି ଯେଉଁ ନରନାରୀ ଗଣେ ॥
ଇହଜନମେ ଅତୁଳ ଅଇଶ୍ୱର୍ଯ୍ୟ ପାନ୍ତି ।
ଧର୍ମ କାମ ଅର୍ଥକୁ ଯେ ମନରେ ବାଞ୍ଛନ୍ତି ॥
ସେ କେବେ ତୃତୀୟା ଷଷ୍ଠୀ ଅଷ୍ଟମୀ ଯେ ତିଥି
ଆବର ଯେ ଏକାଦଶୀ ଚତୁର୍ଦ୍ଦଶୀ ତିଥି ॥
ଏ ତିଥି ମାନଙ୍କେ ପୁଣି ଯେ ବ୍ରତ ପଡ଼ିବ ।
ପୂର୍ବ ତିଥି ବିଦ୍ଧା ପଡ଼ିଲେ ଯେ ନ କରିବ ॥
ସପ୍ତମୀ ଯୁକ୍ତ ଅଷ୍ଟମୀ ତିଥି ବରଜିବ ।
ନକ୍ଷତ୍ର ନବମୀ ଯୁକ୍ତ ଅଷ୍ଟମୀ ପାଳିବ ॥
କିଞ୍ଚିତ ଅଷ୍ଟମୀ ଯେବେ ଉଦୟକୁ ପାଇ ।
ଦିନ ରାତି ଯାକ ପୁଣି ନବମୀ ହୁଅଇ ॥
ମୁହୂର୍ତ୍ତ ମାତ୍ର ରୋହିଣୀ ନକ୍ଷତ୍ର ପାଇଲେ ।
ସଂପୂର୍ଣ୍ଣ ଅଷ୍ଟମୀ ବୋଲି ଜାଣିବ ତା ଭଲେ ॥
ବୁଧବାରେ କିବା ସୋମବାରେ ହେ ରାଜନ ।
ରୋହିଣୀ ଯୁକ୍ତ ଅଷ୍ଟମୀ ଯେବେ ସେହି ଦିନ ॥
ହେଲେ ସେ ଆଉ କରିବ କିପାଁ କୋଟିବ୍ରତ ।
ବୁଧବାରେ କିବା ସୋମବାରେ ଯେ କିଞ୍ଚିତ ॥
ଅଷ୍ଟମୀ ପାଇ ତଦନ୍ତେ ନବମୀ ହୁଅଇ ।
ଶତ ବରଷେ ସେ ଦିନ ଗୋଟା ନ ମିଳଇ ॥
ନକ୍ଷତ୍ର ନ ପାଇଲେ ଯେ ବ୍ରତ ନ କରିବ ।
କେବଳ ନବମୀଯୁକ୍ତ ଅଷ୍ଟମୀ ତେଜିବ ॥
ସପ୍ତମୀବିଦ୍ଧା ଅଷ୍ଟମୀ ରୋହିଣୀ ସଂଯୋଗେ ।
ବ୍ରତ ଉପବାସ କରିପାରି ଏହି ଯୋଗେ ॥
କୃଷ୍ଣ ଅଷ୍ଟମୀ ଯେବେ କି ନବମୀ ତିଥିରେ ।
କଳାକାଷ୍ଠା ମୁହୂର୍ତ୍ତେକ ପାଇଁ ସେ ଦିନରେ ॥
ଅଷ୍ଟମୀ ତିଥିର ବ୍ରତ ସେ ଦିନ କରିବ ।
ସପ୍ତମୀଯୁକ୍ତ ଅଷ୍ଟମୀ ଅଗ୍ରାହ୍ୟ ଜାଣିବ ॥

ନବମୀ ସପ୍ତେକ୍ଷ ବୁଧବାରେ ସୋମବାରେ ।
ସନ୍ତୁଲ ତେବେ ନସ୍ତ ନୋଟ କୁଳକୁ ଉଦ୍ଧାରେ ॥
ସପ୍ତମୀ ସହିତ ଯେବେ ଅଷ୍ଟମୀକ ବଟନ୍ତି ।
ସୁଗନ୍ଧ ଯୁକ୍ତ ଗଙ୍ଗା ଜଳଘଟ ମଧ୍ୟ ॥
ତେସନ ତ୍ୟାଗ କରିବ ସେହି ଅଷ୍ଟମୀକ ।
ସୋପାଦ ହିଅନ୍ତି ଯେହ୍ନେ ସେ ଘଟ ନ ରଖି ।
ଦନ୍ଧୁଇ କହୁଲେ କଏ କରନ୍ତୁ ଏ ବ୍ରତ ।
କେମନ୍ତେ ପ୍ରକାଶ ହେଲ କୁହ ପୁରୋହିତ ॥
ଏ ବ୍ରତ କଲେ କି ଫଳ କି ପୁଣ୍ୟ ହୁଅଇ ।
ଆଚିହ ମହାମୁନି ତାହା କହନ୍ତୁ ବୁଝାଇ ॥
ଏମନ୍ତ ଶୁଣି ବଶିଷ୍ଠ ବୋଇଲେ ରାଜନ ।
ନୃପତି ଏ ଥିଲ ତାର ନାମ ଚନ୍ଦ୍ରସେନ ॥
ମହା ମହା ପାପରେ ତା ଦିନକାଳ ଯାଏ ।
ଅଗମ୍ୟାସ୍ତ୍ରିରେ ଗମନ ନିତ କରୁଥାଏ ॥
ବ୍ରାହ୍ମଣର ସୁନାଚୋରି କରଇ ଆବର ।
ସୁବ୍ରତେ ମନକୁପ୍ତ ନୁହଇ ତାହାର ॥
ଆପେ ଜୀବ ମାରି ମାଂସ ଖାଉଥାଇ ନିତ ।
ସେ ମୁଣି ଏମନ୍ତ ପାପୀ ଥିଲ ହୋ ନୃପତି ॥
ଗୃଣ୍ଡାଳ ପତିତଜନ ସଙ୍ଗେ ତାର ସଙ୍ଗ ।
ଜୀବ ବଧରେ ତାହାର କଉତୁକ ରଙ୍ଗ ॥
ଏକଦିନେ ମୃଗୟାକୁ ଗଲ ସେ ନୃପତି ।
ପଶିଲ ଘୋର ଅରଣ୍ୟେ କାହ୍ନି ତାର ଜାତ ॥
ସଙ୍ଗତେ ଅଛନ୍ତି ତାର ଥାଟ ଯେ ବହୁତ ।
ମହାବଳ ବାଘ ଗୋଟା ଦେଖି ନରନାଥ ॥
ସୈନ୍ୟଙ୍କୁ କହିଲ ବେଢି ରହ ଚଉପାଶ ।
ଯା ଆଗେ ଜନ୍ତୁ ମଳାଇ ଯିବ ସେହି ନାଶ ॥
ଏମନ୍ତ ଶୁଣି ସମସ୍ତେ ନିର୍ବନ୍ଧେ ଜଗିଲେ ।
ସେ ବାଘ ଗୋଟାକୁ ବାଟ ଛାଡଣ ନ ଦେଲେ ॥
ବାଘ ନୃପତିର ବାଟ ଦେଇ ପଳାଇଲ ।
ଲଜ୍ଜ ପାଇ ରଜା ପଛେ ପଛେ ଗୋଡାଇଲ ॥
ବ୍ୟାଘ୍ରକୁ ମାରିବା ପାଇଁ ବଳନ୍ତି ତା ମନ ।
କ୍ଳେଶ ଦୁଃଖ କ୍ଷୁଧା ତୃଷା ସହଇ ରାଜନ ॥
ସନ୍ଧ୍ୟା ସମୟେ ଯମୁନା ତଟରେ ମିଳିଲ ।
ସେ ଦିନ ଜନ୍ମାଷ୍ଟମୀ ବ୍ରତ ପଡଥିଲ ॥
ରୋହିଣୀ ନକ୍ଷତ୍ର ଯୁକ୍ତ ହୋଇଥିଲ ପୁଣି ।
ଭାଦ୍ରମାସ ହରିଜନ୍ମଦିନ ନୃପମଣି ॥
ଦେଖିଲ ସେଠାରେ ସ୍ୱର୍ଗପୁର କନ୍ୟା ମିଳ ।
ନାନାପ୍ରକାର ସୁଗନ୍ଧ ଫୁଲ ଫଳ ତୋଳ ॥
ଧୂପ ଦୀପ କୁଙ୍କୁମାଦି ନାନା ଉପହାର ।
ନଇବେଦ୍ୟ ଦ୍ରବ୍ୟ ବାଢି ନାନାଦି ପ୍ରକାର ॥
ଯମୁନା କୂଳରେ ବ୍ରତ କରୁଛନ୍ତି ବସି ।
ଏ ବ୍ରତ ଦେଖି ନୃପତି ମନକୁ ଆକର୍ଷି ॥
ଏମନ୍ତ ବୋଇଲ ସ୍ତ୍ରୀଗଣଙ୍କୁ ଅନାଇ ।
ଅଦ୍ଭୁତ ଏ ମୋ ପ୍ରାଣ ବାହାରି ଯିବଇଁ ॥
ସ୍ତ୍ରୀଏ ବୋଇଲେ ତୁମ୍ଭେ ଅପାପୀ ପୁରୁଷ ।
ଆଜ ଶ୍ରୀହରିର ଜନ୍ମ ଅଷ୍ଟମୀ ଦିବସ ॥
ଏହି ବ୍ରତ ଦିନ ଜାଣ ଭୋଜନ ନିଷେଧ ।
ଅଭକ୍ଷ୍ୟ ଯେସନ କାକ ଗୃଧ୍ର ଗୋରୁ ଗଧ ॥
ତେସନ ଅଭକ୍ଷ୍ୟ ଜାଣ ବ୍ୟଞ୍ଜନାଦି ଅନ୍ନ ।
କୃଷ୍ଣଜନ୍ମାଷ୍ଟମୀ ଦିନ ଯେ କରେ ଭୋଜନ ॥
ଦେହେ ପ୍ରାଣ ଥାଇ ଯେ ନ କରେ ଏ ଉପାସ ।
ଦେହାନ୍ତେ କରେ ତାହାର ଭୁବନରେ ବାସ ॥
ତା ବଂଶରେ ପିତୃ ଲୋକେ ନ ପାନ୍ତି ଯେ ପାଣି
ସ୍ତ୍ରୀଙ୍କ ମୁଖୁଁ ନୃପତି ଏ ବଚନ ଶୁଣି ॥
କିଛି ଗନ୍ଧ ପୁଷ୍ପ ବସ୍ତ୍ର ତାଙ୍କ ଠାରୁଁ ଆଣି ।
ଭକତରେ ବ୍ରତ ବସି କଲ ନୃପମଣି ॥
ବ୍ରତ ପ୍ରସାଦେ ନୃପତି ବଇକୁଣ୍ଠେ ଗଲ ।
ଚନ୍ଦ୍ରସେନ ଆଦି ପିତୃଗଣ ସଙ୍ଗେ ନେଲ ॥
ମଥୁରା ଶ୍ରୀ କୃଷ୍ଣ ମୁଖ ଦର୍ଶନେ ଯେ ଫଳ ।
ଜନ୍ମାଷ୍ଟମୀ ବ୍ରତେ ଜନ ପାଇ ସେ ସକଳ ॥
ଦ୍ୱାରକା ହରି ଦର୍ଶନେ ଯେ ଫଳ ମିଳଇ ।
ଦରିଦ୍ର ଜନ ଏ ବ୍ରତ କଲେ ତାହା ପାଇ ॥
ଦ୍ୱିଜ ଗୋପୀନାଥ କହେ ହରି ବ୍ରତ ସାର ।
ଏ ବ୍ରତ କରି ତୁମ୍ଭେ ସଂସାରୁ ନିସ୍ତର ॥
ଏ ବ୍ରତ ସଂସାର ମଧ୍ୟେ ପ୍ରଧାନ ଅଟଇ ।
ଏହା ପ୍ରସାଦେ ବୈକୁଣ୍ଠ ଭୁବନ ମିଳଇ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ଜନ୍ମାଷ୍ଟମୀ ବ୍ରତମାହାତ୍ମ୍ୟଂ ନାମ
ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।



# ତ୍ରିଚତ୍ୱାରିଂଶ ଅଧ୍ୟାୟ ।

## ଏକାଦଶୀ ମାହାତ୍ମ୍ୟ ।

ଶଉନକ କହିଲେ ହେ ମହାମୁନି ସୂତ ।
କୃପାକର କହ ମୋତେ ବିପ୍ରର ମହାତ୍ମ୍ୟ ॥
ସୂତ ବୋଇଲେ ହେ ମୁନି ଶଉନକ ଶୁଣ ।
ସକଳ ବର୍ଣ୍ଣର ଗୁରୁ ଅଟଇ ବ୍ରାହ୍ମଣ ॥
ସାକ୍ଷାତେ ଦେବାଧି ଦେବ ନାରାୟଣ ସେହି ।
ଏଣୁ ସମସ୍ତେ ତାହାଙ୍କୁ ଭୂଦେବତା କହି ॥
ହରି ବୁଦ୍ଧିରେ ବିପ୍ରଙ୍କୁ ନମଇ ଯେ ଜନ ।
ବଢଇ ତାର ସମ୍ପଦ ଆଦି ଧନ ଧାନ୍ୟ ॥
ଗର୍ବ କରି ବିପ୍ରଙ୍କୁ ଯେ ପ୍ରଣାମ ନ କରେ ।
ଶ୍ରୀ ହରି ତା ଶିର ଛେଦ ସନ୍ତି ଚକ୍ରରେ ॥
ଦୋଷୀ ବିପ୍ରଙ୍କୁ ହିଂସାରେ ଯେ ଜନ ଦଣ୍ଡଇ ।
ଏ ସଂସାରେ ବିଷ୍ଣୁଦ୍ରୋହୀ ହୋଇ ସେହି ଥାଇ
ଦେହାନ୍ତେ ଯାଇ ଦାରୁଣ ନର୍କ ଭୋଗ କରେ ।
ମାଗୁଥିବା ବିପ୍ରଙ୍କୁ ଯେ ଦେଖି କୋପ ଭରେ ॥
ଗାଳି ମନ୍ଦ ଦେଇ ତାଙ୍କୁ ତର୍ଜି ଛାଡଇ ।
ତପତ ଛୁରୀରେ ଯମ ତା ଆଖି ଫୋଡଇ ॥
ଯେଉଁ ମୂଢ ନରାଧମ ବିପ୍ର ନିନ୍ଦା କରେ ।
ତପତ ଜିହ୍ୱା ତା ମୁଖେ ଯମଦୂତ ଭରେ ॥
ତପୋଧନ ବିପ୍ର ଯାର ଗୃହରେ ଭୁଞ୍ଜଇ ।
ଦେବଙ୍କ ଭୋଜନ ଶ୍ରୀକୃଷ୍ଣ ଭୁଞ୍ଜିବାର ହୋଇ ॥
ବିପ୍ର ପାଦୋଦକରୁ ଯେ ବିନ୍ଦୁଏ ଗ୍ରହଇ ।
ବ୍ରହ୍ମହତ୍ୟା ଆଦି ପାପ ତାର ନାଶ ଯାଇ ॥
ବିପ୍ରପାଦ ଧୁଅଇ ଯେ ଶ୍ରଦ୍ଧା ଭକତିରେ ।
ସତ କଥା କହୁଛି ମୁଁ ତୁମ୍ଭ ଅଗ୍ରତରେ ॥
ସବୁ ପାତକୁ ମୁକତ ହୁଅଇ ସେ ଜନ ।
ଅପୁତ୍ରୀ ଯେବେ ମଢ଼ୁଛି ନାଶ କାତଦନ ॥
ଦ୍ୱିଜ ପାଦୋଦକ ସେବା କରେ ଭକତିରେ
ଜୀବ ବତ୍ସା ପୁତ୍ରବତୀ ହୁଏ ସେ ସଂସାରେ ॥
ବ୍ରହ୍ମାଣ୍ଡର ତୀର୍ଥ ଯାକ ସାଗରେ ଅଛଇ ।
ଏହା ଛଡା ତହିଁ ଯେତେ ତୀର୍ଥ ରହିଥାଇ ॥
ଯେ ସବୁ ତୀର୍ଥ ଦ୍ୱିଜର ପାଦ ଯୁଗଳରେ ।
ଦ୍ୱିଜ ପାଦୋଦକ ପଡେ ଯାର ମସ୍ତକରେ ॥
ସବୁ ତୀର୍ଥ ସ୍ନାନ କଲା ଫଳ ସେହି ପାଇ ।
ସବୁ ପାତକରୁ ପୁଣି ମୁକତ ହୁଅଇ ॥
ତପୋଧନ ଶଉନକ ତୁମ୍ଭେ ଏତିକି ଶୁଣ ।
ବିପ୍ର ପାଦୋଦକ ସର୍ବ ପାପ ବିମୋଚନ ॥
ତାର ମହିମାର ଅଛି ଯେଉଁ ଇତିହାସ ।
କହୁଅଛି ଦ୍ୱିଜବର ତାର ସବିଶେଷ ॥
ଭୀମ ନାମେ ଶୂଦ୍ରଥିଲା ପୂର୍ବେ ଯେ ଦ୍ୱାପରେ ।
ସହସ୍ରେକ ବ୍ରହ୍ମହତ୍ୟା ସେହି ପୁଣି କରେ ॥
ବଇଶ୍ୟ ବୃତ୍ତି ତାହାର ଜୀବିକା ଅଟଇ ।
ଅତି ନିଷ୍ଠୁର ସେ ଗୁରୁ ସ୍ତ୍ରୀକି ହରଇ ॥
ସେ ଭୀମେକ ଶୂଦ୍ର ମହାବେଶ୍ୟା ସଙ୍ଗେ ଥାଏ
ନିତ ନବନବ ନାରୀ ସଙ୍ଗେ ଦିନ ଯାଏ ॥
ସେ ଦସ୍ୟୁ ଦୁଷ୍ଟ ଭୀମର ପାପ ସଂଖ୍ୟା ନାହିଁ ।
ଦିନେ ବିପ୍ରଘରେ ପଶି ଗ୍ରେଷ୍ଠ କଲା ଯାଇ ॥
ବିପ୍ର ଦାଣ୍ଡ ଦୁଆରେ ସେ କହେ ବିନୟରେ ।
ଭୋସ୍ୱାମି ବିପ୍ର ମୋ କଥା ଗୋଟିଏ ଶୁଣ ଥରେ
ଆପଣ ଦୟାଳୁ ପ୍ରାୟ ଜଣାଯାଏ ମୋତେ ।
ଜଳୁ ମୁଁ ଅନ୍ନମାଗଇ କ୍ଷୁଧାର ଆରତେ ॥
ବ୍ରାହ୍ମଣ ବୋଇଲେ ଆହେ କ୍ଷୁଧାତୁର ଶୁଣ ।
ରାନ୍ଧିବାଢି ଦେବା ପାଇଁ ନାହିଁ କେହି ଜନ ॥
ତଣ୍ଡୁଳ ଦେଉଛି ତୁମ୍ଭେ ରାନ୍ଧି ବାଢ଼ି ଖାଅ ।
ମାତା ପିତା ନାହିଁ ମୋର ନାହିଁ ପୁଅଝିଅ ॥
ଭାରିଯା ବା ମାତୃ ବନ୍ଧୁ କେହି ନାହିଁ ମୋର ।
ସବୁଛାଡ଼ି ଯାଇଛନ୍ତି ଭୁଞ୍ଜି ଆୟୁଘର ॥
ହେ ଅତିଥି ଅକର୍ମୀ ମୁଁ ଏକା ଭାଗ୍ୟହୀନ ।
ଏକମାତ୍ର ସାହା ମୋତେ ପ୍ରଭୁ ଜନାର୍ଦ୍ଦନ ॥
ତାଙ୍କ ଭଜନ କାହାରିକି ମୁହିଁ ନ ଜାଣେ ।
ଏହା ଶୁଣି ଭୀମ ବୋଲେ ହେ ଦ୍ୱିଜ ଗୋସାଇଁ
ମୁହିଁତ ଜାତିରେ ଶୂଦ୍ର କେହି ନାହିଁ ମୋର ।
ସେବା କରୁଥିବି ରହି ମୁହିଁ ତୁମ୍ଭଘର ॥
ଶୁଣି ସେ ବ୍ରାହ୍ମଣ ଅତି ଆନନ୍ଦ ହୋଇଲା ।
ରାନ୍ଧି ବାଢ଼ି ତାଙ୍କୁ ଶୀଘ୍ରେ ଖାଇବାକୁ ଦେଲା ॥
ବିପ୍ରର ମନ ତୋଷିଲା ରହି ତାର ଘରେ ।
ସବୁ ଗ୍ରେଷ୍ଠ କରି ନେବ ପାଞ୍ଚିଇ ମନରେ ॥
ଆଜ କାଲମଧ୍ୟେ ବେଶି ବିଳମ୍ବତ ନୋହେ ।
ଏମନ୍ତ ଭାଳି ବ୍ରାହ୍ମଣ ସେବା ଧର୍ମେ ରହେ ॥

ଧନ ଚୋରି କରି ନେବା ପାଇଁ ସେହି ଚୋର
ବିପ୍ରର ପାଦକୁ ଧୋଇ ଦିଏ ଆଣି ନୀର ॥
ପାଦୋଦକ ପାନ କରି ଶେଷ ଜଳ ନେଇ ।
କପଟ ଭକ୍ତିରେ ନିଜ ଶିରେ ସିଞ୍ଚି ଦେଇ ॥
ବିପ୍ର ଜାଣିବାକୁ ଏହୁ ସେବକ ମୋହର ।
ଏକଦିନକର କଥା ଶୁଣ ଦ୍ୱିଜବର ॥
କାହୁଁ ଏକ ଚୋର ଆସି ସେ ଦିନ ରାତିରେ ।
ସିନ୍ଧି କାଟି ସେହିବାଟେ ପଶେ ବିପ୍ରଘରେ ॥
ଭୀମଠେଙ୍ଗା ଧରି ତାକୁ ମାରିବାକୁ ଗଲା ।
ସେ ଚୋର ତା ମୁଣ୍ଡ କାଟି ଛାଡ଼ି ପଳାଇଲା ॥
ସେ ଭୀମ ଶୂଦ୍ରର ପାପଥିଲା ସବୁ ଯେତେ ।
ବିପ୍ର ପାଦ ଧୋଇ ଜଳପାନ କଲା ମାତ୍ରେ ॥
ସବୁ ଛାଡ଼ି ପଳାଇଲା ପବିତ୍ର ହୋଇଲା ।
ତେଣୁ ଯମ ଭୁବନକୁ ସେ ଶୂଦ୍ର ନ ଗଲା ॥
ଶଙ୍ଖ ଚକ୍ରଗଦାଧାରୀ ବିଷ୍ଣୁଦୂତେ ମିଳି ।
ରାଜହଂସ ଯୋଗ୍ୟରଥେ ଘେନି ଗଲେ ଚଳି ॥
ଦୁର୍ଲ୍ଲଭ ଯେ ବଇକୁଣ୍ଠ ପୁରେ ପହୁଞ୍ଚିଲେ ।
ଅତି ଆଦରରେ ତାହାକୁ ସୁଖରେ ରଖିଲେ ॥
ଏ ବିପ୍ର ମାହାତ୍ମ୍ୟ ଯାହା କହିଲି ତୁମ୍ଭକୁ ।
ଶ୍ରଦ୍ଧା ଭକତିରେ ଯେହୁ ଶୁଣଇ ଏହାକୁ ॥
ତା ଦେହୁ ସକଳ ପାପ ଛାଡ଼ି ରହେ ଦୂରେ ।
ପରିବାରେ ଶତ୍ରୁକ ପୁଣିହିଁ ଆଦରେ ॥
ଏକାଦଶୀର ମହିମା କୁହ ହେ ସତ୍ୱର ।
କେତେ ଯେ ଫଳ ଏହାର କହ ମୁନିବର ॥
ନ କଲା ଲୋକର ପାପ କେତେ ଯେ ହୁଅଇ
ଏମନ୍ତ ଶୁଣିଣ ସୂତ ମୁନି ଯେ କହଇ ॥
ଏକାଦଶୀର ମହିମା କି କହିବ ମୁହିଁ ।
ଏକାଦଶୀ ନାମକୁ ଯେ ଶୁଣଇ ଧରଇ ॥
ସକଳ ପ୍ରାଣୀ ଡରନ୍ତି ଯାର ନାମ ଶୁଣି ।
ସେ ଯମଦୂତେ ତାହାକୁ ଡରନ୍ତି ଯେ ପୁଣି ॥
ଏଥିରେ ସଂଶୟ କିଛି ମନରେ ନ କର ।
ସବୁ ପୁଣ୍ୟ ବ୍ରତ ମଧ୍ୟେ ଏକାଦଶୀ ସାର ॥
ଉପବାସେ ଜାଗରରେ ରହି କଲେ ବ୍ରତ ।
ବିଷ୍ଣୁ ମହିମା ମନ୍ଦିରବାସୀ ସେ ଭକତ ॥
ତୁଳସୀ ପତ୍ର ଦେଇଣ ହରିଙ୍କି ପୂଜଇ ।
ଏକ ଏକ ପତ୍ରେ କୋଟି ଯଜ୍ଞଫଳ ପାଇ ॥
ଅଗମ୍ୟା ସ୍ତ୍ରୀରେ ଗମନେ ପାପ ହୁଏ ଯେତେ ।
ତାର ସେ ପାପ ନ ରହେ ଏକାଦଶୀ ବ୍ରତେ ॥
ଆହେ ଦ୍ୱିଜ ଯେଉଁଲୋକ ସେ ହରି ବାସରେ
ଘୃତ ପୂର୍ଣ୍ଣ ଦୀପ ଜାଳେ ବସି ଉଜାଗରେ ॥
ସେ ନିଜ ତେଜରେ ସବୁ ପାପ ନାଶକରି ।
ଦୀପ ଆଲୁଅ ଯେସନେ ଅନ୍ଧାର ନିବାରି ॥
ଅନ୍ତେ ସେ ଯାଇ ରହଇ ବିଷ୍ଣୁର ଭୁବନେ ।
ଯେ ଦେଶେ ମହାଉତ୍ସବ ହୁଏ ହରି ଦିନେ ॥
ଧନ୍ୟ ସେ ଦେଶ ଧନ୍ୟ ସେ ରାଜା ପ୍ରଜାଜନେ
ପ୍ରେତପତି ଯମରାଜା କହେ ଦୂତଗଣେ ॥
ଆହେ ଦୂତଗଣ ତୁମ୍ଭେ ମନେ ରଖିଥିବ ।
ଯେ ଦିନ ଶୟନ କରେ ଦେବ ବାସୁଦେବ ॥
ଯେଉଁ ଦିନ ପୁଣି ହରି କଡ଼ ଲେଉଟାନ୍ତି ।
ହରି ଯେଉଁ ଏକାଦଶୀ ତିଥିରେ ଉଠନ୍ତି ॥
ଏଥିରେ ଯେ ଉପବାସ କରେ ନିରାହାରେ ।
ମୋ ପାଖକୁ ନ ଆଣିବ ସେମାନଙ୍କୁ ଡରେ ॥
ପୁଣ୍ୟବର୍ଦ୍ଧିନୀ ଯେ ଜଗନ୍ନାଥର ବଲ୍ଲଭ ।
ଏମନ୍ତ ଯେ ଏକାଦଶୀ ତିଥି ଗୋଷ୍ଠା ଶୁଭ ॥
ସେ ଦିନ ଅନ୍ନ ଭୋଜନ କରୁଥିବା ଜନ ।
ତେବେ ସେ ବିଷ୍ଣୁ ଦେହକୁ କରଇ ଦହନ ॥
ଏ ସଂସାରେ ତାହାଙ୍କର ଜୀବନହିଁ ଧିକ ।
ତାଙ୍କ ଶୋଭା ସଉନ୍ଦର୍ଯ୍ୟ ପଣକୁହିଁ ଧିକ ॥
ଆବରହିଁ ଧିକ ଧିକ ତାଙ୍କ ଆଚରଣ ।
ଏକାଦଶୀରେ ଯେ ଅନ୍ନ କରଇ ଭୋଜନ ॥
ସେ ପାପିଷ୍ଠର ଭୋଜନ ଜାଣ ବିଷ୍ଠା ତୁଲ୍ୟ ।
ଆହେ ଦ୍ୱିଜବର ଏକାଦଶୀରେ କେବଳ ॥
ଭୋଜନକୁ ଆଶ୍ରାକରି ଦୁରିତ ହରନ୍ତି ।
ନାନା ପ୍ରକାରେ ସେ ପୁଣି ବହୁତ ଅଛନ୍ତି ॥
ଅମାବାସ୍ୟା ସ୍ତ୍ରୀ ସଙ୍ଗକଲେ ପାପ ଯେତେ ।
ସେ ପାପ ଅନ୍ନ ଭୋଜନ କଲେ ବିଷ୍ଣୁ ବ୍ରତେ
ଗୁରୁ ବିପ୍ର ଆଦିଙ୍କର ଆଜ୍ଞା ଶିରେ ଘେନି ।
ଜଳପାନ କଲେ ଦୋଷ ନାହିଁ ଜାଣ ମୁନି ॥
ସବୁ ପାପ କରିଥିବା ଜନ ପାଏ ତ୍ରାହି ।
ଏକାଦଶୀରେ ଖାଇଲେ ପରିତ୍ରାଣ ନାହିଁ ॥
ଏକାଦଶୀରେ ଯେ ଅନ୍ନ କରଇ ଆହାର ।
ବ୍ରହ୍ମହତ୍ୟା ସରି ଏକ ଏକ ଅନ୍ନ ତାର ॥

ଏଣୁ ମୁହିଁ ବାରମ୍ବାର କହୁଅଛି ହେ ନରେ ।
ଅନ୍ନ କେବେହେଁ ନ ଖାଇବ ଶ୍ରୀହରି ବାସରେ ॥
ନ ଖାଇବ ନ ଖାଇବ ନ ଖାଇବ କେବେହେଁ ।
ଯେତେ ଦିନ ବଞ୍ଚି ରହିଥିବ ଏହି ଭବେ ॥
ଗ୍ରହଣକାଳରେ ଗଙ୍ଗା ଆଦି ତୀର୍ଥ ସ୍ନାନେ ।
ଯେ ସବୁ ଫଳ ମିଳଇ ଏକାଦଶୀ ଦିନେ ॥
କମଳମାଳେ କମଳାପତି ଯେ ପୂଜଇ ।
ବିଧି ଅନୁସାରେ ବ୍ରତ ପାଳନା କରଇ ॥
ମାତା ଗର୍ଭେ ବାସ ତାର ନାହିଁ ନାହିଁ ଦ୍ୱିଜ ।
ଏକାଦଶୀରେ ପୂଜଇ ଯେ ଦେବାଧିରାଜ ॥
ହରିମନ୍ଦିର ମାର୍ଜନ କରଇ ଆଦର ।
ପରମ ଗତି ପାଇ ସେ ଯାଇ ବିଷ୍ଣୁପୁର ॥
ଏକାଦଶୀରେ ଯେ ଜନ ରହେ ନିରାହାରେ ।
ସଦା ସର୍ବଦା ଥାଇ ସେ ବଇକୁଣ୍ଠ ପୁରେ ॥
ପରର ଦ୍ରବ୍ୟ ଦେଖି ଯେ ଲୋଭ ନ କରଇ
ସଦାସର୍ବଦା ସନ୍ତୋଷେ ଯାର ମନ ଥାଇ ॥
ଅନ୍ତେ ବଇକୁଣ୍ଠପୁରେ ବସଇ ସେ ଜନ ।
ଦୁର୍ଭିକ୍ଷକାଳେ ପ୍ରାଣୀଙ୍କି ଦିଅଇ ଯେ ଅନ୍ନ ॥
ସେ ଜନ ବସଇ ଅନ୍ତେ ବଇକୁଣ୍ଠ ପୁରେ ।
ଗୋ ବ୍ରାହ୍ମଣ ନିମନ୍ତେ ସେ ପ୍ରାଣଦାନ କରେ
ସ୍ୱାମି ନିମନ୍ତେ ଆଉର ନାରୀଙ୍କ ନିମନ୍ତେ ।
ଯେ ପ୍ରାଣ ଦିଏ ସେ ପାଏ ବଇକୁଣ୍ଠ ଅନ୍ତେ ॥
ଦଶମୀ ବିଦ୍ଧା ପଡ଼ିଲେ ଏକାଦଶୀ ଦିନ ।
ଉପବାସ ନ କରିବ କଦାପି ସେ ଦିନ ॥
ଅରୁଣୋଦୟ ବେଳାକୁ ଦଶମୀ ପାଇଲେ ।
ଦ୍ୱାଦଶୀରେ ଉପବାସ କରିବ ଯେ ଭଲେ ॥
ତ୍ରୟୋଦଶୀ ତିଥିରେ ଯେ କରିବ ପାରଣ ।
ଅରୁଣ ଉଦୟକାଳେ ଯେବେ ତପୋଧନ ॥
ଦଶମୀର ଶେଷ ଭାଗ ଯୋଗ ହୁଏ ତେବେ
ବଇଷ୍ଣବେ ସେହି ଏକାଦଶୀ ନ ପାଳିବେ ॥
ପ୍ରାତଃକାଳ ଚାରିଦଣ୍ଡ ଅରୁଣ ଉଦୟ ।
ଯତିମାନଙ୍କର ଏହି ସ୍ନାନର ସମୟ ॥
ସବୁ ଜଳ ସେ ସମୟେ ଗଙ୍ଗାଜଳ ତୁଲ୍ୟ ।
ଦଶମୀ ତିଥି ଦୂଷିତ ହୋଇଲେ ସେ କାଳ ॥
ସେ ଏକାଦଶୀ ପାଳନ ନ କରିବ କେବେହେଁ ।
ଧର୍ମ ଅର୍ଥ କାମ ନାଶ ଯାଇ ତାର ଜବେ ॥

ଶନିଏ ପୂର୍ବ ପଡ଼ିଲେ ଘୃତ ସୁର୍ଣ୍ଣ ଲମ୍ଭେ ।
ତଡ଼ିଲ ପୋଖାରୁ ଦିଅନ୍ତି ତେମନେ ତା ସର୍ବେ
ଅଳପ ବିଦ୍ଧା ଯେବେ ନ ଦଶମୀ ପଡ଼ିଲ ।
ସେ ଏକାଦଶୀ ତିଥିରେ ବ୍ରତ ନ ଯୋଗାଇ ॥
ଦୁଇ ଦିନକୁ ଯେବେ କି ଏକାଦଶୀ ପାଇ ।
ଗୃହୀ ପୂର୍ବଦିନ ଏକାଦଶୀକି ପାଳନ୍ତି ॥
ପରଦିନ ଏକାଦଶୀ ପାଳିବେକ ଯତି ।
କଳା ମାତ୍ର ଥାଇ ଯେବେ ଏକାଦଶୀ ତିଥି ॥
ପରଦିନକୁ ଯେବେକ ଦ୍ୱାଦଶୀ ନ ଥାଇ ।
ସେ ଏକାଦଶୀରେ ଶତକ୍ରତୁଫଳ ପାଇ ॥
ତ୍ରୟୋଦଶୀ ତିଥିରେ ଯେ ପାରଣ କରିବ ।
ଶେଷଭାଗରେ ଦ୍ୱାଦଶୀ ଯେବେ ଯୋଗ ହେବ
ଏକାଦଶୀ ତିଥିଗୋଟା ଯେବେ କ୍ଷୟ ପାଇ ।
ତ୍ର୍ୟହସ୍ପର୍ଶ ଏକାଦଶୀ ସେ ତିଥି ବୋଲଇ ॥
ପରମ ଗତି ପାଇବା ଇଚ୍ଛା ଥାଇ ଯାର ।
ଦ୍ୱାଦଶୀରେ ଏକାଦଶୀ ପାଳିବ ସେ ନର ॥
ପୂର୍ବ ଏକାଦଶୀ ତିଥି ପାଇ ପୂର୍ବଦିନ ।
ପରଦିନ ପ୍ରଭାତକୁ ପାଇ ସେହି ପୁଣ ॥
ପରଦିନ ଏକାଦଶୀ ପାଳନା କରିବ ।
ଶାସ୍ତ୍ରରେ ଉକତ ଅଛି ଜାଣିବ ଏହା ଧ୍ରୁବ ॥
ଏକାଦଶୀ ବ୍ରତେ ଯାର ମନ ପାଇ ଲୀନ ।
ଅନ୍ତେ ସ୍ୱର୍ଗପୁରେ ଯାଇଁ ବସଇ ସେ ଜନ ॥
ତହୁଁ ଯାଇଁ ବଇକୁଣ୍ଠ ପୁରେ ସେ ବସଇ ।
ସବୁଠାରୁ ଏକାଦଶୀ ବଡ଼ ଯେ ଅଟଇ ॥
ବଇକୁଣ୍ଠ ପଦ ଏକା ସେହି ଦେଇ ପାରେ ।
ମହାପାପୀ ଏକାଦଶୀ ବ୍ରତ ଯେବେ କରେ ॥
ସବୁ ପାପ ଛଡ଼ାଇ ସେ ବିଷ୍ଣୁପୁରେ ଯାଇ ।
ପତିକି ଘେନି ଯେ ନାରୀ ଏ ବ୍ରତ କରଇ ॥
ସ୍ୱାମି ସଉଭାଗୀ ପୁତ୍ରବର୍ତୀ ହୋଇ ଅନ୍ତେ ।
ବଇକୁଣ୍ଠ ପୁରେ ଯାଏ ସ୍ୱାମିର ସହିତେ ॥
ହରି ଆଗେ ଦ୍ୱିଜବର ଏକାଦଶୀ ଦିନ ।
ଭକତରେ ବସି ଦୀପ ଜାଳଇ ଯେ ଜନ ॥
ପତି ଘେନି ଉଜାଗରେ ରହି ଯେଉଁ ନାରୀ ।
ଏକାଦଶୀ ବ୍ରତ କରେ ଅନ୍ତେ ସେ ସୁନ୍ଦରୀ ॥
ପତି ଘେନି ବଇକୁଣ୍ଠ ପୁରେ ସେ ବସଇ ।
ଆଉ ମର୍ତ୍ତ୍ୟ ଭୁବନକୁ ଫେରି ନ ଆସଇ ॥

ଆହେ ଦ୍ୱିଜ ଭକତରେ ଯେବେ କେହି ଜନ
ଏକାଦଶୀରେ ହରିଙ୍କି ଦିଏ କିଛି ଦାନ ॥
ଜାଣିବି ତାହାର ପୁଣ୍ୟ ଅକ୍ଷୟ ନିରତେ ।
କହୁଛି ପୁରାଣ କଥା ତୁମ୍ଭର ଅଗ୍ରତେ ॥
ବଲ୍ଲଭ ଧନୀର ଘର କାଥିକ ନଗରେ ।
କୁବେର ସମାନ ସେହି ଅଟଇ ଧନରେ ॥
ତା ଭାରିଯା ହେମପ୍ରଭା ବଡ ସେ ସୁନ୍ଦରୀ ।
ତା ସମାନ କଳହୁଡ଼ୀ ନାହିଁ ତ୍ରିଜଗପୁରୀ ॥
ପତି ସଙ୍ଗେ ନିତି କଳି କରେ ତପୋଧନ ।
କଳି ନ କଲେ ତାହାକୁ ନ ରୁଚଇ ଅନ୍ନ ॥
ଗୁରୁ ଗଉରବ କିଛି ନ ମାନଇ ସେହି ।
ଯାହା ତା ମୁଖରେ ପଶେ ଝଙ୍କା ଗାଳିଦେଇ ॥
ଭ୍ରଷ୍ଟାଚାର ବିନା ତାକୁ କିଛି ନ ଆସଇ ।
ଭଲ କହିଲେ ସେ ତାକୁ ମନ୍ଦ ବୁଝୁଥାଇ ॥
ସେହି ହାଣ୍ଡି ଖାଇ ପୁଣି ଅଟେ ଦୋଷରୁଣୀ ।
ହାଣ୍ଡିରୁ ସେ ହାଣ୍ଡିଶାଳେ ଲୁଚି ଖାଏ ପୁଣି ॥
ସେ ଉଚ୍ଛିଷ୍ଟ ପରଶଇ ଗୁରୁ ଗୁରୁ ଜନେ ।
ଜାର ପୁରୁଷ ସଙ୍ଗତେ ଥାଇ ରାତ୍ର ଦିନେ ॥
ମୁହିଁ ସତୀ ସାଧ୍ୱୀ ବୋଲି ମୁଖେ ବୋଲୁଥାଇ ।
ସ୍ୱାମିର ମନ ଚିନ୍ତିଳ କରେ ଗାଳିଦେଇ ॥
ଏକ ଦିନକର କଥା ଶୁଣ ଦ୍ୱିଜବର ।
ଜାର ପୁରୁଷକୁ ଘେନି ଆସୁଥିଲା ଘର ॥
ସ୍ୱାମୀ ତାର ଦେଖି ତାକୁ ଗାଳି ମନ୍ଦ କଲା ।
ବାଡ଼ିରେ ପିଟି ତାହାର ପିଠି ଫଟାଇଲା ॥
ତହୁଁ ସେହି କଳହୁଡ଼ୀ ରୋଷେ ଗଲା ଚଳି ।
ଲୁଚି ରହିଲା ଗୁପତେ କାହାକୁ ନ ବୋଲି ॥
ଶୂନ୍ୟ ସ୍ଥାନେ ରହି ଅନ୍ନ ଜଳ ନ ଛୁଇଲା ।
ସେ ଦିନ ଯୋଗକୁ ଏକାଦଶୀ ହୋଇଥିଲା ॥
କଡ଼ ଲେଉଟାନ୍ତି ବିଷ୍ଣୁ ଜାଣ ସେହି ଦିନ ।
ସେ ଏକାଦଶୀ ସକଳ ପାପ ବିମୋଚନ ॥
ଶ୍ରବଣା ଯୋଗ ପାଇଛି ଦ୍ୱାଦଶୀ ତିଥିକି ।
ଆହେ ଦ୍ୱିଜବର ସେହି କଳହା କାମୁକୀ ॥
ରୋଷେ ଉପବାସେ ଜାଗରେ ଯେ ରହିଲା ।
ଏଣୁ ଏକାଦଶୀ ତାର ପାଳିବାର ହେଲା ॥
ସକାଳୁ ଉଠି ସେ ରୋଷେ ଅଇଲା ଘରକୁ ।
ବଡ ଫଳେ ପାପ ଛାଡ଼ିଗଲା ତା ଦେହକୁ ॥
ଦିନକେବେ ଜୟନ୍ତୀ ଘରେ ପ୍ରାଣ ଗଲା ତାର ।
ଯମ ରାଜାର ଆଜ୍ଞାରେ ପାଶ ମୁଦ୍ଗର ॥
କରେ ଧରି ଯମଦୂତେ ଅଇଲେକ ଧାଇଁ ।
ବାନ୍ଧି ନଅନ୍ତେ ଭେଟିଲେ ବିଷ୍ଣୁଦୂତେ ଯାଇଁ ॥
ଚକ୍ର ଗଦା ବାଡ଼ି ପିଟି ଛଡ଼ାଇଣ ନେଲେ ।
ଦିବ୍ୟରଥରେ ବସାଇ ବଇକୁଣ୍ଠେ ଗଲେ ॥
ଅଜର ଅମର ଜନ ସଙ୍ଗରେ ରଖିଲେ ।
ଏକାଦଶୀର ମହିମା ଶୁଣିଲତ ଭଲେ ॥
ଅଜ୍ଞାନରେ ହରି ଦିନେ ଉପବାସ କରି ।
ସେ ଘୋର ପାପିଷ୍ଠୀ ନାରୀ ଭବୁ ଗଲା ତରି ॥
ଏକାଦଶୀରେ ଯେ ଜନ ଶ୍ରୀହରି ମନ୍ଦିରେ ।
ଘୃତ ଦୀପ ଦେବା ପାଇଁ ଗମଇ ସାଦରେ ॥
ପାଦକେ ସେ ଅଶ୍ୱମେଧ ଯଜ୍ଞ ଫଳ ପାଇ ।
ଏକାଦଶୀରେ ଯେ ଜନ ପୁରାଣ ଶୁଣଇ ॥
ପୁରାଣ ପଢ଼ଇ କିବା ପଢ଼ାଇ ଶୁଣାଇ ।
ପ୍ରତି ଅକ୍ଷରେ କପିଳା ଦାନ ଫଳ ପାଇ ॥
ହରି ହରି ବୋଲି ଜନେ ଏକାଦଶୀ କର ।
ଦୀନ ଗୋପୀନାଥ ବୋଲେ ଭବସିନ୍ଧୁ ତର ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ହରିବାସର ମାହାତ୍ମ୍ୟଂ ନାମ ଚତୁଃଶ୍ଚତ୍ୱାରିଂଶୋଽଧ୍ୟାୟଃ ।

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ ।

ବିଷ୍ଣୁପାଦୋଦକ ମାହାତ୍ମ୍ୟ ।

ଶୌନକ ପଚାରିଲେ ଆହେ ମୁନି ସୂତ ।
କି କର୍ମ କଲେ ଶ୍ରୀହରି ହୁଅନ୍ତି ସୁପ୍ରୀତ ॥
ପାପ ସବୁ କ୍ଷୟ ଯାଏ କହ କୃପା କରି ।
ଶୁଣିବା ଲୋକଙ୍କୁ ପାପ ନ ପାରଇ ଘାରି ॥
ଏମନ୍ତ ଶୁଣି ବୋଇଲେ ସୂତ ମୁନିବର ।
ଯାହା ପଚାରିଲ ଶୁଣ ଚିତ୍ତ କରି ସ୍ଥିର ॥
ଅତି ଭକତରେ ଯେବେ ଦ୍ୱିଜ ମୂର୍ତ୍ତିମାରେ ।
ନାନା ବିଧି ବିଧାନରେ ହରି ପୂଜାକରେ ॥

ତାର କୋଟି ଜନମର ପାପ ନାଶ ଯାଇ ।
ତା ଠାରେ ସଦା ପ୍ରସନ୍ନ କମଳାର ସାଇଁ ॥
ଅତି ଭକତିରେ ପୁଣି ଦ୍ୱାଦଶୀ ତିଥିରେ ।
ଦ୍ୱିଜାତିଙ୍କି ଡାକି ଆଣି ଅନ୍ନ ଦାନ କରେ ॥
ସୂର୍ଯ୍ୟ ଉଦେ ହେଲେ ଯେସନେ ଅନ୍ଧକାର ଯାଇ
ତେସନ ତା ଦେହୁ ପାପ ଯାକ ନାଶ ପାଇ ॥
ଆହେ ଦ୍ୱିଜ ଦ୍ୱାଦଶୀରେ ଭକ୍ତିରେ ଯେ ଜନ
କ୍ଷୀରେ କନ୍ଦର୍ପରେ କରେ ଶ୍ରୀହରିଙ୍କି ସ୍ନାନ ॥
ତା ଠାରେ ଶ୍ରୀହରିଙ୍କର କୃପା ସବୁବେଳେ ।
ଫୁଲ ଯେ ଚଢ଼ାଏ ବିନାମନ୍ତ୍ରେ ହରି ଶିରେ ॥
ସେ ଫୁଲ ଦେବା ଲୋକର ଜାଣ ଅଧୋଗତି ।
ମୂର୍ଖ ବିପ୍ରହସ୍ତେ ଆହେ ଶଉନକ ଯତି ॥
ପର୍ବତ ପ୍ରମାଣ ଦାନ ଦେଲେ ସେ ବିଫଳ ।
ତହିଁରେ ଯେ ପୁଣ୍ୟ ନାହିଁ ଜାଣ ଏକତିଳ ॥
ମୂଢ଼ ମୂର୍ଖ ବିପ୍ର ଯେବେ ଲୋଭ ମୋହେ ପଡ଼ି ।
ଦାନ ଘେନଇ ତାହାକୁ ଦାନ ବସେ ମାଡ଼ି ॥
କାଳାନଳ ବିଷ ଯେସନେ ଅଜୀର୍ଣ୍ଣ ହୁଅଇ ।
ତେସନ ସେ ଦାନ ତାର ଜୀବନ ହରଇ ॥
ତା ଯୋଗୁଁ ସେଅନ୍ତେ ଘୋରନର୍କକୁଣ୍ଡେ ପଡ଼େ
ସେ ଘୋର ପାପ ତାହାକୁ କେବେହେଁ ନଛାଡ଼େ
ମୂର୍ଖଦ୍ୱିଜ କାଠହାତୀ ଚର୍ମମୃଗ ପ୍ରାୟ ।
ନାମଧାରୀ ବିପ୍ର ମାତ୍ର ଜାଣ ମହାଶୟ ॥
ବାଟବାଲି ଶୁଦ୍ଧ ଯେସନେ କରନ୍ତେ ପବନେ ।
ତେସନ ସେ ଶୁଦ୍ଧ ହରି ଭକତ ଦର୍ଶନେ ॥
ତହିଁରେ ତାର କଲ୍ମଷ ଦେହେ ନ ରହଇ ।
ଆଶ୍ୱିନ ମାସ ପୂର୍ଣ୍ଣିମା ଦିନେ ଯେବେ କେହି ॥
ହରିଙ୍କି ଖେଳ କଉଡ଼ି ଦିଏ ଭକତିରେ ।
ଜନମ ନ ହୁଅଇ ସେ ପୁଣି ଆଉ ଥରେ ॥
ଯେ ଜନ ଓମାହରେ ପତ୍ର ଦାନ ନ କରଇ ।
ଶ୍ରୀହରି ଅପ୍ରିୟ ହୋଇ ଏ ସଂସାରେ ଥାଇ ॥
ଯେ ଯେତେ କଉଡ଼ି ଦାନ କରଇ ଏ ଦିନ ।
ତେତେକ ଦିନ ପାଇ ସେ ବଇକୁଣ୍ଠ ସ୍ଥାନ ॥
ଆହେ ଦ୍ୱିଜବର ପୂର୍ବେ କରଦ୍ୱାର ପୁରେ ।
କାଳଦ୍ୱିଜ ନାମେ ଏକ ଶୂଦ୍ର ବାସ କରେ ॥
ସେ ଅତି ନିର୍ଦ୍ଦୟ ପୁଣି ଅତି ଭୟଙ୍କର ।
ତାହାର ଯେ ପାପ କେତେମତେ ଅଗୋଚର ॥
ଆପଣାର କର୍ମ କରୁଥାଇ ସେ ନିରତେ ।
ସ୍ୱାମିର କର୍ମ ବିନାଶ କରେ ନାନା ମତେ ॥
ଏକ ସମୟରେ ସେହି ମୃତ୍ୟୁ ପାଇଲା ।
ଯମ ଦୂତ ଆସି ତାକୁ ବାନ୍ଧି ଘେନି ଗଲା ॥
ପକାଇ ଦେଲା ସେ ନେଇ ଯମର ସମ୍ମୁଖରେ
ମନ୍ତ୍ରି ଚିତ୍ରଗୁପ୍ତଙ୍କୁ ଯମ ଯେ ପଚାରେ ॥
ଏହାର ପାପ ହୋ କେତେ କହ ପାଞ୍ଜି ଦେଇ
ଚିତ୍ରଗୁପ୍ତେ ବୋଇଲେ ଶୁଣିମା ଗୋସାଇଁ ॥
ଏହି ପାପୀ ଦୁରାଚାରୀ ସ୍ୱାମିକାର୍ଯ୍ୟ ହନ୍ତା ।
କ୍ଷଣେ ଲବେ ପୁଣ୍ୟ ମନେ କରୁନାହିଁ ଚିନ୍ତା ॥
ନରକ କୁଣ୍ଡରେ ପଡ଼ି ପଚୁଥାଉ ପୁଣି ।
ଶତମନ୍ୱନ୍ତର ଅନ୍ତେ ଆହେ ନୃପମଣି ॥
ନାଗ ଯୋନିରେ ଜନମ ପାଉ ଏ ନିରତେ ।
ପାଷାଣ ଗୁହା ଭିତରେ ଥାଉ ଏ ଗୁପତେ ॥
ସୂତ ମୁନି କହିଲେ ହୋ ଦ୍ୱିଜବର ଶୁଣ ।
ନର୍କ କୁଣ୍ଡେ ପଡ଼ି ପଡ଼ି ପଚିଲା ସେ ପୁଣ ॥
ପର୍ବତ ଖୋଲେ ରହିଲା ନାଗଜନ୍ମ ପାଇ ।
ଅତି କଷ୍ଟରେ ତା ଜୀବନ ଗୋଟା ରହିଥାଇ ॥
ଦିନେ ଆଶ୍ୱିନ ପୂର୍ଣ୍ଣିମା ଦିନ ସେହି ନାଗ ।
କ୍ରୀଡ଼ା କଉଡ଼ିକେ ନାଗ କନ୍ୟା ଏକ ବେଗ ॥
ଖେଳ କଉଡ଼ୀରେ ସେହି ଗାତ ଦେଇ ପୋତି
ଆପଣା ଘରକୁ ଗଲା ସେଠାରୁ ତ୍ୱରିତ ॥
ଗାତମଧ୍ୟରୁ ସେ ନାଗ ଆସନ୍ତେ ବାହାରି ।
ବାଟ ନ ପାଇ ଲମ୍ଫିରେ ଦିଅନ୍ତେ ଛୁଆଁରି ॥
ବିଷ୍ଣୁ ପ୍ରତିମାଏ ଥିଲେ ତାହା ନିକଟରେ ।
ଖେଳ କଉଡ଼ୀ ପଡ଼ିଲା ତାଙ୍କ ଅନ୍ତରରେ ॥
ଦୟାଳୁ ଦୁଃଖ ନାଶନ ଦେବ ଦଇତାରି ।
ତାର ସେହି ପାପ ଯାକ ସବୁ ନେଲେ ହରି ॥
ସମୟେ ସେ ନାଗ ପୁଣି ପାଇଲା ମରଣ ।
ନେବାପାଇଁ ଅଇଲେ ଯେ ତାକୁ ନାଗଗଣ ॥
ବାନ୍ଧିବା ବେଳେ ମିଳିଲେ ଆସି ବିଷ୍ଣୁ ଦୂତେ
ଦିବ୍ୟରଥ ଘେନି ଶଙ୍ଖ ଚକ୍ର ଗଦା ହସ୍ତେ ॥
ପାଶ କାଟି ଘେନିଗଲେ ରଥରେ ବସାଇ ।
ଭୟେ ତହୁଁ ଯମଦୂତେ ଛାଡ଼ିଲେ ଯେ ପଳାଇ ॥
ବିଷ୍ଣୁ ଦୂତ ରଥ ଘେନି ବଇକୁଣ୍ଠେ ଗଲେ ।
ଆନନ୍ଦ ମନ୍ଦିରେ ନେଇ ତାହାକୁ ରଖିଲେ ॥

ଆହେ ଦ୍ୱିଜ ଭକତରେ ଯେତେକ ଜନ,
ହରିଙ୍କି ସ୍ମୃତ କଉଡ଼ୀ ଖଇ କରେ ଦାନ ॥
ତାର ପୁଣ୍ୟ କେତେ କଲ ନ ପାରିବ କେହି ।
ଏ ପାପ ନାଶନ ଅଧ୍ୟା ଯେ ଜନ ଶୁଣଇ ॥
ଶ୍ରୀହରି କୃପାରେ ତାର ପାପଯାଏ ଛିଡ଼ ।
ଶଉନକ ବୋଇଲେ ହେ କୃପାର୍ଣ୍ଣବ ବୀର ॥
ବିଷ୍ଣୁ ପାଦୋଦକ ପାପ ନାଶନ ମହିମା ।
ଆମୂଳ କରି କହିଲୁ ସୂତ ମହାତମା ॥
ସୂତ କହିଲେ ସକଳ ପାତକ ନାଶନ ।
ଅତି ପବିତ୍ର ଶ୍ରୀବିଷ୍ଣୁ ପାଦୋଦକ ଜାଣ ॥
ଯେ ଜନ ତହିଁର କଣାମାତ୍ର ବହେ ଶିରେ ।
ସ୍ନାନକଲା ଫଳପାଏ ସର୍ବୁତୀର୍ଥ ନୀରେ ॥
ବିଷ୍ଣୁ ପାଦୋଦକ ଯେଉଁ ପାପୀ କରେ ପାନ ।
ତାର ପାପ କ୍ଷୟଯାଏ ଆହେ ତପୋଧନ ॥
ପାପ ନାଶନ ଶ୍ରୀବିଷ୍ଣୁ ପାଦୋଦକ ଛୁଇଁ ।
ଗଙ୍ଗାଜଳେ ସ୍ନାନକଲା ଫଳ ତହିଁ ପାଇ ॥
ଅକାଳ ମରଣ ଛଡ଼େ ଜାଣ ଦ୍ୱିଜବର ।
ତୁଳସୀ ପତ୍ର ମିଶ୍ରିତ ବିଷ୍ଣୁ ପାଦନୀର ॥
ଅତି ଭକତରେ ଶିରେ କରନ୍ତି ଧାରଣ ।
ଅନ୍ତେ ବଇକୁଣ୍ଠ ପୁରେ କରନ୍ତି ଗମନ ॥
ମେରୁତୁଲ୍ୟ ସୁନାଦାନ କଲାଫଳ ପାଇ ।
ହରି ପାଦଉଦକ ଯେ ସ୍ମରଣ କରଇ ॥
ସପ୍ତକୋଟି ଧେନୁଦାନ କଲେ ଯେଉଁ ଫଳ ।
ତା ମିଳେ ସ୍ମରଣ କଲେ ବିଷ୍ଣୁ ପାଦ ଜଳ ॥
ସତ୍ୟ ସତ୍ୟ ତିନିଥର ସଂଶୟ ନ କର ।
ସହସ୍ର କୋଟି ଯଜ୍ଞର ଫଳ ପାଇ ନର ॥
ତହୁଁ ଯେ କୋଟି ଗୁଣରେ ଅଟଇ ଅଧିକ ।
ଫଳମିଳେ ସ୍ପର୍ଶକଲେ ହରି ପାଦୋଦକ ॥
କୋଟିଏ କନ୍ୟା ଦାନରେ ଯେ ଫଳ ମିଳଇ ।
ଆହେ ଦ୍ୱିଜବର ବିଷ୍ଣୁ ପାଦୋଦକ ଛୁଇଁ ॥
ତହୁଁ କୋଟିଗୁଣେ ଫଳ ମିଳଇ ଅଧିକ ।
ଯେ ଫଳ ଦିଏ ସ୍ମରଣେ ବିଷ୍ଣୁ ପାଦୋଦକ ॥
ସେ ଫଳ ନ ମିଳେ କୋଟି ହସ୍ତିଦାନ କଲେ
ନମିଳଇ ପୁଣି କୋଟି ରତ୍ନଦାନ ଦେଲେ ॥
ଶସ୍ୟ ସହିତ ସପତ ଦ୍ୱୀପ ମହୀଦାନେ ।
ଆହେ ଦ୍ୱିଜବର ଯେଉଁ ଫଳପାନ୍ତି ଜନେ ॥

ବିଷ୍ଣୁ ପାଦୋଦକ ସ୍ପର୍ଶ ଫଳ ତହୁଁ ବେଶି ।
ସଂକ୍ଷେପି କହିଲି ବିପ୍ର ଶୁଣିଲ ତ ବସି ॥
ଆଉକି କହିବି ବିଷ୍ଣୁ ପାଦୋଦକ ଛୁଇଁ ।
ମହାପାପୀ ବଇକୁଣ୍ଠ ଭୁବନେ ବସଇ ॥
ପୁନରପି ଶଉନକ ବୋଇଲେ ହେ ସୂତ ।
ପୂର୍ବେ କିଏ ଛୁଇଁ ପିଇ ହୋଇଣ ପବିତ୍ର ॥
ହରିଗୃହେ ଯାଇଅଛି କୁହ କୃପାକର ।
ସୂତମୁନି କହିଲେ ହେ ଶୁଣ ତପଗୃର ॥
ତ୍ରେତା ଯୁଗେ ସୁଦର୍ଶନ ନାମେ ବିପ୍ରଥିଲା ।
ସବୁ ଏକାଦଶୀରେ ସେ ଅନ୍ନ ଭୁଞ୍ଜିଥିଲା ॥
ଶାସ୍ତ୍ର ନିନ୍ଦା କରୁଥାଇ ସେ ବିପ୍ର ନିରତେ ।
ଆବର ନିନ୍ଦା କରଇ ଅଛି ବ୍ରତ ଯେତେ ॥
ଆପଣାର ପେଟ ବିନା କିଛି ନ ଜାଣଇ ।
ଆୟୁଷ ତାର ପୂରନ୍ତେ ମଲା ପୁଣି ସେହି ॥
ଯମଦୂତେ ବାନ୍ଧି ନେଇ ଯମପାଶେ ଦେଲେ ।
ଯମୁନା ଭ୍ରାତା ତାହାକୁ ଦେଖି କୋପକଲେ ॥
ମନ୍ତ୍ରିକି ଗର୍ଜ୍ଜି ବୋଇଲେ କହ ଏ ମୂଢ଼ାର ।
ଚିତ୍ରଗୁପତ ବୋଇଲେ ଯମର ଛାମୁର ॥
ପାପ ବିନା ପୁଣ୍ୟ କିଛି କରି ନାହିଁ ଏହି ।
ସବୁ ଏକାଦଶୀ ଦିନ ଏ ଅନ୍ନ ଭୁଞ୍ଜଇ ॥
ଏ ଦିନର ଅନ୍ନ ଜାଣ ବିଷ୍ଠାର ସମାନ ।
ଯେ ଅନ୍ନଖାଏ ସେ ବିଷ୍ଠା ଖାଇ ହେ ରାଜନ ॥
ଦାରୁଣ ନର୍କ କୁଣ୍ଡରେ ଦିଅନ୍ତୁ ପକାଇ ।
ଶତ ମନୁଯାଏ ପଡ଼ିଥାଉ ଦୁଃଖ ପାଇ ॥
ତଦନ୍ତେ ଘୁଷୁରି ଜନ୍ମ ପାଉ ଏ ଚଣ୍ଡାଳ ।
ଯମଦୂତେ ଧାଇଁଗଲେ ହୋଇ କୁତୂହଳ ॥
ବିଷ୍ଠାକୁଣ୍ଡେ ପକାଇଲେ ଶତ ମନ୍ୱନ୍ତର ।
ଘୁଷୁରି ହୋଇ ସେ ବିଷ୍ଠା କଲାକ ଆହାର ॥
ଏକାଦଶୀ ଦିନେ ଅନ୍ନ ଖାଇବାର ପାପେ ।
ଜନ୍ମ ଜନ୍ମାନ୍ତରେ ବିଷ୍ଠାଖାଏ ଏହିରୂପେ ॥
ହେ ଦ୍ୱିଜ ତହୁଁ ତାହାର କାଳ ଯେ ପୂରିଲା ।
ପୁଣି କାକ ଜନ୍ମ ପାଇ ବିଷ୍ଠା ସେ ଖାଇଲା ॥
ହେ ବିପ୍ର ସେ ଏକଦିନେ ଶ୍ରୀହରି ଦୁଆରେ ।
ପାଦୁକ କୁଣ୍ଡକୁ ଦେଖି ଧାଇଁ ଯାଇଁ ଖରେ ।
ଅନ୍ନ ମନେ କରି ପାଦୋଦକ ଖୁମ୍ପି ଖାଇ ।
ତାର ଯେତେ ପାପଥିଲା ସବୁ ଛିଡ଼ ଯାଇ ॥

ତହୁଁ ସେ ଯାଇଁ ଶବର ବୃକ୍ଷରେ ଚଢ଼ିଲା ।
କାଣ୍ଡବନ୍ଧନ ଶବର ତାର ପ୍ରାଣ ନେଲା ॥
ଦିବ୍ୟ ରଥେ କାକ ଗଲା ବଇକୁଣ୍ଠ ପୁରେ ।
ଏ ପାଦୋଦକ ମହିମା ଯେ ଶୁଣେ କର୍ଣ୍ଣରେ ॥
ସକଳ ପାପ ବିନାଶ ହୁଅଇ ତାହାର ।
ଗୋପୀନାଥ ବୋଲେ ପାଦୋଦକ ସେବାକର ।

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗ ଖଣ୍ଡେ ବିଷ୍ଣୁ
ଚରଣୋଦକ ମାହାତ୍ମ୍ୟଂ ନାମ
ପଥି ଚତ୍ୱାରିଂଶୋଽଧ୍ୟାୟଃ ।



## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ ।

ଅଗମ୍ୟାଗମନାଦି ବିବିଧ ପ୍ରାୟଶ୍ଚିତ୍ତ ।

ଶଉନକ ପଚାରିଲେ କହ ମୁନି ସୂତ ।
କହ ଅଗମ୍ୟାଗମନ ଆଦି ପ୍ରାୟଶ୍ଚିତ୍ତ ॥
ସୂତ ବୋଇଲେ ଯେ ଦ୍ୱିଜ ଚଣ୍ଡାଳୀ ହରଇ ।
ପ୍ରାଜାପତ୍ୟ ବ୍ରତ କଲେ ସେ ପାପ ଛାଡ଼ଇ ॥
ତିନି ଉପବାସେ କଷ୍ଟେ ହୁଏ ସେହି ବ୍ରତ ।
କ୍ଷଉର ହୋଇବ କେଶ ଶିଖାର ସହିତ ॥
ଦୁଇଗୋଟି ଗୋରୁଦାନ କରିବ ଆବର ।
ସମ୍ପୂର୍ଣ୍ଣ ଦକ୍ଷିଣା ଦେବ ସଙ୍ଗତେ ତାହାର ॥
ତେବେ ଯାଇଁ ତା ଶରୀର ନିର୍ମଳ ହୋଇବ ।
କ୍ଷତ୍ରୀ କିବା ବୈଶ୍ୟ ଯେବେ ଚଣ୍ଡାଳୀ ହରିବ
ଦୁଇଗୋଟା ବୃଷ ସଙ୍ଗେ ଦୁଇଗୋଟା ଗାଈ ।
ଦାନ ଦେଲେ ତାଙ୍କ ଦେହୁ ପାପ ଛାଡ଼ି ଯାଇ ॥
କୃଚ୍ଛ୍ର ପ୍ରାଜାପତ୍ୟ ବ୍ରତ କରିବେ ଆବର ।
ଶୂଦ୍ର ଚଣ୍ଡାଳୀ ହରିଲେ ଜାଣ ଦ୍ୱିଜବର ॥
ପ୍ରାଜାପତ୍ୟ ବ୍ରତ କରି ଦେବ ଦୁଇ ଗାଈ ।
ମାତା ଭଗିନୀ ଦୁହିତା ବହୂ ଯେ ହରଇ ॥
ତିନିଗୋଟା କୃଚ୍ଛ୍ର ବ୍ରତ ତିନି ଚାନ୍ଦ୍ରାୟଣ ।
ତିନିଗୋଟା ବୃଷ ତିନିଗୋଟା ଗାଈ ଦାନ ॥
ଶିଖା ସହିତେ କ୍ଷଉର ପଞ୍ଚଗବ୍ୟ ପାନେ ।
ଅଗ୍ନିରେ ହୋମ କରିବେ ଯେ ବିଧି ବିଧାନେ ॥
ତେବେ ସେ ପବିତ୍ର ହେବ ଆଉ ତପୋଧନ
ସାବତ ମାତା ହରଣ କରଇ ଯେ ଜନ ॥
ମାଉଶୀ ପିଉଶୀ ପୁଣି ଗୁରୁପତ୍ନୀ ମାଈ ।
ଭାଇ ବହୂ ଭଣଜ ଯେ ସ୍ୱଗୋତ୍ରଜା ଆଈ ॥
ଅଜ୍ଞାନେ ହରିଲେ ଦୁଇ ପ୍ରାଜାପତ୍ୟ କରି ।
ତିନିଗୋଟା ଚାନ୍ଦ୍ରାୟଣ ବ୍ରତକୁ ଆଚରି ॥
ପାଞ୍ଚଗୋଟା ବୃଷ ସଙ୍ଗେ ପାଞ୍ଚଗୋଟା ଗାଈ ।
ଦାନ ଦେଲେ ଜାଣ ଦେହୁ ପାପ ଛାଡ଼ି ଯାଇ ॥
ଜ୍ଞାନ ହୋଇ ଯେ ଜନ କରଇ ଗୋ ହରଣ ।
ତିନିଗୋଟା ଉପବାସ କରି ସେହି ଜନ ॥
ଧେନୁ ଦାନ ଅନ୍ନଦାନ କରିବ ଆବର ।
ତେବେ ତା ଦେହୁ ସେ ପାପ ହୋଇବ ଅନ୍ତର
ଆଦ୍ୟ ଦ୍ୱିଜ ବେଶ୍ୟା ସଙ୍ଗେ ଯାଇ ଦିନ ଯାଇ
ଖରୀ ଶୂକରୀ ବାନରୀ ମହଷୀ ହରଇ ॥
ଗୋବର ପାଣି କାଦୁଅ କରି କଣ୍ଠଯାଏ ।
ଏକରାତି ବୁଡ଼ି ତହିଁ ରହିବ ନିର୍ଭୟେ ॥
ଉପବାସେ ତିନିରାତ୍ରେ ନିର୍ମଳ ହୋଇବ ।
ଆବର କ୍ଷଉର ହେବ ଶିଖା ନ ରଖିବ ॥
ପ୍ରାତଏ ଜଳରେ ବୁଡ଼ି ପାତକ ଛଡ଼ାଇ ।
କାମପୀଡ଼ା ପାଇ ଯେହୁ ବ୍ରାହ୍ମଣୀ ହରଇ ॥
କଲେ ତିନି ପ୍ରାଜାପତ୍ୟ ତିନି ଚାନ୍ଦ୍ରାୟଣ ।
ତାର ସଙ୍ଗେ କଲେ ତିନିଗୋଟା ଗୋରୁଦାନ ॥
ତାହାର ସେ ପାପ ଗୋଟା ଦେହୁ ଛାଡ଼ି ଯିବ ।
ପାଞ୍ଚରାତି ପଞ୍ଚଗବ୍ୟ ବ୍ରାହ୍ମଣୀ ପିଇବ ॥
ଦକ୍ଷିଣା ସହିତ ଦୁଇଗୋଟା ଗାଈ ଦେଇ ।
ତହିଁରେ ସେ ପାପ ଗୋଟା ତାର ଛାଡ଼ି ଯାଇ ॥
କାମେ ବାଇ ହୋଇ ପରସ୍ତ୍ରୀ ଯେ ହରିବ ।
କୃଚ୍ଛ୍ର ସାନ୍ତପନ ବ୍ରତଗୋଟା ସେ କରିବ ॥
ସ୍ତ୍ରୀ ଅଟେ ଯେଣୁ ଅର୍ଗଳା ଅବଳା ଆବର ।
ଏଣୁ ତାହାଙ୍କୁ ବର୍ଜନ କରିବ ଯେ ନର ॥
ଯେବେ କେହି ଜ୍ଞାତଜାତି ନାରୀ ହରେ ଥରେ
କୃଚ୍ଛ୍ର ପ୍ରାଜାପତ୍ୟ କରି ସେ ପାପରୁ ତରେ ॥
ତପତ ଅଙ୍ଗାର ତୁଲ୍ୟ ଅଟନ୍ତି ଯେ ନାରୀ ।
ଜାଣ ହେ ଦ୍ୱିଜ ପୁରୁଷ ଘୃତ କୁମ୍ଭ ସରି ॥
ଏଣୁ ପୁରୁଷ ସ୍ତ୍ରୀଙ୍କ ପାଶେ ନ ରହିବ ।
ଯେ କୁଳଟା ନାରୀ ଜାର ଗର୍ଭ ଜନ୍ମାଇବ ॥

ତାକୁ ତ୍ୟାଗ କଲେ ଦୋଷ ତହିଁ କିଛି ନାହିଁ ।
ବନ୍ଧୁ ବାନ୍ଧବଙ୍କୁ ଗୃହ ଯେଉଁ ସ୍ତ୍ରୀ ଯାଇ ॥
ଘର ଛାଡ଼ି ଯାଏ ସେମନ୍ତ ନଷ୍ଟା କୁଳଭ୍ରଷ୍ଟା ।
ପୁଣି ଆସି ସ୍ୱାମି ସଙ୍ଗ ଗୃହେଁ ଯେବେ ଦୁଷ୍ଟା ॥
ତା ସଙ୍ଗ ନ କରି ତାକୁ ଘରୁ ତଡ଼ିଦେବ ।
ପର ପୁରୁଷ ସଙ୍ଗମ ଯେ ନାରୀ କରିବ ॥
କୃଚ୍ଛ୍ର ପ୍ରାଜାପତ୍ୟ ବ୍ରତ ପଞ୍ଚଗବ୍ୟ ପାନେ ।
ତାର ସଙ୍ଗେ ପୁଣି ଦୁଇଗୋଟି ଗୋରୁଦାନେ
ସେ ପାପ ଗୋଟା ତାହାର ଦୂର ହୋଇଯିବ ।
ଏଥିରେ ସନ୍ଦେହ ନାହିଁ ଜାଣିବ ସ୍ତ୍ରୀ ଧ୍ରୁବ ॥
ବ୍ରାହ୍ମଣୀ ଯେବେ କି ପର ପୁରୁଷ ଗମଇ ।
ତାକୁ ତ୍ୟାଗ କଲେ ଦୋଷ ତହିଁରେ ଯେ ନାହିଁ
କାମବାଣେ ମତ୍ତହୋଇ ଯେବଣ ବ୍ରାହ୍ମଣ ।
ଜାଣି ଶୁଣି କରେ ପର ବ୍ରାହ୍ମଣୀ ହରଣ ॥
ସେ ପାପ ଯିବ ତାହାର ଗୋରୁ ଶତଦାନେ ।
ସୂତ କହନ୍ତି ହେ ଦ୍ୱିଜ ଯେବେ କେ ଅଜ୍ଞାନେ
ବିଷ୍ଠା କିବା ମୂତ୍ର ଖାଇ ସୁରାକୁ ଛୁଅଇଁ ।
ଯେଉଁରୂପେ ସେ ଶୁଦ୍ଧ ହେବ ତାହା କହୁଛଇଁ ॥
ଆହେ ମୁନି କରିବ ସେ ଦୁଇ ପ୍ରାଜାପତ୍ୟ ।
ଏଗାରଟି ବୃଷ ଦେବ କରି ତୀର୍ଥବ୍ରତ ॥
ଶିଖା ସହିତ ସେ ପୁଣି ହୋଇବ କ୍ଷଉର ।
ଆଉ ଥରେ ପ୍ରାଜାପତ୍ୟ କରିବ ଆଦର ॥
ଦୁଇଗୋଟା ଗୋରୁଦାନ ପୁଣି ସେ କରିବ ।
ପଞ୍ଚଗବ୍ୟକୁ ଶୋଧନ କରିଣ ଖାଇବ ॥
ଉତ୍ତମ ଭୋଜନ ଦେଇ ବିପ୍ରଙ୍କୁ ତୋଷିବ ।
ଏମନ୍ତ କଲେ ସେ ଜାଣ ପବିତ୍ର ହୋଇବ ॥
ବିପତ୍ତି ପଡ଼ିଲେ ବେଳେ ଯେବେ କେହି ଜନ ।
ଚଣ୍ଡାଳର ଅନ୍ନ ଖାଏ ଜଳ କରେ ପାନ ॥
କୃଚ୍ଛ୍ର, ଚାନ୍ଦ୍ରାୟଣ ବ୍ରତ ଜ୍ଞାନେ ବା ଅଜ୍ଞାନେ ।
ସଶିଖ କ୍ଷଉର ହୋଇ ପଞ୍ଚଗବ୍ୟ ପାନେ ॥
ବ୍ରାହ୍ମଣ ଯେ ଏକ ଗାଈ କ୍ଷତ୍ରିୟ ଯେ ଦୁଇ ।
ବୈଶ୍ୟ ତିନିଗୋଟି ଗାଈ ଶୂଦ୍ର ଚାରିଗାଈ ॥
ଦାନ କରି ଶରୀର ପବିତ୍ର କରିବେ ।
ଆହେ ଦ୍ୱିଜ ଯେ ବୃଷଳ ଅନ୍ନକୁ ଭୁଞ୍ଜିବେ ॥
ସୂତକର ଅନ୍ନ କିବା ଉଚ୍ଛିଷ୍ଟ ଯେ ଅନ୍ନ ।
ଜଳ ଅଥବା ଶୂଦ୍ରର ଉଚ୍ଛିଷ୍ଟ ଯେ ଜନ ॥
ବିପଦରେ ପଡ଼ି ଯେବେ ଖାଏ ଜାଣି ଶୁଣି ।
ପ୍ରାଜାପତ୍ୟ କିମ୍ବା ଚାନ୍ଦ୍ରାୟଣ କରି ପୁଣି ॥
ଦୁଇଗୋଟା ଗୋରୁ ଦେବ ପଞ୍ଚଗବ୍ୟ ପିଇ ।
ଅଗ୍ନିରେ ହୋମ କରିବ ବିପ୍ରଙ୍କୁ ଭୁଞ୍ଜାଇ ॥
ଏମନ୍ତ କଲେ ପବିତ୍ର ହୋଇବ ସେ ଜନ ।
ମୂର୍ଖ ନେଉଳ ବିରାଡ଼ ଖାଏ ଯେଉଁ ଅନ୍ନ ॥
କୁଶ ତିଳ ଜଳ ସିଞ୍ଚି ପବିତ୍ର କରିବ ।
ସେ ଅନ୍ନ ଭୁଞ୍ଜିଲେ କିଛି ଦୋଷ ନ ଲାଗିବ ॥
ଆହେ ଦ୍ୱିଜ ଯେଉଁ ନର ପିଆଜ ରସୁଣ ।
ସଜନା ଲାଉ ଗୃଞ୍ଜନ ମାଂସ ଖାଏ ପୁଣ ॥
ଚାନ୍ଦ୍ରାୟଣ ବ୍ରତ କରି ପବିତ୍ର ହୋଇବ ।
ମଦ ମାଂସାଶୀ ଶୂଦ୍ରକୁ ଦୂରରୁ ତେଜିବ ॥
ମଦ ମାଂସ ନ ଖାଏ ଯେ ଦ୍ୱିଜ ସେବା କରେ
ଦାନ ଦେଉଥାଏ ନିଜ ଧର୍ମ କର୍ମ କରେ ॥
ଉତ୍ତମ ବୃଷଳ ବୋଲି ତାହାକୁ ଯେ କହି ।
ଆହେ ଦ୍ୱିଜବର ଯେବେ ଅଜ୍ଞାନରେ କେହି ॥
ସୂତକ ମୃତକ ଅନ୍ନ ଭୋଜନ କରଇ ।
ବିପ୍ର ଯେ ଦଶସହସ୍ର ଗାୟତ୍ରୀ ଜପଇ ॥
ପଞ୍ଚ ସହସ୍ର ଗାୟତ୍ରୀ ଜପିବ କ୍ଷତ୍ରିୟ ।
ବୈଶ୍ୟ ସହସ୍ରେ ଜପିଲେ ପାପ ଯିବ କ୍ଷୟ ॥
ଶୂଦ୍ର ପଞ୍ଚଗବ୍ୟ ପାନେ ପବିତ୍ର ହୁଅଇ ।
ନୀଚ ଜାତି ଭାଣ୍ଡେ ଥିବା ଘୃତ ଜଳ ଦହି ॥
ଅଜ୍ଞାନେ ଖାଇଲେ ପ୍ରାଜାପତ୍ୟ ଯେ କରିବ ।
ଅଗ୍ନିରେ ହୋମ କରିବ ପୁଣି ଦାନ ଦେବ ॥
ଶୂଦ୍ରଙ୍କର ଉପବାସ କରି ନ ଯୋଗାଇ ।
କେବଳ ଦାନ ଦେଇ ସେ ପବିତ୍ର ହୁଅଇ ॥
ସଶିଖ କ୍ଷଉର ହେବେ ଆଉ ତିନି ଜାତି ।
ଉପାସ କରିବେ ଏକ ଦିନ ଏକରାତି ॥
ଦ୍ୱିଜ ନୀଚ ଜାତି ଦଣ୍ଡ୍ୟ ହୋଇଲେ ତାହିତ ।
ପ୍ରାଜ୍ୟପତ୍ୟ ବ୍ରତ କିବା ଚାନ୍ଦ୍ରାୟଣ ବ୍ରତ ॥
କରି ସାରି ଶିଖା ସହ କ୍ଷଉର ହୋଇବ ।
ପଞ୍ଚଗବ୍ୟ ପାନ କରି ଦ୍ୱିଜେ ଦାନ ଦେବ ॥
ଦୁଇ ଗୋଟା ଗୋରୁ ଦେବ ଦକ୍ଷିଣା ସହିତ ।
ଭୋଜନେ ବିପ୍ର ମାନଙ୍କୁ କରାଇ ତୃପତ ॥
ଅଗ୍ନିରେ ଆହୁତି ଦେଇ ପବିତ୍ର ହୋଇବ ।
ଜାଣି ଶୁଣି ସ୍ୱଇଚ୍ଛାରେ ମଦ ଯେ ଖାଇବ ॥

ଗୁଳକୁ ଘେନି ନର୍କରେ ପଡ଼ିବ ସେ ଯାଇଁ ।
ଆଉ ଏ ଦ୍ୱିଜବର ଯେଉଁ ଗୋବଧ କରଇ ॥
ବାଡ଼ି ମାରି ଦେଇ କିବା ବୁଡ଼ିଲ ଛେଦଇ ।
ସୁନା ରେଖା କରଇ ଯେ ଏ ପାପଙ୍କ ପାଇଁ ॥
ତିନି ଗୋଟି କୃଚ୍ଛ୍ର ପ୍ରାଜାପତ୍ୟ ଯେ କରିବ ।
ପଚିଶ ଷଣ୍ଡର ପଞ୍ଚଗବ୍ୟ ଯେ ପିଇବ ॥
ହୋମ କରିବ ସେ ତିନି ଗୋଟି ଧେନୁ ଦେବ
ତେବେ ତପୋଧନ ସେହି ପବିତ୍ର ହୋଇବ ॥
ତା ହସ୍ତର ଅନ୍ନ ପାଣି ଛୁଇଁବେ ସମସ୍ତେ ।
ପ୍ରାଜାପତ୍ୟ ବ୍ରତ ବିଧି ଶୁଣ ଏକ ଚିତ୍ତେ ॥
ପ୍ରଭାତରେ ତିନି ଦିନ କରିବ ଭୋଜନ ।
ଅଯାଚିତ ଭୋଜନ ଯେ ସଞ୍ଜେ ତିନି ଦିନ ॥
ତିନି ଦିନ ରହିବ ଯେ ନ କରି ଆହାର ।
ଏହା ନାମ ପ୍ରାଜାପତ୍ୟ ବ୍ରତ ଦ୍ୱିଜବର ॥
ଗୋମୂତ୍ର ଗୋମୟ କ୍ଷୀର ସଙ୍ଗେ ଦଧି ଘୃତ ।
ମିଶାଇବ କୁଶ ପାଣି ତାହାର ସହିତ ॥
ଦୁଇଦିନ ରହିବ ଯେ ଏହା ପାନ କରି ।
ତୃତୀୟ ଦିନ ଉପାସେ ଯିବ ତପସ୍ୱୀ ॥
କୃଚ୍ଛ୍ର ସାନ୍ତପନ ବ୍ରତ ଏହି ଯେ ବୋଲଇ ।
ସର୍ବ ପାପହର ନାମ ଏହାର ଅଟଇ ॥
ସକାଳେ ଯେ ତିନି ଦିନ ସଞ୍ଜେ ତିନି ଦିନ ।
ଅଯାଚିତ ଏକ ଏକ ଗ୍ରାସ କରି ମୁନି ॥
ତିନି ଦିନ ରହିବ ଯେ ନ କରି ଆହାର ।
ଅତିକୃଚ୍ଛ୍ର ବ୍ରତ ନାମ ଅଟଇ ଏହାର ॥
ଉଷ୍ଣଜଳ କ୍ଷୀରଘୃତ ପିଇ ତିନି ଦିନ ।
ବାରେ ସ୍ନାନ କରି ଯେବେ ରହେ ତପୋଧନ
ପାପହର ତପ୍ତକୃଚ୍ଛ୍ର ଏହାକୁ ଯେ କହି ।
ବାର ଦିନ ଉପବାସ କରି ଯେବେ ରହି ॥
ପାପ ନାଶନ ଯେ କୃଚ୍ଛ୍ରବ୍ରତ ଏହା ନାମ ।
ପରାକ ବ୍ରତ ଏହାର ନାମ ପୁଣି ଜାଣ ॥
ଶୁକ୍ଳପକ୍ଷେ ଏକ ଏକ ଗୁଣ୍ଡାଏ ବଢାଇ ।
କୃଷ୍ଣ ପକ୍ଷେ ଏକ ଏକ ଗୁଣ୍ଡାଏ ଛଡ଼ାଇ ॥
ଉପବାସେ ରହିବ ଯେ ଅମାବାସ୍ୟା ଦିନ ।
ଏହା ନାମ ଚାନ୍ଦ୍ରାୟଣ ବ୍ରତ ତପୋଧନ ॥
ସୂର୍ଯ୍ୟ ଉଦେକାଳେ ଚାରିଗୁଣ୍ଡା କରି ଗ୍ରାସ ।
ସମାଧିରେ କରିଥିବ ମନକୁ ନିଜବଶ ॥
ପୁଣି ସୂର୍ଯ୍ୟ ଅସ୍ତେ ଚାରିଗୁଣ୍ଡା ଗ୍ରାସ କରି ।
ଶିଶୁ ଚାନ୍ଦ୍ରାୟଣ ନାମ ଅଟଇ ଏହାରି ॥
ସ୍ୱହସ୍ତେ ପାଣି କଖାରୁ ଶରଇ ସ୍ନେ ନାରୀ
ତିନିଦିନ ପଞ୍ଚଗବ୍ୟ ପିଇ ଦିନ ନିଶି ॥
ପାଞ୍ଚଟି ପାଣି କଖାରୁ କରିବ ଯେ ଦାନ ।
ତାହା ସଙ୍ଗେ ଦେଇଥିବ ବସନ କାଞ୍ଚନ ॥
ଏମନ୍ତ କଲେ ତା ଅନ୍ନ ଜଳ ଶୁଦ୍ଧ ହୋଇ ।
କହିଲେ ଯେ ଶଙ୍କରଙ୍କୁ ହେ ମୁନି ଗୋସାଇଁ ॥
କଳିଯୁଗ ଲୋକେ ଘୋର ପାପେ ଅନ୍ଧ ହୋଇ
କୂପ ମଣ୍ଡୂକ ପରାଏ ଗୃହ ମଧ୍ୟେ ଥାଇ ॥
ସଂସାର ସାଗରୁ ପାର ହୋଇବେ କେମନ୍ତେ
ଏମନ୍ତ କି ପୁଣ୍ୟ ଅଛି କୁହନ୍ତୁ ତାହା ମୋତେ ॥
ଏମନ୍ତ ଶୁଣି ବୋଇଲେ ସୂତ ମହାଯତି ।
ଯହିଁରେ କି ରାଧା କୃଷ୍ଣ ସନ୍ତୋଷ ହୁଅନ୍ତି ॥
କରିବେ ସେହି କାର୍ତ୍ତିକ ମାସେ ପ୍ରାତଃସ୍ନାନ ।
ରାଧା ଦାମୋଦର ପୂଜା କରି ନିତେ ଦିନ ॥
ଭକତରେ ଏହା କଲି ସମାଧିରେ ଥାଇ ।
ସଂସାର ସାଗର ତରି ବଇକୁଣ୍ଠ ପାଇ ॥
ପତି ସେବା କରି ନାରୀ କଲେ ଏହି ସ୍ନାନ ।
ପାଇବେ ସେହି ଗୋଲୋକ ଦୁର୍ଲଭ ଯେ ସ୍ଥାନ
କାର୍ତ୍ତିକ ମାସେ ଯେ ନାରୀ ପ୍ରାତଃସ୍ନାନ ସାରି ।
ଧୂପ ଦୀପେ ରାଧା ଦାମୋଦର ପୂଜା କରି ॥
ସବୁ ପାତକ ଛଡ଼ାଇ ଯିବେ ବିଷ୍ଣୁ ପୁରେ ।
ଆହେ ବିପ୍ର ଯେଉଁ ନାରୀ କାର୍ତ୍ତିକ ମାସରେ ॥
ସ୍ନେହେ ଥିବା ରାଧା ଦାମୋଦର ପୂଜାକରେ ।
ଉତ୍ତମ ବସନ ଦେଇ ପୂଜେ ଭକତିରେ ॥
ହରି ମନ୍ଦିରେ ତାହାର ଚିରକାଳ ଘର
ଯେ ନାରୀ କାର୍ତ୍ତିକେ ଦିଏ ପୁଷ୍ପ ଫୁଲହାର ॥
ସୁବାସିତ ଗନ୍ଧଦ୍ରବ୍ୟ ଆଦି ଦିଅଇ ।
ଦିବ୍ୟ ବଇକୁଣ୍ଠ ପୁରେ ସେ ଯାଇ ବସଇ ॥
ଗନ୍ଧ ଶର୍କରା ଆଦି ଯେ ନଇବେଦ୍ୟ ଦେଇ ।
ଭକତରେ ରାଧା ଦାମୋଦରଙ୍କୁ ପୂଜଇ ॥
ସେ ନାରୀ ବିଷ୍ଣୁ ମନ୍ଦିର ପାଇ ତପୋଧନ ।
ରାଧା ଦାମୋଦର ପ୍ରୀତି ଅର୍ଥେ ଯେବେ ଜନ
ଯାହା କିଛି ଦିଏ ତାର ସେ ପୁଣ୍ୟ ଅକ୍ଷୟ ।
ସ୍ନାନ ନ କଲେ ସକଳ ପୁଣ୍ୟ ଯାଏ କ୍ଷୟ ॥

ଯେ ନାରୀ କାର୍ତ୍ତିକ ମାସେ ଭକତି ସହିତ ।
ସକାଳୁ ଉଠି ନ କରେ ସ୍ନାନ ପ୍ରାତଃ କୃତ୍ୟ ॥
ଶ୍ରୀଧର ଦାମୋଦର ପୂଜା ନ କରେ ଆବର ।
ଶତ୍ କାଳ ନରକରେ ଯାଇ ଧଇଁ ତାର ॥
ଯେବେ କ ଆସି ମର୍ତ୍ତ୍ୟରେ ପୁଣି ଜନମଇ ।
ବାଲ୍ୟତ ବିଧବା ହୋଇ କଷ୍ଟ ଭୋଗୁଥାଇ ॥
ଏ ବିଧବା ଯୋଗ ତାର ଜନ୍ମ ଜନ୍ମାନ୍ତରେ ।
ସ୍ୱାମିର ଅପ୍ରିୟ ହୋଇ ଥାଏ ନିରନ୍ତରେ ॥
ଆହେ ବିପ୍ର ତ୍ରେତାଯୁଗ କଥା ଗୋଟା ଶୁଣ ।
ସଉରାଷ୍ଟ୍ର ଦେଶବାସୀ ଏକ ଶୂଦ୍ର ଜାଣ ॥
ନାମ ତାହାର ଶଙ୍କର ଆହେ ଦ୍ୱିଜବର ।
କଳପ୍ରିୟା ନାମେ ଏକ ଭାର୍ଯ୍ୟା ତାହାର ॥
ଜାର ପୁରୁଷ ସେ ଖୋଜୁ ଥାଏ ନିତଦିନ ।
ମନ ଉଦବେଗେ ଚିତ୍ତ ହୁଏ ଛନ ଛନ ॥
ସ୍ୱାମୀକି ସେ ତୃଣ ପ୍ରାୟ ଅମାନ୍ୟ କରଇ ।
ମୋର ସ୍ୱାମିଯୋଗ୍ୟ ଏହି ପୁରୁଷ ନୁହଇ ॥
ପର ପୁରୁଷ ଯେ ସ୍ୱାମୀ ଅଟଇ ମୋହର ।
ଏମନ୍ତ ମନେ ବିଚାର ସେହି ନିରନ୍ତର ॥
ଆପଣା ଉଚ୍ଛିଷ୍ଟ ବାଢି ସ୍ୱାମୀକି ଦଅଇ ।
ସେହି ମହାମୂଢା ନାରୀ ନୀଚସଙ୍ଗ ପାଇ ॥
ମଦ୍ୟମାଂସ ଆନନ୍ଦରେ କରଇ ଆହାର ।
ବହୁତ ଭର୍ତ୍ସନା କରି କହଇ ଆବର ॥
ମରୁ ନାହିଁ କିପାଁ ଏ ମୋ ପାଦର ସାଙ୍କୁଳ ।
ଏ ମଲେ ମୋ ଦିନ କାଳ ସୁଖେ ଯିବ ଚଳି ॥
ଆହେ ଦ୍ୱିଜ ସେହି ମୂଢା କଷ୍ଟୁରି ଏମନ୍ତେ ।
ନାନାଦି କଥା ଚିନ୍ତଇ ବସିଣ ଏକାନ୍ତେ ॥
ଏକ ଜାର ପୁରୁଷର ସଙ୍ଗ ପାଇ ଦିନେ ।
ଅନ୍ୟ ଦେଶେ ଯିବାପାଇଁ ସ୍ଥିରକରି ମନେ ॥
ତାହାକୁ ବୋଇଲା ହେଲା ଏ ସ୍ଥାନ ସଙ୍କେତ ।
ତୁମ୍ଭେ ଏଥେ ଥିବ ରାତ୍ରେ ଆସିବି ତ୍ୱରିତ ॥
ଏମନ୍ତ କହି ସେ ନାରୀ ସେଦିନ ରାତିରେ ।
ସୁଖେ ନିଦ୍ରା ଯାଉଛନ୍ତି ସ୍ୱାମୀ ତାର ଘରେ ॥
ଆପଣା ସ୍ୱାମିକି ମୁଣ୍ଡ କାଟି ସେହି ନାରୀ ।
ସଙ୍କେତ ସ୍ଥାନକୁ ଗଲା ଘରୁ ସେ ବାହାରି ॥
ସେସ୍ଥାନେ ଦେଖିଲା ଜାର ପୁରୁଷ ଯେ ନାହିଁ ।
ବାଘମାରି ପକାଇଛି ଦେହକୁ ରକ୍ତ ପିଇ ॥

ଆହା ସ୍ୱାମି ବୋଲି କଲା ବହୁତ ରୋଦନ ।
ମୂର୍ଚ୍ଛା ଯାଇଣ ପଡିଲା ହୋଇ ଅଚେତନ ॥
ଚେତା ପାଇଣ ସେ ପୁଣି ବାହୁନି କାନ୍ଦଇ ।
ମୋର ସ୍ୱାମିକି ହାଣିଲି ମୁହିଁ ତୁମ୍ଭ ପାଇଁ ॥
ତୁମ୍ଭସଙ୍ଗେ ରହି ସୁଖଭୋଗ କଲି କେତେ ।
ଅନ୍ୟ ଦେଶରେ ରହିବି ମୁଁ ତୁମ୍ଭ ସଙ୍ଗତେ ॥
ଦଇବ ସେ କଥା ଗୋଟା ସହି ନ ପାରିଲା ।
ତୁମ୍ଭଙ୍କୁ ଯେ ମହାବଳ ବାଘ ମୁଖେ ଦେଲା ॥
କି କରିବି ମୋତେ କିଛିବୁଦ୍ଧି ଦିଶୁନାହିଁ ।
ଘରକୁ ଯିବାକୁ ମୋର ମନ ନ ବଳଇ ॥
ଜାର ପୁରୁଷ ନିମନ୍ତେ ସ୍ୱାମୀକି ମାରିଲି ।
ସଙ୍କେତ କରି ଜାରକୁ ବାଘମୁଖେ ଦେଲି ॥
ଏମନ୍ତେ ବହୁତ କାନ୍ଦି ସେ କଳହା ନାରୀ ।
ଆପଣା ଗୃହକୁ ପୁଣି ଆସିଲାକ ଫେରି ॥
ସ୍ୱାମିମୁଖେ ମୁଖ ଦେଇ କରଇ ରୋଦନ ।
ଆହା ନାଥ କଲି ମୁହିଁ କି କର୍ମ ଦାରୁଣ ॥
ଯାହା କି କରିଛି ଏହା ନ କରିବେ କେହି ।
ଆହା ସ୍ୱାମି ମନ ମୋର ହର କଥା କହ ॥
ଯେତେ ଗାଳିମନ୍ଦ ମୁହିଁ ଦେଇଛି ପାମରୀ ।
ମୋହର ସେ ଦୋଷ କିଛି ମନରେ ନ ଧର ॥
ଯେମନ୍ତ ବେଭାର କରି ତୁମ୍ଭେ ମୋହଠାରେ
ତା ପ୍ରତିଫଳେ ଛେଦିଲି ତୁମ୍ଭଶିର କରେ ॥
ଧିକ ଧିକ ଏ ନିର୍ଲଜ୍ଜ ଜୀବନକୁ ଧିକ ।
ଜାରକୁ ମଣିଲି ମୁହିଁ ସ୍ୱାମିଠୁଁ ଅଧିକ ॥
ସତ ବୋଇଲେ ଏମନ୍ତେ ବିଳାପ କରିଣ ।
ଭୂମିରେ ଗଡିଲା ଧରି ସ୍ୱାମିର ଚରଣ ॥
ଅନ୍ୟ ନଗରକୁ ଗଲା ରାତି ପାହିଯାନ୍ତେ ।
ଦେଖିଲା ବହୁତ ନାରୀ ବଇଷ୍ଣବ କେତେ ॥
ନର୍ମଦା ନଦୀରେ ପୁଣି କରୁଛନ୍ତି ସ୍ନାନ ।
କାର୍ତ୍ତିକ ମାସ ପ୍ରଭୃତି ଜାଣି ମହାପୁଣ୍ୟ ॥
ଆଉରି ଦେଖିଲା ନଦୀତୀରେ କେତେ ନାରୀ ।
ଗନ୍ଧ ପୁଷ୍ପ ଧୂପ ଦେଇ ଦୀପ ଜାଳି କରି ॥
ବସନ ନାନାଦିଫଳ ମୁଖବାସ ନେଇ ।
ଶଙ୍ଖନାଦ ହୁଳହୁଳି ଆନନ୍ଦରେ ଦେଇ ॥
ମହା ଉତ୍ସବେ ଭକତି ଚିତ୍ତେ ପ୍ରିୟ ଜନ ।
ଶ୍ରୀଧର ଦାମୋଦର ପାଦ କରନ୍ତି ବନ୍ଦନ ॥

ନାନା ଉପଚାର ଦେଇ ଆଦର ପୂଜନ୍ତି ।
ଏମନ୍ତ ଦେଖିଣ ସେହି କଳିଙ୍ଗା ଯୁବତି ॥
ବିନୟ କରି କହିଲା ଯୋଡି ବେନି କର ।
କୃପା କରି କହ ଏକ କର୍ମ ଗୋ ତୁମ୍ଭର ॥
ସ୍ତ୍ରୀଏ ବୋଇଲେ ମାଗୋ ଶୁଣ ଦେଇ ମନ ।
ବାରମାସ ମଧ୍ୟେ ଏହି କାର୍ତ୍ତିକ ପ୍ରଧାନ ॥
ଏ କାର୍ତ୍ତିକ ମାସ ଯାକ ସକାଳୁ ଉଠିବ ।
ନିତ୍ୟକର୍ମ ସାରି ବେଗ ଜଳରେ ବୁଡିବ ॥
ବସନ ପାଲଟି ଶୁଦ୍ଧ ବସ୍ତ୍ର ଖଣ୍ଡେ ପିନ୍ଧି ।
ରାଧା ଦାମୋଦରଙ୍କର ପାଦପଦ୍ମ ବନ୍ଦି ॥
ଭକତରେ ଗନ୍ଧ ପୁଷ୍ପ ଦେଇଣ ପୂଜିବ ।
କୋଟି ଜନ୍ମାର୍ଜ୍ଜିତ ପାପ ତହିଁରେ ନାଶିବ ॥
ଏହା ଜାଣି ପୂଜୁଁ ଆମ୍ଭେ ରାଧା ଦାମୋଦର ।
ଏ ମାସେ ଆମିଷ ଦ୍ରବ୍ୟ ନ କରୁ ଆହାର ॥
କଳିଙ୍ଗା ଯୁବତୀ ସେ ଶୁଣିଣ ଏମନ୍ତ ।
ମାସକ ଯାକ ସେ ତହିଁ ରହି କଲା ବ୍ରତ ॥
କାର୍ତ୍ତିକ ପୂର୍ଣ୍ଣିମା ଦିନ ମଲା ସେହି ନାରୀ ।
ଯମଦୂତେ ଆଇଲେ ଯେ ପାଶ ହସ୍ତେ ଧରି ॥
ଚର୍ମ ଦଉଡ଼ୀରେ ତାକୁ ବାନ୍ଧି କୋପଭରେ ।
ବିଷ୍ଣୁ ଦୂତେ ପ୍ରବେଶିଲେ ଏମନ୍ତ ବେଳରେ ।
ଶଙ୍ଖଚକ୍ର ଗଦା ପଦ୍ମ ବନମାଳାଧାରୀ ।
ବିମାନ ଗୋଟା ହୋଇଛି ସୁବର୍ଣ୍ଣେ ତିଆରି ॥
ଚକ୍ରେ ଛେଦପକାଇଲେ ଦଉଡ଼ୀକି ତାର ।
ଯମଦୂତଙ୍କ ଉପରେ କରନ୍ତେ ପ୍ରହାର ॥
ତହୁଁ ଯମଦୂତେ ଗଲେ ଭୟରେ ପଳାଇ ।
ରାଜହଂସ ଯୋଗ୍ୟ ସ୍ୱର୍ଣ୍ଣ ବିମାନେ ବସାଇ ॥
ବିଷ୍ଣୁ ଦୂତେ ଘେନି ତାକୁ ବଇକୁଣ୍ଠେ ଗଲେ ।
ସୁଖଭୋଗ ଦେଇ ତାକୁ ଗଉରବ କଲେ ॥
ରାଧା ଦାମୋଦର ପୂଜା କାର୍ତ୍ତିକେ ଯେ କରେ ।
ସେ ନାରୀ ଦେହରୁ ପାପ ଛାଡ଼ିଯାନ୍ତି ଡରେ ॥
ଦିବ୍ୟ ଗୋଲୋକ ଧାମ ଯେ ଅତି ମନୋହର ।
ତହିଁରେ ସେ ପୂଜାପାଏ ଜାଣ ଦ୍ୱିଜବର ॥
ଭକତରେ ଏକଚିତ୍ତେ ଯେଉଁ ନର ନାରୀ ।
ଶୁଣନ୍ତି ତାହାଙ୍କ ପାପ ଯାଏ ଛାଡ଼ିକରି ॥
କୋଟି ଜନମର ପାପ ଛାଡ଼ିଣ ପଳାଏ ।
ଦାସ ଗୋପୀନାଥ ରାଧା ଦାମୋଦର ପାୟେ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ଅଗମ୍ୟା
ଗମନାଦି ବିବିଧ ପାପ ପ୍ରାୟଶ୍ଚିତ୍ତଂ ନାମ
ଷଟ୍ ଚତ୍ୱାରିଂଶୋଽଧ୍ୟାୟଃ ।



# ସପ୍ତଚତ୍ୱାରିଂଶ ଅଧ୍ୟାୟ ।

## ତୁଳସୀ ମାହାତ୍ମ୍ୟ ।

କହିଲେ ଯେ ଶଉନକ ସୂତ କହି ମୋତେ
କାର୍ତ୍ତିକ ମାସର ବିଧି ବିଧାନହି ଯେତେ ॥
ସେ ପୁଣ୍ୟ ମାସର ପୁଣି ନିୟମ ଯେତେକ ।
ସୂତ ବୋଇଲେ ହୋ ଶୁଣ ମୁନି ଶଉନକ ॥
ଆଶ୍ୱିନ ମାସ ପୂର୍ଣ୍ଣିମା ଦିନୁ ଆରମ୍ଭିବ ।
ନିଦ୍ରା ତେଜିଣ ଉଠନ୍ତି ଯେ ଦିନ କେଶବ ॥
ଉତ୍ଥାପନ ଏକାଦଶୀ ତା ନାମ ବୋଲାଇ ।
ସେ ଦିନ ନ ହେବା ଯାଏ ଏ ବ୍ରତ ହୁଅଇ ॥
ଦିବସେ ଉତ୍ତର ମୁଖ ହୋଇବେ ଯେ ନର ।
ରାତିରେ ଦକ୍ଷିଣ ମୁଖ ଜାଣ ଦ୍ୱିଜବର ॥
ମଉନରେ ରହି ମଳମୂତ୍ର ତ୍ୟାଗ ବେଳେ ।
ମଳମୂତ୍ର ନ ତେଜିବେ ଗୋଷ୍ଠେ ବାଟେ ଜଳେ
ଶମଶାନରେ ହୁଙ୍କାରେ ନ ତେଜିବେ ପୁଣି ।
ତହୁଁ ଯେ ବାମ ହସ୍ତରେ ଶୁଦ୍ଧ ମାଟି ପାଣି ॥
କୋଡ଼ିଏ ଥର ଧୋଇବ ତହୁଁ ଦୁଇ କର ।
ଦଶଥର ଧୋଇ ପାଦ ଧୋଇବ ଆବର ॥
ତିନି ତିନିଥର ତହୁଁ ପାଦଦୁଇ ଧୋଇ
ମୁଖକୁ ଶୁଦ୍ଧ କରିବ ଶୁଦ୍ଧ ଜଳ ଦେଇ ॥
ସଂକଳ୍ପ କରିବ ଯେ ସ୍ନାନର ନିମନ୍ତେ ।
ତହୁଁ ଶ୍ରୀ ଦାମୋଦରଙ୍କୁ ଚିନ୍ତା କରି ଚିତ୍ତେ ॥
ଏମନ୍ତ ପଢ଼ି ଏରୂପେ ହୃଦୟେ ଚିନ୍ତିବ ।
ଆହେ ଜନାର୍ଦ୍ଦନ ମୋର ପାତକ ନାଶିବ ॥
ପାପ ନାଶନ କାର୍ତ୍ତିକ ମାସଯାକ ମୁହିଁ ।
ରାଧା ଦାମୋଦର ପ୍ରୀତି ଅର୍ଥେ ପ୍ରାତଃ ସ୍ନାୟୀ
ସକାଳୁ ଉଠି ମୁଁ ନିତି କରୁଥିବି ସ୍ନାନ ।
ପଦ୍ମନାଭ ଜଳେ କରି ଅଛନ୍ତି ଶୟନ ॥

ସେ ସୁଧୀ ଲମ୍ବ ଚରଣେ ନମସ୍କାର ମୋର
ଯେଉଁ ଅର୍ଘ୍ୟ ଦେଉଅଛ ତାହା ଘେନାକର ॥
ମୋଠାରେ ପ୍ରସନ୍ନ ହୁଅ ଏହା କହି ଭଲେ ।
ଦ୍ରୁତ ସ୍ନାନ ସାରି ତହୁଁ ତିଳକ କପାଳେ ॥
ଊର୍ଦ୍ଧ୍ୱ ପୁଣ୍ଡ୍ର କରିବ ଯେ ବିଧି ବିଧାନେ ।
ତିଳକ ନ ଘେନି କର୍ମ କରନ୍ତି ଯେ ଜନେ ॥
ସେ ସବୁ ତାର ବିଫଳ କହୁଛି ମୁଁ ସତ ।
ଯେ ନର ଶରୀର ଊର୍ଦ୍ଧ୍ୱ ପୁଣ୍ଡ୍ରେ ରହିତ ॥
ଆତୁରି ହୋଇଣ ଯିବ ତାହାକୁ ନ ଛୁଇଁ ।
ଦୈବେ ଯେବେ କି ଆଖି ଆଗରେ ପଡ଼ଇ ॥
ଦୋଷ ଶୁଦ୍ଧ ହୋଇବ କଲେ ସୂର୍ଯ୍ୟଙ୍କୁ ଦର୍ଶନ ।
ଶୁଭ୍ର ମାଟିରେ ରଚିତ ଊର୍ଦ୍ଧ୍ୱ ପୁଣ୍ଡ୍ର ଚିହ୍ନ ॥
ଯା ଲଲାଟେ ଥାଇ ସେହି ହୋଇଲେହେଁ ଚଣ୍ଡାଳ
ସେ ପବିତ୍ର ଆତ୍ମା ତାକୁ ପୂଜିବେ ସକଳ ॥
ଊର୍ଦ୍ଧ୍ୱ ପୁଣ୍ଡ୍ର ଚିହ୍ନ ନାହିଁ ଲଲାଟେ ଯାହାର ।
ସେ ଅଧମ ନାରକୀକୁ ଜାଣିବ କୁକ୍କୁର ॥
ଆହେ ବିପ୍ର ପ୍ରାତଃକାଳ କୃତ୍ୟ ଯାକ ସାରି ।
ଭକତିରେ ତୁଳସୀକି ଯେହୁ ସେବା କରି ॥
ସେ ହରି ବଲ୍ଲଭ ତାର ପାପ ବିନାଶଇ ।
ତହୁଁ ଯେ କାର୍ତ୍ତିକ ବ୍ରତୀ ମନକୁ ଲଗାଇ ॥
ଶ୍ରୀହରିର କଥା ଥିବ ଯେଉଁ ପୁରାଣେ ।
ସେ ପୁରାଣ ପଢୁଥିବା ବ୍ରାହ୍ମଣ ଚରଣେ ॥
ଭକତିରେ ପୂଜାକରି ଶୁଣିବ ପୁରାଣ ।
ବିଶେଷେ ପର ଆଯନ କରିବ ବର୍ଜନ ॥
ପର ଅନ୍ନ ପର ଶଯ୍ୟା ପରନାରୀ ବ୍ରୀହି ।
ଆମିଷ ଯେ ମଧୁ ମାଂସ ପୁଣି ଗୃଞ୍ଜ ବ୍ରୀହି ॥
କାର୍ତ୍ତିକ ବ୍ରତୀ ଏମାନ କରିବେ ବର୍ଜନ ।
ହେ ଦ୍ୱିଜ ଜମ୍ବୀର ମସୁରିକା ବାସୀ ଅନ୍ନ ॥
କ୍ଷୁଦ୍ର ସରୋବର ଜଳ ତେଜିବ ଆବର ।
କଦଳୀ ପତ୍ର ପକାଇ କରିବ ଆହାର ॥
ଏହି ବ୍ରତରେ ତଇଳ କରିବ ବର୍ଜନ ।
ନ କରିବ କ୍ଷୌରୁ ଶ୍ୱେତ କଳମ୍ବୀ ଭକ୍ଷଣ ॥
ହିଙ୍ଗୁ ପୋଇ ମୂଳା ଲଉ ଧଳା ବାଇଗଣ ।
କଇଥ ସଜନା ପାନ୍ତି କଖାରୁ ଭୋଜନ ॥
ଏ ସବୁ ଦ୍ରବ୍ୟ ନିଷେଧ କାର୍ତ୍ତିକବ୍ରତେ ।
କଂସା ପାତ୍ରରେ ଭୋଜନ ନିଷେଧ ଏ ବ୍ରତେ ॥

ନ ଖାଇବ କେତେ ଏଥେଁ ଅନ୍ନ ଦୁଇଥର ।
ତହୁଁ ଅଧିକ ଥରହିଁ ନିଷେଧ ଆହାର ॥
ପତିତର ଅନ୍ନ ମାଛ ରଜସ୍ୱଳା ଅନ୍ନ ।
ଉତ୍ତମ କୋମଳ ଶଯ୍ୟା ଏ ବ୍ରତ ବର୍ଜନ ॥
ସ୍ତ୍ରୀ ସଙ୍ଗ ନ କରିବ ଆହେ ଦ୍ୱିଜବର ।
ରବିବାରେ ଧାତ୍ରୀଫଳ ନିଷେଧ ଆବର ॥
ପାଣିକଖାରୁ ଭକ୍ଷଣେ ହୁଏ ଧନ ହାନି ।
ବୃହତୀ ଫଳ ଭକ୍ଷଣେ ହରିଙ୍କି ନ ମାନି ॥
ବେଲ ଖାଇଲେ ନାନାଦି କଳଙ୍କ ହୁଅଇ ।
ନିମ୍ବ ଖାଇଲେ ଯେ ପକ୍ଷି ଯୋନିଜନ୍ମ ପାଇ ॥
ତାଳ ଖାଇଲେ ଶରୀର ଗୋଟା ହୋଏ କ୍ଷୀଣ ।
ନଡ଼ିଆ ଖାଇଲେ ବଡ଼ ମୂର୍ଖ ଆଚରଣ ॥
ଲଉ ଖାଇଲେ ଗୋମାଂସ ଖାଇଲାର ପରି ।
କଳିନ୍ଦ ଖାଇଲେ ଗୋରୁ ହତ୍ୟା କଲା ପରି ॥
ଶିମ୍ବ ଖାଇଲେ ଯେ ପାପ ବହୁତ ବଢ଼ଇ ।
ପୋଇ ଭକ୍ଷିଲେ ଯେ ବ୍ରହ୍ମ ବଧ ତୁଲ୍ୟ ହୋଇ
ସୁତ ମରଇ ଖାଇଲେ ଧଳା ବାଇଗଣ ।
ମାଂସ ଖାଇଲେ ଯେ ଚିର ରୋଗେ ଯାଏ ଦିନ
ଆନ ମାଂସରେ ଅଧିକ ପାତକ ହୁଅଇ ।
ଏଣୁ ପ୍ରତିପଦାଦିରେ ଏ ସବୁ ନ ଖାଇ ॥
ବିଷ୍ଣୁ ପ୍ରୀତି ଅର୍ଥେ ଯେଉଁ ଦ୍ରବ୍ୟ ଛାଡ଼ି ଥିବ ।
ସେ ସବୁ ଦ୍ରବ୍ୟ ବିପ୍ରକୁ ବ୍ରତ ଶେଷେ ଦେବ ।
ତେବେ ଯାଇଁ ଭୋଜନରେ ବସିବ ସେ ବ୍ରତୀ
ସିଂହ ଦେଖି ଗଜ ଯୂଥ ଯେସନେ ପଳାନ୍ତି ॥
ବ୍ରତୀ ଦେଖି ଯମଦୂତେ ପଳାନ୍ତି ତେସନ ।
ଏହି ବିଷ୍ଣୁ ବ୍ରତ ଗୋଟା ଅଟଇ ପ୍ରଧାନ ॥
ଯଜ୍ଞ କଲେ ଲୋକ ସ୍ୱର୍ଗଭୁବନେ ବସଇ ।
କାର୍ତ୍ତିକ ବ୍ରତୀ ଯେ ବଇକୁଣ୍ଠ ପୁର ପାଇ ॥
ଏଣୁ ଯଜ୍ଞ ତାର ତୁଲ୍ୟ ନୋହେ ଦ୍ୱିଜବର ।
ମନ ବାକ୍ୟ ଦେହେ କରିଥିବା ପାପଭାର ॥
କାର୍ତ୍ତିକ ବ୍ରତୀ ଦେଖିଲକ୍ଷଣି ଲୟଯାଇ ।
ଏ ବିଷୟେ ଅଣୁ ମାତ୍ର ସନ୍ଦେହ ଯେ ନାହିଁ ॥
କାର୍ତ୍ତିକ ବ୍ରତର ପୁଣ୍ୟ ମୁହିଁ ଏକ ମୁଖେ ।
କି କହିବ ଆହେ ଦ୍ୱିଜ ମୁଁ ତୁମ୍ଭ ସମ୍ମୁଖେ ॥
କାର୍ତ୍ତିକ ବ୍ରତୀର ଥାଏ ଯେ କିଛି କଳୁଷ ।
ବ୍ରତର ଭୟେ ପଳାଇ ଯାଏ ଦଶଦିଶ ॥

ଆମ୍ଭେ କାହିଁ ସିନ୍ଧୁଁ କଏ ଆମ୍ଭଙ୍କୁ ରଖିବ ।
ମୁଖେ ଏହା କହୁଥାନ୍ତି ହେ ଦ୍ୱିଜ ପୁଙ୍ଗବ ॥
କାର୍ତ୍ତିକ ପୂର୍ଣ୍ଣିମା ଦିନ ବିଷ୍ଣୁ ପ୍ରୀତି ଅର୍ଥେ ।
ଶକ୍ତି ଅନୁସାରେ ଦାନ ଦେବ ଯେ ପ୍ରଭାତେ ॥
ବିପ୍ରଙ୍କ ଭୋଜନ ଦେଇ ତୋଷ କରାଇବ ।
ନୃତ୍ୟ ଗୀତାଦିରେ ରାତ୍ରି ଗୋଷ୍ଠୀ କଟାଇବ ॥
ତାହାର ଦେହୁ ସକଳ ପାପ ଯାଏ ଦୂରେ ।
ଶୌନକଙ୍କ ବୋଇଲେ ଯେ କୃପା କରି ବାରେ ॥
ଆହୋ ସୂତ ମୁନି କହ ଶୁଣିବାର ଫଳ ।
ତୁଳସୀ ମହିମା ଗୋଷ୍ଠୀ କହିବ ଆବର ॥
ଯହିଁରେ ସକଳ ପାପ ବିନାଶ ହୁଅଇ ।
ସୂତ ଯେ କହିଲେ ଶୁଣ ହେ ମୁନିଗୋସାଇଁ ॥
ଯାର ଅଗଣାରେ ଥାଇ ତୁଳସୀ କାନନ ।
ତୀର୍ଥ ବୋଲି ନ ପଶନ୍ତି ତହିଁ ଯମଗଣ ॥
ସକଳ ପାପ ତୁଳସୀ କାନନ ହରଇ ।
ତୁଳସୀ ବୃକ୍ଷ ଯେ ନର ଶ୍ରଦ୍ଧାରେ ରୋପଇ ॥
କେତେ ନ କରଇ ସେହି ଯମ ଦରଶନ ।
ଯେ ଜନ ତାହା କରଇ ରୋପଣ ପାଳନ ॥
ଦର୍ଶନ କରଇ ଯେହୁ ପୂଜଇ ଛୁଅଇଁ ।
ତା ଦେହୁରୁ ସବୁ ପାପ ଛାଡ଼ିଣ ପଳାଇ ॥
କୋମଳ ତୁଳସୀ ପତ୍ରେ ଯେ ବିଷ୍ଣୁ ପୂଜଇ ।
କାଳ ଯମ ଭୁବନକୁ କେବେ ସେ ନ ଯାଇ ॥
ତୁଳସୀର ପତ୍ରେ ଥାନ୍ତି ବ୍ରହ୍ମା ହରି ହର ।
ଗଙ୍ଗାନଦୀ ଆଦି ସବୁ ନଦୀ ଯେ ଆବର ॥
ପୁଷ୍କର ଆଦି ଯେ ତୀର୍ଥ ଘେନି ଦେବଗଣ ।
ତୁଳସୀ ପତ୍ରରେ ରହିଥାନ୍ତି ପ୍ରତି ଦିନ ॥
ଯେ ପ୍ରାଣୀ ତୁଳସୀ ଦଳ ଦେହେ ଧରି ମରେ ।
ତତକ୍ଷଣେ ଯାଇ ସେହି ବଇକୁଣ୍ଠ ପୁରେ ॥
ଏ କଥା ଗୋଷ୍ଠୀ ଯେ ସତ କହୁଅଛି ମୁହିଁ ।
ଶତ ଶତ ପାପ କରି ଯେବେ ନର କେହି ॥
ତୁଳସୀ ମୂଳ ମୃତ୍ତିକା ଲିପି ହୋଇ ମରେ ।
ସେହି ମୁହୂର୍ତ୍ତେ ସେ ଯାଇ ବସେ ବିଷ୍ଣୁପୁରେ ॥
ଯେ ନର ତୁଳସୀ କାଷ୍ଠ ଚନ୍ଦନ ଘେନଇ ।
ପାପ ତାହାର ଦେହକୁ ଛୁଇଁ ନ ପାରଇ ॥
ନିଶ୍ଚୟ ପରମ ପଦ ପାଇ ସେହି ଜନ ।
ତୁଳସୀ ମାଳା ଯେ କଣ୍ଠେ କରଇ ଧାରଣ ॥
ଅଶଉଚୀ ଅନାଚାରୀ ହୋଇଥିଲେ ସେହି ।
ନିଶ୍ଚେ ଶ୍ରୀହରି ମନ୍ଦିରେ ବାସ କରେ ଯାଇଁ ॥
ତୁଳସୀ କାଠର ମାଳ ଧାତ୍ରୀଫଳ ମାଳ ।
ଯା ଦେହରେ ଥାଇ ତାକୁ ଭଗବତ ବୋଲି ॥
ତୁଳସୀ ଧାତ୍ରୀ ମାଳା ଯେ କଣ୍ଠରେ ଲମ୍ବାଇ ।
ଦେବତାମାନଙ୍କଠାରୁ ସେହି ପୂଜା ପାଇ ॥
ତୁଳସୀ ମାଳ କଣ୍ଠରେ ଘେନି ଯେଉଁ ଜନ ।
ଜନାର୍ଦ୍ଦନ ପୂଜନ୍ତରୁ ପ୍ରତି ପତ୍ରେ ଜାଣ ॥
ଅଯୁତ ଗୋଦାନ କଲ ଫଳ ସେହି ପାଇ ।
ଯେଉଁ ପାପବୁଦ୍ଧି ନାନା କାରଣ ଦେଖାଇ ॥
ମାଳା ଧାରଣ ନିଷେଧ କଲେ ତିଳୁ ହରି ।
କୋପାନଳେ ପୋଡ଼ି ଘୋର ନର୍କକୁଣ୍ଡେ ଭରି ॥
ସେ ନର୍କକୁଣ୍ଡୁ ବାହାରି ନ ପାରଇ ସେହି ।
ତୁଳସୀ ମାଳା ଯେ ଧର୍ମ କାମ ଅର୍ଥ ଦେଇ ॥
ଆବର ନାଶଇ ମହାପାତକ ଯେତେକ ।
ଧାତ୍ରୀମାଳାର ଏରୂପ ଫଳହିଁ ଅନେକ ॥
କଳକାଳ ନରଙ୍କର ଦେହେ ଥିବା ଲୋମ ।
ତହୁଁ ଯେତେ ପାଇ ଧାତ୍ରୀ ମାଳାର ସଙ୍ଗମ ॥
ତେତେ ସହସ୍ର ବରଷ ବଇକୁଣ୍ଠେ ରହେ ।
ଯେ ଦିଏ ତୁଳସୀ ମାଳା ଶ୍ରୀହରିର ଦେହେ ॥
ତା ଦେହରେ ପାପ ନାହିଁ ସର୍ବାଙ୍ଗ ନିର୍ମଳ ।
ତାକୁ ଦେଖି ଯମଗଣ ହୁଅନ୍ତି ଦୁର୍ବଳ ॥
ଶୁଖିଲ ପତ୍ର ପବନେ ଉଡ଼ିଲ ପରାଏ ।
ସହୁ ଉଠି ପଳାଇଣ ଯାନ୍ତି ମହାଭୟେ ॥
ଧାତ୍ରୀ ଛାଇରେ ତୁଳସୀ ବନେ ପିଣ୍ଡ ଦେଲେ ।
ମୁକତ ପାଆନ୍ତି ନିଶ୍ଚେ ତା ପିତୃ ସକଳେ ॥
ମୁଖେ ବେନିକର୍ଣ୍ଣେ ଶିରେ ବେନିକରେ
ଘେନଇ ଯେ ଧାତ୍ରୀଫଳ ସେ ଇହ ସଂସାରେ
ସ୍ୱୟଂ ହରି ବୋଲି ଜାଣିଥାଅ ଦ୍ୱିଜବର ।
ଧାତ୍ରୀଫଳେ କିବା ପତ୍ରେ ଯେବେ କେହି ନର
ଥରେ ମାତ୍ର ଭକତରେ ହରିଙ୍କି ପୂଜଇ ।
କୋଟି ଜନମର ପାପ କ୍ଷଣକେ ହରଇ ॥
ଯଜ୍ଞ ଦେବ ମୁନି ତୀର୍ଥ ଏ ଆଦି କ୍ଷମଧ୍ୟେ ।
କାର୍ତ୍ତିକ ମାସରେ ସଦା ଥାନ୍ତି ଧାତ୍ରୀ ବୃତେ ॥
କାର୍ତ୍ତିକ ମାସେ ଦ୍ୱାଦଶୀ ତିଥିରେ ଯେ ଜନ ।
ତୁଳସୀ ପତ୍ର ତୋଳଇ ଧାତ୍ରୀ ପତ୍ର ଜାଣ ॥

ଘୋର ନରକ ଯନ୍ତ୍ରଣା ସେ ଭୋଗ କରଇ ।
କାର୍ତ୍ତିକେ ଧାତ୍ରୀ ଛାୟାର ଯେ ଅନ୍ନ ଭୁଞ୍ଜଇ ॥
ଏକ ବତ୍ସରର ପାପ ନାଶ ଯାଇ ତାର ।
ଅନ୍ନ ସଂସର୍ଗ ଜନିତ ଯେତେକ ପାପ ଭାର ॥
କାର୍ତ୍ତିକେ ତୁଳସୀ ବୃନ୍ଦେ ଧାତ୍ରୀ ମୂଳେ ଥାଇ ।
ହରି ପୂଜା କଲେ ଜଣେ ବଇକୁଣ୍ଠ ପାଇ ॥
ତୁଳସୀ ପତ୍ର ଗଳିତ ଜଳ ଘେନେ ଶିରେ ।
ସର୍ବ ତୀର୍ଥ ସ୍ନାନକରି ରହେ ବୈକୁଣ୍ଠରେ ॥
ଆହେ ମହାମୁନି ପୂର୍ବେ ଦ୍ୱାପର ଯୁଗରେ ।
ଏକ ଦ୍ୱିଜବର ଥିଲେ ସେ ଏକ କାଳରେ ॥
ସ୍ନାନକରି ତୁଳସୀର ମୂଳେ ଜଳ ଦେଇ ।
ବିଶୁଦ୍ଧ ମନରେ ମହା ଶ୍ରଦ୍ଧାବନ୍ତ ହୋଇ ॥
ସ୍ୱଗୃହେ ଚଳିଗଲେ ତାଙ୍କ ନାମ ଯେ ଆଦିତ୍ୟ ।
ପୁଣ୍ୟ ତେଜେ ସୂର୍ଯ୍ୟ ପ୍ରାୟ ବିପ୍ର ତେଜୋବନ୍ତ
ତୃଷାର ଆତୁରେ ଏକ ଚଣ୍ଡାଳ ଆଇଲା ।
ସେହି ତୁଳସୀର ମୂଳ ଜଳକୁ ପିଇଲା ॥
ତା ଦେହର ପାପ ତାକୁ ଛାଡି ଗଲା ଦୂରେ ।
ବ୍ୟାଧେକ ତହିଁ ମିଳିଲା ଏହି ଅବସରେ ॥
ସେ ବ୍ୟାଧର ନାମ ଅରିମର୍ଦ୍ଦନ ଅଟଇ ।
ସେ ବୋଇଲା କରେ ତୁମେ ଅନ୍ନ ଦେଲୁ ଖାଇ
ଅନ୍ନ ଖାଇ ହାଣ୍ଡି କିମ୍ପା ଭାଙ୍ଗି ଦେଲୁ ମୋର ।
ସେ ଭଙ୍ଗା ହାଣ୍ଡିକ ପର କରିଛୁ ଆବର ॥
ତହିଁକି ଚୋହର ଏହି ଶାସ୍ତ୍ରିରେ ହିଂସ୍ରକ ।
ଏହା କହି ବିନ୍ଧି ଦେଲା ତାକୁ ବାଣ ଏକ ॥
ପ୍ରାଣ ଛାଡି ସେ ଚଣ୍ଡାଳ ପଡିଲା ଭୂମିରେ ।
ଯମର ଦୂତେ ଆଇଲେ ପାଶ ଘେନି କରେ ॥
ଭୟଙ୍କର ଦିଶନ୍ତି ସେ ଥିବାରୁ ମୁଦ୍ଗର ।
କ୍ରୋଧେ ବାନ୍ଧି ଘେନିଯାନ୍ତେ ଯମର କିଙ୍କର ॥
ଏ ବେଳେ ତା ଦଉଡ଼ି କାଟି ବିଷ୍ଣୁ ଦୂତେ
ବସାଇଲେ ଅତି ମନୋହର ଦିବ୍ୟରଥେ ॥
ଯମଦୂତେ ବିନୟରେ ପଚାରିଲେ ତାଙ୍କୁ ।
ତୁମ୍ଭେ ଘେନି ଯାଉଅଛ କି ପୁଣ୍ୟେ ଏହାକୁ ॥
ବିଷ୍ଣୁ ଦୂତେ ବୋଇଲେ ଏ ପୂର୍ବେ ରାଜା ଥିଲା
ସେ ଜନମେ ଏ ବହୁତ ପୁଣ୍ୟ ଅରଜିଲା ॥
ସୁନ୍ଦରୀ ପରନାରୀକି ହରିଥିଲା ବଳେ ।
ଯେ ପାପେ ଏହାକୁ ତୁମ୍ଭେ ନେଲ ଯମଆଳେ
ବହୁତ ଦଣ୍ଡ ସେଠାରେ ଦେଲ ଯମ ବୋଲେ
ତପତ ଲୌହେ ଶୋଇଲା ସେହି କର୍ମଫଳେ
ତପତ ତମ୍ବା ସ୍ତ୍ରୀ ଶିଳ କୋଳକଲା ପୁଣି ।
ତପତ ଲୁହା ସ୍ତମ୍ଭକୁ ଏହି ନୃପମଣି ॥
ତାହାକୁ କୁଣ୍ଢାଇ ବହୁ କଷ୍ଟ ତହିଁ ପାଇ ।
ପୁଣି ସେହି ଯମପୁରେ ଦୂତଗଣେ ନେଇ ॥
କ୍ଷାର ଜଳ ଧାରା ସିଞ୍ଚି ଏହାର ଶରୀରେ ।
ବହୁତ କାଳ ଏ ଦୁଃଖ ସହି ଏରୂପରେ ॥
ନରକ ଶେଷେ ଏ ପାପ ଯୋନିଜନ୍ମା ହେଲା
ଏରୂପେ ଏ ବାର ବାର ଜନମ ଲଭିଲା ॥
ଚିରଦୁଃଖ ଭୋଗଇ ଏ ନିଜକର୍ମ ଫଳେ ।
ଆଜି ମୋକ୍ଷ ହେଲା ଏ ତୁଳସୀମୂଳ ଜଳେ ॥
ପାନ କରିବାରୁ ଯାଉଅଛୁ ବିଷ୍ଣୁପୁରେ ।
ଏହା ଶୁଣି ଯମଦୂତେ ଗଲେ ନିଜପୁରେ ॥
ବିଷ୍ଣୁ ଦୂତେ ତାକୁ ଘେନି ବଇକୁଣ୍ଠେ ଗଲେ
ବହୁତ ଆଦର କରି ସୁଖରେ ରଖିଲେ ॥
ହେ ଦ୍ୱିଜ ପାପନାଶନ ତୁଳସୀ ମହିମା ।
କହିଲି ତୁମ୍ଭ ଆଗରେ ଥିଲା ଯାହା ଜଣା ॥
ଭକତରେ ତୁଳସୀର ସେବା ଯେହୁ କରେ ।
କି ଗତି ହୁଏ ତାହାର ମୁଁ କହି ନ ପାରେ ॥
ହରିପ୍ରିୟା ଶ୍ରୀ ତୁଳସୀ ଦେବୀର ଚରଣ ।
ଦାସ ଗୋପୀନାଥ ସଦା ପଶିଲା ଶରଣ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ତୁଳସୀ ମାହାତ୍ମ୍ୟଂ ନାମ
ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।



# ଅଷ୍ଟଚତ୍ୱାରିଂଶ ଅଧ୍ୟାୟ ।

ବିଷ୍ଣୁ ପଞ୍ଚକ ମାହାତ୍ମ୍ୟ ।

ଶଉନକ କହିଲେ ହେ ସୂତ ମହାତ୍ମା ।
କୃପାକରି କହ ବିଷ୍ଣୁ ପଞ୍ଚକ ମହିମା ॥
କାର୍ତ୍ତିକ ମାସର ଯେଉଁ ଶେଷ ପାଞ୍ଚଦିନ ।
ସବୁ ପ୍ରକାରେ ପାତକ କରଇ ଦହନ ॥

ସୂତ କହିଲେ ହେ ମୁନି ଶାଉନକ ଶୁଣ ।
ଯାହା ପଚାରିଲ ତାହା କହୁଅଛି ପୁଣ ॥
ବିଷ୍ଣୁ ପଞ୍ଚକ ବ୍ରତ ଯେ ବ୍ରତ ମଧ୍ୟେ ସାର ।
ତା ତୁଲ୍ୟ ପାପ ନାଶନ ନାହିଁ ଏ ସଂସାର ॥
ଗନ୍ଧ ପୁଷ୍ପ ଧୂପ ଦୀପ ବସ୍ତ୍ର ନାନା ଫଳେ ।
ଶ୍ରୀରାଧା ଗୋବିନ୍ଦ ପାଦ ସୁନ୍ଦର କମଳେ ॥
ଭକତରେ ସମର୍ପଇ ପୂଜା କରୁଥାଇ ।
ସକଳ ପାପ ଛଡ଼ାଇ ବିଷ୍ଣୁ ପୁରେ ଯାଇ ॥
ସ୍ତ୍ରୀହା ବ୍ରହ୍ମଘ୍ନୀ ଭ୍ରଷ୍ଟ ଯତି ଯେହି କେହି ।
ବିଷ୍ଣୁ ପଞ୍ଚକ ନ କଲେ ମୋକ୍ଷପାଇ ନାହିଁ ॥
ବିଷ୍ଣୁ ପଞ୍ଚକର ପୁଣ୍ୟ ସର୍ବ ପାପହର ।
ସେ ପାଞ୍ଚ ଦିନରେ ସ୍ନାନ କରେ ଯେଉଁ ନର ॥
ସର୍ବତୀର୍ଥ ସ୍ନାନ ଫଳ ତହିଁରେ ସେ ପାଇ ।
ଶ୍ରୀହରି ଆଗେ ତୁଳସୀ ଆଗେ ଦୀପ ଦେଇ ॥
ସେ ଦୀପ ଘୃତରେ ପୂର୍ଣ୍ଣ ଜଳୁଥିବ ପୁଣି ।
ପାପୀ ହେଲେହେଁ ତାହାକୁ ବିଷ୍ଣୁ ତୁଲ୍ୟ ମଣି ॥
ଏଥୁଁ ଅଧିକ ଆକାଶେ ଦୀପଦାନ ଫଳ ।
ସତ୍ୟ କହୁଅଛି ଏହି କଥା ଗୋଟା ମୂଳ ॥
କ୍ଷୀର ମଧୁ ଘୃତେ କଲେ ଅଚ୍ୟୁତଙ୍କୁ ସ୍ନାନ ।
ଭକତରେ ଶ୍ରୀବିଷ୍ଣୁ ପଞ୍ଚକ ପାଞ୍ଚଦିନ ॥
ସେ ସାଧୁକୁ କିଛି ନ ଦିଅନ୍ତି ତୋଷେ ହରି ।
ଯେ ହରିଙ୍କି ପରମାନ୍ନ ନିବେଦନ କରି ॥
ତାର ପୁଣ୍ୟ କେତେ ଗଣି କହି ନ ହୁଅଇ ।
ଚାରି ମୁଖରେ ଯେ ବ୍ରହ୍ମା କହି ନ ପାରଇ ॥
ପଞ୍ଚକ ଏକାଦଶୀରେ ବିଷ୍ଣୁ ପୂଜା ସାରି ।
ମନ୍ତ୍ରେ ଗୋମୟ ପାଇବ ମନ ଏକ କରି ॥
ବ୍ରତୀ ହୋଇ ଦ୍ୱାଦଶୀରେ ଗୋମୂତ୍ର ପାଇବ ।
ତେବେ ତାର କାୟ ଶୀଘ୍ର ବିଶୁଦ୍ଧ ହୋଇବ ॥
ତ୍ରୟୋଦଶୀରେ କରିବ ଗାଈ କ୍ଷୀର ପାନ ।
ଚତୁର୍ଦ୍ଦଶୀରେ ଯେ ଦଧି କରିବ ପ୍ରାଶନ ॥
ଶୁଦ୍ଧି ନିମନ୍ତେ ଏମନ୍ତେ କାଟି ଦିନଚାରି ।
ପୂର୍ଣ୍ଣିମା ଦିନ ପ୍ରଭାତୁ ପ୍ରାତଃ ସ୍ନାନ ସାରି ॥
ବିଧି ବିଧାନରେ ବସି ହରିଙ୍କି ପୂଜିବ ।
ବ୍ରାହ୍ମଣ ଭୋଜନ ଭକତରେ କରାଇବ ॥
ଦକ୍ଷିଣା ଦେଇ ବିପ୍ରଙ୍କୁ ସନ୍ତୋଷ କରାଇ ।
ମନ୍ତ୍ରେ ଶୁଦ୍ଧ କରି ପଞ୍ଚଗବ୍ୟ ରାତ୍ରେ ପିଇ ॥

ଏହା କରିବା ଶକତି ନ ଥିବ ଯାହାର ।
ଫଳ ମୂଳ ଖାଇ ବ୍ରତ କରିବ ସେ ନର ॥
ନ ହୋଇଲେ ବିଧି ବିଧାନେ ହବିଷ୍ୟ କରିବ ।
ଯେ ପଞ୍ଚକେ ତୁଳସୀରେ ହରିଙ୍କି ପୂଜିବ ॥
ସେ ନର ଜାଣ ସ୍ୱୟଂ ହୋଇ ନାରାୟଣ ।
ଦଣ୍ଡକର ଶୂଦ୍ର କଥା କହୁଅଛି ଶୁଣ ॥
ତ୍ରେତା ଯୁଗର ସେ କଥା ଗୋଟା ପୁରାତନ ।
ଧର୍ମକୁ ନିନ୍ଦା କରଇ ସେହି ପରିଜନ ॥
ତା ସଙ୍ଗେ ଯେ ମିତ୍ର ହେବ ତାହାକୁ ମାରିବ ।
ବ୍ରାହ୍ମଣ ଧନ ଦେଖିଲେ ହରଣ କରିବ ॥
ତା ପାଖେ ଶରଣ ଗଲେ ସେ ତାକୁ ମାରଇ
ପାଷାଣ୍ଡ ଜନଙ୍କ ସଙ୍ଗେ ସର୍ବେ ହୋଇ ଥାଇ ॥
ଗୋମାଂସ ଆହାର କରେ ସୁରାପାନ କରେ ।
ବିଶ୍ୱାସ ଘାତକା ଜ୍ଞାତି ଜନ ବୃତ୍ତି ହରେ ॥
ତାର ଏ ଦୁଷ୍ଟ ଚରିତ୍ର ଦେଖି ଜ୍ଞାତି ଗଣ ।
କ୍ରୋଧେ ତା ଘରକୁ ଆସି ବୋଇଲେ ରେ ଶୁଣ
ଏ ନିର୍ମଳ ବଂଶେ ତୁହି ହେଲୁ କୁଳାଙ୍ଗାର ।
ପୂର୍ବର ପ୍ରତିଷ୍ଠା ନାଶୁ ଆରେ ଦୁରାଚାର ॥
ଏମନ୍ତେ ତାହାକୁ ନାନା ଗାଳିମନ୍ଦ ଦେଇ ।
ତାର ଧନ ବୃତ୍ତି ବାଡ଼ି ସବୁ ହରି ନେଇ ॥
ବେଗରେ ହାବୁକା ଦେଇ ଦୂର କରି ଦେଲେ
ନିଆଁ ପାଣି ଆଦି ତାର ସବୁ ବନ୍ଦ କଲେ ॥
ସେହି ଦଣ୍ଡକର ଶୂଦ୍ର ତହୁଁ ପଳାଇଲା ।
ଅରଣ୍ୟ ମଧ୍ୟରେ ରହି ଖଣ୍ଟି ପଣ କଲା ॥
ଚୋରଙ୍କ ସଙ୍ଗତେ ରହି ଚୋରି କଲା ପୁଣି ।
ପ୍ରାଣ ଭୟରେ ସେ ବାହୁଡ଼ି ନ ଗଲେ ସେ ପ୍ରାଣୀ
ବାଟପଡ଼ା ଖଣ୍ଟିଗୋଟା ଅଛି ଏହି ବଣେ ।
ଏମନ୍ତ ଭଲ ନ ଗଲେ ଯହୁଁ ତହିଁ ଜଣେ ॥
ଖାଇବାକୁ ଯହୁଁ କିଛି ଆଉ ନ ମିଳିଲା ।
ସେ ବନ ଛାଡ଼ି ସେ ଅନ୍ୟ ବନରେ ପଶିଲା ॥
ଦେଖିଲା ଧାତ୍ରୀ ବୃକ୍ଷର ମୂଳେ ସାଧୁ ସନ୍ଥ ।
ଦ୍ୱିଜ ବଇଷ୍ଣବ ତହିଁ ଅଛନ୍ତି ବହୁତ ॥
ଆହେ ବିପ୍ର ସେହି ଦସ୍ୟୁଗଣ ତହୁଁ ଗଲେ
ତାହାଙ୍କ ନିକଟେ ଯାଇଁ ପ୍ରବେଶ ହୋଇଲେ
ଦଣ୍ଡକର ଶୂଦ୍ର ଅଛି ସଙ୍ଗତେ ତାଙ୍କର ।
ସକଳେ ପ୍ରଣାମ କରି ସାଧୁଙ୍କ ପୟର ॥

ବୋଇଲେ ହେ ଦ୍ୱିଜବରେ ଆମ୍ଭେ କ୍ଷୁଧାତୁର
କ୍ଷୁଣ୍ଣେ ଆହାର ଯିବ ଜୀବନ ଆମ୍ଭର ॥
କିଛି ଖାଇବାକୁ ଦିଅ ରହୁ ଆମ୍ଭ ପ୍ରାଣ ।
କ୍ଷୁଧାତୁରେ ଆମ୍ଭେମାନେ ପଶିଲୁ ଶରଣ ॥
ସେହି ଧର୍ମବନ୍ତ ପ୍ରାଣୀଗଣେ ସବୁ ଶୁଣି ।
ବୋଇଲେ ଆମ୍ଭେ ନ ଛୁଁଉ ଆଜ ଅନ୍ନ ପାଣି
ଏ ବିଷ୍ଣୁ ପଦ୍ମିନୀ ଦିନ ସର୍ବ ପାପହର ।
ତୁମ୍ଭେ କେଉଁଠି ମାଗୁଅଛ ଆମ୍ଭଙ୍କୁ ଆହାର ॥
ତୁମ୍ଭେ କିଏ କାହିଁପାଇଁ ଆସିଛ ଏ ବନେ ।
ଏ ସବୁ ବିସ୍ତାରି କହ ଆମ୍ଭ ସନ୍ନିଧାନେ ॥
ଆଗ ହୋଇ ବୋଇଲା ଦସ୍ୟୁ ଦଣ୍ଡକର ।
ଜନ୍ମ ଯାକ ପାପ କଲି ପୁଣ୍ୟ ନାହିଁ ମୋର ॥
ଦଣ୍ଡକର ପାପ ମୋର ଶୂଦ୍ର ଜାତି ମୁହିଁ ।
ଆଜି ହେ ସାଧୁ ଦ୍ୱିଜେ ମୋତେ ପାପୁ କର ତ୍ରାହି
ଉଦ୍ଧାର ବାଟ ଦେଖାଇ ଦିଅ କୃପା କରି ।
ଧର୍ମବନ୍ତ ଦ୍ୱିଜେ ତାକୁ ବୋଇଲେ ବିଚାରି ॥
ବିଷ୍ଣୁ ପଦ୍ମିନୀ ବ୍ରତ ତୁ କର ଅନାହାରେ ।
ଏ ଘୋର ପାପରୁ ତରି ଯିବୁ ବିଷ୍ଣୁପୁରେ ॥
ବିଷ୍ଣୁ ପଦ୍ମିନୀ ବ୍ରତ ସେ ହେଠାବରେ କଲା ।
ମରଣାନ୍ତେ ଦିବ୍ୟରଥେ ହରି ପୁରେ ଗଲା ॥
ଆନନ୍ଦେ ରହିଲା ତହିଁ ହରି ରୂପ ଧରି ।
ଜନ୍ମ ରହିତ ହୋଇଲା ଜାଣ ତପସ୍ୱୀ ॥
ଏ ପାପନାଶନ କଥା ଗୋଷ୍ଠୀ ଯେ ଶୁଣଇ ।
କୋଟି ଜନମର ପାପ ତାର ନାଶ ଯାଇ ॥
ଶଉନକ ବୋଇଲେ ହେ ସୂତ ମହାତମା ।
ସର୍ବ ପାପକ୍ଷୟକାରୀ ନାମର ମହିମା ॥
ସବୁ ଉପଦ୍ରବ ଯାକ ଯେଣେ ନାଶଯାଇ ।
ଦୁଷ୍ଟ ଗ୍ରହ ନବ ଋଷି ଶାନ୍ତି ଦିଅଇ ॥
ବିଷ୍ଣୁ ସନ୍ନିଧିକ ଧର୍ମ ଚତୁର୍ବର୍ଗ ଦିଏ । •
ଏମନ୍ତ ବିଷ୍ଣୁ ଚରିତ ଶୁଣେ ଯେ ଶୁଣାଏ ॥
ଅନ୍ତେ ହରି ଗୃହକୁ ସେ କରଇ ଗମନ ।
ପରମ ପଦ ଲଭନ୍ତି ଯାଇ ନାମେ ଜନ ॥
ସେ ନାମ ଉଚ୍ଚାରଣର ମହିମା ଅପାର ।
ଅତି ଆଶ୍ଚର୍ଯ୍ୟ ଆଖ୍ୟାନ ଶୁଣୁ ଯେ ତାହାର ॥
ଏଣୁ ସେ ନାମ କୀର୍ତ୍ତନ ବିଧାନ କହିବା ।
ତୁମ୍ଭ ମୁଖରୁ ସେ କଥା ଗୋଷ୍ଠୀ ଯେ ଶୁଣିବା ॥

ଏମନ୍ତ ଶୁଣି ବୋଇଲେ ସୂତ ମୁନିବର ।
କହିବା ତା ସଉନକ ତୁମ୍ଭ ଅଗ୍ରତର ॥
ମୋକ୍ଷ ସାଧନ ସମ୍ବାଦ କହିବା ନା ଏବେ ।
କହିଥିଲେ ଯାହା ମୁନି ନାରଦଙ୍କୁ ପୂର୍ବେ ॥
ପଚାରିଥିଲେ ତାହାଙ୍କୁ ସନତକୁମାର ।
କହିଥିଲେ ଯେଉଁମତେ ଶୁଣ ମୁନିବର ॥
ଦିନେ ଯେ ନାରଦ ମୁନି ଯମୁନା ତଟରେ ।
ସବୁ ବେଳେ ମନ ଧର୍ମ କଥା ଶୁଣିବାରେ ॥
ଦେଖିଲେ ଯେ ତହିଁ ମୁନି ସନତ କୁମାର ।
ପୂଛିଲେ ତାଙ୍କୁ ଆଲୋଳ କରି ବେନି କର
ଧର୍ମ ନାଶକାରୀ ଯାହା କହିଛ ପୁରାଣେ ।
ସେ କେମନ୍ତେ ନାଶ ଯିବ କହନ୍ତୁ ଆପଣେ ॥
ତୁମ୍ଭେ ଯେ ସାକ୍ଷାତେ ଅଟ ଭଗବତ ପ୍ରିୟ ।
ଶ୍ରୀ ସନତକୁମାର ଯେ ବ୍ରହ୍ମାର ତନୟ ॥
ବୋଇଲେ ଗୋବିନ୍ଦ ଧର୍ମଜ୍ଞାନୀ ହେ ନାରଦ ।
ଗୋବିନ୍ଦ କଥା ଶ୍ରବଣେ ସର୍ବଦା ଆନନ୍ଦ ॥
ଏଣୁ ତୁମ୍ଭେ ଗୋବିନ୍ଦର ପ୍ରିୟ ମହାମୁନି ।
ଲୋକ ମୁକତି କାରଣ ପଚାରିଲ ପୁଣି ॥
ହେ ଦ୍ୱିଜ ସବୁ ଆଗ୍ରହ ରହିତ ଯେ ଜନ ।
ଲୋକଙ୍କୁ ଠକାଇ ଶଠ ବୁଦ୍ଧି ବ୍ରତ ହୀନ ॥
ଦାମ୍ଭିକ ଯେ ଅହଙ୍କାରୀ ମଦ୍ୟପାନେ ରତ ।
ଖଳ ଆବର ମୂରୁଖ ନାସ୍ତିକ ଚରିତ ॥
ପାପୀ ପୁଣି ଧନ ଦାର ପୁତ୍ରେ ଆସକତ ।
ଏସବୁ ଅଧମ ଜନ ଆହେ ତପୋବନ୍ତ ॥
ଶ୍ରୀ ଗୋବିନ୍ଦ ପଦ ଅରବିନ୍ଦ ଆଶ୍ରାକରି ।
ଶରଣ ପଶିଲେ ଯିବେ ଭବସିନ୍ଧୁ ତରି ॥
ଦେବାଧି ଦେବରାୟ ଯେ ସବୁଙ୍କ ସେ ପର ।
ସ୍ଥାବର ଜଙ୍ଗମ ମୋକ୍ଷକାରୀ ଯେ ଆବର ॥
କରୁଣାକର ଈଶ୍ୱର ଅପରାଧୀ ହୋଇ ।
ସେ କେବଳ ନାମ ଧରି ତହିଁ ରକ୍ଷାପାଇ ॥
ସର୍ବ ଅପରାଧକାରୀ ହେଲେହେଁ ସେ ଜନ ।
ହରି ଆଶ୍ରାରେ ମୁକତି ପାଏ ତପୋଧନ ॥
ହରି ଅପରାଧୀ ନର ଅଟଇ ପାଂଶଳ ।
ସେ ଯେବେକ ଆଶ୍ରାକରଏ ନାମର କେବଳ ॥
ନାମ ପ୍ରଭାବେ ସେ ନିଶ୍ଚେ ପରିତ୍ରାଣ ପାଇ ।
ନାମ ଅପରାଧୀ ଜନ ନର୍କେ ପଡ଼ଇ ॥

ଶ୍ରୀ ନାରଦ ବୋଇଲେ ହେ ସନତ କୁମାର ।
କି କି କର୍ମ କଲେ ହରି ଅପରାଧୀ ନର ॥
ସନତ କୁମାର ଶୁଣି ବୋଇଲେ ଏମନ୍ତ ।
ସାଧୁ ନିନ୍ଦାହିଁ ଅଟଇ ପରମ ଅଦ୍ଭୁତ ॥
ନାମର ମହିମା ଖ୍ୟାତି ପାଏ ସାଧୁ ଯୋଗେ ।
କଳୁଟପ ହରି ସହିବେ ତାହା ଅନୁରାଗେ ॥
ଶିବ ବିଷ୍ଣୁ ଆମ୍ଭ ଗୁଣ ଭେଦ ଯେ କରଇ ।
ହରିନାମ ଅପରାଧୀ ସେ ଲୋକ ଅଟଇ ॥
ଗୁରୁର ଆଜ୍ଞା ଅବଜ୍ଞା କରଇ ଯେ ଜନ ।
ବେଦକୁ ନିନ୍ଦଇ ନାମେ କରେ ଭେଦଜ୍ଞାନ ॥
ସେହି ଅପରାଧୀ ଯମ ଯାତନା ଭୋଗଇ ।
ନାମରୁ ଯାହାର ବୁଦ୍ଧି ତଳେ ନ ଟଳଇ ॥
ଅର୍ଥବାଦ ନ ଥାଇଟି ହରିନାମେ ଯାର ।
ଯମର ଯନ୍ତ୍ରଣା ଭୋଗ ନ କରେ ସେ ନର ॥
ଧର୍ମ ବ୍ରତ ଦାନ ହୋମ ଆଦି ଶୁଭ କର୍ମ ।
ନାମେ ପ୍ରମାଦ ଘଟାଏ ଏ ସବୁରେ ସାମ୍ୟ ॥
ଶ୍ରଦ୍ଧାହୀନ ବିମୁଖ ଯେ ଶୁଣି ନ ଶୁଣଇ ।
ନାମର ମନ୍ତ୍ର ତାହାଙ୍କ କର୍ଣ୍ଣେ ଯେ କୁହଇ ॥
ସେହି ନାମ ଅପରାଧୀ ଜାଣ ମୁନିବର ।
ନାମ ଶୁଣିଲେ ଶରଧା ନ ବଳେ ଯାହାର ॥
ସେହି ଅହଂକାରୀ ଜନ ଅଧମ ଅଟଇ ।
ନାମ ଅପରାଧୀ ବୋଲି ସେ ଲୋକକୁ କହି ॥
ନାମର ଏ ଦଶଗୋଟି ଅପରାଧ ଜାଣ ।
ସ୍ୱୟଂ ଶଙ୍କରଙ୍କ ମୁଖେ ହୋଇଛି ବଖାଣ ॥
ମୁନିଜନମାନଙ୍କର କର୍ଣ୍ଣ ସୁଖକର ।
ହେ ନାରଦ ଏହା ତ୍ୟାଗ କର ନିରନ୍ତର ॥
ଯମର ଏ ଦଶ ଗୋଟି ଅପରାଧ ଜାଣି ।
ଯେ ଜନ ଛାଡ଼ି ନ ପାରେ ସେ ଅଧମ ପ୍ରାଣୀ ॥
ଆଟପ ଯେ ଖାଇ ନ ଜାଣି ବାଳକ ପରାୟ ।
ମାତାଠାରେ କୋପକରି କାନ୍ଦଇ ନିଶ୍ଚୟ ॥
ନାମ ଜପକର ନାମ ଅପରାଧୀ ଯେତେ ।
ନାମ ତୁମ୍ଭ ବାଞ୍ଛାସିଦ୍ଧି କରିବ ତୁରିତେ ॥
ଏଥୁଆନ କିଛି ଆଉ ଉପାୟ ଯେ ନାହିଁ ।
ଏମନ୍ତ ଶୁଣି ବୋଇଲେ ନାରଦ ଗୋସାଇଁ ॥
ଯାହାର କି ପ୍ରିୟ ନାହିଁ ସାହସହିଁ ନାହିଁ ।
ବିବେକ ନାହିଁ ଆଦର ବଇରାଗୀ ନୋହି ॥

ଆପଣାର ଦେହ ଆମ୍ଭ ପ୍ରିୟ ଅର୍ଥ ନଲେ ।
ତାଙ୍କଠହିଁ ନାମ ଅପରାଧେହିଁ କେମନ୍ତେ ॥
ପ୍ରଭୁବ ବିସ୍ତାରୁ କରି ନ ପାରେ ତା କହି ।
ଦୂର ହୋଇ ଯାଉ ମୋର ମନର ସନ୍ଦେହ ॥
ଏମନ୍ତ ଶୁଣି ବୋଇଲେ ସନତ କୁମାର ।
ପ୍ରମାଦ ଯୋଗୁଁ ଯେବେ କି ଅପରାଧୀ ନର ॥
ନିରନ୍ତେ ସେ ଜନ ନାମ ସଂକୀର୍ତ୍ତନ କରିଏ
ନାମେ ଶରଣ ପଶି ଅଛି ନିରନ୍ତର ॥
ନାମରୁ ଯେ ଅପରାଧ ପାପ ଜନମିବ ।
ସେହି ନାମ ପ୍ରଭାବରେ ସେ ନାଶ ହୋଇବ ॥
ଅବଶ୍ରାନ୍ତ ହୋଇ କଲେ ସେ ନାମ ଆଶ୍ରୟ ।
ସବୁସାଧି ପାରଇ ତା ପାପ ହୁଏ କ୍ଷୟ ॥
ଶୁଦ୍ଧ କି ଅଶୁଦ୍ଧ ହୋଇ ସମାଧିରେ ରହି ।
ଥରେ ମାତ୍ର ଯେବେ ସେହି ନାମ ସୁମରଇ ॥
ଶୁଣଇ ଛଳେ କପଟ ମୁଖରେ ଧରଇ ।
ସତ୍ୟ ସତ୍ୟ ନିଶ୍ଚେ ଭବୁଁ ସେ ଜନ ତରଇ ॥
ପାଷଣ୍ଡ କିବା ବିନତାଲୋଭୀ ଯେଉଁ ଜନ ।
ତା ମୁଖରେ ଅପବିତ୍ର ନୁହଇ ସେ ନାମ ॥
ନିଶ୍ଚୟ ତାକୁ ପବିତ୍ର କରଇ ନାରଦ ।
ଶଙ୍କର ନିଜେ ଏ କଥା କହିଛନ୍ତି ମଧ ॥
ସବୁ ଅଶୁଭ ନାଶଇ ଅପରାଧ ହରେ ।
ଭଲରୂପେ ବିଷ୍ଣୁ ନାମ ଜାଣନ୍ତି ଯେ ନରେ ॥
ଯେବେ ନାମ ଅପରାଧୀ ହୁଅନ୍ତି ନାରଦ ।
ନାମଧରନ୍ତେ ନ ରହେ ସେହି ଅପରାଧ ॥
ପୁରାଣେ ଅଛି ନାମର ମହିମା ଅଖିଳ ।
ଶୁଣ ହେ ଭାଇ ତୁମ୍ଭେ ଏ ପୁରାଣ ସକଳ ॥
ନିରନ୍ତେ ଯାର ଶରଧା ଥାଇ ଶୁଣିବାକୁ ।
ପ୍ରସନ୍ନ ହୁଅନ୍ତି ହରି ହର ଯେ ତାହାକୁ ॥
ସାଗର ସଙ୍ଗମ ତୀର୍ଥ ପ୍ରୟାଗ ପୁଷ୍କର ।
ଗଙ୍ଗା ଗୋଦାବରୀ କାଶୀ ଧାମ ଯେ ଆବର ॥
ଏସବୁ ତୀର୍ଥ କରଣ ଯେଉଁ ଫଳ ପାଇ ।
ଶରଧାରେ ଏ ପୁରାଣ ଯେ ଜନ ଶୁଣଇ ॥
ତହୁଁ ଦୁଇଗୁଣ ଫଳ ହୁଅଇ ତାହାର ।
ଏକମନେ ପୁରାଣ ଯେ ଶୁଣଇ ଆବର ॥
ପ୍ରତି ଅକ୍ଷରେ କପିଳା ଦାନଫଳ ପାଇ ।
ଅପୁତ୍ରିକ ପୁତ୍ରଲାଭ ନିଶ୍ଚୟ କରଇ ॥

ବିଦ୍ୟାଅର୍ଥୀ [illegible]ପାଏ ଧନଅର୍ଥୀ ଧନ ।
ମୋକ୍ଷକାମୀ [illegible]କ୍ଷ ପାଏ ଶୁଣି ଏ ପୁରାଣ ॥
ପାପଜାଲ କା[illegible] ଦେଇ ବଇକୁଣ୍ଠ ବସେ ।
ପୁରାଣ ପଢା ବିପ୍ରକୁ ପୂଜାରେ ଯେ ତୋଷେ ॥
ଆଟକ୍ଷ ମୁନି [illegible] ଭୂମି ହିରଣ୍ୟ ବସନ ।
ଗନ୍ଧ ପୁଷ୍ପ ଧୂପ ଦୀପ କଂସା ଦିବ୍ୟାସନ ॥
ଅନ୍ନପାତ୍ର ଜଳପାତ୍ର କର୍ଣ୍ଣର କୁଣ୍ଡଳ ।
ସୁନାମୁଦି [illegible] ପୁଷ୍ପ ମାଲ୍ୟ ॥
ଏମାନ ଦେଇ [illegible]ରେ ବିପ୍ରଙ୍କୁ ପୂଜିବ ।
ଶକ୍ତି ଅନୁସା[illegible]ଦିବ କୂଟ ନ କରିବ ॥
କାମନା ସିଦ୍ଧ[illegible]ନ୍ତେ ପୁରାଣ ପଢାଇ ।
ସୁନାରୂପା ଗନ୍ଧ [illegible] ଧୂପଦୀପ ଦେଇ ॥
ପୁସ୍ତକ ସାକ୍ଷାତେ ହରି ତେଣୁ ପୂଜାକରି ।
ମରଣ ଅନ୍ତେ ବସିବ ବଇକୁଣ୍ଠ ପୁରୀ ॥
ପୁରାଣ ପୁସ୍ତକ ଯେହୁ ସଂପୂର୍ଣ୍ଣ କରାଇ ।
ଏବିଧିରେ ପୁସ୍ତକକୁ ଯେହୁ ପୂଜାଦେଇ ॥
ବିପ୍ରକୁ ତୋଷ କରାଇ ଦକ୍ଷିଣା ଭୋଜନେ ।
ଚିତ୍ର ଗୁପତ ଯେ ଯମରାଜାର କରଣେ ॥
ତାର ନାମ ତା ପାଞ୍ଜିରୁ କାଟି ପୋଛିଦିଏ ।
ଦାସ ସଦା ଗୋପୀନାଥ ଶ୍ରୀ ଗୋବିନ୍ଦପାୟେ ॥

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ
ବିଷ୍ଣୁପଥିକ ମାହାତ୍ମ୍ୟଂ ନାମ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।

## ଊନପଞ୍ଚାଶତ୍ ଅଧ୍ୟାୟ ।

ପ୍ରତିଜ୍ଞା ପାଳନ ମହିମା ।

ପଚାରିଲେ ଶଉନକ ଆହେ ସୁତସୂତ ।
ପ୍ରତିଜ୍ଞା ପାଳିଲେ ପୁଣ୍ୟ ହୁଅଇ କି ସତ ॥
କି ପୁଣ୍ୟ ହୁଏ କହିବା କି ପାପ ଖଣ୍ଡନେ ।
ଶୁଣିବାକୁ ଇଚ୍ଛା ମୋର ତୁମ୍ଭ ସନ୍ନିଧାନେ ॥
ଆମ୍ଭଙ୍କ କରି କହିବ କିଛି ନ ଛାଡିବ ।
ମିଥ୍ୟାରେ ନିୟମ କଲେ କି ପାପ ଘଟିବ ॥
ମର୍ତ୍ତ୍ୟରେ କି ମନୁଷ୍ୟ ହୋଏ କହିବ ତା ମୋତେ
ମୋଠାରେ ଯେବେ କି କୃପା ଅଛି ତୁମ୍ଭ ଚିତ୍ତେ ।
ଦକ୍ଷିଣ ହସ୍ତରେ ଦେଇ ନ ଦେଲେ କି ହୁଏ ।
ଏ ସବୁ କଥା ବିସ୍ତାରି କହ ମହାଶୟେ ॥
ସୂତମୁନି କହିଲେ ହେ ଶଉନକ ମୁନି ।
ତୁମ୍ଭେ ସବୁ ବଇଷ୍ଣବ ଜନର ଅଗ୍ରଣୀ ॥
ପ୍ରାଣୀଙ୍କ ହିତରେ ଯେଣୁ ଥାଅ ତୁମ୍ଭେ ପୁଣି ।
ତେଣୁ କହୁଅଛି ତୁମ୍ଭେ ଶୁଣ ମହାମୁନି ॥
ଶଏଗୋଟା ଧେନୁ ଦାନେ ଯେ ଫଳ ମିଳଇ ।
ପ୍ରତିଜ୍ଞା ପାଳନେ ତହୁଁ କୋଟିଗୁଣେ ପାଇ ॥
ଦାରୁଣ ନରକେ ପଡ଼େ ପ୍ରତିଜ୍ଞା ଖଣ୍ଡନେ ।
ଶତ ମନ୍ୱନ୍ତର ପଡି ରହୁଥାନ୍ତି ଜନେ ॥
ଦରିଦ୍ର ହୋଇ ଜନମ ହୁଏ ଆସି ମହୀ ।
ଅନ୍ନ ବସ୍ତ୍ର ନ ମିଳଇ କ୍ଲେଶ ପାଏ ରହି ॥
ଦେବ ଅଗ୍ନି ଗୁରୁ ଆଗେ ନିୟମ ଯେ କରେ ।
ତାହା ନ ପାଳିବା ଯାଏ ଶ୍ରୀବିଷ୍ଣୁ ଶରୀରେ ॥
ନିଆଁ ଲଗିଯାଇ ପୋଡୁଥାଇ ନିରନ୍ତର ।
ନିର୍ବଂଶ ତେଣୁ ହୁଅଇ ଜାଣ ସେହି ନର ॥
ବିପ୍ର ଯେବେ ସତ୍ୟକର ଲଙ୍ଘନ କରଇ ।
ତାହାର ଯେ ପାପ କେତେ କହି ନ ପାରଇ ॥
ସତ୍ୟ ଶପଥର ଫଳ ଯେଣୁ ଜାଣ ଏହା ।
ମିଥ୍ୟା ଶପଥର ଫଳ କି କହିବ ଆହା ॥
ହରିଦେହ ଛୁଇଁ ସତ୍ୟ କରଇ ଯେ ଜନ ।
ଶତ ମନ୍ୱନ୍ତର ହୁଏ ନରକେ ପତନ ॥
ନିୟମ ଭଙ୍ଗିବା ଫଳ କି କହିବ ଆଉ ।
ବିଷ୍ଣୁ ଧଣ୍ଡା ଛୁଇଁ କରେ ନିୟମଟି ଯେହୁ ॥
ସପତ ପୁରୁଷ ଘେନି ନରକେ ପଡଇ ।
ଜନମିଲେ ପୁଣି ମହାକୁଷ୍ଠରୋଗୀ ହୋଇ ॥
ସତ୍ୟକଲାର ଯେ ଫଳ ଅଟଇ ଏମନ୍ତ ।
ସତ୍ୟକୁ ଯେ ମିଛ ପୁଣି କରେ ତପୋବନ୍ତ ॥
କି କହିବ ତାର ଫଳ ତୁମ୍ଭେ ଜାଣିଥିବ ।
ଦକ୍ଷିଣ ହସ୍ତରେ ଯେଉଁ ଦ୍ରବ୍ୟ ଟେକି ଦେବ ॥
ତା ଫେରାଇ ନ ଆଣିଲେ ବିଷ୍ଣୁଲୋକ ପାଇ
ସତ୍ୟ ସତ୍ୟ କେଉଁ ଏହା ମିଛ ନ ହୁଅଇ ॥
ହାତ ଦେଇ ସତ୍ୟକରି ନ ପାଳିଲେ ଜନ ।
ଯନ୍ତ୍ରଣା ଭୋଗ କରନ୍ତି ତାର ପିତୃଗଣ ॥

ମଲ ପରେ ସେ ଦାରୁଣ ନର୍କେ ପଡ଼ଇ ।
କୋଟିଏ କଳପ ଅନ୍ତେ ଉଦ୍ଧାର ସେ ପାଇ ॥
ଶଉନକ ପଗ୍ଭରନ୍ତେ ଆହେ ମୁନିବର ।
ହାତଦେଇ କୃଷ୍ଣ ଲାଭ କଲନ୍ତି କେ ନର ॥
ଏ କଥାଗୋଟା ବିସ୍ତାରି କହିବା ହେ ମୁନି ।
ମନ ସନ୍ତୁଷ୍ଟ ହୋଇବ ତୁମ୍ଭ ମୁଖୁଁ ଶୁଣି ॥
[illegible] ସେ ପୂର୍ବେ କାଞ୍ଚିପୁରେ ।
[illegible] ଥିଲ ବୀରବିକ୍ରମ ନାମରେ ॥
ପେଟ ଶୋଷି ବଡ଼ ତାର ଖାଏ ସେ ବହୁତ ।
ଦେହ ତାର ଅତି ମୋଟା ଧନୀ ପୁତ୍ରବନ୍ତ ॥
ବହୁତ ସ୍ତ୍ରୀ କହିଇ ଦିଶଇ ସୁନ୍ଦର ।
ସୁଖରେ ବଞ୍ଚଇ ବିଦ୍ୟା ପଢ଼ିଛି ଆବର ॥
ତେଣୁ ସକଳ ଈଶ୍ୱର ପ୍ରିୟ ସେ ଅଟଇ ।
ପେଟୁ ଭକତ ଅତିଥି ପାଇଲେ ପୂଜଇ ॥
ଯାହା ସେ କହିଇ ତାହା ନିଶ୍ଚୟ କରଇ ।
ପ୍ରତିଙ୍କୁ ପ୍ରାଣପଣ କରିଣ ପାଳଇ ॥
ଗୁରୁଜନେ ଯା କହନ୍ତି ନ ଲଙ୍ଘଇ ତାହା ।
ନିତିଦିନ ପୂଜା କରେ ଦେବ ଚତୁର୍ବାହା ॥
ଦିନେ ସୁନ୍ଦର ଚଣ୍ଡାଳ କପଟ କରିଣ ।
ତରୁଣ ସୁନ୍ଦର ବିପ୍ର ରୂପକୁ ଧରିଣ ॥
କହିଲ ହେ ଧୀର ଶୁଣ ମୋହର ବଚନ ।
ଗୁଣବତୀ ମୋ ଭାରିଯା ପାଇଲା ମରଣ ॥
କି କରିବ କାହିଁ ଯିବି କହ କୃପାକର ।
ବିପ୍ରକୁ ବିଭା କରାଇ ଦେଲେ ଭଲ ତର ॥
ନାହିଁ ତାର ପ୍ରୟୋଜନ ଯଜ୍ଞବ୍ରତ ଦାନେ ।
ସେ ବୀର ବିକ୍ରମ ଶୂଦ୍ର ଶୁଣି ଏହା କର୍ଣ୍ଣେ ॥
ବୋଇଲ ହେ ଦ୍ୱିଜବର କଥା ଶୁଣ ମୋର ।
କନ୍ୟାଏ ଅଛି ମୋହର ସେ ଅତି ସୁନ୍ଦର ॥
ଇଚ୍ଛା ହେଲେ ତୁମ୍ଭଙ୍କୁ ତା କରିବି ପ୍ରଦାନ ।
ଦକ୍ଷିଣ ହସ୍ତ ଦେଉଛି ତାହା ତୁମ୍ଭେ ଘେନ ॥
ଦେବ ଦେବ କନ୍ୟା ତୋତେ ତା ଆନ ନୋହିବ
ପଶ୍ଚିମରେ ଯେବେ ସୂର୍ଯ୍ୟ ଦେବତା ଉଇଁବ ॥
ଏହାପରେ ହୋଇପାରେ ନଟଳେ ମୋ ବାଣୀ
କପଟୀ ଚଣ୍ଡାଳ ତାର ସତ୍ୟ ବାକ୍ୟ ଶୁଣି ॥
ଦକ୍ଷିଣ ହସ୍ତ ଧଇଲା ଆନନ୍ଦ ମନରେ ।
କହିଲ ତୁମ୍ଭେ ତୁରତେ ଯାଇ ତୁମ୍ଭ ଘରେ ॥

ଭୋଜନ ସାରି କନ୍ୟାକୁ [illegible] ତେ ଦାନ ।
ଏକଥା ଗୋଟା କଦାପି ନ କର ଆନ ॥
ହାତ ଦେଇ ନ ଦେବିଲ ସେ ମନୁଷ୍ୟ ଅଧମ ।
ଚିର ଘୋର ନରକରେ ହୁଅଇ ପତନ ॥
ବିଳମ୍ବ ନ କର ବେଗେ [illegible] ଯାଇଁ ତାହା ।
ବିଘ୍ନ ଘଟଇ ବିଳମ୍ବେ ଶାସ୍ତ୍ରେ ଅଛି ଏହା ॥
ଏମନ୍ତ ଶୁଣି ସେ ଶୂଦ୍ର ବେଗେ ଚଳିଗଲା ।
କୃଷ୍ଣଶର୍ମା ନାମେ [illegible] ଥିଲ ॥
ସୂତମୁନି କହିଲେ ହୋ ଶୁଣ ଶଉନକ ।
ବିଚାର ବିଧି ବିଧାନ ପଦାର୍ଥ [illegible]ତକ ॥
ସକଳ ସଂପାଦ ଜ୍ଞାତ ବନ୍ଧୁଙ୍କ [illegible]ଇଲ ।
କୃଷ୍ଣଶର୍ମା ବିପ୍ର ଆଗେ [illegible] କହିଲ ॥
ସବୁ କଥା ଯାକ ଶୁଣି ସାର ଦ୍ୱିଜବର ।
ବୋଇଲେ କି କଲୁ ସେହି ଚଣ୍ଡାଳ କୁମର ॥
ବିପ୍ର ବେଶେ ଆସି ତୋତେ କହିଲା ଏମନ୍ତ ।
ତୋ ପରି ମୂରୁଖ ଜଣେ ନାହିଁ ତ୍ରିଜଗତ ॥
କୁଳ ଶୀଳ ଜ୍ଞାତି ଗୋତ୍ର ନ ବୁଝି ନ ଶୁଝି ।
ଝିଅ ବିଭା ଦେଉ ଅଛ କାହାକୁ ନ ପୁଚ୍ଛି ॥
ଜ୍ଞାତି ଖୁଡ଼ୁତା ତାହାର ମନା କଲେ ତାକୁ ।
ଅକୁଳା ହେଉଛ ଦେଇ ଝିଅ ଅକୁଳାକୁ ॥
ଦେଶ ଗୋତ୍ର ଧନ ଶୀଳ ବୟସ ନ ଜାଣି ।
ଜାତ କି ଅଜାତ ସେହି ମନରେ ନ ଗଣି ॥
କନ୍ୟାଦାନ କରୁ ତୋତେ ନ ମାଡ଼ଇ ଲଜ ।
ଏରୂପେ ସର୍ବେ ବାରିଲେ ତାକୁ ଆହେ ଦ୍ୱିଜ
ବୀରବିକ୍ରମ ବୋଇଲ ନ ବାରିବ କିଛି ।
ନ ଶୁଣିବି ନ କରିବି ଯେଁ [illegible]ଅଛି ॥
ଦକ୍ଷିଣ ହସ୍ତ ତାହାକୁ ଦେଇଛି ଯେ ବେଳେ ।
କନ୍ୟା ନିଶ୍ଚେ ତାକୁ ଦେବୁ ଦେଖୁଥିବ [illegible]ହାଲେ
ଏହା କହି କନ୍ୟାଦାନ କରିବା ସମୟେ ।
ତାହାର ଏ ଦୃଢ଼ କଥା ଦେଖି ଦେବରାୟେ ॥
ଶଙ୍ଖ ଚକ୍ର ଗଦାଧର ଗରୁଡ଼ ଆରୋହି ।
ବିଜେ କଲେ ସେ କନ୍ୟାର ବିଭାଘର ଯହିଁ ॥
ବୋଇଲେ ଧନ୍ୟ ତୋ କୁଳ ଧନ୍ୟ ତୋର ମାତା
ଧନ୍ୟ ତୋ ଦକ୍ଷିଣ ହସ୍ତ ଧନ୍ୟ ତୋର ପିତା ॥
ଧନ୍ୟ ତୋର ଜନ୍ମ କର୍ମ ଧନ୍ୟ ତୋର ସତ୍ୟ
ତୋ ତୁଲ୍ୟ ତ୍ରିଭୁବନେ ଦେଖି ନାହିଁ ନେତ୍ର

ତୋ କୁଳ ନ[illegible]ହିଁ ସାଧୁଜନ ।
ତତ୍କ୍ଷଣେ [illegible]ଜେ ଆଣାଇ ବିମାନ ॥
ଚଣ୍ଡାଳ ସେ[illegible] ଗ୍ରହିତ କ୍ଷାନ୍ତ ବନ୍ଧୁ ଘେନ ।
ସେ ଶୂଦ୍ର ରଥେ ବସିଲା କରି ଜୟଧ୍ୱନି ॥
ବଇକୁଣ୍ଠ ପୁରେ ଗଲେ ହରିଙ୍କ ସହିତ ।
ସୁଖେ ରହିଲେ ସମସ୍ତେ ହୋଇ ହରିଭକ୍ତ ॥
କର ଦେଇ ନ କରେ ଯେ ନରକେ ପଡ଼ଇ ।
ଆପେ ପଢ଼ି ଆପଣାର [illegible] ପକାଇ ॥
ନ ଛୁଅନ୍ତି ତା ଘରର ଅନ୍ନପାଣି କେହି ।
ଦେବତା ପିତୃ ବ୍ରାହ୍ମଣ ଯେତେ ଛନ୍ତି ରହି ॥
ତା ଗୃହ ଛାଡ଼[illegible] ପାପକୁ ଯେ ଡର ।
ଆଣ୍ଡା ଦେଇଣ [illegible] କଲା ଲୋକ ମର ॥
କୋଟି ପୁରୁଷଙ୍କୁ ଘେନି ନରକେ ପଡ଼ଇ ।
ରାଜା ଅଗ୍ନି ଚୋରଠାରୁ ଦଣ୍ଡ ସେହି ପାଇ ॥

ସତ୍ୟ ସତ୍ୟ ମିଥ୍ୟା କେବେହିଁ ନୁହଇ ତା ଜାଣ ।
ସ୍ୱର୍ଗ ଖଣ୍ଡ ଶୁଣି କର ସ୍ୱର୍ଗକୁ ଗମନ ॥
ସ୍ୱର୍ଗୋପର ଅଟଇ ଯେ ବଇକୁଣ୍ଠ ପୁର ।
ଇହ ଲୋକ ତେଜି ଯାଇ ବାସ ତହିଁ କର ॥
ଏହାକୁ ଯେ ପ୍ରତିଦିନ କରଇ ପଠନ ।
ଧନ ଧାନ୍ୟ ପୁତ୍ର ପୁତ୍ରୀ ଲଭଇ ସେ ଜାଣ ॥
ପାପ ଶରୀରେ ତାହାର ପ୍ରବେଶ ନ ହୁଏ ।
ପୁଣ୍ୟାତ୍ମା ମଧ୍ୟରେ ସେହି ଗଣନା ଯେ ହୋଏ
ଦୀନ ଗୋପୀନାଥ ବୋଲେ ବୋଲ ହରି ହରି
ଏ ଘୋର ଭବ ସାଗରୁ ହେଲେ ଯିବ ତରି

ଇତି ଶ୍ରୀ ପଦ୍ମପୁରାଣେ ସ୍ୱର୍ଗଖଣ୍ଡେ ସୂତ ଶୌନକ
ସମ୍ବାଦେ ପ୍ରତିଜ୍ଞା ପାଳନ ମହିମାବର୍ଣ୍ଣନଂ
ନାମ ଊନପଞ୍ଚାଶୋଽଧ୍ୟାୟଃ ।

ସଂପୂର୍ଣ୍ଣ ।



କଟକ-ଅରୁଣୋଦୟ ଯନ୍ତ୍ରାଳୟରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ ।